ଦୀର୍ଘ ଦୁଇବର୍ଷ ବିଦେଶରେ ଅବସ୍ଥାନ ସମୟରେ ଲେଖିକା ଯୁକ୍ତରାଷ୍ଟ୍ର ଆମେରିକା ଓ ୟୁରୋପର ବିଭିନ୍ନ ସ୍ଥାନ ପରିଦର୍ଶନ କରିବାର ସୌଭାଗ୍ୟ ଲାଭ କରିଥିଲେ। 'ମୋ ଝର୍କାରୁ ପୃଥିବୀ' ତାଙ୍କର ସେହି ପରିବ୍ୟାପ୍ତ ଅନୁଭୂତିର ଏକ ପ୍ରତିଫଳନ ମାତ୍ର। ଜଣେ ସଂବେଦନଶୀଳ ଲେଖକର ଦୃଷ୍ଟି ନେଇ ବିଭିନ୍ନତାର ମାର୍ମିକ ଅଭିବ୍ୟକ୍ତି ଏହି ପୁସ୍ତକର ଅନନ୍ୟ ଆକର୍ଷଣ।

ଗତାନୁଗତିକ ଭ୍ରମଣ-ବୃତ୍ତାନ୍ତର ଏହା ଏକ ନିଶ୍ଚିତ ବ୍ୟତିକ୍ରମ। ପତ୍ର ମାଧ୍ୟମ ଭିତ୍ତିକ ଉପସ୍ଥାପନା ଶୈଳୀ ନିବିଡ ଅନ୍ତରଙ୍ଗତା ଓ ସତ୍ୟନିଷ୍ଠ ବକ୍ତବ୍ୟର ସୁସ୍ପଷ୍ଟ ପରିଚୟ ଦିଏ।

ଦେଖିଥିବା ବିଭିନ୍ନ ସ୍ଥାନମାନଙ୍କର କେବଳ ଭୌଗୋଳିକ ବା ଐତିହାସିକ ବିବରଣୀ ନ ଦେଇ ଟିକିଏ ଅଧିକ ଗହୀରକୁ ଦୃଷ୍ଟି ନିକ୍ଷେପ କରିଛନ୍ତି ଲେଖିକା।

## ମୋ ଝର୍କାରୁ ପୃଥିବୀ

ଲେଖିକା : **ସୁସ୍ମିତା ବାଗ୍‌ଚୀ**

ପ୍ରକାଶକ : **ସୁଚରିତା ପବ୍ଲିକେଶନ୍‌ସ**
୪୩୧, ଶହୀଦ ନଗର
ଭୁବନେଶ୍ୱର – ୭୫୧୦୦୭

ପ୍ରଚ୍ଛଦ : **ଅସୀମ ବସୁ**

ମୁଦ୍ରଣ : **ଅପ୍‌ଟିମା ପ୍ରିଣ୍ଟସ୍**
ସୁତାହାଟ, କଟକ-୧

ପ୍ରଥମ ପ୍ରକାଶ : ସେପ୍ଟେମ୍ବର, ୧୯୯୫

ମୂଲ୍ୟ : ଏକଶତ ଟଙ୍କା ମାତ୍ର

## Mo Jharkaru Pruthibi

*Written by :*
**Susmita Bagchi**

*Published by :*
**Sucharita Publications**

*First Edition :*
September, 1995

*Printers :*
**Optima Prints,** Sutahat, Cuttack-1

*Price :*
Rupees hundred only

ଝର୍କା ଖୋଲି ପୃଥିବୀକୁ ମନ ଭରି ଦେଖିବାର ଉତ୍ସାହ
ଯେଉଁ ଦୁଇଜଣ ଦେଇଛନ୍ତି ସେଇ ମା', ବାପାଙ୍କ ହାତରେ....

ମିଲୁ (ସୁସ୍ମିତା)

୮ ଏପ୍ରିଲ୍, ୧୯୯୧

ସ୍ନେହର ମିତୁ,

ଏଇ ମାତ୍ର ଡ଼େଲ୍‌ଟା ଏୟାରଲାଇନ୍‌ସର କ୍ୟାପ୍‌ଟେନ୍ ଘୋଷଣା କରିଲେ ଯେ ଆମେ ପ୍ରଶାନ୍ତ ମହାସାଗରର ୩୨,୦୦୦ ଫୁଟ ଉପରେ ଯାଉଛୁ। ଭାବି ବସିଲେ ବିଶ୍ୱାସ ହୁଏନି। ଝରକା ଦେଇ ବାହାରକୁ ଚାହିଁଲେ ହୁଏତ ମୁଁ ଦେଖିବି ନୀଳ ଆକାଶରେ ଧଳା ଧଳା ମେଘ। କିନ୍ତୁ ବିରାଟ ୭୪୭ ବୋଇଙ୍ଗର ସମସ୍ତ ଝରକା ବନ୍ଦ। ମୁଁ ଜାଣେ ବାହାରେ ଦିନ। ମାତ୍ର ଆମେ ଯେତେବେଳେ କେଇଘଣ୍ଟା ଆଗରୁ ଉଡାଜାହାଜରେ ବସିଲୁ ସେତେବେଳେ ସଂଧ୍ୟା। ତେଣୁ ମୋର ମନେହୁଏ ଯାତ୍ରୀମାନଙ୍କ ବିଶ୍ରାମ ନେବାରେ ଯେପରି ଅସୁବିଧା ନ ହୁଏ, ସେଥିପାଇଁ ଏୟାର ହୋଷ୍ଟେସ୍‌ମାନେ ସୂର୍ଯ୍ୟାଲୋକକୁ ବିମାନ ଭିତରକୁ ଆସିବାକୁ ନ ଦେଇ ରାତିର ବାତାବରଣ ପ୍ରସ୍ତୁତ କରି ଦେଇଛନ୍ତି। ଏତେ ବଡ ବିମାନରେ ମାତ୍ର ୪୦-୫୦ ଜଣ ଯାତ୍ରୀ। କୌଣସି କାରଣରୁ ପ୍ରାୟ ଖାଲି ଯାଉଛି ବିମାନଟି। ସେଇଥି ପାଇଁ ଟ୍ରେନ୍‌ର ଏୟାରକଣ୍ଡିସନ୍‌ଡ଼ କୋଚ୍‌ରେ ଯାତ୍ରା କଲାଭଳି ସମସ୍ତେ ଚାରୋଟି ଲେଖାଏଁ ସିଟ୍ ଅଧିକାର କରି ଗୋଡ ଲମ୍ବେଇ ଦେଇଛନ୍ତି। ଅଧିକାଂଶ ଯାତ୍ରୀ ବେଶ୍ ନିଘୋଡ ନିଦରେ ଶୋଇ ପଡିଛନ୍ତି। (କହିବା ବାହୁଲ୍ୟ, ସେମାନଙ୍କ ଭିତରେ ତୋ ଭାଇନା ଅନ୍ୟତମ)। ଆଉ କେତେଜଣ ନିବିଷ୍ଟ ଚିତ୍ତରେ ସିନେମା ଦେଖୁଛନ୍ତି। ରୁମି ଟିନ୍‌ଟିନ୍ କମିକ୍ ଧରି ବସିଛି। ଗିଟି ଏୟାରହୋଷ୍ଟେସ୍ ଦେଇଥିବା କଲରିଙ୍ଗ

ବୁକ୍ ଓ ସ୍କେଚ୍ ପେନ୍ ନେଇ ବିଭିନ୍ନ ମଡ଼ର୍ଣ୍ଣ ଆର୍ଟ କରୁଛି। ମୁଁ ଶୋଇବାକୁ ବହୁତ ଚେଷ୍ଟା କଲି, କିନ୍ତୁ ନିଦ ହେଲାନି। ସିନେମା ଦେଖିବାକୁ ମଧ ଇଚ୍ଛା ହେଉନି। ସାଙ୍ଗରେ ମୋପାସାଁଙ୍କର ଗଳ୍ପ ସଂକଳନ ରହିଛି। କିନ୍ତୁ ମୋଟା ବହିର ମିଞ୍ଜି ମିଞ୍ଜି ଅକ୍ଷର। ଖୋଲିବାକୁ ମନ ନାହିଁ। ସେଇଥି ପାଇଁ ଭାବିଲି ବସି ବସି ତତେ ହିଁ ଚିଠି ଲେଖେ।

ଛଅ ତାରିଖ ଦିନ ମାଡ୍ରାସ୍ ଏଆରପୋର୍ଟରେ ତୁମମାନଙ୍କୁ ଛାଡି ଆସିବା ବେଳେ ଭାରି ଖରାପ ଲାଗିଲା। ମୁଁ ପରେ ଅବଶ୍ୟ ନିଜକୁ ତାରିଦା କରିଦେଲି। ମାତ୍ର କେଇଟା ମାସ କଥା। ଖରାପ ଲାଗିବାର କ'ଣ ବା ଅଛି? ଏମିତିରେ ବି ତ ତୋ ସାଙ୍ଗରେ ଛଅମାସରେ, ଆଠ ମାସରେ ଥରେ ଦେଖାହୁଏ। ବୋଧହୁଏ ଭାରତ ଆଉ ଆମେରିକାର ଦୂରତ୍ୱଟା ହିଁ ଏକମାତ୍ର କାରଣ। ଚାହିଁ ବସିଲେ ଆଖି ପାଏନି।

ସେ ଯାହା ହେଉ, ଏଆର୍‌ପୋର୍ଟ ଭିତରେ ପଶିଯିବା ପରେ ଗୋଟିକ ପରେ ଗୋଟିଏ କାମ ଲାଗିଗଲା। ପ୍ରଥମେ ତ ପଶୁ ପଶୁ ଜିନିଷପତ୍ର ଏକ୍ସ-ରେ କରିବାକୁ ହେଲା। ତାପରେ ଫରେନ୍ ଟ୍ରାଭେଲ ଟ୍ୟାକ୍ସ୍ ପାଇଁ ଧାଡି। ଭାରତର ପଡୋଶୀ ଦେଶମାନଙ୍କୁ ଯିବା ପାଇଁ ଟ୍ୟାକ୍ସର ପରିମାଣ କମ୍। କିନ୍ତୁ ଆମେ ଆମେରିକା ଯିବୁ। ତେଣୁ ଜଣ ପିଛା ୩୦୦ ଟଙ୍କା ଲାଗିଲା। ଏହାପରେ ସୁଟ୍‌କେଶ ଗୁଡ଼ିକ ଚେକ୍ ଇନ୍ କରେଇ ଦେଲୁ। ଆମର ସିନା ସମୁଦାୟ ଚାରିଟି ସୁଟ୍‌କେଶ୍ ଥିଲା, କିନ୍ତୁ ଏଠି ଜାଣିଲି ଯେ ଜଣେ ଯାତ୍ରୀ ଦୁଇଟି ସୁଟ୍‌କେଶ ସାଙ୍ଗରେ ନେଇ ପାରିବ। ବୋର୍ଡିଙ୍ଗ ପାଶ୍ ନେବା ପରେ ରାସ୍ତା ଖର୍ଚ୍ଚ ପାଇଁ ଏଆରପୋର୍ଟରେ ଟଙ୍କା ଦେଇ ଜଣକା ୨୦ ଡ଼ଲାର୍ ଲେଖାଏଁ ପାଇଲୁ। ଏତିକିରେ ସବୁ କାମ ଛିଣ୍ଡିଲା ନାହିଁ। ଭାରତୀୟ ଇମିଗ୍ରେସନ୍ ଚେକ୍ ପାଇଁ ଏମ୍‌ବାର୍କେସନ୍ ଫର୍ମ ଭର୍ତ୍ତି କରିବାକୁ ହେଲା। ତା'ପରେ ଇମିଗ୍ରେସନ୍ ଚେକ୍। ସେଠାରେ ସେମାନେ ଆମର ଯିବା ତାରିଖ ପାସପୋର୍ଟରେ ଲେଖି ଦିଅନ୍ତି ଏବଂ ସେମାନଙ୍କର କମ୍ପ୍ୟୁଟର୍‌ରେ ଭର୍ତ୍ତି କରି ଦିଅନ୍ତି। ଏହାପରେ କଷ୍ଟମସ୍ ଚେକ୍। ଜଣେ ବ୍ୟକ୍ତି ଯଦି ମୂଲ୍ୟବାନ ଜିନିଷ ନେଇ ବିଦେଶ ଯାଉଥାଏ, ତେବେ ଏଇଠି କର୍ମକର୍ତ୍ତାମାନେ ଅଟକେଇ ଦିଅନ୍ତି; ଯେମିତିକି ସୁନା ଗହଣା। ବେଶୀ ସୁନା ସାଙ୍ଗରେ ନେଇ ଯିବା ବେନିୟମ। ଜଣେ ଯଦି ଦାମୀ ବିଦେଶୀ କ୍ୟାମେରା ବା ସେଇଭଳି କିଛି ନେଇ ବିଦେଶ

ଯାଉଥାଏ, ତେବେ ଏହିଠାରେ ପାସପୋର୍ଟରେ ଲେଖେଇ ନେବା ଭଲ। ନଚେତ୍ ଫେରିବା ସମୟରେ କଷ୍ଟମସ୍ ଡ୍ୟୁଟି ଦେବାକୁ ପଡ଼ିପାରେ। ଏ ସବୁ ପରେ ଆମ ପାଖରେ ରହିଲା ମାତ୍ର ପନ୍ଦର କୋଡ଼ିଏ ମିନିଟ୍। ଅଢେଇ ଘଣ୍ଟା ଆଗରୁ ହୋଟେଲ ଛାଡ଼ିବା ବେଳେ ମୁଁ ଭାବିଥିଲି ଏଆର୍‌ପୋର୍ଟ ଲାଉଞ୍ଜରେ ବସି ଶେଷରେ ବୋର୍ ହେବାକୁ ପଡ଼ିବ। କିନ୍ତୁ ସମୟ ଯେ କେମିତି ଚାଲିଗଲା, କିଛି ଜଣା ପଡ଼ିଲା ନାହିଁ।

ଏଗାରଟା ଚାଳିଶରେ ସିଙ୍ଗାପୁର ଏଆର୍‌ଲାଇନ୍‌ସର ଫ୍ଲାଇଟ୍ ଛାଡ଼ିବା କଥା। କିନ୍ତୁ କୌଣସି ଗୋଟିଏ କାରଣରୁ ପନ୍ଦର ମିନିଟ୍ ଡେରି ହୋଇଗଲା। ବସ୍, ଟ୍ରେନ୍ ଏପରିକି 'ଉଡାଜାହାଜ ଘଣ୍ଟା ଘଣ୍ଟା ଲେଟ୍ ହେବାର ଅଛି ମଜ୍ଜାଗତ ଅଭ୍ୟାସ। ଅଥଚ ମାତ୍ର ପନ୍ଦର ମିନିଟ୍ ଡେରିରେ ମୁଁ ଅସ୍ଥିର ହୋଇ ପଡ଼ିଲି। ଏହାର ପ୍ରଧାନ କାରଣ ହେଲେ ପୁରୀର ସେଇ ବୁଢ଼ା ଜ୍ୟୋତିଷ ଜଣକ। ସମସ୍ତେ କହନ୍ତି ସେ ଭାରି ଭଲ ହାତ ଦେଖି ପାରନ୍ତି। ଥରେ ସେ ମଉସାଙ୍କ ଘରକୁ କୌଣସି କାରଣରେ ଆସିଥିଲେ। ମୁଁ ସେଥର ତାଙ୍କୁ ମୋ ହାତ ଦେଖାଇଥିଲି। ମୋ ହାତ ଦେଖି ସେ କହିଥିଲେ ଯେ ବିଦେଶ ଯାତ୍ରା ଆଦୌ ନାହିଁ। ସେତେବେଳେ ଉପରେ ସିନା ଫୁଃ ଫୁଃ କରିଦେଇଥିଲି, ନହେଲେ ନାହିଁ ବୋଲି ମୁହଁ ଉପରେ ଭାବ ଦେଖାଇଥିଲି, କିନ୍ତୁ ଭିତରେ ଟିକିଏ ମନ ଖରାପ ହୋଇ ଯାଇଥିଲା। ହାତରୁ ଟଙ୍କା ଖର୍ଚ୍ଚ କରି ତ ଯାଇ ପାରିବିନି। ଗ୍ରହ ନକ୍ଷତ୍ରଙ୍କ କୃପା ଦୃଷ୍ଟି ହେଲେ ଟିକିଏ ପଡ଼ିଥାଆନ୍ତା, ବିଦେଶ ବୁଲିବାର ସଉକଟା ପୂରଣ ହୋଇ ଯାଇ ଥାଆନ୍ତା !

ହଠାତ୍ ଯେତେବେଳେ ଆମେରିକା ଯିବାର ପ୍ରସ୍ତାବ ଶୁଣିଲି ମୁଁ ଖୁସି ହୋଇ ପାରିଲିନି। ମତେ ସେତେବେଳେ ଯିଏ ଏହାର କାରଣ ପଚାରୁଥିଲା ମୁଁ କହୁଥିଲି, ''ଉଡାଜାହାଜରେ ବସିସାରେ, ଉଡାଜାହାଜଟି ବିଦେଶ ଭୂଇଁରେ ଓହ୍ଲେଇ ସାରୁ, ତା'ପରେ ଯାଇ ଖୁସି ହେବି।''

ତେଣୁ ବିମାନଟିର ପନ୍ଦର ମିନିଟ୍ ଡେରିରେ ମୁଁ ଅଧୈର୍ଯ୍ୟ ହୋଇ ପଡ଼ିବା ସ୍ୱାଭାବିକ ନୁହଁ କି ?

ବଡ ଦୁଃଖର କଥା ମିତୁ, ଜ୍ୟୋତିଷଙ୍କର ସେଇ ଗଣନାଟି କୌଣସି କାରଣରୁ ଭୁଲ୍ ହୋଇଗଲା। ପନ୍ଦର ମିନିଟ୍ ପରେ ବିମାନ ଛାଡ଼ିଲା ଏବଂ ଠିକ୍ ସମୟରେ

ସିଙ୍ଗାପୁର ଏଆର୍‌ପୋର୍ଟରେ ଅବତରଣ ମଧ୍ୟ କଲା। ମୋର ପ୍ରଥମ ବିଦେଶ ଯାତ୍ରା; ତେଣୁ ପିଲାମାନେ ଓ ତୋ ଭାଇନା ମୁଣ୍ଡ ତଳେ ତକିଆଦେଇ କମ୍ବଳ ଘୋଡ଼ି ହୋଇ ଶୋଇ ପଡ଼ିଲେ ମଧ୍ୟ ମୋ ଆଖି ଆଦୌ ବନ୍ଦ ହେଲାନାହିଁ। ଅନିଦ୍ରା ରହିବା ଫଳରେ ମୁଁ ଯାହା ଯାହା ଦେଖିଲି, ସେକଥା ଭାବିଲେ ଏବେ ମଧ୍ୟ ଲାଜରେ ମୋ ମୁଣ୍ଡ ନଇଁ ଯାଉଛି। ଆମ ସାଙ୍ଗରେ ବିମାନରେ ଉଠିଥିବା ଅନ୍ୟ କେଇ ଜଣ ସହଯାତ୍ରୀଙ୍କ ବ୍ୟବହାର କଥା ହିଁ କହୁଛି। ଏମାନଙ୍କ ମଧ୍ୟରୁ କେତେକ ବାରମ୍ବାର ଏଆରହୋଷ୍ଟେସ୍‌ମାନଙ୍କୁ ଡାକି ପୋଷ୍ଟକାର୍ଡ, ତାସ୍- ଏଇଭଳି ଛୋଟ ଛୋଟ ଉପହାର ନିର୍ଲଜଙ୍କ ଭଳି ମାଗି ନେଉଥାଆନ୍ତି। ଏମିତିରେ ତ ନିଜେ ଏଆରହୋଷ୍ଟେସ୍ ଉପହାର ଗୁଡ଼ିକ ବାଣ୍ଟି ଦେଇ ଥାଆନ୍ତେ; ନିଜକୁ ଛୋଟ କରି ବିମାନରେ ବସିବା କ୍ଷଣି ଏଭଳି ଲୋଭୀଙ୍କ ଭଳି ବ୍ୟବହାର ସେମାନେ କାହିଁକି ଯେ କଲେ ବୁଝିପାରୁନି। କେବଳ ଏତିକି ନୁହଁ। ବିମାନରେ ସବୁ ରକମର ପାନୀୟ ମାଗଣାରେ ମିଳେ, ଶୁଣିଥିବୁ ନିଶ୍ଚୟ। ଆମ ସହଯାତ୍ରୀ କେଇଜଣ ବିନା ପଇସାରେ ପାନୀୟ ପାଇବାର ଲୋଭରେ ଗିଲାସ ପରେ ଗିଲାସ ଖାଲି କରି ଦେଇ ଗଲେ। ଏହା ପରେ ଯାହା ହେବା କଥା ହେଲା। ବାନ୍ତି କରି ସେ ଯେଉଁ ଅବସ୍ଥା, ତତେ ନ ଲେଖିଲେ ଭଲ। ମାତ୍ର କେଇ ଜଣଙ୍କର ଏଭଳି ବ୍ୟବହାର ଫଳରେ ଆମ ଦେଶର ନାଁ ପଡୁନି କି ?

ବିମାନ ଯେତେବେଳେ ସିଙ୍ଗାପୁରରେ ଓହ୍ଲେଇଲା, ସେତେବେଳେ ମୋ ଘଣ୍ଟାରେ ସମୟ ଚାରିଟା। କିନ୍ତୁ ସିଙ୍ଗାପୁର ସମୟ ସକାଳ ସାଢ଼େ ଛଅ। ପିଲାମାନଙ୍କୁ ହଲେଇ ହଲେଇ କୌଣସି ମତେ ଉଠେଇଲି। କାଖ ହେବାର ବୟସ ତ ଆଉ ନାହିଁ, ତେଣୁ ବାଧ୍ୟ ହୋଇ ଆଖି ଯେତେଟା ବନ୍ଦ କରି ଚାଲାଯାଇ ପାରେ, ସେତିକି କରି ସେମାନେ ଚାଲିଲେ। କିନ୍ତୁ ଯେମିତି ସିଙ୍ଗାପୁରର ଚାଙ୍ଗି ଏଆରପୋର୍ଟରେ ପାଦ ଦେଇଛନ୍ତି ଧପ୍ ଧପ୍ ଦୁଇ ଜଣଙ୍କର ଆଖି ଖୋଲିଗଲା। ଖାଲି ଖୋଲି ତ ଗଲା ନାହିଁ, ବଡ ବଡ ହୋଇଗଲା।

ଏଆରପୋର୍ଟ ତ ନୁହଁ, ସ୍ୱର୍ଗର ନନ୍ଦନକାନନ ଯେମିତି। ସଂପୂର୍ଣ୍ଣ ଭାବରେ କାର୍ପେଟ ଘେରା ଲାଉଞ୍ଜ। ପ୍ରତି ପଦକ୍ଷେପରେ ସାହାଯ୍ୟ କରିବା ପାଇଁ ହସ ହସ ମୁହଁରେ ଠିଆ ହୋଇ ଥାଆନ୍ତି ହଳଦିଆ ୟୁନିଫର୍ମ ପିନ୍ଧା କର୍ମଚାରୀ। ଏଆର୍‌ପୋର୍ଟ ଭିତରଟି ବହୁ ରକମର ଗଛ, ଫୁଆରାରେ ସଜା ହୋଇ ରହିଥାଏ।

ମତେ ସବୁଠାରୁ ଭଲ ଲାଗିଲା ସେଇ ଜାଗାଟି ଯେଉଁଠି ଗୋଟିଏ କାଛରେ ଥାକ ଜଟା ହୋଇ ଅର୍କିଡ ଚାଷ କରାଯାଇଥାଏ। ବହୁ ରଙ୍ଗର ଅର୍କିଡ। ଆଖି ଝଲସି ଯାଉଥାଏ। ମୁଁ ପରେ ଜାଣିବାକୁ ପାଇଲି ଯେ ପୃଥିବୀର ସର୍ବଶ୍ରେଷ୍ଠ ଏଥାରପୋର୍ଟମାନଙ୍କ ମଧ୍ୟରୁ ଚାଙ୍ଗି ଏଥାରପୋର୍ଟ ଅନ୍ୟତମ।

ଆମର ସିଙ୍ଗାପୁରଠାରୁ ଟୋକିଓ ଯିବା କଥା। ହାତରେ ସମୟ ଥିଲା ମାତ୍ର ତିନିଘଣ୍ଟା। ତେଣୁ ସିଙ୍ଗାପୁର ସହର ଦେଖିବାର ଆଗ୍ରହ ବହୁତ କଷ୍ଟରେ ବନ୍ଦ କଲି। ହେଲେ ଏଥାରପୋର୍ଟ ଭିତରେ କ'ଣ କିଛି କମ୍ ଦେଖିବାର ଜିନିଷ ଥିଲା ? ମୋର ପ୍ରଧାନ ଆକର୍ଷଣ ଡ୍ୟୁଟି ଫ୍ରି ଦୋକାନ। ଏତେଦିନ ଅନ୍ୟମାନଙ୍କଠାରୁ କେବଳ ତା'ର ବିବରଣୀ ଶୁଣିଥିଲି। କେଇଟା ପତ୍ରିକାରେ ସେ ବିଷୟରେ ମଧ୍ୟ ପଢିଥିଲି। ଏବେ ଦେଖିବାର ସୁଯୋଗ ମିଳିଲା। ଦୋକାନ ଗୁଡ଼ିକ ଏଭଳି ଆକର୍ଷଣୀୟ ଭାବରେ ସଜା ହୋଇଥାଏ ଯେ ସବୁ ଜିନିଷ କିଣି ନେବାକୁ ଇଚ୍ଛା ହେବ। ମୋର "ପାଖରେ ନ ଥାଇ ଧନ..." ଅବସ୍ଥା। କିଏ କେତେବେଳେ ବିଦେଶ ଗଲେ ପରଫ୍ୟୁମ୍ ବୋତଲଟିଏ ବା ଲିପ୍‌ଷ୍ଟିକ ଗୋଟିଏ ଆମ ପାଇଁ ନେଇ ଆସନ୍ତି। ବଡ ଜୋର୍ ସିଟିଜେନ୍ ବା ସିକୋ ଘଣ୍ଟା ନହେଲେ କ୍ୟାମେରା। ଏଠି ଦେଖିଲି କେବଳ ପରଫ୍ୟୁମ୍ ଓ କସ୍‌ମେଟିକ୍‌ସର ବିରାଟ ଦୋକାନ। ଆଉ ଘଣ୍ଟା ଓ କ୍ୟାମେରା ଦୋକାନ କଥା ନ କହିଲେ ଭଲ। ମଡେଲ ଅସଂଖ୍ୟ। ଦାମ ମଡେଲ୍ ଅନୁସାରେ। ଦୋକାନ ନାଁ କହିଲେ ତୋ ଭାଇନା କେମିତି ହୁଅନ୍ତି ତ ଜାଣିଛୁ। ଅଥଚ ଡ୍ୟୁଟି ଫ୍ରି ଦୋକାନ ଗୁଡ଼ିକରେ ସେ ମଧ୍ୟ ମୋ ସାଙ୍ଗରେ ବୁଲିଲେ।

ତିନି ଘଣ୍ଟା ଚାହୁଁ ଚାହୁଁ କଟିଗଲା। ପୁଣି ଆମେ ସିଙ୍ଗାପୁର ଏଥାରଲାଇନ୍‌ସର ବିମାନରେ ବସିଲୁ ଟୋକିଓ ଯିବା ପାଇଁ। ସାରଙ୍ଗ ପିନ୍ଧା ସୁନ୍ଦରୀମାନଙ୍କର ଆତିଥ୍ୟ ମନ୍ଦ ଲାଗୁ ନ ଥାଏ। 'ପାଣିଗ୍ଲାସେ' ବା ପତ୍ରିକା ଖଣ୍ଡିଏ- ଏଇଭଳି ଛୋଟ ଛୋଟ ଇଚ୍ଛା ପୂରଣ କରିବାକୁ ସେମାନେ ଯେଉଁଭଳି ତତ୍ପରତା ଦେଖାଉ ଥାଆନ୍ତି, ତା' ଦେଖିବା କଥା। ଛଅ ଘଣ୍ଟାର ଯାତ୍ରା। ଅଧିକାଂଶ ସମୟ ଶୋଇ ଶୋଇ କଟିଗଲା। ରାତିରେ ତ ଭଲ ନିଦ ହୋଇ ନଥିଲା; କେତେ ସମୟ ଚାହିଁ କରି ବସି ହେବ ?

ଜାପାନର ନାରିଟା ଏଥାରପୋର୍ଟରେ ପହଞ୍ଚିଲୁ ସାଢେ ଚାରିଟାବେଳେ। ଆମେ

ଭାବିଥିଲୁ ଦୁଇ ଦିନ କଥା, ଏଆରପୋର୍ଟରୁ ଭିସା ସହଜରେ ମିଳିଯିବ। କିନ୍ତୁ ଏପରି କରିବା ଉଚିତ ହେଲାନି। ଯଦିଓ ଶେଷରେ ୭୨ ଘଣ୍ଟା ପାଇଁ ଭିସା ମିଳିଲା, ସେଥିପାଇଁ ଗୁଡାଏ ଦୌଡା ଦୌଡି କରିବାକୁ ପଡିଲା। ଭାରତରୁ ହିଁ ଜାପାନ୍ ଭିସା ନେଇ କରି ଆସିଥିଲେ ଏଥିରୁ ମୁକ୍ତି ମିଳିଥାଆନ୍ତା। ଆନୁଷ୍ଠାନିକ ଆବଶ୍ୟକତା ଶେଷ କରି ଆମେ ଯେତେବେଳେ ସୁଟ୍‌କେଶ ଗୁଡ଼ିକ ଆଣିବା ପାଇଁ ଆଗେଇ ଗଲୁ ଅନ୍ୟ ପଟରୁ ପ୍ରାୟ ଦୌଡି ଦୌଡି ଜାପାନିଜ୍ ଝିଅଟିଏ ଆସିଲା। ୟୁନିଫର୍ମରୁ ଜଣା ପଡୁଥାଏ ସିଙ୍ଗାପୁର ଏଆରଲାଇନ୍‌ସର କର୍ମଚାରୀ। ଭଙ୍ଗା ଭଙ୍ଗା ଇଂରାଜୀରେ ପଚାରିଲା, ''ୟୁ ବାଗ୍‌ଚୀ ?'' ଆମଠାରୁ ହଁ ଶୁଣିବା ପରେ ସେ ଆମମାନଙ୍କୁ ଗୋଟିଏ ଟେବୁଲ ପାଖକୁ ନେଇଗଲା। କହିଲା, 'ପ୍ଲିଜ୍ ୱେଟ୍'। ମୁଁ ଅନୁମାନ କରିପାରୁ ଥାଏ କିଛି ଗୋଟାଏ ଅଘଟଣ ହୋଇଛି। ଜାପାନିଜ୍ ଝିଅଟି ଏହା ଭିତରେ ଆଉ ଜଣେ ଯୁବକଙ୍କୁ ନେଇ କରି ଆସିଲା। ସେ ପରିଷ୍କାର ଇଂରାଜୀରେ ବହୁତ କ୍ଷମା ପ୍ରାର୍ଥନା କରି ସାରିବା ପରେ କହିଲେ ଯେ ଆମର ଗୋଟିଏ ସୁଟ୍‌କେଶ୍ ସିଙ୍ଗାପୁରରୁ ଆସି ପାରିନାହିଁ। ସତ କହୁଛି ମିତୁ, ମୋ ଛାତି ଭିତରଟା 'ଦପ୍' କରି ହୋଇଗଲା। ମୁଁ ସ୍ଥିର ନିଶ୍ଚିତ ହୋଇଗଲି ଯେ ମୋର ସବୁତକ ଭଲ ଶାଢୀ ଥିବା ସୁଟ୍‌କେଶଟି ହିଁ ହଜିଛି। କିନ୍ତୁ ବାକୀତକ ସୁଟ୍‌କେଶ ଆଣିବା ପରେ ଜାଣିଲି ଯେ ଯେଉଁ ସୁଟ୍‌କେଶ୍ ହଜିଛି ସେଥିରେ ଜାପାନ୍‌ରେ ଆମ ଚାରିଜଣଙ୍କର ଯାହା ଯାହା ଲୁଗା ଦରକାର ହୋଇଥାଆନ୍ତା, ସେଗୁଡିକ ରଖା ହୋଇଥିଲା। ଭାବିଥିଲି ଜାପାନ୍‌ରେ ଅନ୍ୟ ସୁଟ୍‌କେଶ୍ ଖୋଲିବାକୁ ହେବନି, କିନ୍ତୁ ଏବେ ଅନ୍ୟ କିଛି ଉପାୟ ନ ଥିଲା। ଭଦ୍ରଲୋକଜଣଙ୍କ ଫୋନ୍‌ରେ କାହା ସାଙ୍ଗରେ କଥା କହିସାରି ଜଣେଇଲେ ଯେ ଆମେ ଆସନ୍ତା କାଲି ସଂଧ୍ୟା ସୁଦ୍ଧା ସୁଟ୍‌କେଶ୍‌ଟି ଫେରି ପାଇବୁ ନିଶ୍ଚୟ। ସେଥିପାଇଁ ଆମକୁ ଟୋକିଓରୁ ନାରିଟା ଏଆରପୋର୍ଟ ଆସିବାକୁ ହେବ ନାହିଁ, ଏଆରଲାଇନ୍‌ସ୍ ହିଁ ସୁଟ୍‌କେଶ୍‌ଟି ହୋଟେଲରେ ପହଞ୍ଚେଇ ଦେବ। ହଁ, ଏଇ ଗୋଟିଏ ଦିନ ପାଇଁ ଯାହା ନିହାତି ଆବଶ୍ୟକ ତାହା ଆମେ କିଣିପାରୁ। ସେଥିପାଇଁ ସିଙ୍ଗାପୁର ଏଆରଲାଇନ୍‌ସ ପ୍ରାୟ ୧୮୦ ଡଲାର୍ ପର୍ଯ୍ୟନ୍ତ ଦେବ।

ମୁଁ ସତେ କି ହାତରେ ଚାନ୍ଦ ପାଇଗଲି। ସିଙ୍ଗାପୁରରେ ଜିନିଷ ନ କିଣି ପାରିବାର ଅବଶୋଷ ତ ଥିଲା। ବର୍ତ୍ତମାନ ମୁଁ ଜିନିଷ କିଣିବାକୁ ବାଧ୍ୟ। ଜିନିଷ

କିଣି କ୍ୟାସ୍‌ମେମୋ ଦେଖାଇଲେ ଯାଇଁ ଏଆରଲାଇନ୍‌ସ ଠାରୁ ପଇସା ମିଳିବ। ସେ ପୁଣି ୧୮୦ ଡଲାର! ପ୍ରାୟ ସାଢେ ତିନିହଜାର ଟଙ୍କା! ମୁଁ ଉତ୍କଣ୍ଠିତ ଭାବରେ ଅପେକ୍ଷା କରିଥାଏ ପରଦିନ ସକାଳ ପାଇଁ।

ତା'ପରେ ନାରିଟା ଏଆରପୋର୍ଟରୁ ଟୋକିଓ ଯିବାର କଥା। ଆମେ ଆଗରୁ ବୁଝାବୁଝି କରି ଜାଣିଥିଲୁ ଯେ ଏଆରପୋର୍ଟ ଲିମୋସିନ୍‌ରେ ଯିବା ସବୁଠାରୁ ଭଲ। ଲିମୋସିନ୍ ନାଁ ଶୁଣି ଲକ୍‌ଜୁରି ଟ୍ୟାକ୍‌ସି ବୋଲି ଭାବି ବସିବୁନି। ଏଆର କଣ୍ଡିସନ୍ଡ ବସ୍। ଏଥିପାଇଁ ଟିକେଟ୍ ପଡିଲା ୭୫୦୦ ୟେନ୍। ପ୍ରାୟ ହଜାରେ ଟଙ୍କା। ତୁ ଆଶ୍ଚର୍ଯ୍ୟ ହେଉଛୁ ବୋଧହୁଏ। ବାକୀ ଦୁଇ ଦିନର ରହଣୀ ସଂପର୍କରେ ଛୋଟ ବର୍ଣ୍ଣନାଟିଏ ଦେଉଛି। ସେତିକି ପଢି ସାରିବା ପରେ ତୋ ମୁଣ୍ଡ ନିଶ୍ଚୟ ଘୁରେଇ ଯିବ।

ଏଆରପୋର୍ଟ ଲିମୋସିନ୍ ଆମକୁ ଟୋକିଓର ପ୍ରାୟ ମଝିରେ ଥିବା ଲିମୋସିନ୍ ଡ଼ିପୋରେ ଛାଡିଦେଲା। ତାକୁ ବସ୍‌ଷ୍ଟାଣ୍ଡ କହିବାକୁ ଲାଜ ଲାଗୁଥାଏ। କାରଣ ଜାଗାଟି ଆମର ଯେ କୌଣସି ଏଆରପୋର୍ଟଠାରୁ ବେଶୀ ସୁନ୍ଦର ଓ ପରିଷ୍କାର ପରିଚ୍ଛନ୍ନ। ସେଇଠୁ ଟ୍ୟାକ୍‌ସି ନେଇ ଆମେ ହୋଟେଲ୍ ଅଭିମୁଖେ ଚାଲିଲୁ। ଆମ ପାଇଁ ଆଗରୁ ହୋଟେଲ୍‌ରେ ବୁକିଙ୍ଗ୍ କରା ହୋଇଥିଲା। ଦୁଇଟି ହୋଟେଲ। ଦୁଇଟିରୁ ଆମେ ଯେ କୌଣସି ଗୋଟିଏ ବାଛି ପାରୁ। ପ୍ରଥମେ ଯାଇ ପହଞ୍ଚିଲୁ "ମାରି ନଉଛି" ହୋଟେଲରେ। ହସିବୁନି ଆଦୌ, ମୁଁ ମିଛ କହୁନି। ହୋଟେଲ୍‌ଟିର ନାଁ ହିଁ "Marinouchi"। ତୋ ଭାଇନା ରିସେପ୍‌ସନ୍‌ରେ କଥା କହି ସାଙ୍ଗେ ସାଙ୍ଗେ ଫେରି ଆସିଲେ। ତାଙ୍କଠାରୁ ବୁଝିଲି ଏଇ ହୋଟେଲ୍‌ରେ ରୁମ୍ ଭଡା ବହୁତ ବେଶୀ। ତେଣୁ ଆମେ ଅନ୍ୟ ହୋଟେଲ୍‌କୁ ଗଲୁ- "ଗିଞ୍ଜା କ୍ୟାପିଟଲ୍"। ରିସେପ୍‌ସନ୍ ପାଖରେ ରୁମ୍‌ଭଡାର ଯେଉଁ ଚାର୍ଟ ଲଗା ହୋଇଥିଲା, ତାକୁ ଦେଖି ମୁଁ ଭାବିଲି ସେଥିରେ ବୋଧହୁଏ କିଛି ଭୁଲ୍ ଅଛି। ତୋ ଭାଇନାଙ୍କୁ ଯେମିତି ପଚାରିଛି, ସେ ଟିକିଏ ହସି କହିଲେ, "ଏଇଟା ପରା ଟୋକିଓ!" ମିତୁ, ଗୋଟିଏ ଦିନର ରୁମ୍ ଭଡା ପ୍ରାୟ ୩,୦୦୦ ଟଙ୍କା! ସେ ପୁଣି ସାଧାରଣ ହୋଟେଲ୍‌ରେ, କୌଣସି ଷ୍ଟାର୍ ହୋଟେଲ୍ ନୁହେଁ।

ହୋଟେଲ୍ ରୁମ୍‌ଟି ଦେଖିବା କ୍ଷଣି ମୁଁ ଚୁପ୍ ହୋଇଗଲି। ରୁମ୍ ତ ନୁହଁ, ପାରାଭାଡି। କୋଠରୀ ଭିତରେ ପାଦ ଘୁରେଇବା ପାଇଁ ଜାଗା ନାହିଁ। ତିନୋଟି

ଖଟ ପ୍ରାୟ କୋଠରୀର ସମସ୍ତ ସ୍ଥାନ ନେଇ ଯାଇଥାଏ। ଗୋଟିଏ କଡରେ ଛୋଟ ଟେବୁଲ୍‌ଟିଏ। ତା' ଉପରେ ଟି.ଭି.। ବାସ୍ ଏତିକି। ମୁଁ ସିନା ପ୍ରଥମେ ନିରାଶ ହୋଇଗଲି, କିନ୍ତୁ କ୍ରମେ ଦେଖିଲି ଯେ କୋଠରୀରେ ଉପଯୁକ୍ତ ସାଜ ସରଞ୍ଜାମ ରଖି ଜାଗାର ଅଭାବକୁ ପୂରଣ କରି ଦିଆ ହୋଇଛି। ହୋଟେଲ୍‌ରେ ରୁମ୍ ସର୍ଭିସ୍ ନାହିଁ। ତେଣୁ ରୁମ୍ ଭିତରେ ଚାହା କରିବାର ସବୁ ଆୟୋଜନ ରହିଛି। ଇଲେକ୍‌ଟ୍ରିକ୍ ପ୍ଲେଟଟିଏ, ତା' ପାଖରେ ପରିଷ୍କାର ଷ୍ଟିଲ୍ ଚାହା ପଟ୍‌ଟିଏ। ପାଖରେ ଗୋଟିଏ ଗିନାରେ ଜାପାନିଜ୍ ଟି ବ୍ୟାଗ୍। ଚିନି, କ୍ଷୀର ଯଦିଓ ନ ଥିଲା, ତଥାପି ଆମେ ସେଇ ଚାହା କରି ପିଇଲୁ। ବେଶ୍ ଭଲ ଲାଗିଲା।

ସେତେବେଳକୁ ଭୋକରେ ପେଟ ଜଳିଲାଣି। ହାଲିଆ ମଧ୍ୟ ଲାଗୁଥାଏ। ତେଣୁ ହୋଟେଲ ବାହାରକୁ ଯାଇ ରେଷ୍ଟୋରାଁ ଖୋଜିବାର କୌଣସି ଆଗ୍ରହ ନ ଥାଏ। ଆମେ ହୋଟେଲ୍‌ର ରେଷ୍ଟୋରାଁକୁ ଗଲୁ। ସେଠି କେବଳ ଜାପାନିଜ୍ ଖାଦ୍ୟ ହିଁ ମିଳେ। ଜାପାନିଜ୍‌ମାନେ ତ ଭାତ, ମାଛ ଖାଆନ୍ତି, ତେଣୁ ଅସୁବିଧା ହେବ ବୋଲି ଭାବିବୁ ବା କାହିଁକି ?

କିନ୍ତୁ ମେନୁ ଦେଖିବା ପରେ ମୋର ଖାଇବାର ସବୁ ଆଗ୍ରହ ଚାଲିଗଲା। ଆମେ ମାଛ କହିଲେ ବୁଝୁ ରୋହି, ଭାକୁଡ, ଇଲିସି ବା ସେଇଭଳି କିଛି। କିନ୍ତୁ ଏଠି ମାଛ ମାନେ ସମୁଦ୍ରରୁ ମିଳୁଥିବା ସବୁ ରକମର ଜନ୍ତୁ। ତା' ସାଙ୍ଗରେ ଗେଣ୍ଡା, ସାର୍କ, ବେଙ୍ଗ ଗୋଡ- ଏମିତି ଆହୁରି ଅନେକ ଜିନିଷ। ଆମେ ମଗେଇଲୁ ଚିକେନ୍ ସୁପ୍, ଭାତ, ଚିଙ୍ଗୁଡି। ପ୍ରଥମେ ୱେଟର୍ ସୁପ୍ ଦେଇଗଲା। ସୁପ୍ ଭିତରେ କଳା ହୋଇ କ'ଣ ଗୋଟାଏ ପଡିଥାଏ। ଠିକ୍ ତେଲଗୁଣି ପୋକଭଳି ଲାଗୁଥାଏ। ସରୁ ସରୁ ଗୋଡ। ଚାମଚ ପୁରେଇଦେଲେ ମନେ ହେଉଥିଲା ଜନ୍ତୁଟି ସୁପ୍ ଭିତରେ ଗୋଡ ହଲେଇ ପହଁରୁଛି। ଯା ପରେ ଆଉ ଖାଇ ହୁଏ ? ମୁଁ ୱେଟର୍‌କୁ ଡାକି ଠାରି କରି ପଚାରିଲି ଏଇ କଳା ଜିନିଷଟି କ'ଣ ? ସେ ରୋଷେଇ ଘରକୁ ଯାଇ ଗୋଟିଏ ଛତୁ (Mushroom) ଆଣି ତା'ର ଭିତର ଅଂଶଟି ଦେଖାଇ ଦେଲା। ଛତୁ ବୋଲି ଜାଣିବା ପରେ ମଧ୍ୟ ମୁଁ ଖାଇ ପାରିଲି ନାହିଁ। ଥରେ ମନରେ ଘୃଣା ପଶିଗଲେ ଆଉ କି ଖାଇ ହୁଏ ? ମୁଁ ସୁପ୍‌କୁ ଦୂରେଇ ଦେଇ ଭାତ, ଚିଙ୍ଗୁଡି ପାଇଁ ଅପେକ୍ଷା କଲି। ମନେ ମନେ ବୋଧହୁଏ ଭାବିଥିଲି ନଡିଆ ରସ ଦିଆ ଚିଙ୍ଗୁଡି ତରକାରୀ କରି ଆଣିବ ଲୋକଟି। କିନ୍ତୁ ଆସିଲା

ଶୁଖିଲା ଚିଙ୍ଗୁଡି ଭଜା ଆଉ ଭାତ। ତା' ସାଙ୍ଗରେ ଗିନାରେ କଳା କଳା ଝୋଳ ଯେଉଁଟାକୁ ଖାଇବାର ମୋର କୌଣସି ଇଚ୍ଛା ନ ଥିଲା। ମୁଁ ଥରେ ଏପଟ ସେପଟ ଦେଖିଲି। ରେଷ୍ଟୋରାଁ ପ୍ରାୟ ଖାଲି। ୱେଟରମାନେ ମଧ୍ୟ ଆଖପାଖରେ ନାହାନ୍ତି। ମୁଁ ଭାତରେ ଲେମ୍ବୁ ଚିପୁଡି ଲୁଣ ଛିଞ୍ଚିଦେଲି। ତା'ପରେ ସେମିତି ଶୁଖିଲା ଭାତ ଆଉ ଚିଙ୍ଗୁଡି ଭଜା ଉଦରସ୍ଥ କଲି। ତୋ ଭାଇନା ଆଉ ପିଲାମାନେ ଅବଶ୍ୟ ମତେ ଚିଡେଇଲେ। ବିଦେଶରେ ଏତେ ବାଗିଲେ ଶେଷରେ ଉପାସ ରହିବାକୁ ପଡିବ ବୋଲି କହିଲେ। କିନ୍ତୁ ଅଦ୍ଭୁତ ଖାଦ୍ୟ ଖାଇବା ଅପେକ୍ଷା ଅଧା ଭୋକରେ ରହିବାକୁ ମୁଁ ପସନ୍ଦ କଲି।

ତା' ପରଦିନ ସକାଳୁ ଯେତେବେଳେ ନିଦ ଭାଙ୍ଗିଲା, ସେତେବେଳେ ମୋ ହାତ ଘଡିରେ ସାଢେ ଛଅ। କିନ୍ତୁ କୋଠରୀଟି ଅନ୍ଧାର। ଝର୍କା ଖୋଲି ମୁଁ ଯାହା ଦେଖିଲି, ମୋ ମନ ଏକଦମ୍ ଦବିଗଲା। ବାହାରେ ବର୍ଷା। ଆକାଶରେ ଘନ କଳା ମେଘ। ସୂର୍ଯ୍ୟ ଯେ କେଉଁଠି ଲୁଚି ରହିଛନ୍ତି ଜଣା ପଡୁନି। ଏମିତି ପାଗରେ କ'ଣ କରାଯାଇପାରେ? ମୁଁ ତା' ଆଗଦିନ ହୋଟେଲ୍ ଟୁରିଷ୍ଟ ଅଫିସ୍‌ରୁ ବହୁ ରକମ କାଗଜ ପତ୍ର ଯୋଗାଡ କରିଥିଲି। ଭାବିଥିଲି ପିଲାଙ୍କୁ ନେଇ ଡିସନିଲ୍ୟାଣ୍ଡ ଯିବି। କିନ୍ତୁ ଏ ବର୍ଷା ତ ମୋର ସବୁ ଯୋଜନାରେ ପାଣି ପକେଇଦେଲା।

ସାଢେ ସାତଟା ବେଳେ ତୋ ଭାଇନା ତରତର ହୋଇ ବାହାରିଗଲେ। ତାଙ୍କର ଯେଉଁ ଅଫିସ୍‌ରେ କାମ ଥିଲା ସେଇଟା ବେଶ୍ ଦୂର। ଗଲାବେଳେ କହିଗଲେ ଯେ ସେ ଅଫିସ୍ ଆଖପାଖରେ ଜଳଖିଆ ଖାଇନେବେ; ମୁଁ ପିଲାଙ୍କୁ ଧରି ହୋଟେଲ୍‌ରେ ଯେମିତି ଖାଇନିଏ। ସେତେବେଳେ ମୁଁ "ନରେ ବା ଗୁଞ୍ଜରେ" କରି ମୁଣ୍ଡ ହଲେଇ ଦେଲି। ହଁ ବା ନାହିଁ ଜାଣିବା ମୁସ୍କିଲ। ସେ ଯିବା ପରେ ପିଲାଙ୍କୁ ପ୍ରସ୍ତୁତ କରି ମୁଁ ପ୍ରସ୍ତୁତ ହୋଇଗଲି। ପୂର୍ବ ରାତିର ଅଭିଜ୍ଞତା ପରେ ହୋଟେଲରେ ଖାଇବା କଥା ମୁଁ ଆଦୌ ଭାବିପାରୁ ନ ଥାଏ। ସାଙ୍ଗରେ ବଡ ମାଉସୀ ଦେଇଥିବା କଟକର ବାରମଜା ଥିଲା। ସେଥିରୁ ମୁଠେ ଦୁଇ ମୁଠା ପାଟିରେ ପକେଇ ଆମେ ପାଣି ପିଇନେଲୁ। ବାହାରେ ବର୍ଷା ସେମିତି ଚାଲିଥାଏ।

ମୁଁ ହୋଟେଲ୍ ରିସେପ୍‌ସନିଷ୍ଟକୁ ପଚାରିଲି, ଆଖ ପାଖରେ କ'ଣ ଦେଖିବାର ଅଛି? ମାର୍କେଟ ପାଖ ନା ଦୂର? ସେ ମୋ କଥା କିଛି ବୁଝି ପାରିଲା

ନାହିଁ। ବଡ କଷ୍ଟରେ କହିଲା, ''ନୋ ଇଂଲିସ୍''। ମୋ ଅବସ୍ଥା ଦେଖିବାର କଥା। ମୁଁ ପିଲାଙ୍କ ଫ୍ରକ୍ ଦେଖାଇ କହିଲି, ''ଚିଲଡ୍ରେନ୍ କ୍ଲୋଥ୍‌ସ- ମନି-ୟେନ୍ ମାର୍କେଟ୍।'' ଭଗବାନଙ୍କ ଦୟାରୁ ସେ ବୁଝିଗଲା। ମୁଣ୍ଡ ହଲେଇ ହଲେଇ କହିଲା, ''ହାଇ! ହାଇ!'' ('ହାଇ' ଶବ୍ଦଟି ଅନେକାଂଶରେ ଆମର ହଁ ଭଳି। କିନ୍ତୁ ଶବ୍ଦଟି ଖୁବ୍ ଦ୍ରୁତ ଗତିରେ ପେଟରୁ ଆସି ପାଟି ଦେଇ ଛିଟ୍‌କି ପଡେ)।...''ଗିଞ୍ଜା।''

ଏଥର ବୁଝିଲି ଯେ ଗିଞ୍ଜା ଅଂଚଳରେ ମାର୍କେଟ୍ ଅଛି। ଟ୍ୟାକ୍‌ସି? ସେ ଆଖି ବଡ ବଡ କରି କହିଲା, ''ନୋ- ନୋ- ଟ୍ୟାକ୍‌ସି-ମେନି ୟେନ୍। ସବ୍ ୱେ ଚିପ୍।'' ତା'ପରେ କାଗଜରେ ରାସ୍ତାର ମ୍ୟାପ୍ ଆଙ୍କି ମତେ ସବ୍ ୱେ (ମାଟି ତଳର ଟ୍ରେନ୍)ରେ କେତେଟା ଷ୍ଟେସନ୍ ଟପିଲା ପରେ ଓହ୍ଲେଇବାକୁ ପଡିବ ସବୁ ବୁଝେଇ ଦେଲା। ମୁଁ ହୋଟେଲରୁ ଛତା ନେଇ ରାସ୍ତା ଉପରେ ପାଦ ଦେଲି।

ନୂଆ ଦେଶ, ନୂଆ ଜାଗା। ଟିକିଏ ଟିକିଏ ଡର ଲାଗୁଥାଏ। କିନ୍ତୁ ମୋର ଗୋଟିଏ କେମିତି ଭରସା ହୋଇ ଯାଇଥାଏ ଯେ ମୁଁ ହଜିଯିବି ନାହିଁ। ପାଖରେ ହୋଟେଲ ଠିକଣା, ଫୋନ୍ ନମ୍ବର ଆଉ ଟୋକିଓର ମ୍ୟାପ୍। ଆମ ଦେଶରେ ଏତିକି ବର୍ଷା ହେଲେ ରାସ୍ତାରେ ଯିବା ଆସିବା କମିଯାଏ, ଗାଡି କମ୍ ଦେଖିବାକୁ ମିଳେ। କିନ୍ତୁ ବର୍ଷା ଟୋକିଓରେ ନିତିଦିନିଆ କଥା। ସମସ୍ତେ ଅଭ୍ୟସ୍ତ ସେଥିରେ। ସେଇଥିପାଇଁ ଛତା ସମସ୍ତଙ୍କ ପାଖରେ ସବୁବେଳେ ଥାଏ। ପ୍ରତ୍ୟେକ ହୋଟେଲ, ଦୋକାନ, ଅଫିସ୍- ସବୁର ସାମ୍ନା କବାଟ ପାଖରେ ଛତା ଷ୍ଟାଣ୍ଡ। ଭିତରକୁ ଗଲାବେଳେ ଲୋକମାନେ ଛତା ସେଇଠି ରଖି ଦେଇ ଯାଆନ୍ତି। ପୁଣି ବାହାରିଲା ବେଳେ ନିଜ ନିଜ ଛତା ନେଇ ବାହାରିଯାଆନ୍ତି।

ସବ୍‌ୱେ ଷ୍ଟେସନ୍ ଆମ ହୋଟେଲଠୁଁ ବେଶୀ ଦୂର ନୁହଁ। ଉପରେ ଛୋଟ କୋଠରୀଟିଏ ଭଳି। ତଳକୁ ସିଡି ଲମ୍ବିଯାଇଛି। ବହୁତ ଲୋକ ସିଡିରେ ଓହ୍ଲେଇ ତଳକୁ ଯାଉଥାଆନ୍ତି। ମୁଁ ସେମାନଙ୍କ ସାଙ୍ଗରେ ଚାଲିଲି। ମାଟି ତଳେ ଛୋଟିଆ ସହରଟିଏ ଯେମିତି, ଅନେକ ଦୋକାନ। ବହୁ ରକମର ଜିନିଷ ମିଳୁଛି। ପିଲାଙ୍କୁ ନେଇ ମୁଁ ପଶିଲି ଗୋଟିଏ କ୍ୟାଫେରେ। ଗୋଟିଏ, ଗୋଟିଏ ପ୍ଲେଟ ପାଉଁରୁଟୀ ବଟର, କଫି ଆଉ ଜୁସ୍। ଏତିକି ହୋଇଗଲା ଦୁଇଶହ ଟଙ୍କା। ଖାଲି ଟଙ୍କା ଖାଇବା ଭଳି ଲାଗୁଥାଏ।

ତା'ପରେ ଟିକେଟ୍ କିଣି ସବ୍‌ୱେରେ ବସି ମାର୍କେଟ୍ ଯିବା କଥା। ଟିକେଟ୍ ବୁଥ୍ ପାଖରେ ଠିଆ ହୋଇ ମୋର ମୁଣ୍ଡ ଗୋଳମାଳ ହୋଇଗଲା। ପ୍ରଥମତଃ ଜାଗାର ଦୂରତ୍ୱ ଅନୁସାରେ ଟିକେଟ୍‌ର ଭିନ୍ନ ଭିନ୍ନ ଦାମ। ତା'ପରେ ଅଟୋମେଟିକ୍ ମେସିନ୍। କେଉଁ ସ୍ଲଟ୍‌ରେ କେତେ ପଇସା ପକେଇବାକୁ ପଡିବ, କେଉଁ ବୋତାମ ଟିପିବାକୁ ହେବ, ଜଣା ନାହିଁ। ପୁଣି ହାତରେ ଅଚିହ୍ନା ପଇସା। ମୋ ପଛରେ ଠିଆ ହୋଇଥିବା ଜାପାନିଜ୍ ଝିଅର ସାହାଯ୍ୟ ନେଇ କୌଣସି ମତେ ଟିକେଟ୍ କିଣି ମୁଁ ଯେତେବେଳେ ବାହାରି ଆସିଲି, ସେତେବେଳେ ଦେଖିଲି ମୋ ପଛରେ ଲମ୍ବା ଧାଡି। ଲାଜରେ ମୁଁ ଏତେ ଟିକିଏ ହୋଇଗଲି। ଆଉ କେଉଁ ଜାଗା ହୋଇଥିଲେ ଲୋକମାନେ ଯେ କେବଳ ଅଧୈର୍ଯ୍ୟ ହୋଇ ପଡି ଥାଆନ୍ତେ ତା' ନୁହଁ, ପାଟି ତୁଣ୍ଡ ଆରମ୍ଭ କରି ଦେଇଥାଆନ୍ତେ।

ଟ୍ରେନ୍ ସାଙ୍ଗେ ସାଙ୍ଗେ ଆସିଗଲା। ଆମର ଯିବା କଥା ୟୁରୋକୁଚି ଷ୍ଟେସନ୍- ଆମ ଷ୍ଟେସନ୍‌ରୁ ଦୁଇଟା ଷ୍ଟେସନ୍ ପରେ। ସେଠି ପହଞ୍ଚିବାକୁ ପାଞ୍ଚ ମିନିଟ୍ ମଧ୍ୟ ଲାଗିଲା ନାହିଁ। ଷ୍ଟେସନ୍‌ରୁ ବାହାରି ମୁଁ ଯେମିତି ନୂଆ ସହରରେ ପହଞ୍ଚିଗଲି। ବଡ ବଡ କୋଠା, ବିଭିନ୍ନ ରଙ୍ଗର ସାଇନ୍‌ବୋର୍ଡ। ମୁଁ ସେଇଠି ଖୋଜି ବୁଲିଲି ଲୁଗା ଦୋକାନ। ଲୋକଙ୍କୁ ପଚାରି ଶେଷରେ ମୁଁ ପହଞ୍ଚିଲି ଗୋଟିଏ ଡ଼ିପାର୍ଟମେଣ୍ଟାଲ୍ ଷ୍ଟୋରରେ। ସାତ ମହଲାର ଷ୍ଟୋର। ପ୍ରତି ମହଲାରେ ଭିନ୍ନ ଭିନ୍ନ ଜିନିଷ- ମହିଳାମାନଙ୍କର ପୋଷାକ, ପୁରୁଷଙ୍କ ପୋଷାକ, ପିଲାଙ୍କ ପୋଷାକ, ଘରର ଯାବତୀୟ ଉପକରଣ, ରୋଷେଇ ସାମଗ୍ରୀ, ଅଳଙ୍କାର ଇତ୍ୟାଦି। ମୁଁ ଦୁଇ ହାତରେ ଦୁଇ ପିଲାଙ୍କର ହାତ ଧରି ନିଶ୍ଚିତ ଭାବରେ ଭିତରେ ପଶିଲି। ୧୮୦ ଡଲାର ଖର୍ଚ୍ଚ କରିବାର ଅନୁମତି ସାଙ୍ଗରେ ଅଛି, ମୋତେ ପୁଣି କିଏ କହିବ କ'ଣ ? ମୁଁ ମନେ ମନେ ସ୍ଥିର କରିଥାଏ ଯେ ବର୍ଷା ହୋଇ ଥଣ୍ଡା ପଡିଛି; ଜ୍ୟାକେଟ୍ କେଇଟା କିଣି ନେବି ପିଲାମାନଙ୍କ ପାଇଁ। ତା'ପରେ ମୋ ପାଇଁ ଆଉ ତୋ ଭାଇନାଙ୍କ ପାଇଁ କେଇଟା ସ୍ୱେଟର। ପ୍ରଥମେ ମୁଁ ଗଲି ପିଲାଙ୍କ ସେକ୍‌ସନ୍‌କୁ।

ମିତୁ, ମୋର ବୋଧହୁଏ ଏତେ ଦିବାସ୍ୱପ୍ନ ଦେଖିବା ଉଚିତ ନ ଥିଲା। ପିଲାଙ୍କ ପୋଷାକ ସେକ୍‌ସନ୍‌ରେ ପଶୁ ପଶୁ ହାତ ପାଖରେ ଥିବା ସାଧାରଣ ସ୍କାର୍ଟଟିଏ କାଢି ତା' ପଇସା ଉପରେ ଆଖି ବୁଲେଇ ଦେଲି। ଦାମ୍ ଅନୁମାନ

କରିପାରିବୁ ? ୪,୩୦୦ ୟେନ୍ - ପ୍ରାୟ ୬୦୦ ଟଙ୍କା। ସ୍କାର୍ଟକୁ ତା' ଜାଗାରେ ରଖି ଦେଲି ନିଆଁ ମୁଣ୍ଡାଏ ପରି। ପ୍ରଥମେ ଭାବିଲି ବୋଧହୁଏ କିଛି ଭୁଲ୍ ରହିଯାଇଛି, କିନ୍ତୁ କ୍ରମାଗତ ଭାବରେ ସବୁ ଲୁଗା ଦେଖିବା ପରେ ମୋ ଭ୍ରମ ଭାଙ୍ଗିଲା। ଏଥରକ ମୁଁ ବୁଝିଲି କାହିଁକି ସିଙ୍ଗାପୁର ଏଆରଲାଇନ୍‌ସର କର୍ମକର୍ତ୍ତା ଜଣଙ୍କ କହିଥିଲେ, ''ଗୋଟିଏ ଦିନ ପାଇଁ ଯାହା ଅତ୍ୟାବଶ୍ୟକ ଜିନିଷ ତାହା ୧୮୦ ଡ଼ଲାରରେ କିଣିନେବେ।'' ମୁଁ ଶେଷରେ ଦୁଇଟି ଜ୍ୟାକେଟ୍ ଓ ଗୋଟିଏ ସ୍ୱେଟର୍ (ପ୍ରତ୍ୟେକଟି ପ୍ରାୟ ୧୧୦୦ରୁ ୧୨୦୦ ଟଙ୍କା) କିଣି ବାହାରି ଆସିଲି।

ରାସ୍ତା ଉପରକୁ ଆସି ମୁଁ ଏପାଖ ସେପାଖ ବହୁତ ଚାହିଁଲି କିନ୍ତୁ କିଛି ଜାଣି ହେଉ ନଥାଏ। ପିଲାମାନେ କହୁଥାନ୍ତି, ''ଆମେ ଏପଟ ଦେଇ ଆସି ନ ଥିଲେ। ଆମେ ନିଶ୍ଚୟ ହଜିଯାଇଛେ।'' ସେମାନଙ୍କୁ ଚୁପ୍ କରେଇଦେଇ ମୁଁ ଏମିତି ଭାବ ଦେଖାଇଲି ଯେମିତି ଟୋକିଓ ମୋର ପୁରୁଣା ଚିହ୍ନା ସହର! ଏଠିକାର ରାସ୍ତାଘାଟ ମୋର ମୁଖସ୍ତ! କିନ୍ତୁ ଭିତରେ ଅସ୍ୱସ୍ତି। ମୁଁ ଦୋକାନ ଭିତରେ ପଶିଥିଲି ଗୋଟିଏ କବାଟ ଦେଇ, ବାହାରିଛି ଆଉ ଗୋଟିଏ କବାଟ ଦେଇ। ରାସ୍ତା ତ ଆଦୌ ବୁଝି ହେଉନି। ଅନନ୍ୟୋପାୟ ହୋଇ କାହାକୁ ପଚାରିବା ପାଇଁ ସ୍ଥିର କଲି। ମୋ ଭାଗ୍ୟ ଭଲ, ଯେଉଁ ଭଦ୍ରଲୋକଙ୍କୁ ମୁଁ ପଚାରିଲି ସେ ଗୋଟିଏ ବିଦେଶୀ ବ୍ୟାଙ୍କ୍‌ରେ କାମ କରନ୍ତି। ତେଣୁ ପରିଷ୍କାର ଇଂରାଜୀ କହିପାରୁଥିଲେ। ସେ କହିଲେ ଯେ ମୁଁ ସଂପୂର୍ଣ୍ଣ ଭୁଲ୍ ଦିଗରେ ଚାଲୁଛି ଅର୍ଥାତ୍ ଷ୍ଟେସନ୍‌ଟି ପ୍ରାୟ ଗୋଟିଏ କିଲୋମିଟର ପଛରେ ରହିସାରିଲାଣି। ଭଦ୍ରଲୋକ ଜଣଙ୍କ ନିଜେ ଷ୍ଟେସନ୍ ଯାଉଥିଲେ। ତେଣୁ ତାଙ୍କ ସାଙ୍ଗରେ ଆମେ ବି ଚାଲିଲୁ। ସେ ମୋ ସାଙ୍ଗରେ ଭାରତ ବିଷୟରେ ବହୁତ କଥା ଗପିଲେ। ତା'ପରେ ପଚାରିଲେ, ''ଏଠି ତ ଦୋକାନକୁ ଯାଇଥିଲେ ଦେଖୁଛି। ଜିନିଷ ପତ୍ରର ଦାମ କେମିତି ଦେଖିଲେ ?'' ମୁଁ କହିଲି, ''ବହୁତ ବେଶୀ।'' ସେ ଗମ୍ଭୀର ହୋଇ କହିଲେ, ''ଆମକୁ ମଧ୍ୟ ବାଧୁଛି। ସେଇଥି ପାଇଁ ତ ଆମ ଭିତରୁ ଅନେକ ଟୋକିଓରେ ଚାକିରୀ କଲେ ବି ସହର ବାହାରେ ରହନ୍ତି।''

ଷ୍ଟେସନ ହୋଇଯାଇଥିଲା। ଟିକେଟ୍ କିଣି ମୁଁ ଫେରିଲି। ସେତେବେଳକୁ ଦିନ ଦିଇଟା। ଏଥର ମୁଁ ଖାଇବା ପାଇଁ ଆଉ କ୍ୟାଫେ ଭିତରେ ପଶିଲି ନାହିଁ। ଗୋଟିଏ ଛୋଟ ଦୋକାନରୁ କେକ୍, ବିସ୍କୁଟ, ଚିପ୍‌ସ ଓ କୋକାକୋଲା

କିଣି ହାତରେ ଧରିଲି। ପିଲାଙ୍କୁ କହିଲି, "ଆଜି ଆମର ପିକ୍‌ନିକ୍ ଲଞ୍ଚ।" ହୋଟେଲ୍‌ରେ ପହଞ୍ଚି 'ପିକ୍‌ନିକ୍ ଲଞ୍ଚ' ଖାଇ ସେମାନେ ଶୋଇ ପଡ଼ିଲେ।

ମୁଁ ଖଟରେ ଗୋଡ ଲମ୍ବେଇ ଦିନର ପାଞ୍ଚ ଘଣ୍ଟା ଭିତରେ କଥାବାର୍ତ୍ତା କରିଥିବା ବା ଠାର ଭାଷାରେ ଭାବର ଆଦାନ ପ୍ରଦାନ କରିଥିବା ବିଭିନ୍ନ ଲୋକଙ୍କ ବିଷୟରେ ଭାବୁଥିଲି। ହୋଟେଲ୍‌ର ରିସେପ୍‌ସନିଷ୍ଟ, ଟିକେଟ୍ କିଣିବାରେ ସାହାଯ୍ୟ କରିଥିବା ଝିଅଠାରୁ ଆରମ୍ଭ କରି ବ୍ୟାଙ୍କ୍‌ରେ କାମ କରୁଥିବା ଭଦ୍ରଲୋକଙ୍କ ପର୍ଯ୍ୟନ୍ତ। ସମସ୍ତେ ଯେତେଟା ପାରିଲେ ମତେ ସାହାଯ୍ୟ କଲେ। ହୋଟେଲ୍‌ର ରିସେପ୍‌ସନିଷ୍ଟ, ଦୋକାନର ସେଲସ୍‌ଗାର୍ଲ ହୁଏତ ସେମାନଙ୍କର କର୍ତ୍ତବ୍ୟ କରୁଥିଲେ। ଗ୍ରାହକ (customer) ସହିତ ଭଦ୍ର ବ୍ୟବହାର କରିବା ପାଇଁ ସେମାନଙ୍କୁ ହୁଏତ ତାଲିମ ଦିଆଯାଇଥିଲା, କିନ୍ତୁ ଅନ୍ୟମାନେ? ବହୁତ ଦିନ ତଳେ ମୁଁ ଜାପାନିଜ୍‌ମାନଙ୍କ ବିଷୟରେ ଲେଖାଟିଏ ପଢ଼ିଥିଲି। ସେଥିରେ ଲେଖାଥିଲା ଜାପାନ୍‌ର ସବୁଠାରୁ ବଡ ଭଲଗୁଣ ହେଲା ଦେଶଟି ଅତି ଭଦ୍ର। ସେତେବେଳେ ମୁଁ ଭାବିଥିଲି ଲେଖକ ଅତିରଞ୍ଜିତ କରି ବର୍ଣ୍ଣନା କରିଛନ୍ତି। କିନ୍ତୁ ମାତ୍ର ପାଞ୍ଚ ଘଣ୍ଟା ମଧ୍ୟରେ ମୁଁ ଏ ଦେଶ ଏବଂ ତା'ର ଦେଶବାସୀଙ୍କର ଦୃଢ଼ ପ୍ରଶଂସକ ହୋଇଗଲି।

ତୁ ପଢ଼ିଛୁ କି ନାହିଁ ଜାଣିନି, ତେବେ ପିଲାଦିନେ ବାପା ଗୋଟିଏ ବହି ଆଣି ଦେଇଥିଲେ, "ନାନା ଦେଶର କାହାଣୀ"। ସେଥିରେ ଜାପାନ୍ ବିଷୟରେ ଯାହା ଲେଖା ହୋଇଥିଲା ସେସବୁ ଛବି ହୋଇ ଛାପି ହୋଇ ଯାଇଥିଲା ମନ ଭିତରେ। ଭବିଷ୍ୟତରେ ଭୂଗୋଳ ପଢ଼ିବା ପରେ, ବିଭିନ୍ନ ବହି, ପତ୍ରପତ୍ରିକା ଦେଖିବା ପରେ ମଧ୍ୟ ସେଇ ପିଲାଦିନର ଧାରଣାଟି ଚାଲି ଯାଇ ନ ଥିଲା। ମୋର ଧାରଣା ଥିଲା ଯେ ଜାପାନରେ ଭୂମିକମ୍ପ ବହୁତ ହୁଏ, ସେଥିପାଇଁ ସବୁ ଘର କାଗଜରେ ତିଆରି। ମିତ୍ରୁ, ଟୋକିଓ ସହରର ଯେଉଁ ଅଂଶ ମୁଁ ଦେଖିଲି, ସେଠି ଗୋଟିଏ ବି କାଗଜ ଘର ମୋ ଆଖିରେ ପଡ଼ିଲା ନାହିଁ। ସେଇମିତି ମୋର ଧାରଣା ଥିଲା ଯେ ଜାପାନରେ ଝିଅମାନେ କେବଳ କିମୋନୋ ହିଁ ପିନ୍ଧୁଥିବେ। ହାତରେ ଧରିଥିବେ କାଗଜର ପଙ୍ଖା। କିନ୍ତୁ ଆଶ୍ଚର୍ଯ୍ୟ, ଯେଉଁତକ ସମୟ ମୁଁ ରାସ୍ତାରେ ବୁଲି ବୁଲି କଟେଇଦେଲି, ସେତିକି ସମୟରେ ଗୋଟିଏ ମଧ୍ୟ କିମୋନୋ ପିନ୍ଧା ମହିଳା ଦେଖିବାକୁ ପାଇଲି ନାହିଁ। ପ୍ରାୟ ସମସ୍ତେ ପିନ୍ଧିଥିଲେ ସ୍କାର୍ଟ, ବ୍ଲାଉଜ୍, କୋଟ୍ ବା ଜ୍ୟାକେଟ୍ ଏବଂ ହାଇହିଲ୍ ଜୋତା।

ସେଇଭଳି ପୁରୁଷମାନଙ୍କୁ ମଧ୍ୟ ପାଶ୍ଚାତ୍ୟ ପୋଷାକ ପିନ୍ଧିଥିବାର ଦେଖିଲି। ମୁଁ ଦିନବେଳେ ଯେତେ ଲୋକଙ୍କୁ ଦେଖିଲି ସେଥିରୁ ବେଶୀ ଭାଗ ଲୋକ ପିନ୍ଧିଥିଲେ ନୀଳ ରଙ୍ଗର ସୁଟ୍, ଧଳା ସାର୍ଟ, ମ୍ୟାଚିଙ୍ଗ୍ ଟାଇ ଆଉ ହାତରେ ଛତା।

ଦ୍ୱିତୀୟ ମହାଯୁଦ୍ଧର କବର ତଳୁ ଉଠି ମାତ୍ର କେତେବର୍ଷରେ ଏଇ ଦେଶ ଯେଭଳି ଅଗ୍ରଗତି କରିଛି ତାହା ଦେଖି ଶିଖିବାର କଥା। ଇଲେକ୍ଟ୍ରୋନିକ ଜିନିଷ, ଗାଡ଼ି, ଜାହାଜ, କଂପ୍ୟୁଟର ସବୁକ୍ଷେତ୍ରରେ ଜାପାନୀମାନେ ପୃଥିବୀର ଅନ୍ୟାନ୍ୟ ଦେଶମାନଙ୍କଠାରୁ ଢେର ଆଗେଇ ରହିଛନ୍ତି। ସେଥିପାଇଁ ବୋଧହୁଏ ୟେନ୍‌ର ମୂଲ୍ୟ ଅନ୍ୟାନ୍ୟ ଦେଶର ମୁଦ୍ରା (currency) ତୁଳନାରେ ଏତେ ବେଶୀ।

ସେଦିନ ସଂଧ୍ୟାରେ ତୋ ଭାଇନା ଫେରିବା ପରେ ଆମେ ଆଖ ପାଖର ରାସ୍ତାଘାଟ ବୁଲି ଦେଖିଲୁ। ଡିପାର୍ଟମେଣ୍ଟାଲ୍ ଷ୍ଟୋର୍‌ମାନଙ୍କର ସବୁଠାରୁ ତଳ ମହଲାରେ କେବଳ ଖାଇବା ଜିନିଷ ମିଳେ। ସେସବୁ ଦେଖିବାକୁ ବହୁତ ମଜା ଲାଗୁଥାଏ। ଗୋଟିଏ ଜାଗାରେ ବାଇଗଣର ଚିତ୍ର ଅଙ୍କା ହୋଇଥାଏ। ସେଇଠି ଗରମ ତେଲରେ ବାଇଗଣୀ ଭାଜୁଥାଏ ସ୍ତ୍ରୀଲୋକଟିଏ ଏବଂ ବଡ ପାଟିରେ ଲୋକଙ୍କୁ ଡାକି ଜାପାନିଜ୍ ଭାଷାରେ କ'ଣ ସବୁ କହୁଥାଏ। ମୋର ଦିଲ୍ଲୀର ରାସ୍ତାକଡ ଦୋକାନ କଥା ମନେ ପଡିଗଲା। ସେଠି ମଧ୍ୟ ଦୋକାନୀମାନେ ଏମିତି କରେଇରେ ଖଡିକା ଢଂ ଢଂ କରି ଲୋକଙ୍କୁ ଆକର୍ଷିତ କରନ୍ତି। ତଫାତ୍ ଏତିକି ସେଇଟା ରାସ୍ତା କଡ, ଏଠି ବିରାଟ ଛାତ ତଳେ ପ୍ରଦର୍ଶନୀ ଭଳି ଛୋଟ ଛୋଟ ଷ୍ଟଲ୍। ଆମେ ସେଇଠି ବୁଲି ବୁଲି ବାଇଗଣୀ (ଗୋଟିକ ୧୨ ଟଙ୍କା), ଚିଙ୍ଗୁଡି ଚପ୍ (ଗୋଟିକ ୨୮ ଟଙ୍କା) ଖାଇଲୁ। ଏଠି ଅଧିକାଂଶ ଖରିଦ୍‌ଦାର ଅଫିସ୍ ଫେରନ୍ତା ମହିଳା। ଦେହରେ ବିଜନେସ୍ ସୁଟ୍, ହାତରେ ବ୍ୟାଗ୍। ଘରକୁ ଯିବା ବାଟରେ ଏସବୁ କିଣି ମାଟିଆ ରଙ୍ଗର କାଗଜ ବ୍ୟାଗ୍‌ରେ ନେଇ ଯାଉଥାଆନ୍ତି। ଆମ ଭଳି ସେଇଠି ଠିଆ ହୋଇ କେହି ଖାଉ ନ ଥାଆନ୍ତି। ଯା ହେଉ, ସଂଧ୍ୟାଟା ବେଶ୍ ଭଲରେ କଟିଗଲା। ତା'ପରଦିନ ଲସ୍ ଆଞ୍ଜେଲେସ୍ ଯିବା କଥା। ଯଦିଓ ଆମର ଫ୍ଲାଇଟ୍ ସଂଧ୍ୟା ସାଢେ ପାଞ୍ଚଟା ବେଳେ, ତଥାପି ଆମେ ସ୍ଥିର କଲୁ ଯେ ହାତରେ ସମୟ ରଖି ନାରିଟା ଏଆରପୋର୍ଟକୁ ବାହାରି ଯିବୁ। କାରଣ ଟ୍ରାଫିକ୍ ଜାମ୍ ବା ସେଇଭଳି କିଛି ହୋଇ ଏଆରପୋର୍ଟରେ ପହଞ୍ଚିବାକୁ ବେଳେ ବେଳେ କେଇ ଘଣ୍ଟା ଲାଗିଯାଏ। ହୋଟେଲ୍ ଛାଡିବା ବେଳେ ରିସେପ୍‌ସନିଷ୍ଟ କହିଲେ

ଯେ ବସ୍‌ରେ ଯିବା ଅପେକ୍ଷା ଟ୍ରେନ୍‌ରେ ଯିବା ଭଲ। ଅନ୍ତତଃ ଟ୍ରାଫିକ୍ ଜାମ୍ ହେବନି। ଏଆରପୋର୍ଟ ଯିବାର ସବୁଠାରୁ ଭଲ ଉପାୟ ହେଉଛି 'ନାରିଟା ଏକ୍‌ସପ୍ରେସ'। ଏଇ ଟ୍ରେନ୍ ଟୋକିଓ ଷ୍ଟେସନ୍‌ରୁ ବାହାରି ଏବଂ ବାଟରେ କେଉଁଠି ନ ରହି ନାରିଟା ଏଆରପୋର୍ଟ ଭିତରେ ଛାଡି ଦିଏ।

ଆମେ ସାଢେ ଦଶଟା ବେଳେ ଟୋକିଓ ଷ୍ଟେସନ୍‌ରେ ପହଞ୍ଚିଲୁ। ସେଠି ନାରିଟା ଏକ୍‌ସପ୍ରେସ୍ ପାଇଁ ଅଲଗା କାଉଣ୍ଟର। ଆମ ଚାରିଜଣଙ୍କ ପାଇଁ ସାଧାରଣ ଟିକେଟ୍‌ର ଦାମ ଶୁଣିଲେ ତୁ ଚମକି ପଡିବୁ। ୧୭,୫୦୦ ୟେନ୍ ବା ପ୍ରାୟ ୨୫୦୦ ଟଙ୍କା। ପ୍ରଥମ ଶ୍ରେଣୀ ଟିକେଟ୍ କଥା ନ କହିଲେ ଭଲ।

ଠିକ୍ ବାରଟା ବେଳେ ନାରିଟା ଏକ୍‌ସପ୍ରେସ୍ ଟୋକିଓ ଷ୍ଟେସନ୍‌ରେ ପହଞ୍ଚିଲା। ପହଞ୍ଚିବାର ଅଳ୍ପ ସମୟ ଆଗରୁ ନାଲି ବିଜିନେସ୍ ସୁଟ୍ ପିନ୍ଧିଥିବା ଜଣେ ମହିଳା ଟିକେଟ୍ ଯାଞ୍ଚ କରି ଆମକୁ ଗୋଟିଏ ସ୍ଥାନରେ ଠିଆ କରେଇଦେଲେ। ଟ୍ରେନ୍‌ଟି ପହଞ୍ଚିବା ମାତ୍ରକେ ଜଣେ ସ୍ମାର୍ଟ ୟୁନିଫର୍ମ ପିନ୍ଧା କଣ୍ଡକ୍‌ଟର୍ ଆମକୁ ଭିତରକୁ ନେଇ ସିଟ୍ ଦେଖାଇଦେଲେ। କେବଳ ସେତିକି ନୁହଁ, ଆମ ସୁଟ୍‌କେଶ ବୋହିବାରେ ମଧ ସାହାଯ୍ୟ କଲେ। ତାଙ୍କୁ ଯେତେବେଳେ ତୋ ଭାଇନା ଟିପ୍ କରିବାକୁ ଚାହିଁଲେ, ସେ ଦୁଇ ହାତ ଓ ମୁଣ୍ଡ ହଲେଇ ମନା କରିଦେଲେ, ''ନୋ ମନି।'' ଜାପାନୀମାନଙ୍କର ଆତ୍ମସମ୍ମାନ ଭାବ ବହୁତ ବେଶୀ। କେହି କୌଣସି କ୍ଷେତ୍ରରେ ଟିପ୍‌ସ ନିଅନ୍ତି ନାହିଁ। ଟ୍ୟାକ୍ସି ଡ୍ରାଇଭର, ହୋଟେଲ୍ କର୍ମଚାରୀ, ରେଷ୍ଟୋରାଁର ୱେଟର- ଯେ କେହି ହେଉ। ବରଂ ଟିପ୍‌ସ ଦେବା ପାଇଁ କେହି ଚାହିଁଲେ ସେମାନେ ଅପ୍ରସ୍ତୁତ ହୁଅନ୍ତି।

ନାରିଟା ଏକ୍ସପ୍ରେସ୍ ନାରିଟା ପହଞ୍ଚିଲା ଠିକ୍ ଗୋଟାଏରେ। ମିତୁ, ମୁଁ ଏତେଥର ଟ୍ରେନ୍‌ରେ ଯାଇଛି, କିନ୍ତୁ ଏଇ ଟ୍ରେନ୍‌ର ଅଭିଜ୍ଞତା ଅନନ୍ୟ। ପ୍ରତ୍ୟେକ କମ୍ପାର୍ଟମେଣ୍ଟଟି ଏଭଳି ଯେ ମନେ ହେଉଥାଏ କୌଣସି ସୁନ୍ଦର ହୋଟେଲ୍ ରୁମ୍‌ରେ ଆମେ ବସିଛୁ। ଟ୍ରେନ୍ ଯେ ଅତି ସ୍ପିଡ୍‌ରେ ଯାଉଛି ତାହା କେବଳ ବାହାରକୁ ଚାହିଁଲେ ଜାଣି ହେଉଥାଏ। ଆମ ଟ୍ରେନ୍ ଯେଉଁ ରାସ୍ତାଦେଇ ଯାଉଥାଏ, ତା'ର ଦୁଇ ପାଖରେ ଲଗା ହୋଇଥିବା ଗଛରେ ଫୁଲ ଭର୍ତ୍ତି। ପତ୍ର ଦେଖାଯାଉ ନ ଥାଏ। ମୋ ଭିତରେ ପ୍ରଶ୍ନଟିଏ ଉଙ୍କି ମାରୁଥାଏ। ଏଇ କ'ଣ ସେଇ ପ୍ରସିଦ୍ଧ ''ଚେରିବ୍ଲସମ୍!'' ମୁଁ ଆଉ ରହି ନ ପାରି ଜଣଙ୍କୁ ପଚାରି ଦେଲି। ତାଙ୍କ ଉତ୍ତରରୁ ମୁଁ ଯାହା

ବୁଝିଲି ଏଇଟା ହିଁ ଚେରିବ୍ଲସମ୍‌ର ସମୟ। ଚେରିବ୍ଲସମ୍ ଦେଖିବା ପାଇଁ ବିଭିନ୍ନ ସ୍ଥାନରୁ ବିଭିନ୍ନ ଲୋକ ଆସନ୍ତି। କାରଣ ଚେରିବ୍ଲସମ୍ ଅଳ୍ପ କେଇ ଦିନ ମାତ୍ର ରହେ।

ମିତୁ, ସେଇ ମୁହୂର୍ତ୍ତରେ ମୋ ମନ ଭାରି ଖୁସି ହୋଇଗଲା। ଟୋକିଓରେ ମୁଁ କୌଣସି ଦର୍ଶନୀୟ ସ୍ଥାନ ଦେଖି ପାରିଲି ନାହିଁ। ସାଧାରଣ ଟୁରିଷ୍ଟଟିଏ ଯେଉଁ ଯେଉଁ ସ୍ଥାନକୁ ଯାଇଥାଏ, ସେ ସବୁ ଜାଗାକୁ ଯିବା ମୋ ପକ୍ଷରେ ସମ୍ଭବ ହେଲା ନାହିଁ। ତୁ ଭାବୁଥିବୁ ମୋ ମନ ନିଶ୍ଚୟ ଖରାପ ହୋଇଥିବ। କିନ୍ତୁ ନା- ମୋ ମନରେ ଏତେ ଟିକିଏ ବି ଦୁଃଖ ନାହିଁ। ରାସ୍ତାରେ ଚାଲି ଚାଲି, ସାଧାରଣ ଜାପାନିଜ୍‌ଟିଏ ଭଳି ସବ୍‌ୱେରେ ବୁଲି, ଛୋଟ ଷ୍ଟଲ୍‌ରୁ ବାଇଗଣୀ, ଚିଙ୍ଗୁଡି ଚପ୍ ଖାଇ ମୁଁ ଯେଉଁ ଅଭିଜ୍ଞତା ସଂଗ୍ରହ କଲି ସେଇଟା କ'ଣ ଦର୍ଶନୀୟ ସ୍ଥାନ ଦେଖିବା ଅପେକ୍ଷା ଅଧିକ ମହତ୍ତ୍ୱପୂର୍ଣ୍ଣ ନୁହଁ? ମୁଁ ଯାହା ପାଇଲି ସେଇଟାକୁ ତୁ କହିପାରୁ feel of the place। ମୁଁ ତ ସେୟା ହିଁ ଚାହିଁଥିଲି। ଭବିଷ୍ୟତରେ ମୁଁ ପୁଣି ଜାପାନ ଆସିପାରିବି କି ନାହିଁ ଜାଣେନି। କିନ୍ତୁ ଏକଥା ସତ ଯେ ଯଦି କେବେ ମୁଁ ଏ ଦେଶରେ ପାଦ ଦିଏ ତେବେ ମୁଁ ଯେ ବିଦେଶୀ- ଏଇ ଭାବ ଅନ୍ତତଃ ଆଦୌ ଆସିବ ନାହିଁ;

ଚିଠି ଲେଖୁ ଲେଖୁ ପ୍ରାୟ ଗୋଟିଏ ଇତିହାସ ଲେଖି ବସିଲିଣି। ଏଇ ତ ଏୟାରହୋଷ୍ଟେସ୍‌ମାନେ ଝରକା ଖୋଲି ଦେଉଛନ୍ତି। ବାହାରେ ଖରା। ଦିନ ଏଗାରଟା ବେଳେ ଆମେ ଲସ୍ ଆଞ୍ଜେଲେସ୍‌ରେ ପହଞ୍ଚିବୁ। ସେଇଠୁ ପୁଣି ସାନ୍ ହୋସେ (San Jose)। ତା'ପରେ ହୁଏତ ଟିକିଏ ନିଶ୍ୱାସ ନେବାର ସମୟ ମିଳିବ। ସାନ୍ ହୋସେରେ ପହଞ୍ଚିବା ପରେ ତତେ ପୁଣି ଚିଠି ଲେଖିବି। ଆଶା କରୁଛି ତୁମେମାନେ ସବୁ ଭଲ ଥିବ। ରହୁଛି।

ଇତି

ତୋର 'ନାନୀ'

କୁପରଟିନୋ
୧୦ ମେ, ୧୯୯୧

ସ୍ନେହର ମିତୁ,

ତୁ ମୋର ପୂର୍ବ ଚିଠି ପାଇଥିବୁ ନିଶ୍ଚୟ। ଆମେରିକାରେ ପହଞ୍ଚିବା ପରେ ପରେ ହିଁ ତୋ ପାଖକୁ ଚିଠି ଲେଖିବି ବୋଲି କହିଥିଲି, କିନ୍ତୁ ଏମିତିରେ ମାସଟାଏ ଯେ କିପରି କଟିଗଲା ବୁଝିପାରୁନାହିଁ। ମୁଁ ଭାବିଥିଲି ବାଙ୍ଗାଲୋରର ଅଣନିଶ୍ୱାସୀ ଜୀବନ ପରେ ଏଠି ବୋଧହୁଏ ଆରାମ କରିବାକୁ ବେଳ ମିଳିବ; ଚାରିଟା ମାସ କେବଳ ଗୋଡ ଉପରେ ଗୋଡ ପକେଇ ବସି କଟାଇ ଦେବି। କିନ୍ତୁ ଯାହା ଦେଖୁଛି ଏଠି ଜୀବନଯାତ୍ରାର ବେଗ ଆହୁରି କ୍ଷିପ୍ର। ଅନିଚ୍ଛା ସତ୍ତ୍ୱେ ମୁଁ ବି ଯୋଡି ହୋଇ ଯାଇଛି ସେଥିରେ।

ସେଦିନ ଟୋକିଓରୁ ଆସି ଆମେ ଯେତେବେଳେ ଲସ୍ ଆଞ୍ଜେଲେସ୍‌ରେ ପହଞ୍ଚିଲୁ ସେତେବେଳେ ସମୟ ଦିନ ସାଢେ ଏଗାରଟା। ସେଠୁ ପୁଣି ଯିବା କଥା ସାନ୍ ହୋସେ। କିନ୍ତୁ ଯେହେତୁ ଆମେ ଆମେରିକାରେ ପ୍ରବେଶ କରିଲୁ, କଷ୍ଟମ୍‌ସ, ଇମିଗ୍ରେସନ୍ ଚେକ୍ ଇତ୍ୟାଦି କରିବାକୁ ହେଲା। ଇମିଗ୍ରେସନ୍ କାଉଣ୍ଟରରେ ଥିବା ବ୍ୟକ୍ତିଟି ଆମକୁ ଦୁଇ ଚାରିଟା ପ୍ରଶ୍ନ (ଯେପରି, କେତେଦିନ ରହିବୁ? କାହିଁକି ଆସିଛୁ? ଖର୍ଚ୍ଚ କିଏ ଦେବ?) ପଚାରି ସାରିବା ପରେ ଛଅମାସ ରହିବାର ଅନୁମତି ଦେଇଦେଲେ। ଇମିଗ୍ରେସନ୍ ପରେ କଷ୍ଟମ୍‌ସ। ଅସଲ ପ୍ରଶ୍ନଟି

ପଚାରିଲେ କଷ୍ଟମ୍‌ସ ଇନ୍‌ସ୍ପେକ୍ଟର, ''ଆପଣ ସାଙ୍ଗରେ କିଛି ଖାଇବା ଜିନିଷ ବା ସ୍ପାଇସେସ୍ ଆଣିଛନ୍ତି କି?'' ମୁଁ ଜୋରରେ ମୁଣ୍ଡ ହଲେଇ 'ନା' କହିଦେଲି। ସେତେବେଳେ ତୋ ଭାଇନାଙ୍କ ମୁହଁରେ ''ଦେଖିଲ, କ'ଣ କହିଥିଲି?'' ହସ ଖେଳୁଥାଏ। ଚାରିଦିନ ତଳେ ବାଙ୍ଗାଲୋର୍‌ରେ ଜିନିଷ ପ୍ୟାକିଙ୍ଗ୍ କରୁଥିବା ସମୟରେ ଯାହା ଘଟିଥିଲା କଷ୍ଟମସ୍ ଅଫିସର୍ ବା ଜାଣନ୍ତେ କେମିତି? ମୁଁ ଲୁଗାପଟା ପ୍ୟାକ୍ କଲାବେଳେ ଗୋଟିଏ ବୋତଲ ଆଚାର, ଗରମମସଲା ପ୍ୟାକେଟ୍ ଏଇଭଳି କିଛି ପ୍ୟାକ୍ କରିବା ପାଇଁ ନେଇ ଆସିଲି। ତୋ ଭାଇନା ବୁଝେଇଲେ ଯେ ଏସବୁ ଆମେରିକାରେ ମିଳିବ। ବରଂ ନେଇଗଲେ ଯଦି ଧରାପଡେ ତେବେ କଷ୍ଟମସ୍‌ବାଲା ହଇରାଣ କରିବେ। ମୁଁ କେତେ ଯୁକ୍ତି ଦେଖାଇଲି। କିନ୍ତୁ ଯେତେବେଳେ ଦେଖିଲି ଯେ କିଛି ଲାଭ ନାହିଁ, ବାଧ୍ୟରେ ପଡି ତାଙ୍କ କଥା ଶୁଣିଲି।

ଏଠି କଷ୍ଟମ୍‌ସ ଅଫିସର ଜଣକ କେବଳ ପ୍ରଶ୍ନ ପଚାରିଲେ ନାହିଁ, ସାଙ୍ଗରେ ଥିବା ସମସ୍ତ ସୁଟ୍‌କେଶକୁ ଏକ୍‌ସ-ରେ କରାଇଲେ। ମୁଁ ଜିନିଷ ଏକ୍‌ସ-ରେ କଥା ଶୁଣିଥିଲି, କିନ୍ତୁ ଏଇ ପ୍ରଥମ ଦେଖିଲି। ସୁଟ୍‌କେଶ ଭିତରର ପ୍ରତ୍ୟେକଟି ଜିନିଷ ପରିଷ୍କାର ଭାବରେ ପର୍ଦ୍ଦାରେ ଦେଖାଗଲା। ଭାବି ଦେଖିଲୁ, ମୁଁ ଯଦି ଲୁଚେଇ କରି ମସଲା ବା ଆଚାର ନେଇଥାଆନ୍ତି, କି ଅପ୍ରୀତିକର ପରିସ୍ଥିତିରେ ପଡିଯାଇ ଥାଆନ୍ତି!

ଇଣ୍ଟରନ୍ୟାସନାଲ୍ ଟର୍ମିନାଲ୍‌ରୁ ଆମେ ବାହାରି ଆସିଲୁ। ଯାତ୍ରା ତ ଆମର ଶେଷ ହୋଇ ନାହିଁ। ପ୍ରାୟ ଦୁଇ ଘଣ୍ଟା ପରେ ସ୍କାଇୱେଷ୍ଟ ଏଆରଲାଇନ୍‌ସରେ ପୁଣି ସାନ୍ ହୋସେ ଯିବା କଥା। ସାନ୍ ହୋସେର ବନାନ ହେଉଛି San Jose। ବହୁତ ଦିନ ତଳେ ସମସ୍ତ କ୍ୟାଲିଫୋର୍ଣ୍ଣିଆ ଅଂଚଳ ମେକ୍‌ସିକୋ ଅଧୀନରେ ଥିଲା। ମେକ୍‌ସିକୋର ଭାଷା ହେଉଛି ସ୍ପାନିଶ୍। ସେଇଥିପାଇଁ କ୍ୟାଲିଫୋର୍ଣ୍ଣିଆରେ ଅଧିକାଂଶ ସହରର ସ୍ପାନିଶ୍ ନାମ। ଯେପରି ଲସ୍ ଆଞ୍ଜେଲେସ୍, ସାନ୍ ଫ୍ରାନ୍‌ସିସ୍‌କୋ, ସାନ୍ ଡିଏଗୋ, ସାନ୍ ହୋସେ। ସ୍ପାନିଶ୍ ଭାଷାରେ 'J'ଟା 'h'ବୋଲି ଉଚ୍ଚାରିତ ହୁଏ। ତେଣୁ ଯଦିଓ ଲେଖା ହୁଏ San Jose, ଏହାର ଉଚ୍ଚାରଣ ହେଉଛି ସାନ୍ ହୋସେ।

ସାନ୍ ହୋସେ ଯିବା ପାଇଁ ଆମକୁ ଡୋମେଷ୍ଟିକ୍ ଟର୍ମିନାଲ୍‌କୁ ଯିବାକୁ ହେବ। ସେଥିପାଇଁ ସିକ୍ୟୁରିଟି ଚେକ୍ କରିବା ବେଳେ ଝାମେଲାଟିଏ ହେଲା। ମୁଁ ସିକ୍ୟୁରିଟି

ଗେଟ୍ ଭିତର ଦେଇ ଗଲାବେଳେ ଆଲାର୍ମ ବାଜିଲା। ଗେଟ୍ ପାଖରେ ଠିଆ ହୋଇଥିବା କଳା ଭଦ୍ରମହିଳା ଜଣକ (ଆମେ କଳା ଲୋକଙ୍କୁ ନିଗ୍ରୋ ବୋଲି ସାଧାରଣତଃ କହିଥାଉ। କିନ୍ତୁ ଏଠି ଯଦି ନିଗ୍ରୋ ଶବ୍ଦଟି କିଏ ଭୁଲରେ ବ୍ୟବହାର କରେ ତେବେ କଳା ଲୋକମାନେ ଅପମାନିତ ହୁଅନ୍ତି) ମତେ ପଚାରିଲେ, "ଆପଣଙ୍କ ଦେହରେ କୌଣସି ମେଟାଲ୍ ଅଛି କି?" ମୁଁ ପ୍ରଥମେ ନାହିଁ କହି ଦେଉଥିଲି, ହଠାତ୍ ମନେ ପଡିଲା ହାତରେ ରୂପା ଚୁଡି। ମୁଁ ହାତ ଦେଖାଇଲି। ସେ କହିଲେ, "ଚୁଡି ଖୋଲି ପୁଣି ଥରେ ଗେଟ୍ ଭିତର ଦେଇ ଆସନ୍ତୁ।" ମୁଁ ଟିକିଏ ଅସୁବିଧାରେ ପଡିଗଲି। ତା'ପରେ ସ୍ପଷ୍ଟ ଭାବରେ କହିଲି, "କ୍ଷମା କରିବେ, ମୁଁ ତ ଚୁଡି ଖୋଲି ପାରିବି ନାହିଁ। ଆମେ ଖାଲି ହାତ କରୁ ନାହିଁ।" କ'ଣ ବା ତାଙ୍କୁ ବୁଝେଇବି? ଭାବିଥିଲି ଭଦ୍ରମହିଳା ଜଣକ ପାଟିତୁଣ୍ଡ କରିବେ। କିନ୍ତୁ ଆଶ୍ଚର୍ଯ୍ୟ, ସେ ବି' ପାଟି ଧଳାଦାନ୍ତ ଦେଖାଇ ହସି କହିଲେ, "ଆଇ ସି, ୟୁ ଆର୍ ଏ ହିନ୍ଦୁ ବ୍ରାଇଡ୍!" ତା'ପରେ ମୁଣ୍ଡ ହଲାଇ ହଲାଇ କହିଲେ, "ୟୁ କ୍ୟାନ୍ ଗୋ।"

ଏଆରପୋର୍ଟ ଭିତରେ କିଛି ସମୟ ବୁଲାବୁଲି କରି ଆମେ ପୂର୍ବ ନିର୍ଦ୍ଧାରିତ ଟର୍ମିନାଲ୍ ପାଖରେ ପହଞ୍ଚିଲୁ। କାଚ କାନ୍ଥ ଦେଇ ବାହାରେ ଦେଖିଲି ଛୋଟ ଛୋଟ ଉଡାଜାହାଜମାନ ରଖା ହୋଇଛି। ଭାବିଲି ବୋଧହୁଏ ଏଗୁଡିକ ଟ୍ରେନିଙ୍ଗ ପାଇଁ। କିନ୍ତୁ ଯେତେବେଳେ ପ୍ଲେନ୍‌ରେ ଚଢ଼ିବା ସମୟ ଆସିଲା, ସେତେବେଳେ ସ୍କାଇଡ୍ରେଷ୍ଟ ୟୁନିଫର୍ମ ପିନ୍ଧା ଜଣେ ମହିଳା ଆମକୁ ସେଇ ଛୋଟ ଉଡାଜାହାଜ ଭିତରୁ ଗୋଟିକ ପାଖକୁ ନେଇଗଲେ। ଖେଳଣାଟିଏ ଯେମିତି। ମାତ୍ର ଷୋହଳଜଣ ବସି ପାରିବେ, ସିଧା ହୋଇ ଠିଆ ହେଲେ ମୁଣ୍ଡ ବାଜିବ। ଭିତରେ ପଶିବା ବେଳେ ନଇଁ ନଇଁ ପଶିବାକୁ ପଡିଲା। ଆମ ସିଟ୍ ସାମ୍ନାକୁ କକ୍‌ପିଟ୍। କକ୍‌ପିଟ୍‌ରେ ପାଇଲଟ୍ ଓ କୋ-ପାଇଲଟ୍। ଖୁବ୍ ମଜା ଲାଗୁଥାଏ। ପ୍ଲେନ୍‌ଟି ବେଶୀ ଉଚ୍ଚରେ ମଧ ଯାଉ ନ ଥାଏ। ତେଣୁ ପ୍ରଶାନ୍ତ ମହାସାଗର ଓ ଆମେରିକାର ସମୁଦ୍ର କୂଳବର୍ତ୍ତୀ ଅଞ୍ଚଳଗୁଡିକ ଛବି ପରି ଲାଗୁଥାଏ। ପ୍ରାୟ ପଇଁଚାଳିଶ ମିନିଟ୍ ପରେ ପ୍ଲେନ୍‌ଟି ସାଣ୍ଟା ବାର୍ବାରା ନାମକ ସୁନ୍ଦର ଛୋଟ ସହରରେ ଓହ୍ଲେଇଲା। ରି-ଫୁଏଲିଙ୍ଗ୍ ପରେ ପୁଣି ଆଗେଇ ଚାଲିଲା ସାନ୍ ହୋସେ ଆଡକୁ।

ସାନ୍ ହୋସେରେ ପହଞ୍ଚିବା ବେଳକୁ ପ୍ରାୟ ସାଢେ ଚାରିଟା। ମୁଁ ସ୍ୱସ୍ତିର

ନିଶ୍ୱାସ ନେଲି। ବର୍ତ୍ତମାନ ପାଇଁ ଯାତ୍ରାଟି ଯାହେଉ ଶେଷ ହେଲା। ଭୀଷଣ କ୍ଳାନ୍ତ ମଧ୍ୟ ଲାଗୁଥାଏ। ଟ୍ୟାକ୍‌ସିରେ ଜିନିଷ ରଖି ଆମେ ହୋଟେଲ୍ ଆଡକୁ ଚାଲିଲୁ। ହିନ୍ଦୁସ୍ତାନୀ ଟ୍ୟାକ୍ସି ଡ୍ରାଇଭର୍। ସେ ତ ଆମ ସାଙ୍ଗରେ ଗପ ଜମେଇ ଦେଲା। ରାସ୍ତାରେ କିନ୍ତୁ ଗଲାବେଳେ ମୋତେ କେମିତି ଅଖାଡୁଆ ଲାଗିଲା। ଯେମିତି କିଛି ଗୋଟାଏ ଅଭାବ ରହିଯାଇଛି। ଅଭାବଟି ଯେ କ'ଣ ତୁ ଶୁଣିଲେ ହସିବୁ। ଚଉଡା ସୁନ୍ଦର ରାସ୍ତା, ତା' ଉପରେ ଖୁବ୍ ସ୍ପିଡ୍‌ରେ ଗାଡି ସବୁ ଚାଲିଯାଉଛି। କିନ୍ତୁ ରାସ୍ତାରେ ଲୋକ ନାହାନ୍ତି। କେଉଁଠି କେମିତି ଜଣେ ଦୁଇଜଣ। ଅଶୀ କୋଟି ଜନତାର ଦେଶରୁ ଆସିଛି। ତା'ପରେ ମୋର ପ୍ରଥମ ବିଦେଶୀ ସହରର ଅନୁଭୂତି ଟୋକିଓଠାରେ ଯାହାକି ପୃଥିବୀର ସବୁଠାରୁ ଅଧିକ ଜନବହୁଳ ସହର। ମତେ ତ ଅବାକ୍ ଲାଗିବା ସ୍ୱାଭାବିକ। କେଉଁଠି ଥରେ ପଢିଥିଲି ଯେ ଯୁକ୍ତରାଷ୍ଟ୍ର ଆମେରିକା ଆୟତନରେ ଭାରତର ଚାରିଗୁଣ। କିନ୍ତୁ ଏଠିକାର ଜନସଂଖ୍ୟା ଭାରତର ଚାରିଭାଗରୁ ଭାଗେ।

ଟ୍ୟାକ୍ସି ହୋଟେଲ୍‌ରେ ପହଞ୍ଚିଲା। ଗାଧୋଇ ସାରିବା ପରେ ଭୋକରେ ପେଟ କଁ କଁ କଲାଣି। କିନ୍ତୁ ସାଣ୍ଡୱିଚ୍, ବର୍ଗର୍ ବା ପିଜା ଖାଇବା କଥା ଭାବିଲେ ହିଁ ସବୁ ଭୋକ ପଳଉଥାଏ। ଏତେଦିନ ମୋର ଗୋଟିଏ ବଡ ଧାରଣା ଥିଲା ଯେ ମୁଁ "ଭାତୁଆ' ନୁହଁ। ଯାହା ଖାଇଲେ ବି ମୋର ଚଳିଯିବ, ପେଟ ପୁରିବା ଦରକାର। କିନ୍ତୁ ତିନିଟା ଦିନରେ ମୋର ଅସଲ ସ୍ୱରୂପ ନିଜ ସାମ୍ନାକୁ ଚାଲି ଆସିଲା। ଖାଲି ମନେ ମନେ ଭାବୁଥାଏ 'ବଡିଚୁରା, ପଖାଳ ଟିକିଏ କିଏ ଖୁଆନ୍ତା ନାହିଁ! କାହାକୁ ବା କହିବି? ସମସ୍ତେ ତ ଚିଡେଇବା ଆରମ୍ଭ କରିଦେବେ। କିନ୍ତୁ ମିତୁ, ଠାକୁର ମୋ କଥା ଶୁଣିଲେ ନିଶ୍ଚୟ। ହଠାତ୍ ଆମର ଜଣେ ସାଙ୍ଗ ହୋଟେଲ୍‌ରେ ପହଞ୍ଚି ଜବରଦସ୍ତି ଆମକୁ ତାଙ୍କ ଘରକୁ ନେଇଗଲେ। ଘରୋଇ ଖାଦ୍ୟ- ଭାତ, ଡାଲି, ଭଜା, ତରକାରୀ- ସେ ଯେ ଏମିତି ଅମୃତ ଭଳି ଲାଗେ ଏଇ ପ୍ରଥମ ଜାଣିଲି।

ଖାଇସାରିବା ପରେ ସବୁତକ କ୍ଳାନ୍ତି ଯେମିତି ଏକାଠି ମାଡି ବସିଲା। ହୋଟେଲ୍‌ରେ ପହଞ୍ଚି ସିଧା ବିଛଣା। ହେଲେ ନିଦ କାହିଁ? ବହୁତ କଷ୍ଟରେ ପ୍ରାୟ ବାରଟା ସାଢେ ବାରଟା ବେଳକୁ ନିଦ ଯଦିଓ ହେଲା, ତିନି ଚାରିଘଣ୍ଟା ପରେ ଚାରିଜଣଙ୍କର ନିଦ ଭାଙ୍ଗିଗଲା। ମାସେ ବିଦେଶରେ ରହି ଘରକୁ ଫେରିବା ପରେ ତୋ ଭାଇନା

ଯେତେବେଳେ ଦିନସାରା ଖାଲି ଶୁଅନ୍ତି, ସେତେବେଳେ ମୋତେ ଭୀଷଣ ବିରକ୍ତ ଲାଗେ। ସେ ବୁଝାନ୍ତି ଯେ ଏଇଟା "ଜେଟ୍‌ଲ୍ୟାଗ୍"। ମୁଁ ବୁଝିପାରେ ନାହିଁ। କାରଣ ମୋର ବଦ୍ଧଧାରଣା ହୋଇ ଯାଇଥିଲା ଯେ "ଜେଟ୍‌ଲ୍ୟାଗ୍" ଗୋଟିଏ ବଡଲୋକୀ ଫେଶନ୍‌ର କଥା। ହେଲେ ଏବେ ମୁଁ ନିଜେ ଭୁକ୍ତଭୋଗୀ। ରାତିରେ ନିଦ ନାହିଁ, ଅଥଚ ଦିନବେଳେ ଆଖି ମନକୁ ମନ ବନ୍ଦ ହୋଇଯାଉଛି। ଯାପରେ ଆଉ "ଜେଟ୍‌ଲ୍ୟାଗ୍"କୁ ଅସ୍ୱୀକାର କରି ହୁଏ ? ଆମ ଶରୀର ତ ଯନ୍ତ୍ରଟାଏ। ଗୋଟିଏ ବାଗରେ ସେଟ୍ ହୋଇଯାଏ। ପୁଣି ଥରେ ସେଟିଙ୍ଗ ବଦଳାଇବାକୁ ସମୟ ତ ନିଶ୍ଚୟ ଲାଗିବ। ଏଇ ସାଧାରଣ କଥାଟି ମୁଁ ଯାହା ଏତେଦିନ ବୁଝି ନ ଥିଲି !

ସେ ଯାହା ହେଉ, ଗୋଟାଏ ଦିନ ହୋଟେଲ୍‌ରେ ରହିବା ପରେ ଆମେ ଗୋଟିଏ ଆପାର୍ଟମେଣ୍ଟକୁ ଯିବା କଥା ଚିନ୍ତା କଲୁ। ତୁ ମୋ ସାଙ୍ଗ ନୀତାକୁ ମନେ ରଖିଥିବୁ ନିଶ୍ଚୟ। ପନ୍ଦର ବର୍ଷ ଆମେରିକାରେ ରହିବା ପରେ ସେ ଯେତେବେଳେ ଭାରତକୁ ପ୍ରଥମ ଆସିଲା, ଆଦୌ ଆଡ୍‌ଜଷ୍ଟ କରିପାରିଲା ନାହିଁ। ତାକୁ ପଚାରିଲେ କହୁଥିଲା, "ଏଠି ତ କୌଣସି କାମ ହେଉନି। ତୁମେମାନେ ଚଳ କେମିତି ? ମୁଁ ଗୋଟିଏ ବଢେଇକୁ ଡାକିଲି। ଚାରିଦିନ ପରେ ଯାଇ ସେ ଆସିଲା।" ଆମେ ସେତେବେଳେ ଖୁବ୍ ହସିଥିଲୁ। ମୁଁ କହିଥିଲି, "ତୁମ ଭାଗ୍ୟ ଭଲ କୁହ ! ମାତ୍ର ଥରେ ଡାକିବା ପରେ ଅନ୍ତତଃ ସେ ଆସିଲା; ଏଠି ତ ଦୌଡି ଦୌଡି ଚଟି ଘୋରି ହେବା ପରେ କାମ ହୁଏ।" ନୀତା ବିଶ୍ୱାସ କରି ପାରି ନ ଥିଲା। ନୀତାର ଅବିଶ୍ୱାସ କରିବାର କାରଣ ଏବେ ମୁଁ ବୁଝୁଛି। ଆମ ଦେଶରେ ଦୌଡି ଦୌଡି ଯେଉଁ କାମ ହୁଏ ନାହିଁ, ଏଠି କେବଳ ଟେଲିଫୋନ୍‌ରେ ସେ କାମ ହୋଇଗଲା। ସଂପୂର୍ଣ୍ଣ ରୂପେ ଥଇଥାନ ହେବାକୁ ମାତ୍ର ଚବିଶ ଘଣ୍ଟା ଲାଗିଲା। କେଇ ଘଣ୍ଟା ଭିତରେ ଆପାର୍ଟମେଣ୍ଟ ମିଳିଗଲା। ଫର୍ନିଚର୍ ପସନ୍ଦ କରିବାର ଅଳ୍ପ ସମୟ ପରେ ଫର୍ନିଚର ଭଡା କଂପାନୀ ସେ ସବୁ ଘରେ ଦେଇଗଲା। ସକାଳେ ଟେଲିଫୋନ୍ କଂପାନୀକୁ ଟେଲିଫୋନ୍‌ଟିଏ ପାଇଁ ଜଣେଇଲୁ ଏବଂ ସନ୍ଧ୍ୟାବେଳ ସୁଦ୍ଧା ଘରେ ଟେଲିଫୋନ୍ ଲାଗିଗଲା। ତୁ ହୁଏତ ମନେ କରୁଥିବୁ ଏ କେଉଁ ପରୀ ରାଇଜର କାହାଣୀ। ତୋ ମନରେ ଭୁଲ ଧାରଣାଟି ବସିଯିବା ଆଗରୁ କହି ରଖୁଛି।

ଏ ଦେଶରେ ସବୁ କ୍ଷେତ୍ରରେ କଂପିଟିସନ୍ ଏତେ ବେଶୀ ଯେ ସମସ୍ତେ ସବୁ କାମ ସମୟାନୁଯାୟୀ ଏବଂ ସୂଚାରୁରୂପେ କରିବାର ଚେଷ୍ଟା କରନ୍ତି। କିନ୍ତୁ ମୋର ମନେହେଲା, ସମସ୍ତେ ଯେମିତି ଅନେକଟା ଯାନ୍ତ୍ରିକ। "ଘର ଦରକାର? ଓଃ ୱାଣ୍ଡରଫୁଲ୍।" "ଆପଣ ଏଇ ସୋଫା ପସନ୍ଦ କରିଛନ୍ତି? ଏକ୍ସଲେଣ୍ଟ ଟେଏସ୍!" "ଭାରତରୁ ଆସିଛନ୍ତି? ଦ୍ୟାଟସ୍ ଗ୍ରେଟ୍" - ଏସବୁ କଥା କେମିତି ଉପରଠାଉରିଆ ମନେହେଲା। ଆଉ ଗୋଟିଏ ବିଷୟ ହେଲା- ଆମେରିକାନ୍ ସମାଜ ଭୀଷଣ ବସ୍ତୁବାଦୀ। ଆଜି ଯିଏ ଭଡା ଘରେ ଅଛି, ସେ ସ୍ୱପ୍ନ ଦେଖୁଛି ନିଜ ଘରଟିଏ ପାଇଁ। ନିଜର ଘର ହୋଇଗଲେ ସେ ପୁଣି ଚାହୁଁଛି ବଡ ଘର। ଆଉ ତା'ପରେ ସୁଇମିଙ୍ଗ ପୁଲ୍ ଓ ବିରାଟ ବଗିଚା ଥିବା ଘର। ଆଜି ଜାପାନିଜ୍ ଗାଡି ଅଛି; କାଲିକୁ ଦରକାର ଆମେରିକାନ୍ ଗାଡି ବୁଇକ୍ ବା ପୋଣ୍ଟିଆକ୍। ତା'ପରେ ଜର୍ମାନ୍ ଗାଡି ବି.ଏମ୍.ଡବଲ୍ୟୁ ବା ମର୍ସିଡିଜ୍ ବେଞ୍ଜ- ଏ ଦୌଡର ଅନ୍ତ କାହିଁ?

କେବଳ ସେତିକି ନୁହଁ, ଏଠିକାର ଅଧିକାଂଶ ମଣିଷ ଆତ୍ମକୈନ୍ଦ୍ରିକ। ଗୋଟିଏ ପରିବାର ଭିତରେ ରହି ମଧ୍ୟ ପରିବାରର ସମସ୍ତ ସଦସ୍ୟ ନିଜର ସ୍ୱାତନ୍ତ୍ର୍ୟ ବଜାୟ ରଖନ୍ତି। ଅଥଚ ଯେଉଁଟାକୁ ସେମାନେ ସ୍ୱାତନ୍ତ୍ର୍ୟ କହନ୍ତି, ଆମ ଦେଶ ହୋଇଥିଲେ ଆମେ କହନ୍ତେ ସ୍ୱାର୍ଥପରତା। ଧୈର୍ଯ୍ୟର ଘୋର ଅଭାବ ଏ ସମାଜରେ। ହୁଏତ ସେଥିପାଇଁ ଏ ଦେଶରେ ଡିଭୋର୍ସ ଏତେ ବେଶୀ।

ସବୁ ସମାଜରେ ଭଲ, ମନ୍ଦ ମିଶିକରି ରହିଛି। କିନ୍ତୁ ଏ ଦେଶରେ ପ୍ରତ୍ୟେକ କ୍ଷେତ୍ରରେ ଯାହା ଦେଖିବାକୁ ମିଳେ, ତା' ହେଉଛି ପ୍ରାଚୁର୍ଯ୍ୟ। "Land of milk and honey" ବୋଲି ଯେଉଁ କଥାଟି ରହିଛି, ସେଇଟି ଏକ୍‌ଦମ୍ ସତ। ଏଇ ପ୍ରାଚୁର୍ଯ୍ୟର ନିଶାରେ ହିଁ ବୋଧହୁଏ ପୃଥିବୀର ବିଭିନ୍ନ ପ୍ରାନ୍ତରୁ ବହୁ ଲୋକ ଆସି ନିଜର ସଂସ୍କୃତି, ଭାଷା ତଥା ପରିବେଶକୁ ଭୁଲିଯାଇ ଏଠାରେ ବସବାସ କରିଯାଆନ୍ତି।

ଏଠିକା ସମାଜ କଥା ତ ଜାଣିଲୁ, ଏବେ ମୁଁ ସ୍କୁଲ କଥା କହେ। ଚାରିମାସ ପିଲାମାନେ ସ୍କୁଲ ନ ଯାଇ ଘରେ ବସିବେ କେମିତି? ତେଣୁ ସମ୍ଭବ ହେଲେ ସେମାନଙ୍କୁ ସ୍କୁଲରେ ଭର୍ତ୍ତି କରିଦେବା କଥା ଆମେ ଆଗରୁ ଚିନ୍ତା କରି ରଖିଥିଲୁ। ଏଠିକୁ ଆସି ଜାଣିଲୁ ଯେ ଏଠାକାର ସ୍କୁଲ ବ୍ୟବସ୍ଥା ଭାରି ସୁବିଧାଜନକ।

ଅଞ୍ଚଳ ଅନୁସାରେ ସ୍କୁଲ୍ ଜିଲ୍ଲା ଭାଗ ଭାଗ ହୋଇଯାଇଛି। ଗୋଟିଏ ଜାଗାରେ ରହୁଥିବା ପିଲାମାନେ କେବଳ ସେଇ ସ୍କୁଲ୍ ଜିଲ୍ଲାରେ ଥିବା ସ୍କୁଲ୍‌ମାନଙ୍କରେ ପାଠ ପଢିପାରିବେ। ଆମେ ଯେହେତୁ କୁପରଟିନୋରେ ଘର ନେଲୁ, ତେଣୁ ପିଲାମାନେ କୁପରଟିନୋ ସ୍କୁଲ୍ ଜିଲ୍ଲା ଅଧୀନରେ ଥିବା ସ୍କୁଲ ମଧ୍ୟରୁ ଗୋଟିକୁ ଯାଇ ପାରିବେ। ସ୍କୁଲ ପାଇଁ ଦୌଡ଼ା ଦୌଡ଼ି କରିବାକୁ ହୁଏ ନାହିଁ, କାହାକୁ ଅନୁରୋଧ କରିବାକୁ ପଡେ ନାହିଁ କି ଡୋନେସନ୍ ମଧ୍ୟ ଦେବାକୁ ହୁଏ ନାହିଁ। ପବ୍ଲିକ୍ ସ୍କୁଲ୍ (ସରକାରୀ ସ୍କୁଲ୍)ରେ ପଢେଇଲେ ଦରମା ନାହିଁ। ବହି ଖାତା ମଧ୍ୟ କିଣିବାକୁ ପଡେ ନାହିଁ। କେବଳ ପେନ୍‌ସିଲ୍ ଓ ରବରର ଖର୍ଚ୍ଚ। କିନ୍ତୁ ଆମେରିକା ବାହାରୁ ଆସିଥିବା ପିଲାଙ୍କୁ ଇଂରାଜୀ ପରୀକ୍ଷା ଦେବାକୁ ହୁଏ। ଏଥିରେ ଭଲ ନ କଲେ ମଧ୍ୟ ସ୍କୁଲରେ ଆଡ୍‌ମିଶନ୍ ନେବାରୁ କେହି ବଞ୍ଚିତ କରିପାରିବେ ନାହିଁ। ତେବେ ଇଂରାଜୀ ଶିଖିବା ପାଇଁ ଗୋଟିଏ ବିଶେଷ କ୍ଲାସରେ ଯୋଗ ଦେବାକୁ ପଡେ। ରୁମି, ଗିଟି ତ ଇଂରାଜୀ ମିଡିୟମ୍‌ରେ ପଢିଛନ୍ତି, ତେଣୁ ସେ ଭୟ ନ ଥିଲା। ବରଂ ସେମାନଙ୍କର ଇଂରାଜୀ ଶୁଣି ପରୀକ୍ଷା ନେଉଥିବା ଶିକ୍ଷୟିତ୍ରୀ କହିଲେ, "They speak such wonderful British English. I hope they keep it." ବ୍ରିଟିଶ୍ ଇଂଲିଶ୍ ଶୁଣି ଇଂଲଣ୍ଡର ଲୋକଙ୍କ ଉଚ୍ଚାରଣ କଥା ଭାବିବୁନି। ଭଦ୍ରମହିଳା ଜଣକ ଭାଷାର ଶୁଦ୍ଧତା କଥା ହିଁ କହୁଥିଲେ।

ପିଲାଏ କିନ୍ତୁ ତାଙ୍କର 'ବ୍ରିଟିଶ୍' ଇଂଲିଶ୍ ବେଶୀଦିନ ରଖି ପାରିଲେ ନାହିଁ। ସ୍କୁଲ୍ ଯିବାର ସାତୋଟି ଦିନ ଭିତରେ ସେମାନେ ଆମେରିକାନ୍ ଇଂଲିଶ୍ କହିବାକୁ ଆରମ୍ଭ କରିଦେଲେ। ଆମେରିକାନ୍‌ମାନଙ୍କର ଇଂରାଜୀରେ ବ୍ୟାକରଣର ବ୍ୟବହାର କମ୍, ତେଣୁ ମୋତେ ବାରମ୍ବାର ପିଲାମାନଙ୍କର ଇଂରାଜୀ ଠିକ୍ କରି ଦେବାକୁ ପଡୁଛି। ଆଉ ଗୋଟିଏ ଜିନିଷ ହେଲା ବନାନ। ଗୋଟିଏ ଶବ୍ଦକୁ ଯେଉଁଭଳି ଭାବରେ ଉଚ୍ଚାରଣ କରାଯାଏ, ସେଇଭଳି ଲେଖିବାକୁ ସେମାନେ ପସନ୍ଦ କରନ୍ତି। କିଛି ଦିନ ତଳେ ରୁମି ଆସି କହିଲା, "ମା, କଲର୍ ବନାନ ତ color, ମୋ ପୁରୁଣା ସ୍କୁଲରେ colour କାହିଁକି ଶିଖାଉଥିଲେ?" ଏ କଥାର ମୁଁ କି ଉତ୍ତର ଦେଇଥାଆନ୍ତି!

ଏ ଦେଶରେ ସ୍କୁଲ ବ୍ୟବସ୍ଥା ଆମ ଦେଶର ପ୍ରଚଳିତ ସ୍କୁଲ ପ୍ରଥାରୁ ସଂପୂର୍ଣ୍ଣ ରୂପେ ଭିନ୍ନ। ହୁଏତ ସେଇଥି ପାଇଁ ଆମେ ପିଲାମାନେ ଯାଉଥିବା ସ୍କୁଲ ନେଇ

ସଂପୂର୍ଣ୍ଣ ରୂପେ ସନ୍ତୁଷ୍ଟ ହୋଇ ପାରିନାହୁଁ। ଆମ ଦେଶରେ ଛାତ୍ରମାନଙ୍କ ଉପରେ ଅଧିକା' ବୋଝ ଲଦି ଦିଆଯାଉଛି ବୋଲି ଅନେକ ଅସନ୍ତୁଷ୍ଟ। ଏଠାରେ ଦେଖୁଛି ସଂପୂର୍ଣ୍ଣ ରୂପେ ବିପରୀତ। ଅର୍ଥାତ୍ ଆଦୌ କୌଣସି ଚାପ ନାହିଁ। ପଢାପଢିରେ ଶୃଙ୍ଖଳାର ଘୋର ଅଭାବ। କିନ୍ତୁ ପଢେଇବା ବାଗଟି ବେଶ୍ ସୁନ୍ଦର। ପୋଥିଗତ ବିଦ୍ୟା ଅପେକ୍ଷା ପ୍ରାକ୍ଟିକାଲ୍ ଜ୍ଞାନ ଉପରେ ଏଠି ବେଶୀ ଜୋର୍ ଦିଆଯାଏ ଯାହାକି ପରବର୍ତ୍ତୀ ଜୀବନରେ କାମରେ ଲାଗିବ। ସେଇଭଳି ପାଠ ବ୍ୟତୀତ ପିଲାମାନଙ୍କର ଆଗ୍ରହ ଖେଳ, ଆର୍ଟସ୍, ମ୍ୟୁଜିକ୍, କଂପ୍ୟୁଟର୍ ଇତ୍ୟାଦି ପ୍ରତି ଯେପରି ବଢିବ, ସେଥିପ୍ରତି ମଧ୍ଯ ଦୃଷ୍ଟି ଦିଆଯାଏ। ଫଳରେ ଜଣେ ବଡ ହୋଇ ନିଜ ପାଇଁ ଯେ କୌଣସି କ୍ଷେତ୍ର ବାଛି ନେଇପାରେ। କିନ୍ତୁ ପଢାପଢିରେ ଶୃଙ୍ଖଳା ନ ଥିବାରୁ ଅନେକ ଛାତ୍ର ମନ ଯୋଗ ଦେଇ ପଢନ୍ତି ନାହିଁ। ମୋର କ'ଣ ମନେ ହେଉଛି ଜାଣୁ, ଯଦି ଆମ ଦେଶ ତଥା ଯୁକ୍ତରାଷ୍ଟ୍ର ଆମେରିକାର ଶିକ୍ଷାବିତ୍‌ମାନେ ଏକାଠି ହୋଇ ଉଭୟ ବ୍ୟବସ୍ଥାର ଭଲଗୁଣ ସବୁ ଏକାଠି କରି ନିଅନ୍ତେ, ତେବେ ଗୋଟିଏ ଉଚ୍ଚକୋଟୀର ଶିକ୍ଷାବ୍ୟବସ୍ଥା ପ୍ରସ୍ତୁତ ହୋଇପାରନ୍ତା।

ଏଇ କିଛି ଦିନ ତଳେ ପିଲାମାନଙ୍କ ସ୍କୁଲରେ 'ଡିସ୍‌କଭରି ଡେ' ଏବଂ ତା'ର କିଛିଦିନ ପରେ 'ଇଣ୍ଟରନ୍ୟାସ୍‌ନାଲ ନାଇଟ୍' ପାଳିତ ହୋଇଗଲା। କ୍ୟାଲିଫୋର୍ଣ୍ଣିଆର ସ୍କୁଲମାନଙ୍କରେ ବିଭିନ୍ନ ଦେଶର ପିଲା ରହିଛନ୍ତି। ପରସ୍ପର ଯେପରି ପରସ୍ପରର ଦେଶ, ଭାଷା, ଖାଦ୍ୟ ତଥା ସଂସ୍କୃତି ବିଷୟରେ ଜାଣିପାରିବେ ସେଥିପାଇଁ 'ଡ଼ିସ୍‌କଭରି ଡେ' ପାଳିତ ହୁଏ। ଏଥରକର ବିଷୟ ଥିଲା 'ବ୍ରେଡ୍'। ଏଠାକାର ଜଣେ ଭାରତୀୟ ମହିଳା 'ରୁଟି' ଉପରେ ଭାଷଣ ଦେଲେ ଏବଂ ତା'ପରେ ଅଟା ଚକଟି, ରୁଟି ବେଲି, ସେକି ଛାତ୍ରଛାତ୍ରୀମାନଙ୍କୁ ଦେଖାଇଲେ ଏବଂ ଚାଖିବାକୁ ଦେଲେ।

'ଇଣ୍ଟରନ୍ୟାସ୍‌ନାଲ ନାଇଟ୍' ସଂଧ୍ୟାଟି ଖୁବ୍ ସୁନ୍ଦର କଟିଲା। କାରଣ ଏଠିକୁ କେବଳ ପିଲା ନୁହନ୍ତି, ପିଲାଙ୍କ ମା, ବାପାମାନେ ମଧ୍ଯ ନିମନ୍ତ୍ରିତ ହୁଅନ୍ତି। ତେବେ ସର୍ତ୍ତ ଗୋଟିଏ। ପ୍ରତ୍ୟେକ ପରିବାର ନିଜ ଦେଶର ଗୋଟିଏ ରନ୍ଧା ରାନ୍ଧି ନେଇ କରି ଆସିବ ଏବଂ ନିଜର ରାଷ୍ଟ୍ରୀୟ ପୋଷାକ ପିନ୍ଧି ଆସିବ। ଗୋଟିଏ ବିରାଟ ହଲ୍‌ରେ ଭାଗ ଭାଗ କରାଯାଇ ବିଭିନ୍ନ ଦେଶର ଖାଦ୍ୟ ସବୁ ରଖା ହୋଇଥିଲା। ଡିନାର୍ ଆରମ୍ଭ ହେବାର ଅଳ୍ପ ସମୟ ମଧ୍ୟରେ ହିଁ ଭାରତ ଓ ଇଟାଲୀର

ଖାଦ୍ୟ ଶେଷ ହୋଇଗଲା । (ଆମେରିକାରେ ଡ଼ିନାର ସାଧାଣତଃ ଛଅଟା, ସାଢେ ଛଅଟା ବେଳେ ଖାଆନ୍ତି) । ଖିଆପିଆ ପରେ ସାଂସ୍କୃତିକ କାର୍ଯ୍ୟକ୍ରମ । ପ୍ରଥମେ ଥିଲା ଛୋଟ ଜାପାନୀ ଝିଅଟିଏର 'ପଙ୍ଖା ନାଚ' । ତା'ପରେ ଦୁଇଜଣ ନିମନ୍ତ୍ରିତ ଭଦ୍ରମହିଳା ସ୍ପେନ୍ ଦେଶର ଗୋଟିଏ ନାଚ କରିଲେ । ଏଇଟା ମତେ ଅନେକାଂଶରେ 'ଦାସକାଠିଆ' ଭଳି ଲାଗିଲା । ତେବେ ଗୀତର ପ୍ରାଧାନ୍ୟ ନ ଥାଇ ନାଚର ପ୍ରାଧାନ୍ୟ ଥିଲା । କିନ୍ତୁ ହାତରେ ସେମାନେ ଧରିଥିବା କାଠ ବାଜାଟି ଅନେକାଂଶରେ ଦାସକାଠିଆ ପରି । ଜଣେ ଅନ୍ୟ ଜଣଙ୍କର ପାଳି ମଧ ଧରୁଥିଲା । ଏହାପରେ ହେଲା 'ଭାରତ-ନାଟ୍ୟମ୍' । ବାର ବର୍ଷର ଭାରତୀୟ ଝିଅଟିର ନାଚ ସମସ୍ତେ ପସନ୍ଦ କଲେ । ସଂଧ୍ୟାର ସମସ୍ତ କାର୍ଯ୍ୟକ୍ରମ ଶେଷ ହେବା ବେଳକୁ ରାତି ନଅଟା । ଭିଡ଼ ଦେଖି ମୋର ମନେ ହେଉଥାଏ ଯେମିତିକି ଆମ ଦେଶର କୌଣସି ଗୋଟିଏ ସ୍କୁଲର ପୁରସ୍କାର ବିତରଣୀ ଉତ୍ସବ ।

ସ୍କୁଲ୍ କଥା ତ ସବୁ ଲେଖିଲି, ଏଥର ଆମ ଘର କଥା କହେ ।

ଆମ ଘରଟି ଗୋଟିଏ ଆପାର୍ଟମେଣ୍ଟ କମ୍ପ୍ଲେକ୍ସ ଭିତରେ । ବେଶୀ ବଡ ଘର ନୁହଁ, କିନ୍ତୁ ସୁନ୍ଦର । ସବୁଠାରୁ ବଡ କଥା ହେଲା ଜଣେ ଯେମିତି ସହଜରେ କାମ କରିପାରିବ ତା'ର ସବୁ ବ୍ୟବସ୍ଥା ରହିଛି । ରୋଷେଇ ଘରେ ଫ୍ରିଜ୍, କୁକିଙ୍ଗ ରେଞ୍ଜ ଆଉ ବାସନ ମାଜିବା ପାଇଁ ଡ଼ିସ୍‌ୱାସର୍ । ଲୁଗା ସଫା କରିବା ପାଇଁ କମ୍ପ୍ଲେକ୍ସ ଭିତରେ ଲଣ୍ଡ୍ରୋମାଟ୍ ରହିଛି । ଏଠି ୬ଟି ୱାଶିଙ୍ଗ ମେସିନ୍ ଓ ୬ଟି ଡ୍ରାୟର ଅଛି । ତେଣୁ ଲୁଗା କାଚି ଶୁଖେଇବା ସମୁଦାୟ ଦେଢ଼ ଘଣ୍ଟାର କାମ । ତୁ ଭାବୁଥିବୁ କେତେ ସହଜରେ ମୋର ଘର କାମ ହୋଇ ଯାଉଥିବ । ହୁଏତ ସେ କଥା ସତ, କିନ୍ତୁ ମୋର ସୁଶୀଳା (ବାଙ୍ଗାଲୋର୍‌ରେ ମତେ କାମରେ ଯେଉଁ ସ୍ତ୍ରୀଲୋକଟି ସାହାଯ୍ୟ କରୁଥିଲା) କଥା ଖୁବ୍ ମନେ ପଡେ । କାମ କଲାବେଳେ ସେ ଆଳୁ, ପିଆଜର ଦାମ ଠାରୁ ଆରମ୍ଭ କରି ତାଙ୍କ ବସ୍ତି କଥା, ନୂଆ ଦେଖିଥିବା ସିନେମା କଥା ଗପି ବସେ । ସେ ଅମୂଲ୍ୟ ଜିନିଷ ଏଠି କାହିଁ? ଜଡ ମେସିନ୍ ସାଙ୍ଗରେ ମେସିନ୍ ଭଳି କାମ କଲାବେଳେ ମୋତେ ବେଳେ ବେଳେ ବଡ ବିରକ୍ତ ଲାଗେ ।

ତୁ ତ ଜାଣୁ ଆମେରିକାନ୍‌ମାନେ ଭୀଷଣ ସ୍ୱାସ୍ଥ୍ୟ ସଚେତନ । ତେଣୁ ଏଇ କମ୍ପ୍ଲେକ୍ସ ଭିତରେ ଗୋଟିଏ ସୁଇମିଙ୍ଗ ପୁଲ, ସ୍ପା ଆଉ ବ୍ୟାୟାମ ରୁମ୍ ରହିଛି ।

ଏତେ ସୁବିଧା, ପ୍ରାଚୁର୍ଯ୍ୟ ଥିଲେ କ'ଣ ହେବ, ଏସବୁ ସହିତ ଯୋଡି ହୋଇ ଯାଇଛି ଭୟ। ଆମେରିକାରେ କ୍ରାଇମ୍ ରେଟ୍ ବହୁତ ବେଶୀ। ତେଣୁ ସନ୍ଧ୍ୟା ପରେ ଏକା ଏକା ବାହାରକୁ ଯିବାକୁ ଡର ଲାଗେ। ଭାରତରେ ପିଲାମାନେ ସ୍କୁଲରୁ ଫେରି ଲୁଗା ବଦଳାଇ ଖେଳିବାକୁ ଚାଲିଯାଆନ୍ତି, ତାହା ଏଠି ନାହିଁ। କାରଣ କେଉଁ ମଣିଷର କିଭଳି ମତି ଗତି ଏଠି ବୁଝିବା ମୁସ୍କିଲ୍। ସେଥିପାଇଁ ଏଠିକା ସ୍କୁଲମାନଙ୍କରେ ଶିକ୍ଷକମାନେ ଛାତ୍ରଛାତ୍ରୀଙ୍କୁ ଶିଖାନ୍ତି- କୌଣସି ଅଜଣା ଅଶୁଣା ଲୋକ ସାଙ୍ଗରେ ଯେମିତି ଭୁଲରେ କେହି କଥାବାର୍ତ୍ତା ନ କରନ୍ତି, ମୁଁ ସେଥିପାଇଁ ସମୟ ପାଇଲେ ପିଲାଙ୍କୁ ସୁଇମିଙ୍ଗ ପାଇଁ ନେଇଯାଏ। କେବେ କେମିତି ଆମେ ସେମାନଙ୍କୁ ଗାଡିରେ ଆଖପାଖରୁ ବୁଲେଇ ଆଣୁ।

ଦିନେ ଏମିତି ସେମାନଙ୍କୁ ନେଇ ଗାଡିରେ ବୁଲଉ ବୁଲଉ ଆମେ ସାନ୍‌ଫ୍ରାନ୍‌ସିସ୍‌କୋରେ ପହଞ୍ଚିଗଲୁ। କୁପରଟିନୋରୁ ସାନ୍‌ଫ୍ରାନ୍‌ସିସ୍‌କୋ ପ୍ରାୟ ଘଣ୍ଟାକର ରାସ୍ତା। ଆଉ ଏଇ ଘଣ୍ଟାକର ଯାତ୍ରା କି ଯେ ମନୋମୁଗ୍ଧକର ଜଣେ ପ୍ରତ୍ୟକ୍ଷ ନ କଲେ ଜାଣିପାରିବ ନାହିଁ। ଚଉଡା ପରିଷ୍କାର ରାସ୍ତା, ଦୁଇ କଡରେ କେତେବେଳେ ପାହାଡ ତ କେତେବେଳେ ସବୁଜିମା। ପ୍ରକୃତିକୁ ଉପଭୋଗ କରୁ କରୁ ଆମେ ପହଞ୍ଚିଗଲୁ ସାନ୍‌ଫ୍ରାନ୍‌ସିସ୍‌କୋରେ। ଆଗରୁ ବହୁତ ଥର ସାନ୍‌ଫ୍ରାନ୍‌ସିସ୍‌କୋ ଆସିବାର ଯୋଜନା କରିଛୁ, କିନ୍ତୁ କେଉଁଥର ସମ୍ଭବ ହୋଇ ନାହିଁ। ପୁରୀ ପାଖରେ ରହିଥିବା କେତେକ ଲୋକ ଯେମିତି ରଥଯାତ୍ରା ଦେଖିଯାଇ ପାରନ୍ତି ନାହିଁ- ଏ ସେଇଭଳିଆ କଥା। ଯାହେଉ ସାନ୍‌ଫ୍ରାନ୍‌ସିସ୍‌କୋରେ ପହଞ୍ଚିଯିବା ପରେ ରାସ୍ତାରେ ବୁଲି ବୁଲି ପ୍ରଥମେ ସହରଟି ଦେଖିଲୁ। ଏଠି ଲୋକ ଭିଡ, ସରୁ ଗଳି ରାସ୍ତା, ଆକାଶ ଛୁଉଁଥିବା କୋଠାସବୁ। କଂକ୍ରିଟ୍ ଜଙ୍ଗଲ ଯେମିତି। ଫୁଟ୍‌ପାଥ ଉପରେ ସ୍ଥାନେ ସ୍ଥାନେ କୋଟ୍ ବିଛେଇ ବସି ସାମ୍ନାରେ ଟୋପି ରଖି ଲୋକମାନେ ଭିକ ମାଗୁଥାଆନ୍ତି। କୁପରଟିନୋ ସହିତ କୌଣସି ସାମଞ୍ଜସ୍ୟ ନାହିଁ। ମୁଁ ଶୁଣିଛି କଳା, ସଂସ୍କୃତିର ପୀଠ ଏଇ ପୁରୁଣା ସହରଟି।

ମୋର ଗୋଲ୍‌ଡେନ୍ ଗେଟ୍ ବ୍ରିଜ୍ ଦେଖିବାର ବହୁତ ଇଚ୍ଛା ଥିଲା। ତେଣୁ ଆମେ ସେଇଠିକୁ ଆଗ ଗଲୁ। କିନ୍ତୁ ଗାଡି ଭିତରୁ ବାହାରିବା କ୍ଷଣି ଦେହ ହାତ କୋଳ ମାରିଗଲା। ଦାନ୍ତ ଠକ୍ ଠକ୍ ହେବା ଆରମ୍ଭ ହୋଇଗଲା। ସାନ୍‌ଫ୍ରାନ୍‌ସିସ୍‌କୋର ପାଣିପାଗ ସଂପର୍କରେ ତ ଆମର କୌଣସି ଧାରଣା ନ

ଥିଲା । ଏଠି ଯେ ଏମିତି ସବୁବେଳେ ପବନ ପିଟେ, ତା' ବା ଆମେ ଜାଣନ୍ତୁ କେମିତି ? ପରେ ମତେ ଜଣେ କହିଲେ ସାନ୍‌ଫ୍ରାନ୍‌ସିସ୍‌କୋକୁ ଗଲେ ଜ୍ୟାକେଟ୍ ବା ଉଇଣ୍ଡଚିଟର୍ (wind-cheater) ପିନ୍ଧିବା ନିହାତି ଦରକାର । ସେଦିନ ରାତି ଡେରି ହୋଇଯାଇଥିଲା । ପରେ ହାତରେ ବେଶୀ ସମୟ ରଖି ସାନ୍‌ଫ୍ରାନ୍‌ସିସ୍‌କୋ ଆସିବା କଥା ସ୍ଥିର କରି ଆମେ ଫେରିଲୁ ।

କ୍ୟାଲିଫୋର୍ଣ୍ଣିଆରେ ଭାରତୀୟ ଅନେକ । ସେଥିପାଇଁ ବହୁ ସ୍ଥାନରେ ଭାରତୀୟ ଦୋକାନ ରହିଛି । ଏଠିକାର ଭାରତୀୟ ଦୋକାନରେ ବାସମତୀ ଚାଉଳଠାରୁ ଆରମ୍ଭ କରି ସବୁ ରକମର ଡାଲି, ଆଚାର, ପାମ୍ପଡ ଇତ୍ୟାଦି ମିଳେ । ଏଠି ମିଳୁଥିବା ମସଲା ମସଲି ମଧ୍ୟ ଅତି ଭଲ । ଆମ ଦେଶରୁ ଲୋକମାନେ ଅଯଥାରେ ଜିନିଷ ଆଣି କାହିଁକି ଯେ ହଇରାଣରେ ପଡନ୍ତି ତା' ବୁଝିପାରିଲି ନାହିଁ । ଖାଇବା ପିଇବା ଦୃଷ୍ଟିରୁ ଦେଖିଲେ ଭାରତ ସହିତ କୌଣସି ତଫାତ୍ ନାହିଁ । ଅର୍ଥାତ୍ ଆମେ ଖାଉଥିବା ପ୍ରାୟ ସବୁ ରକମର ପନିପରିବା, ଫଳ, ମାଛ ଏଠି ମିଳେ ।

ଆଉ ଗୋଟିଏ ଜିନିଷ ହେଲା 'ରେଡି ଟୁ ଇଟ୍' (Ready-tó-eat) ଖାଦ୍ୟ । ଆମେରିକାନ୍‌ମାନେ ଆମ ଭଳି ରୋଷେଇ ଘରେ ପଡି ରହିବାକୁ ପସନ୍ଦ କରନ୍ତି ନାହିଁ । ତେଣୁ ବଜାରରେ ବହୁ ରକମର ଖାଦ୍ୟ ମିଳେ ଯାହାକି କେବଳ ଗରମ କରିଦେଲେ ହେଲା । ମୁଁ ଏ ପର୍ଯ୍ୟନ୍ତ ସେସବୁ ଖାଦ୍ୟ ନେଇ ପରୀକ୍ଷା କରିପାରିନାହିଁ, ତେଣୁ ମୁଁ ଦୁଇବେଳା ଆମର ଦେଶୀ ଖାଦ୍ୟ ହିଁ ପ୍ରସ୍ତୁତ କରିଯାଉଛି । ଏଇ କିଛିଦିନ ତଳେ ବେଶ୍ ମଜାର ଘଟଣାଟିଏ ଘଟିଗଲା । ସେଦିନ ମୁଁ ମାଛ ତରକାରୀ ରାନ୍ଧୁଥାଏ, ହଠାତ୍ କଲିଂ ବେଲ୍ ବାଜିଲା । କବାଟ ଖୋଲି ଦେଖେ ତ ଆମ ପଡିଶା ଘରେ ରହୁଥିବା ଆମେରିକାନ୍ ଭଦ୍ରମହିଳା ଜଣକ । ସେ ବିନା ଉପକ୍ରମଣିକାରେ ଆରମ୍ଭ କଲେ, "ତୁମେ ଯେତେବେଳେ ରାନ୍ଧୁଛ, ରନ୍ଧା ବାସ୍ନା ଝରକା ଦେଇ ଆମ ଘର ଭିତରକୁ ପଶିଆସୁଛି ।" ମୁଁ ଭାବିଲି ବୋଧହୁଏ ଭଦ୍ରମହିଳା ନାଲିସ୍ କରିବାକୁ ଆସିଗଲେ । କିନ୍ତୁ ନା- ଓଠରେ ହସ ଖେଳାଇ ସେ କହିଲେ, "ଇସ୍ କି ସୁନ୍ଦର ବାସ୍ନା । ପୃଥିବୀର ଯେ କୌଣସି ଶ୍ରେଷ୍ଠ ପରଫ୍ୟୁମ୍‌ଠାରୁ ଭଲ ।"

ମୁଁ ଧନ୍ୟବାଦ ଜଣେଇ ସାଙ୍ଗେ ସାଙ୍ଗେ ଗୋଟିଏ ଗିନା ମାଛ ତରକାରୀ ତାଙ୍କ ହାତରେ ଧରେଇ ଦେଲି । କହିଲି, "ଆଜି ଆମ ଭାରତୀୟ ରନ୍ଧା ଖାଇ କରି ଦେଖନ୍ତୁ ।" ତା' ପରଦିନ ସେ ଭଦ୍ରମହିଳା ଜଣକ ଆମ ଘରକୁ ଆସି

ଉଲ୍ଲସିତ ପ୍ରଶଂସା କରିବା ଆରମ୍ଭ କରିଦେଲେ। ସେ କୁଆଡେ ଏତେ ଭଲ ରନ୍ଧା ଆଗରୁ କେବେ ଖାଇନାହାନ୍ତି! କେବଳ ଏତିକି ନୁହଁ, ସେ ମୋତେ ଖାଲି ଗିନା ନ ଫେରାଇ ନିଜ ଲଞ୍ଚ୍ ପାଇଁ ରାନ୍ଧିଥିବା ସ୍ମୋକ୍‌ଡ୍ ଟ୍ୟୁନା (Smoked tuna) କିଛି ରଖି ଦେଇଗଲେ। ଏଠିକୁ ଆସି ମଧ୍ୟ ମୁଁ ଆମର ଭାରତୀୟ ଷ୍ଟାଇଲ୍‌ରେ ତରକାରୀ ଦିଆନିଆ ଆରମ୍ଭ କରି ଦେଲିଣି! ମୋ ପଡୋଶୀ ଜିନ୍‌କୁ ଭାରତୀୟ ସଂସ୍କୃତି ଟିକିଏ ଶିଖେଇ ଦେଲେ କ୍ଷତି କ'ଣ?

ଆଜି ପାଇଁ ଏତିକି। ମୁଁ ଠିକଣା ଦେଉଛି, ଚିଠି ପାଇବା ମାତ୍ରକେ ଉତ୍ତର ଦେବୁ। ଆଶା କରୁଛି, ତୁମେମାନେ ଭଲରେ ଥିବ। ରହିଲି।

ଇତି

ତୋର 'ନାନୀ'

କୁପରଟିନୋ
୩୦ ଜୁନ୍, ୧୯୯୧

ସ୍ନେହର ମିତୁ,

ତୋ ଚିଠି ଚାରିଦିନ ତଳେ ପାଇଛି। ଚିଠି ତ ନୁହଁ, ଗୋଟାଏ ପ୍ରଶ୍ନ-ପତ୍ର! ନିତିଦିନିଆ ଚଳିବା ଭିତରେ ମୁଁ ଯେଉଁ ଛୋଟ ଛୋଟ ଜିନିଷକୁ କୌଣସି ଗୁରୁତ୍ୱ ଦେଇ ପାରି ନାହିଁ, ତୁ ସେସବୁ ବିଷୟରେ ଅସଂଖ୍ୟ ପ୍ରଶ୍ନ ପଚାରିଛୁ। ତୋର ସବୁ ପ୍ରଶ୍ନର ଉତ୍ତର ଦେବି, କିନ୍ତୁ ଆଜି ନୁହଁ। ଯାହା ଲେଖିବାକୁ ଆଜି ଏଇ ସକାଳୁ ସକାଳୁ ମୁଁ କଲମ ଧରି ବସିଛି ତାହା ଲେଖି ସାରିବା ପରେ ହୁଏତ ତୋ ପ୍ରଶ୍ନର ଉତ୍ତର ଦେବା ପାଇଁ ମୋର ଆଉ ଧୈର୍ଯ୍ୟ ରହିବ ନାହିଁ। ସେସବୁ ପର ଚିଠି ପାଇଁ ରଖିଦେଲି।

ତୁ ଭାବୁଥିବୁ କ'ଣ ଏମିତି ଗୁରୁତ୍ୱପୂର୍ଣ୍ଣ ଘଟଣା ଘଟିଗଲା ଯେ ମୁଁ ଏତେ ଉପକ୍ରମଣିକା କରୁଛି। ଘଟଣାଟି ଏୟା। ଆମେ ଏହା ଭିତରେ ଯାଇ ଡ଼ିସନିଲ୍ୟାଣ୍ଡ ଓ ୟୁନିଭର୍ସାଲ୍ ଷ୍ଟୁଡ଼ିଓ ବୁଲି ଆସିଛୁ। ହୁଏତ ଅନ୍ୟମାନଙ୍କ ପାଇଁ ଏଇଟା ଗୋଟିଏ ସାଧାରଣ ଘଟଣା, କିନ୍ତୁ ମୋ ପାଇଁ ନୁହଁ। କ୍ୟାଲିଫୋର୍ଣ୍ଣିଆରେ ଆସି ପହଞ୍ଚିବା ପରେ ବହୁତଥର ବିଭିନ୍ନ ପରିସ୍ଥିତିରେ ଅନ୍ୟମାନେ ମତେ ପଚାରିଛନ୍ତି, "ତୁମକୁ ଏଠି କେମିତି ଲାଗୁଛି?" ଆଉ ପ୍ରାୟ ସବୁଥର ମୁଁ ଉତ୍ତର ଦେଇଛି, "କାହିଁ ମତେ ତ କିଛି ଅଲଗା ଲାଗୁନାହିଁ।" ମୋ ଉତ୍ତରକୁ ହୁଏତ ଅନେକେ 'ଫୁଟାଣିଆ

କଥା' ହିସାବରେ ନେଇଥିବେ; କିନ୍ତୁ ମୁଁ ମୋର ପ୍ରକୃତ ଅନୁଭବ କଥା ହିଁ କହିଛି। ଜଳବାୟୁ, ପ୍ରାକୃତିକ ସୌନ୍ଦର୍ଯ୍ୟ - ସବୁଦିଗରୁ କ୍ୟାଲିଫୋର୍ଣିଆ ଅନନ୍ୟ, ତା' ହେଲେ ମୁଁ କେମିତି କୌଣସି ପାର୍ଥକ୍ୟ ଲକ୍ଷ୍ୟ କରି ପାରୁ ନାହିଁ? ତୁ କହ ମିତୁ, ଦୃଶ୍ୟରେ ପରିବର୍ତ୍ତନ ଘଟିଲେ ସତରେ କ'ଣ ଜୀବନଟା ଓଲଟ ପାଲଟ ହୋଇଯାଏ ? ମୋ ମତରେ ଆଦୌ ନୁହଁ। ମୁଁ ଭାରତର ବାଙ୍ଗାଲୋର୍‌ରେ ଥିଲି, ଏବେ ଅଛି ଯୁକ୍ତରାଷ୍ଟ୍ର ଆମେରିକାର କ୍ୟାଲିଫୋର୍ଣିଆରେ। ସ୍ଥାନର ପରିବର୍ତ୍ତନ ଘଟିବା ଛଡା ମୋ ଜୀବନରେ କ'ଣ ସେଭଳି କିଛି ପରିବର୍ତ୍ତନ ଘଟିଛି ? ସେଠି ଯେମିତି ଭାବରେ ମୋର ଦିନଟିଏ କଟି ଯାଉଥିଲା, ଏଠି ପ୍ରାୟ ଅନେକଟା ସେଇଭାବରେ ହିଁ କଟୁଛି। ପିଲାଙ୍କୁ ସ୍କୁଲ୍ ପାଇଁ ପ୍ରସ୍ତୁତ କରା, ରୋଷେଇ, ଘରକାମ, ବହିପଢା, କିଛି ଲେଖାଲେଖି- ଏସବୁ ସେଠି ଥିଲା, ଏଠି ମଧ୍ୟ ଚାଲିଛି। କେବେ କେମିତି ବଜାର ବୁଲା, ସାଙ୍ଗମାନଙ୍କ ସାଙ୍ଗରେ ସମୟ କାଟିବା- ଏଥିରେ ମଧ୍ୟ ପରିବର୍ତ୍ତନ ନାହିଁ। ତା'ହେଲେ ହାତରେ ସ୍ୱର୍ଗର ଚାନ୍ଦ ପାଇଯିବା ଭଳି ଅଭିନୟ ମୁଁ କେମିତି କରିଥାଆନ୍ତି ?

ମୋର ଜଣେ ଭାରତୀୟ ପଡୋଶୀ 'ଅଙ୍କୁର' ମୋ କଥା ଶୁଣିଲେ ହସି କରି କହେ, ''ହଉ ଥରେ ବୁଲାବୁଲି ଆରମ୍ଭ କର, ତା'ପରେ ଫରକଟା ବୁଝିପାରିବ।'' ବୁଲାବୁଲି କରିବାକୁ ମୋର ଯେ ଖୁବ୍ ଗୋଟିଏ ଅନିଚ୍ଛା ତା' ନୁହଁ। କିନ୍ତୁ ଗତ ଅଢେଇ ମାସ ଭିତରେ ସମୟ ବା କେଉଁଠି ମିଳିଲା ? ଗତ ଚିଠିରେ ଲେଖିଥିବା ସେଇ ଦୁଇ, ତିନି ଘଣ୍ଟିଆ ସାନ୍‌ଫ୍ରାନ୍‌ସିସ୍‌କୋ ଘୁରା ଛଡା ଆଉ ତ ମୁଁ କେଉଁଆଡେ ବି ଯାଇ ପାରିନାହିଁ। ପିଲାଙ୍କ ସ୍କୁଲ୍ ଚାଲିଛି, ଯିବୁ ବା କେମିତି ?

ଏଠି ସ୍କୁଲ୍‌ମାନଙ୍କରେ ଖରାଛୁଟି ହୁଏ ଜୁନ୍‌ର ଶେଷ ସପ୍ତାହରୁ। ଯେଉଁଦିନ ମୁଁ ଏ ଖବର ଜାଣିବାକୁ ପାଇଲି, ସେଇ ଦିନ ହିଁ ଏଠିକାର ସମସ୍ତ ଦର୍ଶନୀୟ ସ୍ଥାନ ଉପରେ ଗୋଟିଏ ଗବେଷଣା ଆରମ୍ଭ କରିନେଲି। ପିଲାଙ୍କର ଛୁଟି ହେବା ଦିନ ହିଁ (ସେଦିନ ଶୁକ୍ରବାର) ଆମେ ବାହାରିଯିବୁ, ଯେଉଁଠିକି ହେଉ ପଛକେ। କିଛି ଦିନ ପାଇଁ ବୁଲାବୁଲି କରି ଫେରିବୁ। କିନ୍ତୁ ମୋର ସବୁ ଯୋଜନା ଉପରେ ତୋ ଭାଇନା ପାଣି ପକେଇ ଦେଲେ। ତାଙ୍କୁ ଯେମିତି ହେଲେ ସୋମବାର ସୁଦ୍ଧା ଫେରିବାକୁ ହେବ; ସେଦିନ ଦଶଟାରେ ତାଙ୍କର ଗୋଟିଏ ଜରୁରୀ ମିଟିଙ୍ଗ୍ ରହିଛି। ଅର୍ଥାତ୍ ଶନି, ରବି ଦୁଇଟା ଦିନ ମାତ୍ର ହାତରେ। 'ନାହିଁ ମାମୁଁ ଠାରୁ

କଣା ମାମୁଁ....'' ନୀତିରେ ମୁଁ ଅଗତ୍ୟା ରାଜି ହେଲି। କିନ୍ତୁ ଯିବୁ କୁଆଡେ? ଆମକୁ ଆଉ କିଛି କହିବାକୁ ନ ଦେଇ ପିଲା ଦି' ଜଣ ମାତି ବସିଲେ, ''ଡିସ୍‌ନିଲ୍ୟାଣ୍ଡ!''

ବୁଦ୍ଧି ହେବା ଦିନଠାରୁ ମୁଁ ଶୁଣି ଆସୁଛି ଏଇ ଡିସ୍‌ନିଲ୍ୟାଣ୍ଡ ବିଷୟରେ। କେବେ ଯେ ସତରେ ଦେଖିବାର ସୁଯୋଗ ମିଳିବ ତା' ଆଦୌ ଭାବିପାରି ନାହିଁ। ତୁ ତ ଜାଣୁ ମିକି ମାଉସ୍, ଡୋନାଲ୍‌ଡ୍ ଡକ୍ ଏବଂ ଅନ୍ୟାନ୍ୟ ଡ଼ିସ୍‌ନି ଚରିତ୍ର ପ୍ରତି ଦୁର୍ବଳତା ମୋର ପିଲାଦିନରୁ। ପଢ଼ି ଶିଖିବା ପରେ ଆଖିପତା ନ ପକେଇ ଓ୍ୱାଲ୍‌ଟ ଡ଼ିସ୍‌ନି କମିକ୍ ପିଇ ଯାଉଥିଲି। ଏବେ ହୁଏତ ସେ ସଉକ ମୋର ଆଉ ନାହିଁ; କିନ୍ତୁ ପିଲାମାନେ ମୋ ସଉକ୍‌ଟା ଭଲଭାବରେ ପୂରଣ କରି ନେଉଛନ୍ତି। ମୋ ଭଳି ସେମାନଙ୍କର ମଧ୍ୟ ଡ଼ିସିନିଲ୍ୟାଣ୍ଡ ପାଇଁ ବିରାଟ ଦୁର୍ବଳତା। ତେଣୁ ସେମାନେ ଡିସ୍‌ନିଲ୍ୟାଣ୍ଡ ଯିବା ପାଇଁ ଅଡି ବସିବା ସ୍ୱାଭାବିକ।

ତୋ ଭାଇନାଙ୍କର ମୁହଁ ଦେଖି ମୁଁ ବୁଝି ପାରୁଥାଏ ଯେ ଡ଼ିସ୍‌ନିଲ୍ୟାଣ୍ଡ ଯିବା ନେଇ ସେ ଆମ ଭଳି ଏତେ ଉତ୍ସାହିତ ହୋଇ ପାରୁ ନାହାନ୍ତି। କିନ୍ତୁ ତିନିଜଣଙ୍କର ଆଗ୍ରହକୁ ସେ ଅସ୍ୱୀକାର କରିପାରିଲେ ନାହିଁ। ଶେଷରେ ନିଷ୍ପତ୍ତି ହେଲା ଯେ ଡିସ୍‌ନିଲ୍ୟାଣ୍ଡ ହିଁ ଯିବୁ। ଜୁନ୍ ୨୧ ତାରିଖ ଶୁକ୍ରବାର ଦିନ ସାଢେ ବାରଟା ବେଳେ ସ୍କୁଲ୍ ଛୁଟି ହେବ। ଆଗରୁ ସବୁ କିଛିର ପ୍ରସ୍ତୁତି ଶେଷ କରି ପିଲାଙ୍କୁ ସ୍କୁଲରୁ ଆଣି ଖୁଆଇ ନେଇ ସାଙ୍ଗେ ସାଙ୍ଗେ ବାହାରିଯିବୁ।

ଥରେ ନିଷ୍ପତ୍ତି ହୋଇଯିବା ପରେ ପିଲାଙ୍କ ଆଗ୍ରହ ଆଉ ଦେଖେ କିଏ? ଆଉ ଯେମିତି ସେମାନଙ୍କର ଅନ୍ୟ କୌଣସି କଥା ନାହିଁ। ସେମାନେ ଦିନ ଗଣିବା ଆରମ୍ଭ କରିଦେଲେ।

ଆମେ ଦିନେ ଯାଇ ଏଠିକାର ଅଟୋମୋବାଇଲ୍ ଆସୋସିଏସନ୍‌ରୁ ଡ଼ିସିନିଲ୍ୟାଣ୍ଡ ଯିବାପାଇଁ ରାସ୍ତାର ମ୍ୟାପ୍ ନେଇଆସିଲୁ। ତା'ପର ସନ୍ଧ୍ୟାମାନଙ୍କରେ ଆମର ପ୍ରଧାନ କାମ ହେଲା ସାନ୍ ହୋସେରୁ ଡିସ୍‌ନିଲ୍ୟାଣ୍ଡ ଯିବାର ରାସ୍ତା ଚିହ୍ନଟ କରିବା। ବୁଲିବାର ଅଧା ମଜା ତ ଏଇ ସବୁରେ। ସାନ୍ ହୋସେରୁ ପ୍ରଥମେ ଯିବାକୁ ହେବ ଲସ୍ ଆଞ୍ଜେଲେସ୍। ତା'ପରେ ଆନାହାଇମ୍ (Anaheim)। ଡ଼ିସ୍‌ନିଲ୍ୟାଣ୍ଡ ଏଇ ଆନାହାଇମ୍‌ରେ। ଆମର ଏଠିକାର ଅଧିକାଂଶ ସାଙ୍ଗ ଡ଼ିସ୍‌ନିଲ୍ୟାଣ୍ଡ ଦେଖି ଆସିଛନ୍ତି। ସେମାନଙ୍କ ସାଙ୍ଗରେ କଥାବାର୍ତ୍ତା କରି ମୁଁ ଯାହା ବୁଝିଲି

ଗୋଟିଏ ଦିନରେ ଡିସ୍‌ନିଲ୍ୟାଣ୍ଡ ଘୁରି ଦେଖିବା ସମ୍ଭବପର ନୁହଁ। କିନ୍ତୁ ଦୁଇଦିନର ଟିକେଟ୍ ନେଲେ ଦେଖାଯାଏ ଯେ ପ୍ରଥମ ଦିନର ଆଗ୍ରହ ଦ୍ୱିତୀୟ ଦିନକୁ ଆଉ ନଥାଏ। ତେବେ କେବଳ ଡିସନିଲ୍ୟାଣ୍ଡ ଗଲେ ତ ହେବନାହିଁ। ପାଖରେ ୟୁନିଭର୍ସାଲ୍ ଷ୍ଟୁଡିଓ। ସେଠିକୁ ତ ଯେମିତି ହେଉ ଯିବାକୁ ହେବ। ଆମ ହାତରେ ମାତ୍ର ଦୁଇଟା ଦିନ। ତେଣୁ ଠିକ୍ କଲୁ ଗୋଟିଏ ଦିନ ଡିସ୍‌ନିଲ୍ୟାଣ୍ଡ ଏବଂ ତା' ପରଦିନ ୟୁନିଭର୍ସାଲ ଷ୍ଟୁଡିଓରେ କଟେଇବୁ। ଡ଼ିସନିଲ୍ୟାଣ୍ଡ, ୟୁନିଭର୍ସାଲ ଷ୍ଟୁଡିଓର ଟିକେଟ୍, ହୋଟେଲ୍ ଖର୍ଚ୍ଚ, ପେଟ୍ରୋଲ୍- ଇତ୍ୟାଦିର ଗୋଟିଏ ଆନୁମାନିକ ଗଣତି କରି ଆମ ମୁଣ୍ଡ ଘୁରିଗଲା। ୫୦୦ ଡଲାରରୁ କମ୍‌ରେ ଆଦୌ ହେବ ନାହିଁ। କିନ୍ତୁ ମିତ୍ରୁ, ଆକାଶରୁ ଯେମିତି ସାହାଯ୍ୟ ସବୁ କୁଟେଇ ହୋଇଗଲା। ଦିନେ ଆମର ଜଣେ ସାଙ୍ଗ ଉଭୟ ଡ଼ିସ୍‌ନିଲ୍ୟାଣ୍ଡ ଓ ୟୁନିଭର୍ସାଲ ଷ୍ଟୁଡିଓର ଟିକେଟ୍ ନେଇ ଘରେ ପହଞ୍ଚିଗଲେ। କୌଣସି କାରଣରୁ ତାଙ୍କୁ ଟିକେଟ୍ ଉପରେ ବେଶ୍ ଡ଼ିସ୍‌କାଉଣ୍ଟ ମିଳିଥିଲା। ୨୯ ଡଲାରର ଗୋଟିଏ ଗୋଟିଏ ଟିକେଟ୍ ୨୧ ଡଲାର୍‌ରେ ମିଳିଗଲା। ଯିବାର କିଛି ଦିନ ଆଗରୁ ହୋଟେଲ ବୁକ୍ କରିବା କଥା। ସେଥିପାଇଁ ତୋ ଭାଇନା ତାଙ୍କର ଜଣେ ପୁରୁଣା ସାଙ୍ଗ ଚନ୍ଦ୍ରଶେଖରଙ୍କୁ (ଯିଏ କି ଆନାହାଇମ୍‌ରେ ରହନ୍ତି) ଫୋନ୍ କଲେ। ଚନ୍ଦ୍ରଶେଖର୍ ହୋଟେଲ୍ ବୁକ୍ କରିବେ କ'ଣ ଆମକୁ ବାଧ କଲେ ତାଙ୍କ ଘରେ ରହିବାକୁ। ମୁଁ ସେମାନଙ୍କୁ ଜାଣିନି, ହଠାତ୍ ଯାଇ ତାଙ୍କ ଘରେ ରହିବାକୁ ମାଡି ମାଡି ପଡୁଥାଏ। କିନ୍ତୁ ଚନ୍ଦ୍ରଶେଖର କିଛି ଶୁଣିବାକୁ ନାରାଜ। ଅଗତ୍ୟା ତୋ ଭାଇନା ରାଜି ହେଲେ।

ଶେଷରେ ସେଇ ଦିନଟି ଆସିଲା। ପିଲାମାନେ ସକାଳୁ କେବଳ ଡେଇଁବା ଆରମ୍ଭ କରିଦେଲେ। ଗେହ୍ଲେଇ, ଗାଳି ଦେଇ ଆମେ ସେମାନଙ୍କୁ ଶାନ୍ତ କରିବାକୁ ବହୁତ ଚେଷ୍ଟା କଲୁ। ହେଲେ ଆମ କଥା ଶୁଣୁଛି କିଏ ? ସ୍କୁଲ୍‌ରେ ଶେଷ ଦିନ। ରିପୋର୍ଟ କାର୍ଡ ଆଣିବାକୁ ହେବ। ସେଥିପାଇଁ ବାଧରେ ପଡି ସ୍କୁଲ୍ ଗଲେ ସେମାନେ। କିନ୍ତୁ ବାରମ୍ବାର ତାଗିଦା, ସ୍କୁଲ୍ ଛୁଟି ବେଳକୁ ଆମେ ଯେମିତି ଠିକ୍ ପହଞ୍ଚିଯାଉ। ପାଞ୍ଚ ମିନିଟ୍ ମଧ୍ୟ ଯେମିତି ନଷ୍ଟ ନ ହୁଏ।

ପିଲାମାନଙ୍କୁ ସ୍କୁଲ୍ ପଠେଇ ମୁଁ ଦୁଇଦିନ ପାଇଁ ଜିନିଷ ପ୍ୟାକ୍ କରିନେଲି। ଚନ୍ଦ୍ରଶେଖରଙ୍କର ଦୁଇ ପିଲାଙ୍କ ପାଇଁ ଦୁଇଟା ଖେଳଣା ମଧ୍ୟ କିଣି ଆଣିଲି। ପିଲାଙ୍କୁ ସ୍କୁଲ୍‌ରୁ ଆଣି ଖୁଆଇ ଘରୁ ବାହାରିବାବେଳକୁ ଦିନ ଗୋଟାଏ। ଏମିତିରେ

ଆନାହାଇମ୍ ଯିବାପାଇଁ ସାତଘଣ୍ଟା ଲାଗିବା କଥା। କିନ୍ତୁ ଆମେ ତ ଆଉ ଜୀବନମୂର୍ଚ୍ଛା ଗାଡି ଚଳେଇ ଯାଇ ନ ଥାଆନ୍ତୁ! ମୋ ସାଙ୍ଗରେ ସାଣ୍ଡୱିଚ୍, ଫଳ, ବିସ୍କୁଟ୍, ଇତ୍ୟାଦି ଥିଲେ ମଧ୍ୟ ଆମେ ବାଟରେ ଦୁଇଟି ଜାଗାରେ କଫି ଓ କୋକ୍ ପାଇଁ ରହିଲୁ। ଏଠିକା ରାସ୍ତାଗୁଡିକ ଚଉଡା ଓ ପରିଷ୍କାର। ଆବଡା ଖାବଡା ନାହିଁ। ପ୍ରାୟ ସବୁଠାରେ ୱାନ୍ ୱେ (One-way)। ତେଣୁ ଅନେକେ କହନ୍ତି ଯେ ରାସ୍ତା ଗାଡି ଚାଳକକୁ ବଶ କରିନିଏ। କିନ୍ତୁ ସେସବୁ କେବଳ କହିବା କଥା। ପ୍ରକୃତରେ ହୁଏ ଏୟା ଯେ ମସ୍ତିଷ୍କକୁ ସଜାଗ ରହିବାର ସୁଯୋଗ ମିଳେ ନାହିଁ ଏବଂ ଡ୍ରାଇଭରର ଆଖି ଲାଗିଯିବାର ଭୟ ରହେ।

ହେଲେ ତୋ ଭାଇନାଙ୍କର ସଜାଗ ନ ରହି ଉପାୟ କାହିଁ? ଚଳନ୍ତା ଗାଡିରେ ମୋତେ ତ ଆଦୌ ନିଦ ହୁଏ ନାହିଁ। ତେଣୁ ମୁଁ ଗପି ଚାଲିଥାଏ। ବାଧ୍ୟରେ ପଡି ସେ ମଧ୍ୟ ଗୋଟାଏ ଦିଇଟା ଉତ୍ତର ଦେଉଥାଆନ୍ତି। ପିଲାମାନେ ଅବଶ୍ୟ ବାଟରେ ଶୋଇ ପଡିଲେ। ବାଟରେ ଦୁଇଥର ରହି ଆମେ ଯେତେବେଳେ ଲସ୍ ଆଞ୍ଜେଲେସ୍ ପହଞ୍ଚିଲୁ ସେତେବେଳେ ପ୍ରାୟ ରାତି ଆଠଟା। ଲସ୍ ଆଞ୍ଜେଲେସ୍‌ରୁ ଆନାହାଇମ୍। ସେଠି ଚନ୍ଦ୍ରଶେଖରଙ୍କ ଘର ଖୋଜି ପହଞ୍ଚୁ ପହଞ୍ଚୁ ରାତି ସାଢେ ନଅ।

ଆମକୁ ଦେଖି ସେମାନେ ଏମିତି ଖୁସି ହେଲେ ଯେମିତିକି ଆମେ ତାଙ୍କର ଅତି ନିକଟ ଆତ୍ମୀୟ। ରାତିରେ ଖାଇବାବେଳେ ଚନ୍ଦ୍ରଶେଖରଙ୍କ ସ୍ତ୍ରୀ ସୁକନ୍ୟା କଥାରେ କଥାରେ କହିଲେ ଯେ ସେମାନେ ଯେଉଁ ଆପାର୍ଟମେଣ୍ଟ କଂପ୍ଲେକ୍ସରେ ରହୁଛନ୍ତି ସେଠାରେ ଆଉ କେହି ଭାରତୀୟ ନାହାନ୍ତି। ନିଜ ଦେଶର ଲୋକଙ୍କୁ ଦେଖିବା ପାଇଁ, ନିଜର ଭାଷା ଶୁଣିବା ପାଇଁ ସେମାନଙ୍କର ଆଖି କାନ ଉତ୍କଣ୍ଠିତ ହୋଇ ରହେ। ପାଖ ପଡୋଶୀରେ ଥିବା ଆମେରିକାନ୍‌ମାନେ ଖୁବ୍ ଭଦ୍ର, ମାର୍ଜିତ, କିନ୍ତୁ ସେମାନେ ନିଜ ନିଜର ଜୀବନ ନେଇ ବ୍ୟସ୍ତ। କେବଳ ଗପି ସମୟ ନଷ୍ଟ କରିବା କଥା ସେମାନେ ଭାବି ପାରନ୍ତି ନାହିଁ। ତୋତେ ଆଗ ଚିଠିରେ ଯାହା ଲେଖିଥିଲି, ତାହାର ଆଉ ଗୋଟିଏ ଉଦାହରଣ ଆନାହାଇମ୍‌ରେ ଦେଖିଲି। ଏଠିକାର ସମାଜ ସତରେ ବଡ ବସ୍ତୁବାଦୀ।

ସେ ଯାହା ହେଉ, ଏତେ ଘଣ୍ଟାଏ ରାସ୍ତା ଡ୍ରାଇଭିଂ କରି ଆସିବା ପରେ ଆମେ ଥକି ଯାଇଥିଲୁ। ବିଛଣା ଛୁଉଁ ଛୁଉଁ ନିଦ ହୋଇଗଲା। ପରଦିନ ସାତଟା

ବେଳକୁ ସୁକନ୍ୟା ଆମମାନଙ୍କୁ ଉଠେଇ ଦେଲେ। ଡ଼ିସ୍‌ନିଲ୍ୟାଣ୍ଡ ସକାଳ ସାଢେ ଆଠଟା ବେଳକୁ ଖୋଲେ। ଠିକ୍ ଖୋଲୁ ଖୋଲୁ ପହଞ୍ଚିଗଲେ ଭିଡ ଆଦୌ ହେବନାହିଁ। ତେଣୁ ସୁବିଧାରେ ପିଲାଙ୍କୁ ନେଇ ଆମେ ବିଭିନ୍ନ ରାଇଡ଼ସ୍ (Rides) ରେ ଯାଇ ପାରିବୁ। ଦିନ ବାରଟା ବେଳକୁ ଭିଡ ଏତେ ବେଶୀ ବଢିଯାଏ ଯେ ଗୋଟିଏ ଗୋଟିଏ ରାଇଡ୍ ପାଇଁ ପ୍ରାୟ ପଇଁଚାଳିଶ ମିନିଟ୍‌ରୁ ଘଣ୍ଟାଏ ଲାଇନ୍ ଦେବାକୁ ହୁଏ।

ଆମେ ଗାଧୋଇ ଜଳଖିଆ ଖାଇ ବାହାରିଯିବା ବେଳକୁ ସୁକନ୍ୟା ମୋ ହାତରେ ଗୋଟିଏ ପ୍ୟାକେଟ୍ ଧରେଇ ଦେଲେ। ମୁଁ ଆଶ୍ଚର୍ଯ୍ୟ ହେଲି। ହସି କରି ସୁକନ୍ୟା କହିଲେ, ''କିଛି ସାଣ୍ଡୱିଚ୍ ଆଉ ବିସ୍କୁଟ୍ ଦେଇଛି। ଡ଼ିସନିଲ୍ୟାଣ୍ଡ ଭିତରେ ଆମ ପସନ୍ଦର ଖାଇବା ସହଜରେ ମିଳେ ନାହିଁ ତ.... ତା' ଛଡା ବହୁତ ବେଶୀ ଦାମ୍।'' ମୋର କହିବା ପାଇଁ ଯେମିତି କିଛି ନ ଥିଲା। ଗୋଟିଏ ଦିନ ଆଗରୁ ସେମାନେ ମତେ ଦେଖି ନ ଥିଲେ କି ଜାଣି ନଥିଲେ, ଅଥଚ କେତେ ସ୍ନେହ ଓ ଆତ୍ମୀୟତା!

ଡ଼ିସ୍‌ନିଲ୍ୟାଣ୍ଡକୁ ରାସ୍ତା ଖୋଜି ପାଇବା ଆଦୌ କଷ୍ଟକର ନ ଥିଲା। ଆନାହାଇମ୍‌ର ଯେଉଁ ପ୍ରଧାନ ହାଇୱେ ଦେଇ ଆମେ ଆସିଥିଲୁ ତା'ର ଗୋଟିଏ ସ୍ଥାନରେ ଡ଼ିସନିଲ୍ୟାଣ୍ଡ ଯିବାର ରାସ୍ତାଟି ବଡ ବଡ ଅକ୍ଷରରେ ଚିହ୍ନଟ କରା ହୋଇଥିଲା। ଆମେ ସେଠାରେ ପହଞ୍ଚିବା ବେଳକୁ ଆଠଟା ଚାଳିଶ। ତଥାପି ଗାଡିର ଲାଇନ୍ ଲାଗିଯାଇଥାଏ। ମୁଁ ଦିଲ୍ଲୀର 'ଅପ୍ପୁ ଘର୍' ଦେଖିଛି, କିନ୍ତୁ ତା' ତୁଳନାରେ ଡିସ୍‌ନିଲ୍ୟାଣ୍ଡ ଅନେକ, ଅନେକ ବଡ। କାର୍ ପାର୍କିଙ୍ଗ୍ ଜାଗାଟି ଦେଖି ଅନୁମାନ କରି ହେଉଥାଏ କେତେ ଲୋକ ଏଠାକୁ ଆସନ୍ତି! ଆମ କାର୍ ଯେଉଁ ପାର୍କିଙ୍ଗ୍ ଏରିଆରେ ରଖିଲୁ ସେ ଜାଗାଟିର ନାଁ ଓ ନମ୍ବର ମୁଁ କାଗଜରେ ଟିପି ନେଲି। ନହେଲେ ହୁଏତ ଫେରିବା ସମୟରେ କାର୍ ଖୋଜି ଖୋଜି ଘଣ୍ଟା ଘଣ୍ଟା ବିତିଯିବ। କାର୍ ପାର୍କଠାରୁ ଡ଼ିସ୍‌ନିଲ୍ୟାଣ୍ଡର ମୁଖ୍ୟ ଗେଟ୍ ପର୍ଯ୍ୟନ୍ତ ଯିବା ପାଇଁ ଟ୍ରାମ୍ ରହିଛି। ବିନା ପଇସାରେ ଏହି ଟ୍ରାମ୍ ଆମକୁ ସେଠି ନେଇ ଛାଡିଦେଲା। କେତେ ଦେଶର ଲୋକ, ଦେହରେ କେତେ ପ୍ରକାରର ପୋଷାକ ପିନ୍ଧି ଚିହ୍ନା, ଅଚିହ୍ନା ଭାଷାରେ କଥା କହୁଥାଆନ୍ତି। ଦେଖିବାକୁ ଖୁବ୍ ଭଲ ଲାଗୁଥାଏ। ଚାରିଆଡେ ଯେମିତି ରଙ୍ଗର ଉତ୍ସବ ଚାଲିଛି। ଡିସ୍‌ନିଲ୍ୟାଣ୍ଡର ପ୍ରବେଶ ଦ୍ୱାରଟି ଗୋଟିଏ ପ୍ରାସାଦର

ଦରଜା ଭଳି ତିଆରି। ଚାରିଆଡେ ବିଭିନ୍ନ ରଙ୍ଗର ଫୁଲ। ପଶୁ ପକ୍ଷୀ ଯାହା ଦେଖି ଅବାକ୍ ଲାଗେ ତାହା ହେଲା ସ୍ଥାନଟିର ପରିଷ୍କାର ପରିଚ୍ଛନ୍ନତା। ଲକ୍ଷ ଲକ୍ଷ ଲୋକ ଦେଖିବାକୁ ଆସୁଛନ୍ତି। କେହି କେହି ଯେ ଆଇସ୍‌କ୍ରିମ୍ କପ୍, ପପ୍ କର୍ଣ୍ଣ ବ୍ୟାଗ୍, ଛିଣ୍ଡା କାଗଜ ଇତ୍ୟାଦି ରାସ୍ତା ଘାଟରେ ପକଉ ନାହାନ୍ତି ତା' ନୁହଁ। କିନ୍ତୁ ଡିସ୍‌ନିଲ୍ୟାଣ୍ଡ ପରିଷ୍କାର କରୁଥିବା କର୍ମଚାରୀମାନେ ସାଙ୍ଗେ ସାଙ୍ଗେ ସବୁ ଓଳେଇ ଉଠେଇ ନେଉଥାଆନ୍ତି। ତା'ଛଡା ରାସ୍ତାର ଅଧିକାଂଶ ସ୍ଥାନରେ ଡଷ୍ଟବିନ୍; ସେଥିପାଇଁ ରାସ୍ତା ଅପରିଷ୍କାର କରିବା କଥା ଚିନ୍ତା କରି ହୁଏ ନାହିଁ।

ପ୍ରଧାନ ଫାଟକ୍ ଦେଇ ଭିତରକୁ ପଶିଲେ ଆଗ ଆଖିରେ ପଡେ ଗୋଟିଏ ଲମ୍ବା ରାସ୍ତା। ଏହାକୁ କହନ୍ତି ୧୮୯୦ ମସିହା ଯୁକ୍ତରାଷ୍ଟ୍ର ଆମେରିକାର ପ୍ରଧାନ ରାସ୍ତା (Main Street, USA of the 1890's) । ଏଇ ରାସ୍ତାର ଦୁଇ କଡରେ କେବଳ ଦୋକାନ। ଟି ସାର୍ଟ, ଟୋପି, ମିକିମାଉସ୍ ହେଆର୍‌ବ୍ୟାଣ୍ଡ, ଖେଳଣାଠାରୁ ଆରମ୍ଭ କରି ପୋର୍ସେଲେନ୍ ଓ ରୂପାର ଜିନିଷ ପର୍ଯ୍ୟନ୍ତ। ଏହା ଛଡା ରହିଛି ମିଠେଇ ଦୋକାନ, ସ୍ନାକ୍ ବାର ଆଉ ରେଷ୍ଟୋରାଁ। ଠିକ୍ ମଝିରେ ଛକଟିଏ ଭଳି ହୋଇଛି। ସେଇଠି ବସି ବ୍ୟାଣ୍ଡ ବଜାଉଥାଆନ୍ତି ଧଳା, ନାଲି ୟୁନିଫର୍ମ ପିନ୍ଧା ଦଳଟି।

ଏଇଠି ମୁଁ ତତେ କହି ରଖେ। ରୂପକଥାର ଚରିତ୍ର ସବୁ ନେଇ ଡ଼ିସ୍‌ନିଲ୍ୟାଣ୍ଡକୁ ଛଅଟି ଭାଗରେ ବିଭକ୍ତ କରାଯାଇଛି। ସେଗୁଡ଼ିକ ହେଲା ଟୁମୋରୋ ଲ୍ୟାଣ୍ଡ (Tomorrow Land), ଫ୍ରଣ୍ଟିଅର ଲ୍ୟାଣ୍ଡ (Frontier Land), ଫ୍ୟାଣ୍ଟାସି ଲ୍ୟାଣ୍ଡ (Fantasy Land), ଆଡ୍‌ଭେଞ୍ଚର୍ ଲ୍ୟାଣ୍ଡ (Adventure Land), କ୍ରିଟର୍ କଣ୍ଟ୍ରି (Critter Courntry) ଏବଂ ନିଉ ଅର୍ଲିନ୍‌ସ୍ ସ୍କୋୟାର (New Orleans Square)। ପ୍ରଧାନ ରାସ୍ତାରୁ ଏଇ ଛଅଟି ସ୍ଥାନକୁ ଯିବା ପାଇଁ ଚାହିଁଲେ ଜଣେ ଚାଲି ଚାଲି ଯାଇପାରିବ ବା ରାସ୍ତାରେ ଯାଉଥିବା ପୁରୁଣାକାଳିଆ ଷ୍ଟ୍ରିଟ୍ କାର୍ (Street Car) ବ୍ୟବହାର କରିପାରିବ ଅଥବା ଗୋଟିଏ କଡକୁ ଥିବା ଷ୍ଟେସନ୍‌ରୁ ମିନି ଟ୍ରେନ୍‌ରେ ଯାଇ ପାରିବ। ଷ୍ଟ୍ରିଟ୍ କାର୍ ବା ମିନି ଟ୍ରେନ୍‌ରେ ପଇସା ପଡେ ନାହିଁ। ଆମେ ଟ୍ରେନ୍‌ରେ ଯିବା ପାଇଁ ଠିକ୍ କଲୁ। ଷ୍ଟେସନ୍ ଆଡକୁ ଯାଉ ଯାଉ ହଠାତ୍ ଯେମିତି ଝଡଟାଏ ବୋହିଗଲା। ଆମ ହାତ ଛାଡି ଦେଇ ରୁମି, ଗିଟି ପାଗଳଙ୍କ ଭଳି ଦୌଡିଗଲେ। "ମିକି ମାଉସ୍!" "ମିକି ମାଉସ୍!" ସାମାନ୍ୟ ଉଚ୍ଚ ଗୋଟିଏ ଜାଗାରେ ମିକି

ମାଉସ୍‌ର ପୋଷାକ ପିନ୍ଧି ଜଣେ ଠିଆ ହୋଇଥାଏ। ତାକୁ ଘେରି ପିଲା, ବଡ ଅନେକ ଲୋକ। ସେ ସମସ୍ତଙ୍କ ସାଙ୍ଗରେ ହାତ ମିଳାଉଥାଏ। ଛୋଟ ପିଲାଙ୍କ କାନ୍ଧରେ ହାତ ପକାଇ ଫଟୋ ପାଇଁ ପୋଜ୍ ନେଉଥାଏ। ରୁମି, ଗିଟି ଠେଲାପେଲା କରି ତା'ର ଦୁଇ କଡରେ ଠିଆ ହୋଇଗଲେ। ଦୁହିଁଙ୍କ ମୁହଁରୁ ହସ ସବୁ ଝରି ଯାଉଥାଏ। କେତେବେଳେ ମିକି ମାଉସ୍‌ର ଗାଲରେ ହାତ ଦେଇ ସେମାନେ ଗେହ୍ଲା କରି ଦେଉଥାଆନ୍ତି ତ କେତେବେଳେ ତା' ପିଠିରେ ହାତ ବୁଲେଇ ଆଣୁଥାଆନ୍ତି। ମୁଁ ଦୌଡି ଯାଇ ଫଟୋ ଉଠେଇ ନେଲି। ମିକି ମାଉସ୍ ଠାରୁ ଟିକିଏ ଛାଡି ଠିଆ ହୋଇଥାଏ ମିନି ମାଉସ୍। ସେଠି ମଧ୍ୟ ସେମିତି ଲୋକ ଭିଡ। କିଛି ସମୟ ସେଠି କଟେଇବା ପରେ ମିକି ମାଉସ୍, ମିନି ମାଉସ୍‌ଙ୍କଠାରୁ ପିଲାଙ୍କୁ ନେଇ ଆସିଲୁ। ଏଥର ଷ୍ଟେସନ୍‌କୁ ଯାଇ ମିନିଟ୍ରେନ୍‌ରେ ପରବର୍ତ୍ତୀ ଷ୍ଟେସନ୍ ନିଉ ଅର୍ଲିନ୍‌ସ୍ ସ୍କୋୟାର୍ ପର୍ଯ୍ୟନ୍ତ ଗଲୁ। ୧୮୫୦ ମସିହା ନିଉ ଅର୍ଲିନ୍‌ସ ସହରର ନକଲ ପ୍ରସ୍ତୁତ ହୋଇଥାଏ ଏଇଠି। ସରୁ ରାସ୍ତାର ଦୁଇ କଡରେ ଦୋକାନ। ଏଠାରେ ଥିବା ବିଭିନ୍ନ ଆକର୍ଷଣ ମଧ୍ୟରେ ମୋତେ ସବୁଠାରୁ ଯାହା ଅଧିକ ଭଲ ଲାଗିଲା ତାହା ହେଉଛି ଭୂତକୋଠୀ (The Haunted Mansion)। ମିଛ ଅଳନ୍ଧୁ ଲଗା, ଅନ୍ଧାରୁଆ କୋଠରୀମାନ ଦେଇ ଆମେ ବସିଥିବା ଗାଡିଟି ଯାଉଥାଏ। କେଉଁଠି ଭୂତମାନେ ରାତି ଖାଇବା ଖାଉଛନ୍ତି ତ କେଉଁଠି ପୁଣି ଯୋଡି ଯୋଡି ହୋଇ ନାଚୁଛନ୍ତି! ଏଇଠି ଅଛନ୍ତି, ପୁଣି ଉଭାନ୍ ହୋଇଯାଉଛନ୍ତି! କେବଳ ମୁଣ୍ଡ ଥିବା ପଥରର ମୂର୍ତ୍ତି ସବୁ ହଠାତ୍ ଯେମିତି ଜୀବନ୍ତ ହୋଇଯାଉଛନ୍ତି ଏବଂ ଗୀତ ଗାଇବାରେ ଲାଗୁଛନ୍ତି। ତୁ ଭାବୁଥିବୁ ଆମେ ଖୁବ୍ ଡରି ଯାଇଥିବୁ। ନା- ଡରିବାର କିଛି ନାହିଁ, କିନ୍ତୁ କେମିତି ଯେ ଏ ସବୁ ତିଆରି କରାହୋଇଛି, ସେକଥା ଭାବି କେବଳ ଆଚମ୍ବିତ ଲାଗିଲା। ନିଉ ଅର୍ଲିନ୍‌ସ୍ ସ୍କୋୟାର୍‌ର କ୍ୟାରିବେଆନ୍ ଜଳଦସ୍ୟୁ (Pirates of Caribbean) ବୋଟ୍ ରାଇଡ୍‌ଟି ମଧ୍ୟ ଅତି ଭଲ। ତା'ପରେ ଆମେ ଗଲୁ କ୍ରିଟର୍ କଣ୍ଟ୍ରିକୁ। ଏଠିକାର ବିଭିନ୍ନ ଆକର୍ଷଣ ମଧ୍ୟରୁ ସବୁଠାରୁ ବେଶୀ ଭିଡ ହୁଏ ସ୍ଲାଶ୍ ମାଉଣ୍ଟେନ୍ (Splash Mountain) ଠାରେ। ଏଠାରେ ଛୋଟ ଛୋଟ ଡଙ୍ଗା ରହିଥାଏ ଯେଉଁଗୁଡିକ କି ସୁଇଚ୍ ଦ୍ୱାରା ନିୟନ୍ତ୍ରିତ। ଏହି ଡଙ୍ଗାଗୁଡିକ ଗୋଟିଏ ପରେ ଗୋଟିଏ ଖୁବ୍ ଦ୍ରୁତ ଗତିରେ ଜଳପ୍ରପାତଟିଏ ଉପରୁ ତଳକୁ ଓହ୍ଲେଇ ଆସେ। ସେତେବେଳେ ଆମ ଅବସ୍ଥା କହିଲେ ନ ସରେ। ହସିବୁ କି କାନ୍ଦିବୁ

ଜାଣି ପାରୁ ନଥାଉ। ଆମ ପାଖରେ ବସିଥିବା ଜଣେ ବ୍ୟକ୍ତି କହିଲେ ଯେ ଏ ସବୁ ହାଇସିଡ୍ ରାଇଡ୍‌ରେ ଗଲାବେଳେ ଯଦି ସାମ୍ନାରେ ଥିବା ରେଲିଙ୍ଗ୍‌କୁ ଜାବୁଡି ଧରିବ ତେବେ ବେଶୀ ଡର ଲାଗିବ। ପ୍ରକୃତରେ ଉପଭୋଗ କରିବାକୁ ଚାହିଁଲେ ହାତ ଦୁଇଟାକୁ ଉପରକୁ ଟେକି (ହ୍ୟାଣ୍ଡସ୍ ଅପ୍ ଭଙ୍ଗୀରେ) ଖୁବ୍ ଜୋର୍‌ରେ ଚିତ୍କାର କରିବାକୁ ହୁଏ।

ଏହି ଭଦ୍ରଲୋକଙ୍କର ଉପଦେଶ ମୁଁ ପରବର୍ତ୍ତୀ ରାଇଡ୍‌ରେ ମାନିଲି। ଫ୍ରଣ୍ଟିଅର୍ ଲ୍ୟାଣ୍ଡର ରନ୍‌ଅଓ୍ୱେ ଟ୍ରେନ୍ (Runaway Train)ରେ ଗଲାବେଳେ ମୁଁ ଦୁଇହାତ ଟେକି ଗଳା ଫଟେଇ ଚିତ୍କାର ଆରମ୍ଭ କରିଦେଲି। ତୁ ହସୁଛୁ ନିଶ୍ଚୟ। ଯଦି ମୁଁ ଏକା ସେଇଭଳି କରିଥାଆନ୍ତି, ତେବେ ଲୋକମାନେ ବୋଧ ହୁଏ 'ହାଁ' ହୋଇ ମୋ ଆଡେ ଚାହିଁଥାନ୍ତେ। କିନ୍ତୁ ବିଭିନ୍ନ ବୟସର ଶହ ଶହ ଲୋକଙ୍କ ଚିତ୍କାର ଭିତରେ ମୋ ପାଟି କୁଆଡେ ମିଶିଗଲା। ରନ୍‌ଅଓ୍ୱେ ଟ୍ରେନ୍‌ରୁ ଓହ୍ଲେଇବା ପରେ ତୋ ଭାଇନାଙ୍କ ମୁହଁ ଦେଖିବା କଥା। ସେ ଏଇ ପ୍ରଥମ ରୋଲର୍ କୋଷ୍ଟର (Roller Coaster) ଚଢିଲେ। ରୁମାଲ୍‌ରେ ମୁହଁ ପୋଛି ସେ କହିଲେ, "ଆଉ ନାହିଁ, ବହୁତ ହୋଇଗଲା।" ହେଲେ ପିଲାମାନେ ତାଙ୍କୁ ଛାଡୁଛନ୍ତି କେଉଁଠି ?

ସେମାନେ ତାଙ୍କୁ ଟାଣି ଟାଣି ଫ୍ୟାଣ୍ଟାସି ଲ୍ୟାଣ୍ଡ (Fantasy Land)କୁ ନେଇ କରି ଗଲେ। ଏଠାରେ ଥିବା ଅଧିକାଂଶ ରାଇଡ୍ ଗପ ବହିର ଚରିତ୍ରମାନଙ୍କୁ ନେଇ ପ୍ରସ୍ତୁତ। ଯେମିତି କି ସ୍ନୋ ହ୍ୱାଇଟ୍ (Snow White), ପିନୋକିଓ (Pinnochio) ଇତ୍ୟାଦି। ଏଇଠି ରହିଛି ସ୍ଲିପିଙ୍ଗ୍ ବିଉଟିର ସୁନ୍ଦର ପ୍ରାସାଦ (Sleeping Beauty's Castle)। ଫାଣ୍ଟାସି ଲ୍ୟାଣ୍ଡରେ ବୁଲୁ ବୁଲୁ ବାରଟା ପାଖାପାଖି ହୋଇଗଲା। ଆମ ପାଖରେ ଥିବା ସେଇ ଦିନର ଡିସନିଲ୍ୟାଣ୍ଡ ସମୟସୂଚୀ ଅନୁସାରେ ବାରଟା ବେଳେ ଡିସନି ପ୍ୟାରେଡ୍ ହେବା କଥା। "ପ୍ୟାରେଡ୍" ନାଁଟା ଶୁଣି ସେମିତି କିଛି ଉତ୍ସାହିତ ଲାଗୁନଥାଏ। କିନ୍ତୁ ଚାଲି ଚାଲି ଗୋଡ ତ ଥକି ଯାଇଥାଏ। କେଉଁଠି ଟିକିଏ ବସିଲେ ଭଲ। ତେଣୁ ପ୍ୟାରେଡ୍ ଯେଉଁ ରାସ୍ତା ଦେଇ ଯିବ ସେଇ ରାସ୍ତା କଡରେ ବସିଲେ କ୍ଷତି କ'ଣ ? ରାସ୍ତା ପାଖରେ ପହଞ୍ଚି ଆମେ ଅବାକ୍ ହୋଇଗଲୁ। ଯୋଗିଷ ପକେଇବାକୁ ଜାଗା ନାହିଁ। ବଡ କଷ୍ଟରେ ଜାଗା କରି ଜାକି ଜୁକି ହୋଇ ବସିଲୁ। ମନରେ ଉଙ୍କି ମାରୁଥାଏ ପ୍ରଶ୍ନଟିଏ- ଏ ଏମିତି କି ପ୍ୟାରେଡ୍ ଯେ ତାକୁ ଦେଖିବାକୁ ଏତେ ଲୋକଭିଡ! ମୁଁ ଶୁଣିଛି

ଯେ ରାତି ନଅଟା ବେଳେ ଡ଼ିସ୍‌ନିଲ୍ୟାଣ୍ଡରେ ଇଲେକ୍‌ଟ୍ରିକ୍ ପ୍ୟାରେଡ୍‌ଟିଏ ହୁଏ ଯାହା କି ଅତୁଳନୀୟ। କିନ୍ତୁ ଏ ଦିନବେଳଟାରେ କି ପ୍ୟାରେଡ୍!

ମିତୁ, କାଗଜ କଲମରେ ସେ ପ୍ୟାରେଡ୍‌ର ବର୍ଣ୍ଣନା ମୁଁ କରିପାରିବି ନାହିଁ। ସମସ୍ତ କାର୍ଯ୍ୟକ୍ରମଟି ଏତେ ସୁନ୍ଦର ଯେ ଜଣେ ଆଖିରେ ନ ଦେଖିଲେ ବିଶ୍ୱାସ କରିବା କଷ୍ଟକର। ସଙ୍ଗୀତର ତାଳେ ତାଳେ ନାଚି ଯାଉଥାଆନ୍ତି ମିକି ମାଉସ୍, ମିନିମାଉସ୍, ଡୋନାଲ୍‌ଡ ଡକ୍, ରେଡ୍ ରୁଷ୍ଟର, ଝାଡୁ, ମକା, ଟମାଟୋ, ଭ୍ୟାକୁମ୍ କ୍ଲିନର ଇତ୍ୟାଦି ପୋଷାକ ପିନ୍ଧିଥିବା ମଣିଷମାନେ। ଏତେ ଗୁଡିଏ ମଣିଷ, କିନ୍ତୁ କି ସୁନ୍ଦର ତାଳମେଳ! କିଏ ଯେମିତି ଚାବି ଦେଇ ଏକା ସାଙ୍ଗରେ ଗୁଡିଏ କଣ୍ଢେଇଙ୍କୁ ଛାଡି ଦେଇଛି। ଆଉ ଗୋଟିଏ ବିଷୟ ହେଲା କାହା ମୁହଁରେ ଥକିବାର ଚିହ୍ନ ନାହିଁ। ଦିପହରର ଧୁ ଧୁ ଖରା, ଲମ୍ବା ରାସ୍ତା- ଅଥଚ ସେମାନଙ୍କର ଓଠରୁ ଝରୁଥାଏ ହସ ଆଉ ଝଲମଲ୍ କରୁଥାଏ ଆଖି।

ଡିସନିଲ୍ୟାଣ୍ଡ ନେଇ ତୋ ଭାଇନାଙ୍କ ମନରେ ଯେଉଁ ସାମାନ୍ୟ କୁଣ୍ଠା ଥିଲା ପ୍ୟାରେଡ୍ ଦେଖିବା ପରେ ସେତିକ ଚାଲିଗଲା। ସେ ମାନିଲେ ଯେ ଏଭଳି ଅପୂର୍ବ ଜିନିଷ ସେ ଆଗରୁ କେବେ ଦେଖି ନାହାନ୍ତି। କେଉଁଠି ଜାଣ ମୁଁ ପଢିଥିଲି ଯେ ଡିସନିଲ୍ୟାଣ୍ଡ ହେଉଛି ପୃଥିବୀର ସବୁଠାରୁ ଆନନ୍ଦମୟ ସ୍ଥାନ। ଡିସ୍‌ନିଲ୍ୟାଣ୍ଡ ଦେଖିବା ପରେ ମୁଁ ଅନୁଭବ କରୁଛି ଯେ ଏକଥା ଏକଦମ୍ ସତ।

ସୁକନ୍ୟା ଦେଇଥିବା ସାଣ୍ଡୱିଚ୍ ଖାଇ କୋକ୍ ପିଇ ଦେବା ପରେ ସବୁତକ କ୍ଳାନ୍ତି ଆମକୁ ଘେରିଗଲା। କିନ୍ତୁ ଏଣେ ଯେ ଡିସ୍‌ନିଲ୍ୟାଣ୍ଡର ସବୁଠାରୁ ଭଲ ଜିନିଷଟି ବାକୀ- ଟୁମୋରୋ ଲ୍ୟାଣ୍ଡ (Tomorrow Land)। ସେତେବେଳକୁ ଖରାର ତୋର୍ ସାଙ୍ଗରେ ଲୋକ ଭିଡ। ଖରା ଓ ଭିଡ ସହିତ ଯୁଦ୍ଧ କରି ଟୁମୋରୋ ଲ୍ୟାଣ୍ଡର ଆକର୍ଷଣ ଗୁଡିକ ଦେଖିବା ପାଇଁ ଆମ ଦେହରେ ଆଉ ଶକ୍ତି ନଥାଏ। ଆମେ ଜାଣି ନଥିଲୁ ଯେ ଟୁମୋରୋ ଲ୍ୟାଣ୍ଡର ଆକର୍ଷଣଗୁଡିକ ସବୁଠାରୁ ଭଲ। ଯଦି ଏକଥା ପ୍ରଥମରୁ ଜଣା ଥାଆନ୍ତା ତେବେ ଡିସ୍‌ନିଲ୍ୟାଣ୍ଡର ଏଇ ଭାଗକୁ ଆମେ ପ୍ରଥମରୁ ଆସିଥାନ୍ତୁ। ସେତେବେଳେ କରିବାର ଆଉ କିଛି ନାହିଁ। ଲମ୍ବା ଲମ୍ବା ଘଣ୍ଟିକିଆ ଧାଡିରେ ଠିଆହୋଇ ଆମେ ତଥାପି ଷ୍ଟାର ଟୁର୍‌ସ (Star tours), ସ୍ପେସ୍ ମାଉଣ୍ଟେନ୍ (Space Mountain) ଓ କ୍ୟାପ୍‌ଟେନ୍ ଇଓ (Captain E.O.) ଦେଖିନେଲୁ। କିନ୍ତୁ ସେଇ ଶେଷ। ଆଉ କୌଣସି ରାଇଡ୍‌ରେ

ଯିବାର ଶକ୍ତି ବା ମନର ଜୋର୍ ଆମ ପାଖରେ ନଥିଲା।

ସେତେବେଳକୁ ସାଢେ ଚାରିଟା। କ୍ଲାନ୍ତି ସାଙ୍ଗକୁ ଭୋକ। ସାଣ୍ଡୱିଚ୍ ହଜମ ହୋଇ ସାରିଥାଏ। ଗୋଟିଏ ରେସ୍ତୋରାଁରେ ଭଲ କରି ଖାଇ ଆମେ ଷ୍ଟ୍ରିଟ୍ କାର୍‌ରେ ବସି ପ୍ରଧାନ ରାସ୍ତାକୁ ଆସିଲୁ। ଇଲେକ୍‌ଟ୍ରିକ୍ ପ୍ୟାରେଡ୍ ହେବାକୁ ଆହୁରି ଦୁଇ ଘଣ୍ଟା ବାକି ଥାଏ; ଅଥଚ ଫୁଟ୍‌ପାଥ୍‌ରେ ଲୋକ ଭିଡ। ବଡ କଷ୍ଟରେ ଆମେ ନିଜ ପାଇଁ ଜାଗା କରି ନେଲୁ। ପିଲାମାନେ ଉଠିଥିଲେ ସେଇ ସକାଳେ। ସାରା ଦିନ ବୁଲି ବୁଲି ଥକି ମଧ୍ୟ ଯାଇଛନ୍ତି। କିନ୍ତୁ ଆଖି ବନ୍ଦ କରିବାକୁ ନାରାଜ, କାଳେ ଅନ୍ୟସବୁ ସରିଯିବ।

କ୍ରମେ ଆଖ ପାଖ ଦୋକାନ, ବେଞ୍ଚ, ବାଲ୍‌କୋନି, ସବୁଠାରେ ମଣିଷ ଭର୍ତ୍ତି ହୋଇଗଲେ। ହଠାତ୍ କାନରେ ବାଜିଲା ପ୍ୟାରେଡ୍‌ର ସଙ୍ଗୀତ। ସେ ସଙ୍ଗୀତର ଲହରୀ ଏତେ ଜୀବନ୍ତ ଯେ କ୍ଲାନ୍ତ ଗୋଡ ଗୁଡିକ ତାଳ ଦେବା ଆରମ୍ଭ କରିଦେଲେ। ଧୀରେ ଧୀରେ ଆଗେଇ ଆସିଲା ପ୍ୟାରେଡ୍‌ଟି। ମିତ୍ର, ଏଭଳି ସୁନ୍ଦର ଦୃଶ୍ୟ ମୁଁ ମୋ ଜୀବନରେ ଆଗରୁ କେବେ ଦେଖିନାହିଁ ବା ପରେ କେବେ ଦେଖିବି ବୋଲି ମନେ ମଧ୍ୟ ହେଉନାହିଁ। ଏ ଏକ ଭିନ୍ନ ଅନୁଭୂତି, ସଂପୂର୍ଣ୍ଣ ଅନନ୍ୟ। ରାସ୍ତାଘାଟ, ଦୋକାନର ଆଲୁଅ ଲିଭି ଯାଇଥାଏ। ଅନ୍ଧାର ରାସ୍ତା ଉପର ଦେଇ ଚାଲି ଆସୁଥାଏ ରଙ୍ଗ ବେରଙ୍ଗୀ ଆଲୁଅରେ ସଜା ପ୍ୟାରେଡ୍। ବିଭିନ୍ନ କାହାଣୀରୁ ଗୋଟିଏ ଗୋଟିଏ ଦୃଶ୍ୟ ନେଇ ତାକୁ ରଙ୍ଗୀନ୍ ଆଲୁଅରେ ସଜୀବ କରି ଦିଆଯାଇଥାଏ। ହାତୀ ଉପରେ ବସି ଦର୍ଶକଙ୍କୁ ସ୍ୱାଗତ କରୁଥିବା ରାଜକୁମାରୀ, ପାଲିଙ୍କିରେ ବସିଥିବା ସିଣ୍ଡେରେଲା, ଛୋଟ ରୂପେଲୀ ଜୋତା ପଟେ ଧରି ଅନ୍ୟ ପଟ ଖୋଜୁଥିବା ରାଜକୁମାର- ଏ ସବୁ ଦର୍ଶକଙ୍କୁ ନେଇ ଯାଉଥିଲା କେଉଁ ଏକ ଭିନ୍ନ ଜଗତକୁ।

ପ୍ୟାରେଡ୍‌ଟି ଆମକୁ ଟପି ଚାଲିଯିବା ପରେ ମଧ୍ୟ ଆମେ ମୋହମୁକ୍ତ ହୋଇ ପାରିଲୁ ନାହିଁ। ଏଭଳି ଅପୂର୍ବ କିଛି ପ୍ରସ୍ତୁତ କରିବା ଯେ ମଣିଷ ପକ୍ଷରେ ସମ୍ଭବପର, ତାହା ବିଶ୍ୱାସ କରି ହେଉ ନ ଥାଏ। ପ୍ୟାରେଡ୍ ପରେ ପରେ ହିଁ ଆରମ୍ଭ ହୋଇଗଲା ଫାୟାରଓ୍ୱାର୍କ ଶୋ (Firework show) । ଗୋଟିଏ ପରେ ଗୋଟିଏ ବାଣ ଆକାଶକୁ ଛଡା ଯାଉଥାଏ। ବିଭିନ୍ନ ରଙ୍ଗର ଆଲୁଅରେ ଆକାଶର ତାରାମାନେ ଲୁଚିଯାଉଥାଆନ୍ତି। ଏହା ଏତେ ସୁନ୍ଦର ହେଲା ଯେ ଶେଷ ହେବା କ୍ଷଣି ଦର୍ଶକମାନଙ୍କର ତାଳିରେ ଡିସ୍‌ନିଲ୍ୟାଣ୍ଡ ଭରିଗଲା।

ସେ ଦିନ ଶନିବାର। ରାତି ବାରଟାଯାଏ ଡିସନିଲ୍ୟାଣ୍ଡ ଖୋଲା ରହିବ। କିନ୍ତୁ ଆମର ଆଉ ରହିବାର ଧୈର୍ଯ୍ୟ ବା ଶକ୍ତି ନ ଥିଲା। ଆମେ ଚନ୍ଦ୍ରଶେଖରଙ୍କ ଘରକୁ ଫେରିଆସିଲୁ। ପରଦିନ ଚନ୍ଦ୍ରଶେଖର ଓ ସୁକନ୍ୟାଙ୍କଠାରୁ ବିଦାୟ ନେଇ ଆମେ ବାହାରିଲୁ ୟୁନିଭର୍ସାଲ୍ ଷ୍ଟୁଡିଓ ଅଭିମୁଖେ। ଅପରାହ୍ଣରେ ସାନ୍ ହୋସେ ଫେରିଯିବା କଥା।

ୟୁନିଭର୍ସାଲ ଷ୍ଟୁଡିଓ ହଲିଉଡ୍‌ରେ। କିନ୍ତୁ ଏହା ଏତେ ବିରାଟ ଯେ ଏହାକୁ ୟୁନିଭର୍ସାଲ ସିଟି କୁହାଯାଏ। ଗୋଟିଏ ସହର ଭିତରେ ଯାହା ଯାହା ଦେଖିବାକୁ ମିଳେ ସେ ସବୁ ଏହି ଷ୍ଟୁଡିଓ ସିଟିରେ ରହିଛି। ଡିସନିଲ୍ୟାଣ୍ଡ ଭଳି ଏଠି ମଧ୍ୟ ପ୍ରବଳ ଲୋକଭିଡ ହୁଏ। ଏଠାରେ ଦେଖିବା ପାଇଁ ଦୁଇ ରକମର ଜିନିଷ ରହିଛି। ଗୋଟିଏ ହେଲା ଟ୍ରାମ୍‌ରେ ଗାଇଡେଡ୍ ଟୁର। ଟ୍ରାମ୍‌ରେ ବସେଇ ଦଳ ଦଳ ଲୋକଙ୍କୁ ବିଭିନ୍ନ ଲୋକପ୍ରିୟ ଛବିର ସେଟ୍ ଦେଖାଇ ନିଅନ୍ତି। ତା’ ଛଡା ସିନେମା ପ୍ରସ୍ତୁତି ପ୍ରଣାଳୀ, ସ୍ପେସିଆଲ୍ ଇଫେକ୍ଟ (Special Effect) ସୃଷ୍ଟି କରିବା ପଦ୍ଧତି- ଏ ସବୁ ମଧ୍ୟ ଦେଖିବାକୁ ମିଳେ। ମୋ ଲେଖା ପଢି ତୁ ହୁଏତ ମନେ କରୁଥିବୁ ଏଇଟା ଯେମିତି ପାଠ ପଢେଇବା ଭଳି କଥା, ମନୋରଞ୍ଜନ କାହିଁ? କିନ୍ତୁ ତା’ ନୁହଁ।

ଟ୍ରାମ୍ ଟୁର୍ ଆରମ୍ଭରେ ଯାହା ହେଲା ସେ କଥା ଆଗ ଲେଖୁଛି। ଆମ ଗାଇଡ୍ ଆମକୁ ନେଇଗଲେ ଗୋଟିଏ ପୁରୁଣା କାଠ ପୋଲ ପାଖକୁ। ତଳେ ନଈଟିଏ ବହିଯାଉଛି। ଗମ୍ଭୀର ଭାବରେ ସେ କହିଲେ ଯେ ଯଦିଓ ଏଇ ପୋଲ ଶହେ ବର୍ଷ ଆଗରୁ ତିଆରି ହୋଇଛି, ତାହା ଏବେ ମଧ୍ୟ ଦୃଢ। ଏହା ଉପର ଦେଇ ଏବେ ମଧ୍ୟ ଗାଡି ଯାଉଛି। ଆମ ଟ୍ରାମ୍‌ଟି ଆଗେଇ ଗଲା ପୋଲ ଉପରେ। ଠିକ୍ ମଝିରେ ପହଞ୍ଚିଛୁ, ହଠାତ୍ ପୋଲରୁ ଦୁଇ ଚାରିଟା କାଠ ଖସିପଡିଲା ଏବଂ ଟଳମଳ ହୋଇଗଲା ଟ୍ରାମଟି। ଏଇ ଯେମିତି ନଈ ଭିତରେ ଗଳିପଡିବ। ଚିତ୍କାର, ଗୋଳମାଳ ଆରମ୍ଭ ହୋଇଗଲା ଟ୍ରାମ୍ ଭିତରେ। ଅଥଚ ଆଶ୍ଚର୍ଯ୍ୟ, ଗାଇଡ୍ ଜଣକ ଜୋର୍‌ରେ ହସିବାକୁ ଲାଗିଲେ। ଏବଂ କହିଲେ ଯେ ପୋଲଟି ଶହେ ବର୍ଷର ପୁରୁଣା ନୁହଁ। ମାତ୍ର କୋଡିଏ ବର୍ଷ ଆଗରୁ ତିଆରି। କାଠ ଗୁଡିକ ଏଭଳି ରଙ୍ଗ କରାଯାଇଛି ଯେପରିକି ମନେ ହେବ ଖୁବ୍ ପୁରୁଣା। ପୋଲରୁ ଯେଉଁ କାଠ ଖସିଲା ତାହା ହାଇଡ୍ରୋଲିକ୍ ପାଓ୍ୱାର୍ ଦ୍ୱାରା ନିୟନ୍ତ୍ରିତ। ଆମ

ଆଖି ସାମ୍ନାରେ ଖସିଯାଇଥିବା କାଠଗୁଡିକ ଉପରକୁ ଉଠି ଆସିଲା ଏବଂ ପୁଣି ଥରେ ପୋଲଟି ଆଗ ଭଳି ହୋଇଗଲା। ସିନେମାମାନଙ୍କରେ ପୋଲ ଭାଙ୍ଗିଯିବା, ନିଆଁ ଲାଗିଯିବା ଇତ୍ୟାଦି ଦୃଶ୍ୟ ଦେଖିବା ବେଳେ ମୁଁ ଭାବୁଥିଲି ଯେ ପ୍ରଥମେ ସେଟ୍ ତିଆରି କରି ତା'ପରେ ହୁଏତ ତାକୁ ଭାଙ୍ଗି ଦିଅନ୍ତି ବା ନିଆଁ ଲଗେଇଦିଅନ୍ତି। କିନ୍ତୁ ସେଥିରେ ଖର୍ଚ୍ଚ ବହୁତ। ଆଉ ଯଦି କୌଣସି କାରଣରୁ ଠିକ୍ ଭାଙ୍ଗିବା ବେଳେ ବା ନିଆଁ ଲାଗିବା ବେଳେ ଫଟୋ ଉଠାଯାଇ ନ ପାରିଲା, ତେବେ କି ବିରାଟ କ୍ଷତି! କିନ୍ତୁ ବିଜ୍ଞାନର ସାହାଯ୍ୟରେ ଚଳଚ୍ଚିତ୍ର ଶିଳ୍ପ ଯେ ଏତେ ବେଶୀ ଆଗେଇ ଗଲାଣି ତା' ମୋର ଧାରଣାର ବାହାରେ ଥିଲା। ପୋଲଟିଏ ଭାଙ୍ଗି ଯାଇ ପୁଣି ଯୋଡି ହୋଇଯିବା, ନିଆଁ ଜଳି ମଧ୍ୟ ବାସ୍ତବରେ କିଛି ପୋଡି ନ ଯିବା ନିଶ୍ଚିତ ଭାବରେ ଆଶ୍ଚର୍ଯ୍ୟ ହେବା ଭଳି ଘଟଣା।

ଟ୍ରାମ୍‌ରେ ବୁଲୁବୁଲୁ ଆମେ ପହଞ୍ଚିଗଲୁ ଗୋଟିଏ ପୁରୁଣା ସହରରେ। ହଁ, ସହରଟିଏ ତ। ଚଉଡା ରାସ୍ତାର ଦୁଇ ପାଖରେ ଘର, ହୋଟେଲ, ବାର୍, ପୋଲିସ୍ ଷ୍ଟେସନ୍, ପୋଷ୍ଟ ଅଫିସ୍ ସବୁ ରହିଛି। କିନ୍ତୁ ଲୋକ ନାହାନ୍ତି। କାରଣ ପୁରାଟା ହିଁ ଗୋଟିଏ ସେଟ୍। ସହରର ସେଟ୍‌ରୁ ଆମ ଟ୍ରାମ୍ ଆଗେଇ ଗଲା ବିରାଟ ଗ୍ୟାରେଜ୍ ଭଳି ଦିଶୁଥିବା କୋଠା ଆଡକୁ। ତା' ଭିତରେ ପଶିବା କ୍ଷଣି କବାଟ ବନ୍ଦ ହୋଇଗଲା ଏବଂ ଆରମ୍ଭ ହୋଇଗଲା ଭୂମିକମ୍ପ। ଟ୍ରାମ୍‌ଟା ଯେଭଳି ଭାବରେ ଦୋହଲୁଥାଏ ମନେ ହେଉଥାଏ ଏଇ ମାତ୍ର ଆମେ ଟ୍ରାମ୍‌ରୁ ଗଳିପଡିବୁ। ସିଟ୍ ସାମ୍ନାରେ ଥିବା ରେଲିଙ୍ଗ୍‌କୁ ଜାବୁଡି ଧରିଥାଉ ଆମେ। ଆମ ଟ୍ରାମ୍‌ଠାରୁ ଅଳ୍ପ ଦୂରରେ ପୋଲଟିଏ ଉପରେ ଟ୍ରେନ୍‌ଲାଇନ୍‌ଟିଏ ଯାଇଥାଏ। ହଠାତ୍ ଧସ୍ ଧସ୍ ହୋଇ ଟ୍ରେନ୍‌ଟିଏ ଚାଲି ଆସିଲା ଏବଂ ହଲୁଥିବା ପୋଲ ଉପରୁ ତଳକୁ ଗଳିପଡିଲା।

ଆମେ ସବୁ ଚୁପ୍। କାହା ପାଟିରୁ କଥା ବାହାରୁ ନ ଥାଏ। ଧୀରେ ଧୀରେ ଭୂମିକମ୍ପ ବନ୍ଦ ହେଲା। ଗାଇଡ୍ ଜଣକ ଆଉଥରେ ହସିବାକୁ ଆରମ୍ଭ କଲେ। ତାଙ୍କ କଥାରୁ ଆମେ ଜାଣିଲୁ ଯେ ଭୂମିକମ୍ପ ତଥା ଟ୍ରେନ୍ ଗଳିପଡିବା ସବୁ ସୁଇଚ୍ ଦ୍ୱାରା ନିୟନ୍ତ୍ରିତ। ଏବଂ ସବୁଠାରୁ ଆଶ୍ଚର୍ଯ୍ୟ କଥା ଆମ ଟ୍ରାମ୍‌ଟି ଆଦୌ ହଲଚଲ ହୋଇନାହିଁ। ଅଥଚ ଆମେ ବୋକାଙ୍କ ଭଳି ରେଲିଙ୍ଗ୍ ଜାବୁଡି ଧରି ବସିଥିଲୁ।

ଏଇ ଭଳି ଆଉ କେତୋଟି କୋଠରୀ ମଧ୍ୟକୁ ଟ୍ରାମ୍‌ଟି ଆମକୁ ନେଇଗଲା। କେଉଁଠି ହେଲିକପ୍ଟରଟିରେ ନିଆଁ ଲାଗିଗଲା ତ କେଉଁଠି କିଙ୍ଗ କଙ୍ଗ୍ ହାତ ହଲାଇ ଗର୍ଜନ କରି ଆମକୁ ଡରେଇଲା। ନିଆଁଟି ସତ ନିଆଁ, କିନ୍ତୁ ହେଲିକପ୍ଟରଟି ଏଭଳି ଧାତୁରେ ତିଆରି ଯେ ନିଆଁରେ ପୋଡି ଯାଏ ନାହିଁ। ସେଇପରି ଦାନବ କିଙ୍ଗ୍ କଙ୍ଗ୍‌ର ପ୍ରତ୍ୟେକ କାର୍ଯ୍ୟକଳାପ ସୁଇଚ୍ ଦ୍ୱାରା ନିୟନ୍ତ୍ରିତ।

ଏହାପରେ ଆମେ ଗଲୁ ଗୋଟିଏ ବଡ ପୋଖରୀକୁ ଯେଉଁଠାରେ କି ମିଛ ଢେଉ ସୃଷ୍ଟି କରାଯାଏ ଏବଂ କ୍ୟାମେରାରେ ଫଟୋ ଉଠାଇଲେ ମନେ ହୁଏ ଯେପରି ସମୁଦ୍ରର ଢେଉ। ଏଇଠି ଲୋକପ୍ରିୟ ଛବି "Jaws"ର ସୁଟିଙ୍ଗ ହୋଇଛି। ଏଇ ଛବିରେ ଯେଉଁ ମଣିଷ ଓ ଶାର୍କର ଲଢେଇ ଦେଖାଯାଇଥିଲା, ତାହା ଜୀବନ୍ତ ଶାର୍କ ସହିତ ନୁହଁ। ବିଦ୍ୟୁତ୍ ଦ୍ୱାରା ନିୟନ୍ତ୍ରିତ ଏହି ମିଛ ଶାର୍କଟି ଦ୍ରୁତ ଗତିରେ ପାଣି ତଳେ ଆସି ଆମ ଟ୍ରାମ୍ ଉପରକୁ ଏମିତି ଜୋରରେ ଡେଇଁଲା ଯେ ଭୟରେ ସମସ୍ତେ ଚିତ୍କାର କରିଉଠିଲେ। ମନେ ହେଉଥାଏ ଯେମିତି ଜୀବନ୍ତ ଶାର୍କଟିଏ।

ସେଇଭଳି ବନ୍ୟାର ସୁଟିଙ୍ଗ କିପରି ହୁଏ ତାହା ମଧ୍ୟ ଦେଖିଲୁ। ଶୁଖିଲା ପଡିଆ। ହଠାତ୍ କେଉଁଠୁ ପାଣି ମାଡି ଆସିଲା। କି ପ୍ରବଳ ବେଗ! ପାଣିର ବେଗରେ ପଡିଆ ପାଖରେ ଥିବା ଦୁଇଟି ଗଛ ଉପୁଡିଗଲା। ଧୀରେ ଧୀରେ ପାଣି ଆସିବା ବନ୍ଦ ହୋଇଗଲା। ଏବଂ ଆଶ୍ଚର୍ଯ୍ୟର କଥା, ଅଭିନୟ କରୁଥିବା ମଣିଷଟିଏ ଝାଡି ଝୁଡି ଉଠିଲା ଭଳି ଗଛ ଦୁଇଟି ପୁଣି ଉଠି ଠିଆ ହୋଇଗଲେ। ପୋଲର କାଠ ଭଳି ଗଛ ଦୁଇଟି ମଧ୍ୟ ହାଇଡ୍ରୋଲିକ୍ ପାୱାର୍ ଦ୍ୱାରା ନିୟନ୍ତ୍ରିତ। ଏମିତିଭଳି ଦଶହଜାର ଗ୍ୟାଲନ୍ ପାଣି ଏକା ସାଙ୍ଗରେ ଛଡାଯାଇ ବନ୍ୟାର ଭ୍ରାନ୍ତି ସୃଷ୍ଟି କରାଯାଏ।

ଟ୍ରାମ୍ ଟୁର୍ ପରେ ବାକୀ ଯାହା ରହେ, ସେସବୁ ନିଜେ ବୁଲି ବୁଲି ଦେଖିବାକୁ ହୁଏ। ଏସବୁ ମଧ୍ୟରୁ ପ୍ରଧାନ ହେଉଛି କେତୋଟି ଶୋ (Show)। ଏହି ଶୋ ଦେଖିଲେ ଜଣେ ଅନୁମାନ କରିପାରିବ ଚଳଚ୍ଚିତ୍ର ଶିଳ୍ପ କେତେଦୂର ଆଗେଇ ଗଲାଣି। ଆମେ ଯେଉଁ ଶୋ ଗୁଡିକ ଦେଖି ପାରିଲୁ ସେଗୁଡିକ ହେଲା କୋନାନ୍ (Conan), ମାୟାମି ଭାଇସ୍ ଶୋ (Miami Vice Show), ଆନିମାଲ୍ ଆକ୍ଟ (Animal Act), ଷ୍ଟାର୍ ଟ୍ରେକ୍ (Star Trek) ଏବଂ ରାୟଟ୍ ଶୋ

(Riot Show)। ସିନେମାରେ ଯେଉଁ ଆଚମ୍ବିତ ଘଟଣା ସବୁ ଦେଖାଯାଏ ଯଥା ଯାଦୁକରର ଯାଦୁ ବଳରେ ନିଆଁ ଜଳି ଉଠିବା, ରାକ୍ଷସର ଆଖିରୁ ଜ୍ୟୋତି ବାହାରି ସାମ୍ନାରେ ଥିବା ସମସ୍ତ ଜିନିଷ ପୋଡିଯିବା- ଏ ସବୁ ଆମ ସାମ୍ନାରେ ଷ୍ଟେଜ୍ ଉପରେ କୋନାନ୍ ଶୋ ମାଧ୍ୟମରେ କରାଗଲା। ସେଇଭଳି ନାୟକ ଓ ଖଳନାୟକର ଦଳ ମଧ୍ୟରେ ଯେଉଁ ଫାଇଟିଙ୍ଗ୍ ଲାଗେ ତା'ର ଗୋଟିଏ ନମୁନା ମାୟାମି ଭାଇସ୍ ଶୋରେ ଦେଖିବାକୁ ମିଳେ। ବନ୍ଧୁକ ଗୁଳିର ଆଘାତରେ ଉଚ୍ଚ କୋଠା ଉପରୁ ପାଣି ଭିତରକୁ ଗଳି ପଡିବା, ନାୟିକାକୁ ହରଣ କରି ନେଇଯିବା, ପୁଣି ମୋଟର ବୋଟ୍‌ରେ ଶତ୍ରୁର ଆଖିରୁ ଖସି ଚାଲିଯିବା- ଏସବୁ ଆମ ଆଖି ସାମ୍ନାରେ ଅଭିନୀତ ହୋଇଗଲା। ଷ୍ଟାର୍ ଟ୍ରେକ୍ ଶୋର ପ୍ରଧାନ ଉଦ୍ଦେଶ୍ୟ ହେଉଛି ଏଇ ଜନପ୍ରିୟ ଟେଲିଭିଜନ୍ ଧାରାବାହିକରେ ଯେଉଁ ସବୁ ହାଇଟେକ୍ (High-tech) ଯନ୍ତ୍ର ବ୍ୟବହାର କରାଯାଇଥିଲା ସେ ସବୁ ନିକଟରୁ ଦର୍ଶକଙ୍କୁ ଦେଖାଇବା।

ଶୋ ଗୁଡିକ ଦେଖିସାରିବା ବେଳକୁ ପ୍ରାୟ ଚାରିଟା। ଫେରିବାକୁ ହେବ। ଫେରିବାର ଆଦୌ ଇଚ୍ଛା ନ ଥାଏ, କିନ୍ତୁ ବେଶୀ ଡେରି କଲେ ଏଣେ ଘରେ ପହଞ୍ଚୁ ପହଞ୍ଚୁ ଡେରି ହୋଇଯିବ। ଏକଥା ବୁଝିଲେ ମଧ୍ୟ ମୋ ମନ ଖରାପ ହୋଇଗଲା। ପିଲାମାନେ ମଧ୍ୟ ମୁହଁ ଶୁଖାଇଲେ। ଆଉ ଗୋଟାଏ ଦିନ ଏଠି ରହି ପାରିଥିଲେ କେତେ ଭଲ ହୋଇଥାଆନ୍ତା! ତା' ଯେତେବେଳେ ହୋଇ ପାରିବ ନାହିଁ ଅଯଥା ଆଉ ଡେରି କରି ଲାଭ ବା କ'ଣ ?

ଆମେ ଗାଡି ନେଇ ୟୁନିଭର୍ସାଲ୍ ଷ୍ଟୁଡିଓରୁ ବାହାରି ଆସିଲୁ। ରାସ୍ତାରେ ଯାଉ ଯାଉ ମୋର ହଠାତ୍ କାହିଁକି ମନେ ହେଲା ଯେ ଆମେ ଭୁଲ୍ ବାଟରେ ଆସୁଛୁ। ଆମେରିକାର ରାସ୍ତାରେ ଟ୍ରାଫିକ୍ ଏତେ ବେଶୀ ନିୟନ୍ତ୍ରିତ ଯେ ହଠାତ୍ ରାସ୍ତା କଡରେ ଗାଡି ଅଟକେଇ ରହି ହେବ ନାହିଁ କିମ୍ବା ରାସ୍ତା ଭୁଲ୍ ବା ଠିକ୍ ସେ ବିଷୟରେ କାହାକୁ ପଚାରି ହେବ ନାହିଁ। (ଯଦିବା ଗାଡି ଅଟକେଇ ହେଉ ଥାଆନ୍ତା, ରାସ୍ତାରେ ତ ଲୋକ ନାହାନ୍ତି; ପଚାରିବୁ କାହାକୁ ?) ତେଣୁ ଭୁଲ୍ ରାସ୍ତାରେ ଚାଲି ଆସିଲେ ସେଇ ଭୁଲ୍ ସୁଧାରିବାକୁ ପ୍ରାୟ ଗୁଡାଏ ସମୟ ତଥା ପେଟ୍ରୋଲ ଖର୍ଚ୍ଚ ହୋଇଯାଏ। ମୋର ବ୍ୟସ୍ତତା ଦେଖି ତୋ ଭାଇନା ହସିକରି କହିଲେ ଯେ ଏଇ ରାସ୍ତାଟା ମଧ୍ୟ ସାନ୍ ହୋସେ ଯାଇଛି। ଯେଉଁ

ରାସ୍ତାରେ ଆସିଥିଲୁ ସେଇ ରାସ୍ତାରେ ନ ଫେରି ଏ ନୂଆ ରାସ୍ତାରେ ଏବେ ଫେରାଯାଉ। ମୁଁ ଟିକିଏ ମନେ ମନେ ବିରକ୍ତ ହେଲି। ଜଣା ଶୁଣା ରାସ୍ତାରେ ଫେରିଥିଲେ କ'ଣ ଏବେ କ୍ଷତି ହୋଇଯାଇ ଥାଆନ୍ତା! ପିଲାମାନଙ୍କୁ ନେଇ ଏ ଆଡ୍‌ଭେଞ୍ଚର !!

ସହର ଭିତରୁ ଆମେ ବାହାରି ଆସିଲୁ। ମିତୁ, ତା'ପରେ ଯେଉଁ ଦୃଶ୍ୟ ଆମେ ଦେଖିଲୁ, ଯଦି ମୁଁ କଳାକାର ହୋଇଥାଆନ୍ତି ତେବେ ଚିତ୍ର ଆଙ୍କି ତୋ ପାଖକୁ ପଠେଇ ଦେଇଥାଆନ୍ତି। ରାସ୍ତା ଲମ୍ବିଯାଇଛି ଏବଂ ରାସ୍ତାର ବାଁ କଡରେ ମୁଣ୍ଡ ପିଟୁଛି ପ୍ରଶାନ୍ତ ମହାସାଗରର ଢେଉ। ଡାହାଣ ପାଖରେ ପାହାଡ। ଆମେ ଆନାହାଇମ୍‌କୁ ଆସିବା ବେଳେ ଯେଉଁ ହାଇୱେ ୫ ଦେଇ ଆସିଥିଲୁ ତା' ତୁଳନାରେ ସମୁଦ୍ରକୂଳରେ ଯାଇଥିବା ଏଇ ରାସ୍ତାଟି ଅଧିକ ବୁଲାଣିଆ ସତ; କିନ୍ତୁ କି ଅପରୂପ! ପଶ୍ଚିମକୁ ଢଳି ଆସିଥିବା ସୂର୍ଯ୍ୟଙ୍କର ସୁନେଲୀ କିରଣରେ ଚକ୍‌ଚକ୍ କରିଉଠୁଥାଏ ନୀଳ ସମୁଦ୍ରଟି। ଆଉ ଦୂରରୁ ଜାହାଜ ଗୁଡିକ ମନେ ହେଉଥାଏ ସତେ ଯେମିତି ଖେଳଣାଗୁଡିଏ। ହଲିଉଡ୍ ଓ ଡ଼ିସ୍‌ନିଲ୍ୟାଣ୍ଡରେ ଆଉ ଗୋଟାଏ ଦିନ ଅଧିକା ରହି ନ ପାରିବାର ଆମର ସବୁ ଦୁଃଖ ଧୋଇ ହୋଇଗଲା।

ସେଦିନ ଘରେ ପହଞ୍ଚିଲୁ ରାତି ପ୍ରାୟ ଗୋଟାଏ ପାଖାପାଖିରେ। ଶରୀର ଏତେ କ୍ଲାନ୍ତ ହୋଇଥିଲେ ବି ମନ ଏମିତି ସତେଜ ଥାଏ ଯେ ମୁଁ ସହଜରେ ଶୋଇ ପାରିଲି ନାହିଁ। ଡିସନିଲ୍ୟାଣ୍ଡ, ୟୁନିଭର୍ସାଲ୍ ଷ୍ଟୁଡିଓ ଦେଖି ଫେରିବାର ଆଜିକୁ ପ୍ରାୟ ସାତ ଦିନ ହୋଇଗଲା, କିନ୍ତୁ ଏବେ ମଧ୍ୟ ମୋ ମନ ସେଇମିତି ହାଲୁକା ହୋଇ ରହିଛି- ବିଶେଷ କରି ସମୁଦ୍ର କୂଳେ କୂଳେ ଫେରିବାର ଆନନ୍ଦ ଏବେ ମଧ୍ୟ ମତେ ଘେରି କରି ରହିଛି।

ମୁଁ ଉଠେଇଥିବା ଫଟୋଗୁଡିକ ପ୍ରିଣ୍ଟ୍ କରିବା ପାଇଁ ଦେଇଛି। ପ୍ରିଣ୍ଟ୍ ହୋଇ ଆସିଲେ ତୋ ପାଖକୁ ନିଶ୍ଚୟ ପଠାଇବି। ଖୁବ୍ ଶୀଘ୍ର ମୁଁ ତୋତେ ଆଉ ଗୋଟିଏ ଚିଠି ଦେବି ଏବଂ ତୁ ଯାହା ଯାହା ପଚାରିଛୁ ସବୁ ବୁଝେଇ ଲେଖିବି।

ଆଜି ତେବେ ଏତିକି। ତୁ ଚିଠି ଦେବାରେ ଡେରି ଆଦୌ କରିବୁ ନାହିଁ। ରହୁଛି।

ଇତି

ତୋର 'ନାନୀ'

କୁପରଟିନୋ
ଜୁଲାଇ ୫, ୧୯୯୧

ସ୍ନେହର ମିତୁ,

ତୋର ଅସଂଖ୍ୟ ପ୍ରଶ୍ନର ଉତ୍ତର ପୂର୍ବ ଚିଠିରେ ଦେଇ ପାରିଲି ନାହିଁ। ଆଜି ସେଥିପାଇଁ ସବୁ କାମ ଛାଡି କାଗଜ କଲମ ଧରି ବସିଛି। କାଲିଠାରୁ ଏଠି ପାଗ ମେଘୁଆ ଥିଲା। ସକାଳୁ ଘଡଘଡି ସହ ବର୍ଷା ଆରମ୍ଭ ହୋଇଯାଇଛି। ସବୁଦିନ ଭଳି କବାଟ ଖୋଲି ମୁଁ ଯେତେବେଳେ ଖବରକାଗଜ ନେବାକୁ ବାହାରକୁ ଆସିଲି, ଦେଖିଲି ଏଠିକାର ଅଧିକାଂଶ ଲୋକ ବାରଣ୍ଡା ଓ ବାଲ୍‌କୋନିରେ ଠିଆ ହୋଇ ବର୍ଷା ଦେଖୁଛନ୍ତି। ମୋ ପଡୋଶୀ ଜିନ୍ ମତେ କହିଲେ, "Isn't it wonderful?" ବର୍ଷା ତ ବର୍ଷା। ଏଥିରେ ଏମିତି ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ମୋର ଅନ୍ୟ ଭାରତୀୟ ପଡୋଶୀ ଅଙ୍କୁର କହିଲା ଯେ ଗତ ପାଞ୍ଚବର୍ଷ ଧରି କ୍ୟାଲିଫୋର୍ଣ୍ଣିଆରେ ଭଲ ବର୍ଷା ହୋଇନାହିଁ। ମରୁଡି ପଡିଛି। ତେଣୁ ବର୍ଷା ଦେଖି ସମସ୍ତେ ଖୁସି।

'ମରୁଡି' ଶବ୍ଦଟି ଶୁଣି ମୋତେ ଭାରି ଆଶ୍ଚର୍ଯ୍ୟ ଲାଗିଲା। ମରୁଡି କହିଲେ ସାଧାରଣତଃ ଆମେ ଯାହା ବୁଝିଥାଉ, ତା'ର ତ ଏଠି କୌଣସି ଲକ୍ଷଣ ଭି ନାହିଁ। ଚାରିଆଡେ ସବୁଜିମା, ଅଧିକାଂଶ ଘର, ଆପାର୍ଟମେଣ୍ଟରେ ସୁଇମିଙ୍ଗ ପୁଲ୍। ସେସବୁର ପାଣି ନିୟମିତ ବଦଳା ହେଉଛି। ବଗିଚା, ଲନ୍‌ମାନଙ୍କରେ ପାଣି

ଦିଆଯାଉଛି। ତେବେ ଏଠି କି ମରୁଡି? ଅଙ୍କୁର ମତେ ବୁଝାଇଲା ଯେ ବର୍ଷା ନ ହେବାରୁ ଯେତେ ପାଣି ଗଚ୍ଛିତ ହୋଇ ରହିବା କଥା, କ୍ୟାଲିଫୋର୍ଣ୍ଣିଆରେ ତା'ଠାରୁ କମ୍ ପାଣି ରହୁଛି। କିନ୍ତୁ ଏ ଦେଶରେ ତ ସାମର୍ଥ୍ୟର ଅଭାବ ନାହିଁ। ତେଣୁ ଆଖ ପାଖ ପ୍ରଦେଶରୁ ପାଣି ଆଣି କ୍ୟାଲିଫୋର୍ଣ୍ଣିଆରେ ପାଣିର ଅସୁବିଧାକୁ ଅନେକ ପରିମାଣରେ ଘୁଞ୍ଚେଇ ଦିଆଯାଇଛି।

ସେ ଯାହା ହେଉ, ବର୍ଷା ଯୋଗୁଁ ଏଠି ବେଶ୍ ଥଣ୍ଡା ପଡି ଯାଇଛି। ଏଠିକାର ପାଗ ଏଇମିତି। ହୁଏତ ସକାଳୁ ଏତେ ବେଶୀ ଶୀତ କରିବ ଯେ ସ୍ୱେଟର ନ ପିନ୍ଧି ଉପାୟ ନାହିଁ। ପୁଣି ଦେଖିବା ବେଳକୁ ଘଣ୍ଟାଏ, ଦୁଇଘଣ୍ଟା ଭିତରେ ଏମିତି ଗରମ ଆରମ୍ଭ ହୋଇଯିବ ଯେ ସ୍ୱେଟର୍ କଥା ତ ଦୂରେ ଥାଉ, ମୋଟା ଲୁଗାପଟା ପିନ୍ଧିବାକୁ ଇଚ୍ଛା ହେବ ନାହିଁ। କିନ୍ତୁ ତୁ ତ ଜାଣିଛୁ, ମୋତେ ଟିକିଏ ବେଶୀ ଶୀତ। ସେଇଥିପାଇଁ ରେଜେଇ ଭିତରେ ପଶି ତତେ ଚିଠି ଲେଖୁଛି। ଭାବୁଛି ତୋର କେଉଁ ପ୍ରଶ୍ନର ଉତ୍ତର ପ୍ରଥମେ ଦେବି। ପ୍ରଥମ ପ୍ରଶ୍ନରୁ ଆରମ୍ଭ କରେ। ଏଠିକାର ଟେଲିଭିଜନ୍ ବିଷୟରେ ପଚାରିଛୁ। ତତେ ତ ଆଗ ଚିଠିରେ ଲେଖିଥିଲି, ଏଠିକାର ଟେଲିଭିଜନ ଓ ଭାରତର ଟେଲିଭିଜନ୍ ପ୍ରୋଗ୍ରାମ ଭିତରେ ଆକାଶ ପାତାଳ ପ୍ରଭେଦ। ପ୍ରଥମତଃ ଏଠି ଅସଂଖ୍ୟ ଚ୍ୟାନେଲ୍। ଅଞ୍ଚଳ ଅନୁସାରେ ଭିନ୍ନ ଭିନ୍ନ ଚ୍ୟାନେଲ୍‌ରେ ଭିନ୍ନ ଭିନ୍ନ କାର୍ଯ୍ୟକ୍ରମ ଆସେ। ତେବେ ମୁଁ ଆମ ଟେଲିଭିଜନ୍ କଥା କହେ। ଟେଲିଭିଜନ୍ ସେଟ୍‌ଟି ଯେଉଁଦିନ ନୂଆ ଆସିଲା ମୁଁ ଦେଖିଲି ଯେ ଦଶଟି ଚ୍ୟାନେଲ୍ (ଯାହାକୁ ଏଠି କହନ୍ତି basic channels)ର ପ୍ରୋଗ୍ରାମ ଆସୁଛି। ଏହାଛଡା ଜଣେ ଯଦି ଅଧିକା ଚ୍ୟାନେଲ୍‌ର ପ୍ରୋଗ୍ରାମ ଦେଖିବାକୁ ଚାହିଁବ ତେବେ ନିଜ ପସନ୍ଦର କେବଲ୍ କମ୍ପାନୀକୁ (cable company) ଭଡା ଦେଇ ଅନ୍ୟ କେତୋଟି ଚ୍ୟାନେଲ୍‌ର ପ୍ରୋଗ୍ରାମ ଦେଖି ପାରିବ। ଆମେ ଯେଉଁ ଆପାର୍ଟମେଣ୍ଟରେ ଘର ନେଇଛୁ, ସେଠିକାର ଗୋଟିଏ ସୁବିଧା ହେଲା 'ୟୁନାଇଟେଡ୍ ଆର୍ଟିଷ୍ଟ କେବଲ୍ କଂପାନୀ'ର କେତୋଟି ଚ୍ୟାନେଲ୍ ଟେଲିଭିଜନ୍‌ରେ ଦେଖିବାକୁ ପାଉଛୁ। ସେଥିପାଇଁ ଅଧିକା ଭଡା ଦେବାର କୌଣସି ଆବଶ୍ୟକତା ନାହିଁ। ଫଳରେ ଦଶଟି ବେଶିକ୍ ଚ୍ୟାନେଲ୍ ଛଡା ପ୍ରାୟ ୩୦ଟି ଚ୍ୟାନେଲ୍‌ର ପ୍ରୋଗ୍ରାମ ଆମେ ଦେଖି ପାରୁଛୁ। ସବୁ ଚ୍ୟାନେଲ୍‌ରେ ପ୍ରୋଗ୍ରାମ ଚବିଶ ଘଣ୍ଟା ଚାଲିଥାଏ। ଏହାଭିତରୁ କେତୋଟି ସିନେମା ଚ୍ୟାନେଲ୍। ଅର୍ଥାତ୍ ପ୍ରାୟ ସବୁବେଳେ

ଗୋଟିଏ ପରେ ଗୋଟିଏ ସିନେମା ଚାଲିଥାଏ। ବେଶିକ୍ ଚ୍ୟାନେଲ୍ ମାନଙ୍କରେ ଅବଶ୍ୟ ସବୁ ରକମର କାର୍ଯ୍ୟକ୍ରମ ମିଶାମିଶି ହୋଇ ଆସେ। ପିଲାଙ୍କ ପାଇଁ କାର୍ଟୁନ, ସମ୍ବାଦ, ବଡମାନଙ୍କ ପାଇଁ ବିଭିନ୍ନ ରକମର କାର୍ଯ୍ୟକ୍ରମ, ସିନେମା, ଡ୍ରାମା, ସିରିଆଲ- ଏସବୁ ନିର୍ଦ୍ଧାରିତ ସମୟାନୁସାରେ ଜଣେ ଦେଖିପାରିବ। ପିଲାମାନଙ୍କ ପାଇଁ କେବଳ ଗୋଟିଏ ଚ୍ୟାନେଲ୍ ରହିଛି। ସେଇ ଚ୍ୟାନେଲ୍‌ରେ ଆସୁଥିବା ସମସ୍ତ କାର୍ଯ୍ୟକ୍ରମ ବିଭିନ୍ନ ବୟସର ପିଲାମାନଙ୍କ ପାଇଁ ଉଦ୍ଦିଷ୍ଟ। ଏହାଛଡା ତିନୋଟି ଚ୍ୟାନେଲ୍ ଅଛି ଯେଉଁଥିରେ କି ବର୍ତ୍ତମାନ ସିନେମା ହଲ୍‌ରେ ମୁକ୍ତି ପାଉଥିବା ନୂଆ ଛବି ଗୁଡିକ ଆସେ। ଏଥିପାଇଁ କିନ୍ତୁ ସିନେମା ପାଇଁ ନିର୍ଦ୍ଧାରିତ ଭଡା ଦେବାକୁ ପଡିବ। ଏହାକୁ କହନ୍ତି "pay per view"। ସିନେମା ବ୍ୟତୀତ ଏଇ ଚ୍ୟାନେଲ୍‌ରେ ଲୋକପ୍ରିୟ ଖେଳ ମଧ୍ୟ ଦେଖିବାକୁ ମିଳେ (ଯେଉଁ ଖେଳ ଦେଖିବା ପାଇଁ ଟିକେଟ୍ ମୂଲ୍ୟ ବହୁତ ବେଶୀ)। ଏଇ ତ କିଛି ଦିନ ତଳେ ମାଇକ୍ ଟାଇସନ୍ (Mike Tyson) ର ମୁଷ୍ଟିଯୁଦ୍ଧ ଦେଖାଯିବ ବୋଲି ଖୁବ୍ ଜୋର ବିଜ୍ଞାପନ ଚାଲିଥିଲା।

ତୁ ହୁଏତ ଭାବୁଥିବୁ ଏଠି ଆମେ ସବୁ କାମ ଛାଡି ଦେଇ କେବଳ ଟେଲିଭିଜନ୍ ସାମ୍ନାରେ ବସୁଥିବୁ। କିନ୍ତୁ ଆମେରିକା ଆସିବା ଆଗରୁ ଆମର ଚିହ୍ନାଜଣା ଅନେକ ଲୋକ ଆମେରିକାର ଟେଲିଭିଜନ୍ ବିଷୟରେ ଏତେ ବେଶୀ ଭୟ ଦେଖାଇ ଦେଉଥିଲେ ଯେ ବେଶୀ ସମୟ ଟେଲିଭିଜନ୍ ଖୋଲିବାକୁ ସାହସ ହୁଏ ନାହିଁ। ସେମାନେ କହିଥିଲେ ଯେ ଆମେରିକାର ଟେଲିଭିଜନ୍ ଗୋଟିଏ ନିଶା ଭଳି। ଥରେ ସେ ନିଶା ଘାରିଗଲେ ସେ ଘେରରୁ ନିଜକୁ ମୁକ୍ତ କରିବା କଷ୍ଟ। ସମୟ ତ ନଷ୍ଟ ହେବ, ପୁଣି ପିଲାଙ୍କ ଉପରେ କୁପ୍ରଭାବ ବହୁତ ପଡିବ। ବେଶୀ ଟେଲିଭିଜନ୍ ଦେଖିବା ଦ୍ୱାରା ଆଖି ଉପରେ ଜୋର ପଡେ। ତା' ଛଡା ପିଲାମାନେ ଅନ୍ୟ ପିଲାଙ୍କ ସାଙ୍ଗରେ ମିଶିବା, ଖେଳିବା ଅପେକ୍ଷା ଟେଲିଭିଜନ୍ ଦେଖିବାକୁ ଅଧିକ ପସନ୍ଦ କରନ୍ତି। ସେମାନଙ୍କର ପଢାପଢି ମଧ୍ୟ ଠିକ୍ ଭାବରେ ହୋଇପାରେ ନାହିଁ। ଆମର ଜଣେ ବନ୍ଧୁ ଯିଏ କି ଆମେରିକାରେ କିଛି ବର୍ଷ କଟେଇ ଭାରତକୁ ଫେରିଆସିଥିଲେ କହିଥିଲେ ଯେ ଆମେରିକାରେ ପିଲାମାନେ ଦିନକୁ ଦଶଘଣ୍ଟା, ବାର ଘଣ୍ଟା ଟେଲିଭିଜନ୍ ଦେଖନ୍ତି। ଅଧିକାଂଶ ଘରେ, କିଏ ଦେଖନ୍ତୁ ବା ନ ଦେଖନ୍ତୁ, ସବୁବେଳେ ଟେଲିଭିଜନଟି ଚାଲୁଥାଏ। ମୁଁ ଭାବିଥିଲି

ସେ ବୋଧହୁଏ ଅତିରଞ୍ଜିତ କରି ଏକଥା ସବୁ କହୁଛନ୍ତି। କିନ୍ତୁ ଏଠି ଆସି ଦେଖୁଛି ଯେ ତାଙ୍କର ସବୁ କଥା ସତ। ପିଲାମାନେ ସ୍କୁଲ୍‌ରୁ ଫେରି ଟେଲିଭିଜନ୍ ଖୋଲି ବସିଯାଉଛନ୍ତି। ମା, ବାପାମାନେ କାମରୁ ଫେରି ଆଗ ଟେଲିଭିଜନ୍‌ଟି ଖୋଲି ଦେଇ ତା'ପରେ ହାତ ମୁହଁ ଧୋଇବାକୁ ଯାଉଛନ୍ତି। ଏଇ ସବୁ ମିଶାମିଶି ହୋଇ ମୋ ମନ ଉପରେ ଏମିତି ଗୋଟିଏ ବଡ ଭୟ ବସିଯାଇଛି ଯେ ଟେଲିଭିଜନ୍‌ଟି ବେଶୀ ସମୟ ଖୋଲି ରଖିବାକୁ ସାହସ ହେଉ ନାହିଁ।

ଏଠିକାର ରବିବାର ସମ୍ବାଦ ପତ୍ରରେ 'ଟି.ଭି ଗାଇଡ୍' ବୋଲି ପ୍ରାୟ ୪ଶୀ ପୃଷ୍ଠାର ପତ୍ରିକାଟିଏ ଆସିଥାଏ। ଏଥିରେ ପ୍ରତି ଚ୍ୟାନେଲ୍‌ର ପ୍ରତ୍ୟେକ ଦିନର କାର୍ଯ୍ୟକ୍ରମ ଛପା ହୋଇଥାଏ। କେବଳ ସେତିକି ନୁହଁ, ସବୁ ସିନେମା ବିଷୟରେ ଗୋଟିଏ ଧାଡି, ଦୁଇଟି ଧାଡି ବର୍ଣ୍ଣନା କରାଯାଇ କେଉଁଟା 'ଅତି ଭଲ', 'ଭଲ', 'ଚଳନୀୟ', 'ମନ୍ଦ' ସେ କଥା ମଧ୍ୟ ସୂଚିତ ହୋଇଥାଏ। ଏଇଥିରୁ ବାଛି ମୁଁ କେବେ କେମିତି ଗୋଟିଏ, ଦୁଇଟା ସିନେମା ଦେଖେ। ତେବେ ମୋ ମତରେ ଏଠିକାର ସବୁଠାରୁ ଭଲ ଚ୍ୟାନେଲ୍ ହେଉଛି "CNN"। ଏଇଟା ଯଦିଓ ପ୍ରଧାନତଃ ନିଉଜ୍ ଚ୍ୟାନେଲ୍, ଏହାର ଅଧିକାଂଶ ପ୍ରୋଗ୍ରାମ ଏତେ ସୁନ୍ଦର ଭାବରେ ପ୍ରସ୍ତୁତ ଯେ ଦେଖିବାକୁ ଭାରି ଭଲ ଲାଗେ। ଏଇଠି ତତେ ଗୋଟିଏ ଉଦାହରଣ ଦିଏ। ତାମିଲ୍‌ନାଡୁରେ ବୋମା ବିସ୍ଫୋରଣରେ ଯେତେବେଳେ ରାଜୀବ ଗାନ୍ଧୀଙ୍କର ମୃତ୍ୟୁ ହୋଇଗଲା, ସେତେବେଳେ ଆମେ ମାତ୍ର କେଇ ଘଣ୍ଟା ପରେ CNN ର'World News' କାର୍ଯ୍ୟକ୍ରମରେ ସମସ୍ତ ଘଟଣାର ବିସ୍ତୃତ ବିବରଣୀ ଦେଖିବାକୁ ପାଇଲୁ। ଅଥଚ ଭାରତରେ ସେତେବେଳେ ଅନେକେ ଜାଣି ମଧ୍ୟ ନ ଥିଲେ ଯେ ଏଇଭଳି ଗୋଟିଏ ଘଟଣା ଘଟି ଯାଇଛି। କେବଳ ସେତିକି ନୁହଁ, ଅଳ୍ପ କେତେ ସମୟ ମଧ୍ୟରେ ନେହେରୁ ଓ ଗାନ୍ଧୀ ପରିବାରଟି ଉପରେ ସୁନ୍ଦର ଡକୁମେଣ୍ଟାରୀଟିଏ ମଧ୍ୟ ପ୍ରସାରିତ ହେଲା। ଗଲଫ୍ ଯୁଦ୍ଧ ସମୟରେ ମୁଁ CNN ସମ୍ବାଦର କେତେକାଂଶ ଭାରତରେ ଦେଖିଥିଲି ଏବଂ ମତେ ବହୁତ ଭଲ ଲାଗିଥିଲା। ଏଠି CNN ର ଅନ୍ୟାନ୍ୟ କାର୍ଯ୍ୟକ୍ରମ ଦେଖିବା ପରେ ସେଇ ଭଲ ଲାଗିବାଟା ଆହୁରି ବେଶୀ ବଢି ଯାଇଛି।

CNN ଛଡା ମତେ ଯେଉଁ ଚ୍ୟାନେଲ୍‌ଟି ଭଲ ଲାଗେ ସେଇଟି ହେଲା AMC (American Movie Classics)। ଏଥିରେ ପ୍ରସାରିତ ହେଉଥିବା ଅଧିକାଂଶ

ସିନେମା ଉଚ୍ଚକୋଟୀର। କଳା ଓ ଧଳାରେ ପୁରୁଣା ଛବି। କିନ୍ତୁ ଆଧୁନିକ ଛବି ଭଳି ହିଂସା ନାହିଁ। ସିନେମାଗୁଡ଼ିକର କାହାଣୀ ସୁନ୍ଦର। ଅଭିନୟ ଆହୁରି ସୁନ୍ଦର। କେବେ କେମିତି ସୁବିଧା ପାଇଲେ ମୁଁ ଏଇ ଚ୍ୟାନେଲ୍ ଖୋଲିଥାଏ।

ତୁ ହୁଏତ ଭାବୁଥିବୁ ମୁଁ ସବୁଦିନ ଅଧିକାଂଶ ସମୟ ଟେଲିଭିଜନ୍ ସାମ୍ନାରେ ନଟେଇ ଦେଉଛି। କିନ୍ତୁ ତା' ନୁହଁ। ସେ କଥା ସମ୍ଭବ ବା କେମିତି ? ଦିନବେଳେ ପିଲାମାନେ ଯେତେବେଳେ ସ୍କୁଲ୍ ଚାଲି ଯାଉଥିଲେ ଓ ମୁଁ ଘରେ ଏକା ରହୁଥିଲି ଟେଲିଭିଜନ୍ ଦେଖିବା ଅପେକ୍ଷା ବହି ପଢ଼ିବାକୁ ମତେ ବେଶୀ ଭଲ ଲାଗୁଥିଲା। ସେମାନେ ସ୍କୁଲ୍‌ରୁ ଫେରିବା ପରେ ମୋର ଟେଲିଭିଜନ୍ ସାମ୍ନାରେ ବସିବାର ପ୍ରଶ୍ନ କେଉଁଠୁ ଉଠୁଛି ? ଏଇଟା ନିଜେ ସିଗାରେଟ୍ ପିଇ ଅନ୍ୟମାନଙ୍କୁ ସିଗାରେଟ୍ ନ ପିଇବା ପାଇଁ ଉପଦେଶ ଦେବା ଭଳି କଥା ହୋଇ ନ ଥାଆନ୍ତା କି ? ଏବେ ତ ସେମାନଙ୍କର ଛୁଟୀ ଚାଲିଛି। ସେଥିପାଇଁ ସେମାନେ କାର୍ଟୁନ୍ ଦେଖିବାକୁ ବେଳେ ବେଳେ ଜିଦି କରନ୍ତି। ବାଧରେ ପଡି ମୁଁ ସେମାନଙ୍କୁ ଦିନକୁ ଘଣ୍ଟାଏ, ଦେଢ଼ ଘଣ୍ଟା କାର୍ଟୁନ୍ ଦେଖିବାକୁ ଦେଉଛି। ସେମାନେ ତ ଛୋଟ, ସାରାଦିନ ଯେତେବେଳେ ଟେଲିଭିଜନ୍‌ରେ ବଢ଼ିଆ ବଢ଼ିଆ କାର୍ଟୁନ୍ ଆସୁଛି, ସେମାନଙ୍କର ସେସବୁ ଦେଖିବାକୁ ମନ ହେବାଟା ଅସ୍ୱାଭାବିକ ଆଉ କ'ଣ ?

ଏଠିକା ଟେଲିଭିଜନ୍‌ରେ ବିଜ୍ଞାପନ ବହୁତ ବେଶୀ। ସିନେମା ହେଉ ବା ସମ୍ବାଦ, ପ୍ରତି ପନ୍ଦର ମିନିଟ୍‌ର କାର୍ଯ୍ୟକ୍ରମ ପରେ କେଇ ମିନିଟ୍‌ର ବିଜ୍ଞାପନ ନିଶ୍ଚୟ ଆସିବ। ଏ ଦେଶରେ ଲୋକମାନଙ୍କର ଜିନିଷ କିଣିବାର ଶକ୍ତି (Purchasing Power) ବହୁତ ବେଶୀ। ତା'ଛଡ଼ା ନିଜ ଜିନିଷକୁ ଜନପ୍ରିୟ କରାଇବା ପାଇଁ କମ୍ପାନୀମାନଙ୍କ ଭିତରେ ତୁମୁଳ ପ୍ରତିଯୋଗିତା। ସେଥିପାଇଁ ଏତେ ବେଶୀ ବିଜ୍ଞାପନ। ଆମ ଦେଶରେ ଟେଲିଭିଜନ ବିଜ୍ଞାପନମାନଙ୍କରେ ସାଧାରଣତଃ ସାବୁନ, ଟୁଥ୍‌ପେଷ୍ଟ, ସୁଟିଙ୍ଗ, ଶାଢ଼ୀ, ବ୍ୟାଟେରୀ, ମଟର ସାଇକେଲ୍, ସ୍କୁଟର୍, କାର୍, ଏଇଭଳି କେତେକ ଜିନିଷର ବିଜ୍ଞାପନ ଦେଖିବାକୁ ମିଳେ। କିନ୍ତୁ ଏଠି ଟେଲିଭିଜନ୍‌ରେ କର୍ନଫ୍ଲେକ୍‌ସ, ପାଉଁରୁଟୀ, ଫଳରସ ଠାରୁ ଆରମ୍ଭ କରି ବିଲେଇ, କୁକୁରଙ୍କର ଖାଦ୍ୟ (pet food) ପର୍ଯ୍ୟନ୍ତ ସବୁର ବିଜ୍ଞାପନ ଦେଖିବାକୁ ମିଳେ। ଯେଉଁ ବିଜ୍ଞାପନଟି ଦେଖି ମୁଁ ପ୍ରଥମେ ଅବାକ୍ ହୋଇଗଲି ସେଇଟା ହେଲା 'କଦଳୀ'ର ବିଜ୍ଞାପନ। ଟେଲିଭିଜନ୍‌ରେ ଯେ କଦଳୀ ଭଳି ଗୋଟିଏ ସାଧାରଣ ଫଳର

ବିଜ୍ଞାପନ ଦେଖିବାକୁ ମିଳିବ, ତାହା ମୁଁ ଅନ୍ତତଃ ଭାବି ପାରି ନଥିଲି। ଏଠି ବିଭିନ୍ନ କଂପାନୀ ଦ୍ୱାରା ଡିପାର୍ଟମେଣ୍ଟାଲ୍ ଷ୍ଟୋରମାନଙ୍କୁ ଫଳ, ପନିପରିବା ଇତ୍ୟାଦି ଯୋଗାଇ ଦିଆ ଯାଇଥାଏ। ସେଇଥିପାଇଁ ବୋଧହୁଏ ବିଜ୍ଞାପନ ଦେବାର ଆବଶ୍ୟକତା ସେମାନେ ଅନୁଭବ କରନ୍ତି। ପ୍ରଥମ ଥର ମୁଁ ଯେଉଁଦିନ ଡିପାର୍ଟମେଣ୍ଟାଲ୍ ଷ୍ଟୋର୍‌ରୁ କଦଳୀ କିଣିଲି, ମତେ ଭାରି ମଜା ଲାଗିଲା। କାରଣ ପ୍ରତ୍ୟେକଟି କଦଳୀ ଉପରେ ଛୋଟ କାଗଜଟିଏ ଲଗା ହୋଇଥିଲା- "Chiquita Banana"। ତା' ତଳେ "Take me to School"।

ମୁଁ ଭାବୁଛି ତୋର ପ୍ରଥମ ପ୍ରଶ୍ନର ଉତ୍ତର ତୁ ଠିକ୍ ଠିକ୍ ପାଇଯାଇଛୁ। ଏଥର ତୋ 'ପ୍ରଶ୍ନ ପତ୍ର'ର ଦ୍ୱିତୀୟ ପ୍ରଶ୍ନକୁ ଆସୁଛି। ତୁ ମୋର ପଢାପଢି ବିଷୟରେ ପଚାରିଛୁ। ତୁ ତ ଜାଣିଛୁ ଭାରତରେ ଥିବାବେଳେ ମୁଁ ନିୟମିତ ଭାବରେ ବହି କିଣୁଥିଲି। ଏଠିକୁ ଆସି ଦେଖିଲି ଯେ ବହି ଗୁଡିକର ଦାମ୍ ଏତେ ବେଶୀ, ମୋ ପକ୍ଷରେ କିଣିକରି ପଢିବା ସମ୍ଭବ ନୁହଁ। ଆମ ଆପାର୍ଟମେଣ୍ଟ କଂପ୍ଲେକ୍ସକୁ ପ୍ରାୟ ଲାଗିକରି ଲାଇବ୍ରେରୀଟିଏ ରହିଛି। ମୁଁ ଦିନେ, ଯାଇ ବୁଝିଲି ଯେ ଲାଇବ୍ରେରୀର ସଦସ୍ୟ ହେବା ଖୁବ୍ ସହଜ। ସେଥିପାଇଁ ପଇସା ପଡେ ନାହିଁ ବା କିଛି ଜମା ରଖିବାକୁ ହୁଏ ନାହିଁ। ଘରଭଡା ରସିଦ୍ ଦେଖାଇଲେ ହିଁ ଯଥେଷ୍ଟ। ସେଇଥିରୁ ଜଣା ପଡିଯାଏ ଯେ ଜଣେ ସେଇ ଅଞ୍ଚଳର ବାସିନ୍ଦା। ମୋ ପାଖରେ ଘର ଭଡା ରସିଦ୍ ଥିଲା। ଦଶ ମିନିଟ୍ ଭିତରେ ଆମ ଚାରିଜଣଙ୍କର ଚାରୋଟି ଲାଇବ୍ରେରୀ କାର୍ଡ ହୋଇଗଲା। ଲାଇବ୍ରେରୀଟିର ତଳ ମହଲାଟି କେବଳ ପିଲାଙ୍କ ପାଇଁ। ସେଇଠି ରହିଛି ବିଭିନ୍ନ ବୟସର ପିଲାଙ୍କ ପାଇଁ ଅସଂଖ୍ୟ ବହି, ପତ୍ରିକା, ଏନ୍‌ସାଇକ୍ଲୋପେଡିଆ (Encyclopedia), ଅଡିଓ ଓ ଭିଡିଓ କ୍ୟାସେଟ୍ ଏବଂ ରେକର୍ଡ। ତା' ଉପର ମହଲାଟିରେ ରହିଛି ଗଳ୍ପ, ଉପନ୍ୟାସ ବ୍ୟତୀତ ଅନ୍ୟ ସବୁ ବିଷୟରେ ବହି, ରେକର୍ଡ, କ୍ୟାସେଟ ଇତ୍ୟାଦି। ସବୁଠାରୁ ଉପର ମହଲାଟି କେବଳ ଗଳ୍ପ, ଉପନ୍ୟାସ ବହିରେ ଭରା। ପ୍ରଥମ ଦିନ ମୁଁ ଯେମିତି ପାଗଳ ହୋଇଗଲି। ମୁଁ ଯେଉଁ ବହି ସବୁ ବହୁତ ଦିନ ଧରି ଖୋଜି ଆସୁଛି ସେସବୁ ଏଠି ରହିଛି। କେଉଁଟା ନେବି ଆଉ କେଉଁଟା ଛାଡିବି। ମୁଁ ଲାଇବ୍ରେରିଆନ୍‌ଙ୍କୁ ଯାଇ ପଚାରିଲି ଯେ ଥରକରେ ମୁଁ କେତେଟା ବହି ନେଇ ପାରେ। ସେ ମତେ ଏମିତି ଚାହିଁଲେ ଯେମିତିକି ମୁଁ ଅନ୍ୟ କେଉଁ ଗ୍ରହରୁ ଆସିଛି। ତା'

ପରେ କହିଲେ, "ତୁମେ ଯେତେ ଇଚ୍ଛା ସେତେ ବହି ନେଇ ପାର, କିନ୍ତୁ କେବଳ ତିନି ସପ୍ତାହ ପାଇଁ।" ସେଦିନ ଲାଇବ୍ରେରୀରୁ ଫେରିବାବେଳେ ଚାରିଜଣଯାକ ଗଦାଏ ଗଦାଏ ବହି ଧରି ଫେରିଲୁ।

କିନ୍ତୁ ସେଇ ପ୍ରଥମ ଥର ପରେ ଗୋଟିଏ ବେଶ୍ ମଜା ଘଟଣା ଘଟିଲା ଯାହା ପରେ ମୁଁ ଚାରିଟା କାର୍ଡ ବ୍ୟବହାର କରିବା ବନ୍ଦ କରେଇ ଦେଲି। ଘଟଣାଟି ଘଟିଲା ଏଇମିତି। ପିଲାମାନେ ତ ଗଦା ଗଦା ବହି ଆଣି ଗଦେଇ ଦେଲେ। ତା'ପରେ ମୁଁ ଦେଖିଲି ଖଟ ତଳୁ, ଗଦି, ତକିଆ ତଳୁ, ସୋଫା ଉପରୁ, କୁଶନ ପଛରୁ, ଆଲମାରୀ ଭିତରୁ କେବଳ ଲାଇବ୍ରେରୀ ବହି ହିଁ ବାହାରୁଛି। ସବୁତକ ବହି ଫେରାଇ ସାରିବା ପରେ ମଧ୍ୟ ମୁଁ ନିଶ୍ଚିନ୍ତ ହୋଇ ପାରିଲି ନାହିଁ। ଘର ଭିତରର କେଉଁ କଣରେ ଲାଇବ୍ରେରୀ ବହିଟିଏ ରହି ଯାଇନି ତ ?

ଦିନେ ପିଲାମାନେ ସ୍କୁଲ ଚାଲିଯିବା ପରେ ମୁଁ ଚାରିଟା ଯାକ କାର୍ଡ ନେଇ ଲାଇବ୍ରେରୀ ଗଲି। କାଉଣ୍ଟରରେ ବସିଥିବା ମହିଳାଙ୍କୁ କାର୍ଡତକ ଦେଇ କହିଲି, "ଆପଣ କମ୍ପ୍ୟୁଟରରେ ଟିକିଏ ଚେକ୍ କରି ଦେଖନ୍ତୁ ତ କାର୍ଡ ଗୁଡିକରେ କୌଣସି ବହି ଇସ୍ୟୁ ହୋଇଛି କି ନାହିଁ।" ସେ ଭଦ୍ର ମହିଳା କେବଳ ମୋ କାର୍ଡଟି ଉଠାଇଲେ ଏବଂ କହିଲେ ଯେ ମୋ କାର୍ଡ ଛଡା ଆଉ କାହା କାର୍ଡ ସେ ଦେଖିବେ ନାହିଁ। କାରଣ ଅନ୍ୟମାନେ କି ବହି ନେଇଛନ୍ତି, କେତେଟା ବହି ନେଇଛନ୍ତି ଏସବୁ ସେମାନଙ୍କର ବ୍ୟକ୍ତିଗତ ବ୍ୟାପାର (ସେ ନିଜର ସ୍ୱାମୀ, ପିଲା ହୁଅନ୍ତୁ ପଛକେ)। ଏ ସବୁ ପର୍ସନାଲ୍ ଇନ୍‌ଫର୍ମେସନ୍ ସେ ମତେ ଦେବେ ନାହିଁ। ଏ ସଂକ୍ରାନ୍ତରେ ଗୋଟିଏ ଛପା ହୋଇଥିବା କାଗଜ ସେ ମତେ ଧରେଇ ଦେଲେ। ସେଥିରେ ଲେଖାଥିଲା ଯେ ପିଲାମାନେ ବହି ଇସ୍ୟୁ କରିବା ଆଗରୁ ଅଭିଭାବକମାନେ ସେମାନଙ୍କୁ ଉପଦେଶ ଦେଇପାରନ୍ତି ବା ସାହାଯ୍ୟ କରିପାରନ୍ତି। କିନ୍ତୁ ଥରେ ବହି ଇସ୍ୟୁ ହୋଇଯିବା ପରେ ସେ ସଂକ୍ରାନ୍ତରେ କୌଣସି ସୂଚନା ଲାଇବ୍ରେରୀ ତରଫରୁ ଅଭିଭାବକଙ୍କୁ ଦିଆଯିବ ନାହିଁ। ମୁଁ ହସିବି କି କାନ୍ଦିବି ଜାଣି ପାରିଲି ନାହିଁ।

ଯାହେଉ, ସେଦିନ ସଂଧ୍ୟାବେଳେ ପିଲାମାନଙ୍କୁ ନେଇ ଆଉ ଥରେ ଲାଇବ୍ରେରୀ ଗଲି ଏବଂ ଜାଣିଲି ଯେ ଘରେ କୌଣସି ଲାଇବ୍ରେରୀ ବହି ରହି ଯାଇନାହିଁ। ହେଲେ ସେଦିନ ବଡ ଶିକ୍ଷା ହୋଇଗଲା। ତା' ପରଠାରୁ ମୁଁ ମୋ କାର୍ଡ

ଛଡ଼ା ଅନ୍ୟ ତିନୋଟି କାର୍ଡ ବ୍ୟବହାର କରିବା ବନ୍ଦ କରି ଦେଇଛି। ପିଲାମାନେ ନିଜ ପସନ୍ଦର ବହି ନେଇ ଆସନ୍ତି। ମୁଁ ସବୁତକ ମୋ କାର୍ଡରେ ଇସ୍ୟୁ କରି ଆଣେ। ଏଠି ତ ଗୋଟିଏ କାର୍ଡରେ ଯେତେ ଇଚ୍ଛା ସେତେ ବହି ନେଇ ହେବ, ତେଣୁ ଅସୁବିଧା କିଛି ନାହିଁ।

ବହି ନ କିଣି ମଧ୍ୟ ଏଠି ମୋ ବହି ପଢ଼ା ନିଶାରେ କୌଣସି ବ୍ୟାଘାତ ସୃଷ୍ଟି ହୋଇପାରିନାହିଁ। ବରଂ ବହି ପଢ଼ା ଆଉ ଟିକିଏ ବଢ଼ି ଯାଇଛି।

ତୁ ଏଠିକାର ଭାରତୀୟମାନଙ୍କ ବିଷୟରେ ପଚାରିଛୁ। ଆମେରିକାର ଅନ୍ୟ ପ୍ରଦେଶମାନଙ୍କ କଥା କହି ପାରିବି ନାହିଁ, କିନ୍ତୁ କ୍ୟାଲିଫୋର୍ଣ୍ଣିଆରେ ବହୁତ ଭାରତୀୟ। ସ୍କୁଲ, ଦୋକାନ ବଜାର ଯେଉଁଠିକୁ ମୁଁ ଯାଏ ସେଠି ପ୍ରାୟ ଆମ ଦେଶର ଲୋକ ଦେଖିବାକୁ ପାଏ। ଆମ ଆପାର୍ଟମେଣ୍ଟ କଂପ୍ଲେକ୍ସରେ ଛଅଟି ଭାରତୀୟ ପରିବାର ରହୁଛନ୍ତି। ରୁମି, ରିଟିଙ୍କ ସ୍କୁଲ୍‌ରେ ଭାରତୀୟ ପିଲାଙ୍କ ସଂଖ୍ୟା ନିହାତି କମ୍ ନୁହଁ। ଏଠିକାର କେତେକ ଭାରତୀୟଙ୍କ ସହିତ ଆମର ଆଗରୁ ଚିହ୍ନାପରିଚୟ ଥିଲା ଓ ଅନେକଙ୍କ ସହିତ ଏଇଠି ଜଣାଶୁଣା ହେଲାଣି। ଯେଉଁ ଜିନିଷଟି ମତେ ଭାରି ଭଲ ଲାଗୁଛି ସେଇଟା ହେଲା ସେମାନଙ୍କ ଭିତରେ ରହିଥିବା ମନମେଳ। ନିଜ ଦେଶଠାରୁ ଦୂରରେ ରହିଲେ ବୋଧହୁଏ ଏଇଭଳି ହୁଏ। ସୁବିଧା ଅସୁବିଧାରେ ସାହାଯ୍ୟ କରିବା, ମଝିରେ ମଝିରେ ଏକାଠି ହେବା, ଗୀତ ନାଚର କାର୍ଯ୍ୟକ୍ରମ କରିବା- ଏସବୁ ଏଠି ମୁଁ ଦେଖୁଛି। କିଛି ଦିନ ଆଗରୁ ମୁଁ ଫୋନ୍‌ରେ ମୋର ଗୋଟିଏ ସାଙ୍ଗର ବଡ ଭଉଣୀ ସହିତ କଥା କହୁଥିଲି। (ସେ ଲସ୍ ଆଞ୍ଜେଲେସ୍‌ରେ ରହନ୍ତି)। ସେ କହିଲେ ଯେ ଆମେରିକାରେ ରହୁଥିବା ଓଡିଆମାନଙ୍କର ଗୋଟିଏ ଆସୋସିଏସନ୍ ଅଛି। ବର୍ଷକୁ ଥରେ ଏଇ ଆସୋସିଏସନ୍‌ର କନ୍‌ଭେନ୍‌ସନ ହୁଏ। ଗତବର୍ଷ ଏଇ କନ୍‌ଭେନ୍‌ସନ୍ କ୍ୟାଲିଫୋର୍ଣ୍ଣିଆରେ ହୋଇଥିଲା। ଏଥରକ ହେଉଛି ଚିକାଗୋରେ। ଆଜି ହିଁ ଆରମ୍ଭ ହୋଇଥିବ। ମୋର ଖୁବ୍ ଇଚ୍ଛା ଥିଲା ଯିବାକୁ। କିନ୍ତୁ କାହିଁ କ୍ୟାଲିଫୋର୍ଣ୍ଣିଆ ଆଉ କାହିଁ ଚିକାଗୋ!

ଆମେ ରହୁଥିବା ଅଞ୍ଚଳରେ ପ୍ରାୟ ଶହେରୁ ଅଧିକ ଓଡିଆ। କିନ୍ତୁ ଏପର୍ଯ୍ୟନ୍ତ କେବଳ ଗୋଟିଏ ପରିବାର ସହିତ ଆମର ଚିହ୍ନା ପରିଚୟ ହୋଇଛି। ସେମାନେ କଟକର ଲୋକ। ଜଣେ ଭାରତୀୟ ସାଙ୍ଗଙ୍କ ଘରେ ସେମାନଙ୍କ ସହିତ ଦେଖା ହେଲା। ମିତୁ, ବାହାର ଦେଶରେ ଆଉ ଜଣେ ମଣିଷ ମୁହଁରୁ ଓଡିଆ ଶୁଣି

ମନେହେଲା କିଏ ଯେମିତି କାନରେ ଅମୃତ ଢାଳି ଦେଉଛି। ଦେଖା ହେବାର ଗୋଟିଏ ଘଣ୍ଟା କେବଳ "ତୁମେ ଅମୁକକୁ ଚିହ୍ନିଛ ? ସେ ମୋ ସାଙ୍ଗରେ ପଢୁଥିଲା... ।" "ତୁମେ ଅମୁକ କଲେଜରେ ପଢୁଥିଲ ? ଆରେ, ମୋ ମାଉସୀଙ୍କ ଝିଅମାନେ ତ ସେଇଠି ପଢୁଥିଲେ...." ଏଥିରେ କଟିଗଲା।

ହଁ, ଏହା ଭିତରେ ଆମର ଏମିତି ଜଣେ ଭାରତୀୟଙ୍କ ସହିତ ଦେଖା ହୋଇଛି ଯାହାଙ୍କର ଗତ କେଇ ବର୍ଷର ଜୀବନ କାହାଣୀକୁ ନେଇ ଖୁସିରେ ସିନେମାଟିଏ ତିଆରି କରି ହେବ। 'ଚିହ୍ନା ପରିଚୟ' ଶବ୍ଦଟି ବ୍ୟବହାର କରୁନାହିଁ, କାରଣ ତାଙ୍କ ସହିତ ଦଶବର୍ଷ ତଳେ ଦିଲ୍ଲୀରେ ଚିହ୍ନା ପରିଚୟ ହୋଇଥିଲା। ତୋ ଭାଇନାଙ୍କ ଅଫିସ୍‌ରେ କାମ କରୁଥିଲେ। ସେଇ ସୂତ୍ରରେ ଆମ ଘରକୁ ମଧ ଦୁଇତିନିଥର ଆସିଛନ୍ତି। ସେତେବେଳେ ସେ ସବୁବେଳେ କହୁଥିଲେ, "ମୁଁ ଚେଷ୍ଟା କରୁଛି ଆମେରିକା ଚାଲିଯିବାକୁ। ଥରେ ସେ ଦେଶରେ ପହଞ୍ଚିଗଲେ କାମ ପାଇବାକୁ ଅସୁବିଧା ହେବ ନାହିଁ।" କିନ୍ତୁ ତାଙ୍କୁ ସହଜରେ ଭିସା ମିଳୁ ନ ଥିଲା। ଶେଷରେ ତୃତୀୟ ଥରର ଚେଷ୍ଟାରେ କୌଣସି ପ୍ରକାର ସେ ଭିସା ପାଇବାରେ ସଫଳ ହେଲେ। ତା'ପରେ ଆମେ ଦିନେ ଶୁଣିବାକୁ ପାଇଲୁ ଯେ ସେ ଦିଲ୍ଲୀର ଚାକିରୀ ଛାଡି ଦେଇ ଆମେରିକା ଚାଲିଯାଇଛନ୍ତି। ଆମେରିକାରୁ ତାଙ୍କର ଚିଠିଟିଏ ଓ କେତୋଟି ଫଟ ମଧ ଆସିଥିଲା। ସେଇଥିରୁ ଜାଣିଲୁ ଯେ ସେ ଚାକିରୀଟିଏ ପାଇଯାଇଛନ୍ତି ଏବଂ ଖୁବ୍ ଶୀଘ୍ର ଏକ ଆମେରିକାନ୍ ମହିଳାଙ୍କୁ ବାହା ହେବା ପାଇଁ ସ୍ଥିର କରିଛନ୍ତି। ସେଇ ଚିଠିଟି ପରେ ଆମେ ତାଙ୍କର ଆଉ କୌଣସି ଖବର ପାଇ ନଥିଲୁ।

ଏଠି ଦିନେ ପ୍ରାୟ ବାରଟା ବେଳକୁ ଫୋନ୍ ବାଜିଲା। ସେଇ ଦିଲ୍ଲୀର ଜଣାଶୁଣା ଲୋକ ଜଣକ! ତୋ ଭାଇନାଙ୍କର ଗୋଟିଏ ଜାଗାରେ ଭାଷଣ ଦେବାର ଥିଲା। ସେଇଥି ପାଇଁ ତାଙ୍କର ନାଁ ଓ ଟେଲିଫୋନ୍ ନମ୍ବର ଗୋଟିଏ ପତ୍ରିକାରେ ବାହାରି ଥିଲା। ପତ୍ରିକାଟି ଦେଖିବାପରେ ସେଇ ବ୍ୟକ୍ତି ଜଣକ ଫୋନ୍ କଲେ। ଏବଂ ତା'ର ଅଳ୍ପ କେଇ ଘଣ୍ଟା ମଧ୍ୟରେ ଆମ ଘରେ ଆସି ପହଞ୍ଚି ଗଲେ। ତାଙ୍କଠାରୁ ଆମେ ଶୁଣିଲୁ ଯେ ସେ ମଝିରେ ଭାରତ ଫେରି ଯାଇଥିଲେ। ଏବେ ପୁଣି ଦୁଇ ବର୍ଷ ତଳେ ଆମେରିକା ଫେରି ଆସିଛନ୍ତି। ତାଙ୍କର ସ୍ତ୍ରୀଟି ମଧ ଭାରତୀୟ। (ଯେଉଁ ଆମେରିକାନ୍ ଝିଅକୁ ବାହା ହେବାର ଥିଲା ବା

ବାହା ହୋଇଥିଲେ ସେ ବିଷୟରେ ଅବଶ୍ୟ ଆମେ କିଛି ପଚାରି ପାରିଲୁ ନାହିଁ।) କିନ୍ତୁ ଏବେ ସେ କ'ଣ କରୁଛନ୍ତି? ଉତ୍ତରରେ ସେ କହିଲେ, ''ଜ୍ୟୋତିଷୀ''! ମୁଁ ଭାବିଲି ସେ ବୋଧହୁଏ ଥଟ୍ଟା କରୁଛନ୍ତି, ତେଣୁ ହସି ପକେଇଲି। ସେ କିନ୍ତୁ ହସିଲେ ନାହିଁ। ତୋ ଭାଇନାଙ୍କର ହଠାତ୍ ମନେ ପଡିଗଲା ଯେ ଭଦ୍ରଲୋକ ଜଣକ ଅଫିସ୍‌ରେ ବେଳେ ବେଳେ ଅନ୍ୟମାନଙ୍କର ହାତ ଦେଖୁଥିଲେ। ସେଇଟାକୁ ଯେ ଏ ଦେଶରେ ଜୀବିକା କରିନେଇଛନ୍ତି, ତାହା ହିଁ ଆଶ୍ଚର୍ଯ୍ୟର ବିଷୟ। କେବଳ ସେତିକି ନୁହଁ, ଯାହା ମୁଁ ଦେଖିଲି, ଜାଣିଲି ତାଙ୍କର ଜ୍ୟୋତିଷ ଚର୍ଚ୍ଚାଟି ବେଶ୍ ଭଲ ଚାଲିଛି। ତାଙ୍କ ସହିତ ଦେଖା ହେବାର କିଛି ଦିନ ପରେ ଦିନେ ସଂଧ୍ୟାରେ ସେ ଆମମାନଙ୍କୁ ଘରେ ଖାଇବାକୁ ଡାକିଥିଲେ। ଏଇ ଦୁଇଟା ବର୍ଷ ଭିତରେ ସେ ଘରଟିଏ କିଣି ନେଇଛନ୍ତି। ତାଙ୍କର ଅଫିସ୍ ରୁମ୍‌ରେ ଜ୍ୟୋତିଷ ଶାସ୍ତ୍ର ଉପରେ ବହୁତ ବହି ସହ ରହିଛି କଂପ୍ୟୁଟରଟିଏ। କଂପ୍ୟୁଟର୍ ପାଖରେ ରଖା ହୋଇଥିବା ଭିଜିଟିଙ୍ଗ କାର୍ଡ ଉପରେ ମୋ ଆଖି ପଡିଗଲା। ସେଥିରେ ଲେଖାଥିଲା, ''ପଣ୍ଡିତ...'' ମୋର ଆଖି ବଡ ବଡ ହୋଇଗଲା। ଭଦ୍ରବ୍ୟକ୍ତି ଜଣକ କହିଲେ, ''ଭିଜିଟିଙ୍ଗ କାର୍ଡରେ ଯଦି ମୋର ନିଜ ନାଁ ଲେଖିବି ତେବେ କିଏ ବା ମୋ ପାଖକୁ ଆସିବ? ତେଣୁ ନାଁ ବଦଳେଇ ଦେଲି।'' ସବୁବେଳେ ଅତ୍ୟାଧୁନିକ ପୋଷାକ ପିନ୍ଧୁଥିବା, ବିଦେଶୀ କୋଲନ୍, ଆଫ୍‌ଟର ସେଭ୍ ବ୍ୟବହାର କରୁଥିବା ବ୍ୟକ୍ତିଟିକୁ 'ପଣ୍ଡିତ୍ ଜୀ' ରୂପେ ଚିନ୍ତା କରିବାକୁ ବଡ ଅଖାଡୁଆ ଲାଗୁଥାଏ। କିନ୍ତୁ ସେ ଏଇ ଗୋଟିଏ କଥା ପ୍ରମାଣିତ କରି ଦେଲେ ଯେ ଏ ଦେଶରେ ସବୁ ସମ୍ଭବ। ସେଦିନ ସଂଧ୍ୟାରେ ସେ ନିଜ ଜୀବନ ବିଷୟରେ ଯାହା ସବୁ କହିଲେ ତା' ଯଦି ଏବେ ମୁଁ ଲେଖି ବସେ ତେବେ ଉପନ୍ୟାସଟିଏ ହୋଇଯିବ। ଏପରି ଚରିତ୍ର ସବୁ ମୁଁ ବହିରେ ପଢିଥିଲି, ପ୍ରଥମ ଥର ପାଇଁ ନିଜ ଆଖିରେ ଦେଖିଲି।

ତୋ ପ୍ରଶ୍ନର ଉତ୍ତର ଦେଉ ଦେଉ କେତେ କଥା ଲେଖିଗଲିଣି। ଏଥରକ ତୋର ଶେଷ ପ୍ରଶ୍ନଟି ଉପରକୁ ଆସେ। ତୁ ବଡ କଠିନ ପ୍ରଶ୍ନଟିଏ ପଚାରିଛୁ। ଏହାର ଉତ୍ତର ଦେବା ଆଦୌ ସହଜ ନୁହଁ। ତୁ ପଚାରିଛୁ ଏଠିକା ସମାଜର କେଉଁ ସବୁ ବିଷୟ ମତେ ଅଧିକ ଭଲ ଲାଗୁଛି ଏବଂ କ'ଣ ସବୁ ଖରାପ ଲାଗୁଛି।

ଯୁକ୍ତରାଷ୍ଟ୍ର ଆମେରିକା ଆସିବା ପରଠାରୁ ଏତେ ଗଭୀରକୁ ଯାଇ ମୁଁ କେବେହେଲେ ସମାଜର ଭଲ ମନ୍ଦ ବିଷୟରେ ଭାବି ନାହିଁ। ତେବେ ଏଠାରେ ପହଞ୍ଚିବା ପରେ ପରେ ଯେଉଁ ଜିନିଷଟି ମତେ ମଜବୁତ ଧକ୍କା ଦେଇଥିଲା ଓ ମୋ ମନକୁ ଦୋହଲାଇ ଦେଇଥିଲା ସେଇଟା ହେଲା ଏ ଦେଶରେ ଘଟୁଥିବା ଅସଂଖ୍ୟ ହିଂସା ଘଟଣା। ଆଗରୁ ମୋର ଯେ ଏ ବିଷୟରେ କୌଣସି ଧାରଣା ନଥିଲା ତା' ନୁହଁ। ତେବେ ତତେ ଯାହା ମୁଁ ପୂର୍ବରୁ ଲେଖିଥିଲି ଏଠି ଖବର କାଗଜ ଖୋଲିଲେ ଆଗ ଆଖିରେ ପଡେ କେଉଁଠି କ'ଣ ହିଂସାତ୍ମକ ଘଟଣା ଘଟିଛି ତାହାର ବର୍ଣ୍ଣନା। ସେହିପରି ଟେଲିଭିଜନ୍ ଖୋଲିଲେ ସମ୍ବାଦରେ ପ୍ରଧାନ ଘଟଣାମାନଙ୍କ ମଧ୍ୟରେ ଥାଏ ହତ୍ୟା, ହରଣଚାଳ, ବଳାତ୍କାର ଏହି ସବୁର ବିବରଣୀ। ଏହା ବ୍ୟତୀତ ନିଶା ଦ୍ରବ୍ୟ ଜନିତ ହିଂସାତ୍ମକ ଘଟଣା ତ ରହିଛି। ଅଧିକାଂଶ ଆଧୁନିକ ସିନେମାରେ 'ସେକ୍ସ୍ ଓ ଭାୟୋଲେନ୍ସ'ର ପ୍ରାଧାନ୍ୟ ଏତେବେଶୀ ଯେ ପିଲାମାନଙ୍କୁ ଦେଖିବାକୁ ଦେବା ତ ଦୂରର କଥା, ଆମକୁ ମଧ୍ୟ ଦେଖିବାକୁ ଭଲ ଲାଗେ ନାହିଁ।

କିଛି ଦିନ ତଳେ ମୁଁ ଏଠିକା ଲାଇବ୍ରେରୀରେ ପତ୍ରିକାଟିଏ ପଢୁଥିଲି। ସେଥିରେ ଲେଖାଥିଲା ଯେ ୧୯୮୦ରେ ଆମେରିକାରେ ୧,୩୪୫,୦୦୦ଟି ହତ୍ୟା, ବଳାତ୍କାର ଓ ଡକାୟତି (violent crimes) ଘଟିଥିଲା। ସଂପତ୍ତି ଜନିତ ହିଂସା ଘଟଣାର ସଂଖ୍ୟା ଥିଲା ୧୨,୦୬୪,୦୦୦। ମାତ୍ର ଆଠବର୍ଷ ପରେ ଅର୍ଥାତ୍ ୧୯୮୮ରେ ହତ୍ୟା, ବଳାତ୍କାର ଓ ଡକାୟତିର ସଂଖ୍ୟା ବଢିଯାଇ ହୋଇଛି ୧,୫୬୬,୦୦୦ ଏବଂ ସଂପତ୍ତିଜନିତ ହିଂସା ଘଟଣାର ସଂଖ୍ୟା ହୋଇଛି ୧୨,୩୫୭,୦୦୦। ଆମେରିକାର ଜନସଂଖ୍ୟା ସହିତ ହିଂସାତ୍ମକ ଘଟଣାର ତୁଳନା କଲେ ଜଣେ ଜାଣି ପାରିବ ଏଇ ସମାଜରେ ହିଂସାର ପ୍ରାଧାନ୍ୟ କେତେ ଅଧିକ।

ହିଂସା କମେଇବା ପାଇଁ ଆମେରିକାନ୍ ସମାଜ ଯେ ଚିନ୍ତିତ ନୁହଁ, ତା' ନୁହେଁ। କିନ୍ତୁ ଏଠାରେ ବ୍ୟକ୍ତି ସ୍ୱାତନ୍ତ୍ର୍ୟ ଉପରେ ଏତେ ବେଶୀ ଜୋର୍ ଦିଆଯାଏ ଯେ ଜବରଦସ୍ତି କୌଣସି ଆଇନ୍ ଚାଲୁ କରାଯିବା କଥା ଚିନ୍ତା ମଧ୍ୟ କରିହୁଏ ନାହିଁ। ଗୋଟିଏ ପକ୍ଷରେ ହିଂସା ନେଇ, ବିଶେଷତଃ କମ୍ ବୟସର ପିଲାମାନେ ଜଡିତ ହେଉଥିବା ହିଂସା ଘଟଣା ନେଇ ଏଠିକା ସମାଜ ଚିନ୍ତିତ। ଅପର ପକ୍ଷରେ ବଜାରରେ ପୁଅମାନଙ୍କ ପାଇଁ ମିଳୁଥିବା ଅଧିକାଂଶ ଖେଳଣା ଓ ଭିଡିଓ ଗେମ୍ସ

ମନ ଭିତରେ କେବଳ ହିଂସାଭାବ ହିଁ ବଢାଇ ଥାଏ। ଏଇ ସବୁ ଖେଳଣାର ବିଜ୍ଞାପନ ଟେଲିଭିଜନରେ ଦେଖିଲେ ମତେ ବାସ୍ତବିକ୍ ଦୁଃଖ ଲାଗେ। କାରଣ ହିଂସାତ୍ମକ ଚଳଚ୍ଚିତ୍ର ଛାପରେ ବନ୍ଧୁକ ବା ସେଇଭଳି ସବୁ ଖେଳଣାର ବିଜ୍ଞାପନ ପ୍ରସ୍ତୁତ କରାଯାଇଥାଏ। ଏହା ଦ୍ୱାରା କମ୍ ବୟସରୁ ଶିଶୁମାନଙ୍କ ମନରେ ହିଂସାର ଗୋଟିଏ ଛାପ ପଡି ଯାଉ ନାହିଁକି ?

ଆମେରିକାନ୍ ସମାଜର ଆଉ ଗୋଟିଏ ଜିନିଷ ଯାହା କି ମତେ ଖୁବ୍ ଖରାପ ଲାଗିଛି ସେଇଟା ହେଲା ଦୁର୍ବଳ ପାରିବାରିକ ଜୀବନ। ଗତ କୋଡିଏ ବର୍ଷ ଭିତରେ ଆମେରିକାରେ ଛାଡପତ୍ରର ସଂଖ୍ୟା ପ୍ରାୟ ଦୁଇଗୁଣ ହୋଇଯାଇଛି। ମୁଁ ପଢିଥିବା ସେଇ ସରକାରୀ ପତ୍ରିକା ଅନୁସାରେ ୧୯୬୦ରେ ଛାଡପତ୍ରର ସଂଖ୍ୟା ଥିଲା ୩୯୩,୦୦୦, ମାତ୍ର ୧୯୮୮ରେ ଛାଡପତ୍ରର ସଂଖ୍ୟା ବଢି କରି ହୋଇଛି ୧,୧୮୩,୦୦୦। ଅଥଚ ସେଇ ତୁଳନାରେ ଜନସଂଖ୍ୟା ବେଶୀ ବଢି ନାହିଁ। ୧୯୬୦ରେ ଜନସଂଖ୍ୟା ଥିଲା ୧୮୦,୬୭୧,୦୦୦ ଏବଂ ୧୯୮୯ରେ ଜନସଂଖ୍ୟା ପହଞ୍ଚିଛି ମାତ୍ର ୨୪୮,୭୭୭,୦୦୦ରେ। ଯେଉଁ କ୍ଷେତ୍ରରେ ଜନସଂଖ୍ୟା ଦେଢଗୁଣ ମଧ ବଢି ନାହିଁ, କିନ୍ତୁ ଛାଡପତ୍ର ସଂଖ୍ୟା ପ୍ରାୟ ତିନିଗୁଣ ବଢି ଯାଇଛି, ସେ କ୍ଷେତ୍ରରେ ସମାଜଟିକୁ ନେଇ ଚିନ୍ତା କରିବାର ବହୁତ ବିଷୟ ରହିଛି।

ବଡ ଆଶ୍ଚର୍ଯ୍ୟର କଥା ଏହି ଯେ ମଧ-ଆମେରିକାରେ ଛାଡପତ୍ରର ସଂଖ୍ୟା ବହୁତ କମ୍ ଏବଂ ସେଠିକାର ସମାଜ କିଛିକାଂଶରେ ରକ୍ଷଣଶୀଳ। କିନ୍ତୁ ଉଭୟ ପୂର୍ବ ଓ ପଶ୍ଚିମ ଆମେରିକାର ସମାଜରେ ଛାଡପତ୍ରର ସଂଖ୍ୟା ଦିନକୁ ଦିନ ବଢିବାରେ ଲାଗିଛି। ସବୁ ପ୍ରଦେଶ ଅପେକ୍ଷା କ୍ୟାଲିଫୋର୍ଣିଆରେ ଛାଡପତ୍ରର ସଂଖ୍ୟା ସର୍ବାଧିକ। ମୁଁ ହୁଏତ ଏଥିନେଇ ବିଶେଷ ଚିନ୍ତିତ ହୋଇ ନ ଥାଆନ୍ତି, କିନ୍ତୁ ପିଲାମାନେ ଏଠିକା ସ୍କୁଲ ଯିବା ପରେ ପରେ ଆମକୁ ଏଭଳି ସବୁ ପ୍ରଶ୍ନ ପଚାରିବା ଆରମ୍ଭ କରିଦେଲେ ଯେ ଆମର ଚିନ୍ତା ହୋଇଗଲା। ସେମାନଙ୍କର କ୍ଲାସ୍‌ରେ ଅନେକ ପିଲାଙ୍କର ମା, ବାପା ଭିନ୍ନ ହୋଇ ଯାଇଛନ୍ତି। ସେଇ ପିଲାମାନେ ସ୍କୁଲ୍‌ରେ ସେସବୁ ବିଷୟରେ ବେଳେ ବେଳେ କଥାବାର୍ତ୍ତା କରନ୍ତି ଏବଂ ସେ କଥାର ଝଲକ ରୁମି, ରିଟିଙ୍କ କାନରେ ମଧ ପଡେ। ସ୍କୁଲ ଯିବାର କିଛି ଦିନ ପରେ ଦିନେ ରୁମି ମତେ କହିଲା, ''ମା' ଜାଣ, କେଟିର ମା, ବାପା

ଅଲଗା ହୋଇଯାଇଛନ୍ତି । ତା' ବାପା ଥାଉ ଥରେ ବାହା ମଧ୍ୟ ହୋଇଛନ୍ତି । କେଟି କହୁଥିଲା ଯେ ତା' ବାପା ତାକୁ ଆଦୌ ଭଲ ପାଆନ୍ତି ନାହିଁ । ବଡ ଆଶ୍ଚର୍ଯ୍ୟ କଥା ନୁହଁ ?'' ପିଲାମାନଙ୍କୁ ସବୁବେଳେ ବାସ୍ତବ ଘଟଣାରୁ ଦୂରେଇ ରଖିବା ଅବଶ୍ୟ ଉଚିତ ନୁହଁ, କିନ୍ତୁ ଏସବୁ ଘଟଣା ଯେ ସେମାନଙ୍କର କଅଁଳ ମନକୁ ଆଘାତ ଦେଉଛି ଏବଂ ସେମାନଙ୍କ ଭିତରେ ଅଶାନ୍ତ ଭାବ ଭରି ଦେଉଛି ! ଏଇ ତ ସେଦିନ ଆମ ପାଖ ଘରେ ରହୁଥିବା ଭାରତୀୟ ପରିବାରଟିର ସାତବର୍ଷର ପୁଅ ସ୍କୁଲରୁ ଫେରି ତା' ମା'ଙ୍କୁ କହିଲା, ''ମା, ମୋ ଟିଚର୍ ତାଙ୍କ ସ୍ୱାମୀଙ୍କୁ ଛାଡପତ୍ର ଦେଇ ୱାଶିଙ୍ଗଟନ୍ ଚାଲି ଯାଉଛନ୍ତି । ତୁମେ ବି କ'ଣ ଏମିତି ଦିନେ ବାପାଙ୍କୁ ଛାଡପତ୍ର ଦେଇ କୁଆଡେ ଚାଲିଯିବ ?''

ପାରିପାର୍ଶ୍ୱିକ ଘଟଣାର ପ୍ରଭାବ ପିଲାଙ୍କ ମନରେ ଯେଉଁ ଆଶଙ୍କା ସୃଷ୍ଟି କରୁଛି ସେକଥା ଜଣେ ଚିନ୍ତା କଲେ ତା' ମୁଣ୍ଡ ଘୁରେଇ ଯିବ ।

ଏହାର ଅର୍ଥ ନୁହଁ ଯେ ଏଠିକାର ସମାଜରେ କୌଣସି ଭଲ ଜିନିଷ ନାହିଁ ବା ପ୍ରଶଂସା କଲାଭଳି କିଛି ନାହିଁ । ଯଦି ଏକଥା ସତ ହୋଇଥାଆନ୍ତା ତେବେ ପୃଥିବୀର ବିଭିନ୍ନ ପ୍ରାନ୍ତରୁ ଲୋକମାନେ ଆସି ନିଜ ଦେଶ ଛାଡି ଏ ଦେଶରେ ଥଇଥାନ କାହିଁକି ହୋଇ ଯାଉଥାଆନ୍ତେ ? ଏମାନେ କେବଳ ଥଇଥାନ ହୋଇ ଯାଉନାହାନ୍ତି, ବରଂ ଦେଖିବାକୁ ଗଲେ ଆମେରିକୀୟ ସମାଜରେ ସଂପୂର୍ଣ୍ଣ ରୂପେ ମିଶିଯାଉଛନ୍ତି । ଏଭଳି ବିଭିନ୍ନ ଜାତି, ବିଭିନ୍ନ ଭାଷାର ଲୋକଙ୍କୁ ନିଜ ଭିତରେ ମିଶାଇ ନେବାର କ୍ଷମତା କେତୋଟି ସମାଜର ଅଛି ? ସେଇଥି ପାଇଁ ବୋଧହୁଏ ଏ ସମାଜକୁ ''Melting Pot'' କୁହାଯାଏ । ନିଜକୁ ଆମେରିକାନ୍ କହୁଥିବା ବହୁ ଲୋକଙ୍କୁ ପଚାରି ବୁଝିଲେ ଜଣେ ଜାଣି ପାରିବ ଯେ ଏମାନେ ପ୍ରକୃତରେ ଗୋଟିଏ ପୁରୁଷ ତଳେ ବା ଦୁଇ ପୁରୁଷ ତଳେ କୌଣସି ଏକ ବିଦେଶୀ ରାଷ୍ଟ୍ରରୁ ଆସିଛନ୍ତି । ମୋର ପଡୋଶୀ ଜିମ୍‌ଙ୍କର ପୂର୍ବପୁରୁଷ ଥିଲେ ଋଷୀୟ । ତାଙ୍କ ବାପା ଆମେରିକା ଚାଲି ଆସିଥିଲେ । ଏବେ ଜିମ୍ ଆମେରିକାନ୍ । ସେଇଭଳି ଜୋସେଫ୍ ଲାଙ୍ଗ୍ ବୋଲି ପିଲାଟିଏର ଜେଜେବାପା ଚୀନ୍‌ରୁ ଚାଲି ଆସି ଆମେରିକାରେ ରହି ଯାଇଥିଲେ । ଜୋସେଫ ଏବେ ଆମେରିକାନ୍ । ତୁ କହ, ଏ ସମାଜ ଅନନ୍ୟ ନୁହଁ କି ?

ସ୍ୱାଧୀନ ରାଷ୍ଟ୍ର ତ ପୃଥିବୀରେ ଅନେକ ଅଛି, କିନ୍ତୁ ସ୍ୱାଧୀନତାକୁ ଯୁକ୍ତରାଷ୍ଟ୍ର

ଆମେରିକାରେ ଯେଭଳି ସମ୍ମାନ ଦିଆଯାଏ ସେଭଳି ସମ୍ମାନ ବୋଧହୁଏ ଆଉ କେଉଁ ଦେଶରେ ଦେଖାଯାଏ ନାହିଁ। ଏ ସ୍ୱାଧୀନତା ବ୍ୟକ୍ତି ବିଶେଷର ହେଉ ବା ସମ୍ବାଦପତ୍ରର। ବ୍ୟକ୍ତି ସ୍ୱାଧୀନତା ବିଷୟରେ ତତେ ପୂର୍ବରୁ ଲେଖିଛି। ଜଣେ ବ୍ୟକ୍ତିର ଯେ କୌଣସି ବିଷୟରେ ସ୍ପଷ୍ଟ ମତ ଦେବାର ଅଧିକାର ରହିଛି। ଅଧିକାଂଶ ଗଣତାନ୍ତ୍ରିକ ରାଷ୍ଟ୍ରର ସମ୍ବିଧାନରେ ଏହା ହୁଏତ ରହିଛି, କିନ୍ତୁ ଆମେରିକା ଏହାକୁ କାର୍ଯ୍ୟରେ ପରିଣତ କରାଇ ଦେଖାଇ ଦେଇଛି। ରାଷ୍ଟ୍ରପତି ଜର୍ଜବୁଶ୍‌ଙ୍କଠାରୁ ଆରମ୍ଭ କରି ଛୋଟ ସରକାରୀ କର୍ମକର୍ତ୍ତା ପର୍ଯ୍ୟନ୍ତ ସମସ୍ତେ ନିଜ ନିଜର କାର୍ଯ୍ୟ ପାଇଁ ନାଗରିକମାନଙ୍କ ପାଖରେ ଦାୟୀ। ସେମାନଙ୍କର କୌଣସି ନିଷ୍ପତ୍ତି ନେଇ ଯଦି କେହି ଅସନ୍ତୁଷ୍ଟ ହୁଏ ତେବେ ସେ ସ୍ପଷ୍ଟ ଭାବରେ ମୁହଁ ଖୋଲି ପାରିବ। ଟେଲିଭିଜନର ବିଭିନ୍ନ ଚାନେଲରେ ବେଳେବେଳେ ଏଇଭଳି କେତେକ ରାଜ୍ୟପାଳ ତଥା ସିନେଟରଙ୍କ ସହିତ ସାକ୍ଷାତକାର ମୁଁ ଦେଖିଛି। ବାସ୍ତବିକ୍ ଅବାକ୍ ଲାଗେ, କାରଣ ବିନା ଦ୍ୱିଧାରେ ସାକ୍ଷାତକାର ନେଉଥିବା ଲୋକଟି ସବୁ ରକମର ପ୍ରଶ୍ନ ପଚାରି ଯାଆନ୍ତି। ସେଇଭଳି ସମ୍ବାଦପତ୍ର ଗୁଡ଼ିକର ମଧ୍ୟ ସ୍ପଷ୍ଟ ମତ ଦେବାର ସ୍ୱାଧୀନତା ଅଛି। କିନ୍ତୁ ମିଛ ଖବର ଛପେଇଲେ ବା କାହାର ବିଷୟରେ ଭୁଲ୍ ଖବର ଛପେଇଲେ ସମ୍ବାଦପତ୍ର ବିରୁଦ୍ଧରେ ଲକ୍ଷ ଲକ୍ଷ ଟଙ୍କାର ମକଦ୍ଦମା ହୋଇ ଯାଇପାରେ। ତେଣୁ ସେମାନେ ମଧ୍ୟ ସବୁବେଳେ ସଠିକ୍ ତଥା ନିରପେକ୍ଷ ସମ୍ବାଦ ଛପେଇବା ପାଇଁ ଚେଷ୍ଟା କରନ୍ତି।

ଏ ସ୍ୱାଧୀନଚେତା ସମାଜର ଆଉ ଗୋଟାଏ ବଡ ଜିନିଷ ହେଉଛି ବିଶ୍ୱାସ। କେବଳ ବିଶ୍ୱାସରେ ଏ ସମାଜରେ ବହୁତ କିଛି କାର୍ଯ୍ୟ ହୋଇଯାଏ। ଆଉ ଯେଉଁଠି ଏତେ ବିଶ୍ୱାସ, ସେଠି ଠକିବାକୁ ବା କାହାର ଇଚ୍ଛା ହେବ? ତା' ମାନେ ନୁହେଁ ଯେ ଏଠି ଠକ ନାହାନ୍ତି। ଭଲ, ମନ୍ଦ ସବୁ ନେଇ ତ ସମାଜ। କିନ୍ତୁ ସେ ସବୁ ସତ୍ତ୍ୱେ ଏ ଦେଶରେ ମଣିଷ ମଣିଷକୁ ଯେତିକି ବିଶ୍ୱାସ କରେ ଆଉ କେଉଁଠି ବୋଧହୁଏ ତାହା ସମ୍ଭବ ନୁହଁ। ଏଠିକାର ଡିପାର୍ଟମେଣ୍ଟାଲ୍ ଷ୍ଟୋର୍‌ମାନଙ୍କ କଥା କହେ। ଜଣେ ଯଦି ଏହି ଷ୍ଟୋରରୁ କିଛି ଗୋଟାଏ ଜିନିଷ କିଣିଲା ଏବଂ କୌଣସି କାରଣରୁ ତା'ର ସେଇ ଜିନିଷଟି ପସନ୍ଦ ହେଲାନାହିଁ, ତେବେ ସେ ଗୋଟିଏ ମାସ ଭିତରେ କ୍ୟାସ୍‌ମେମୋ ସହ ଷ୍ଟୋର୍‌କୁ ଗଲେ ସମସ୍ତ ପଇସା ଫେରି ପାଇବ। କେହି କୌଣସି ପ୍ରଶ୍ନ ପଚାରିବେ ନାହିଁ। କ୍ରେତାର

ସନ୍ତୋଷ ହିଁ ଏଠି ସବୁଠାରୁ ବଡ଼ ବିଷୟ।

ଏଭଳି ବିଶ୍ୱାସର ଆଉ ଗୋଟିଏ ଉଦାହରଣ ଦିଏ। ଆମେ ଏଠିକାର ଗୋଟିଏ ଖବରକାଗଜର ଗ୍ରାହକ ଚାନ୍ଦା ଦେଇଥିଲୁ। କିନ୍ତୁ ତା' ସତ୍ତ୍ୱେ ଖବର କାଗଜ ଆସିଲା ନାହିଁ। ମୁଁ ଫୋନ୍ କରି ଯେମିତି ଏ କଥା କହିଲି, ସେ ପାଖରେ ଥିବା ଝିଅଟି ଗୋଟିଏ ଦୁଇଟି ପ୍ରଶ୍ନ ପଚାରିଲା ଯେମିତିକି "ଆପଣ କେବେ ଚେକ୍ ପଠାଇ ଥିଲେ? ଚିଠି ଫେରି ଆସିନି ତ?" ମୁଁ ସାମାନ୍ୟ ବିରକ୍ତ ହୋଇ କହିଲି, "ଆପଣ ଯାଇ ଆଉ କାହାକୁ ପଚାରି ବୁଝନ୍ତୁ ଚେକ୍ ସେମାନେ ପାଇଛନ୍ତି ନା ନାହିଁ।" ଝିଅଟି ହସିକରି କହିଲା, "ଆଉ କାହାକୁ ପଚାରିବାର କ'ଣ ଅଛି? ଆପଣ କହୁଛନ୍ତି ସେଇ ଯଥେଷ୍ଟ। ଆପଣ କାଲିଠାରୁ ନିୟମିତ ଖବର କାଗଜ ପାଇବେ ଏବଂ ଆଶା କରୁଛି ଆମକୁ କ୍ଷମା ଦେବେ।"

ସେଇଭଳି ଦିନେ ଟେଲିଫୋନରେ ମା'ଙ୍କ ସାଙ୍ଗରେ କଥାବାର୍ତ୍ତା କରୁଥିଲି। ଲାଇନ୍ ଭଲ ନଥିଲା, ତେଣୁ କଥା ଭଲ ଭାବରେ ଶୁଣି ହେଉ ନ ଥିଲା। ତିନି ଚାରି ମିନିଟ୍ ପରେ ଲାଇନ୍ କଟିଗଲା। ମୁଁ ସାଙ୍ଗେ ସାଙ୍ଗେ ଅପରେଟର୍‌କୁ ଫୋନ୍ କରି ଏ କଥା ଜଣେଇଲି। ସେ କ'ଣ କହିଲା ଜାଣିଛୁ। କହିଲା, "ଲାଇନ୍ କଟିଯିବାରୁ ମୁଁ ଖୁବ୍ ଦୁଃଖିତ। ଆପଣଙ୍କୁ ସେ ଫୋନ୍ କଲ୍ ପାଇଁ କୌଣସି ପଇସା ଦେବାକୁ ପଡିବ ନାହିଁ, ଆପଣ ଯଦି ଚାହାନ୍ତି, ତେବେ ମୁଁ ଆଉଥରେ ସେଇ ନମ୍ବର ସହ ଫୋନ୍ ଲଗେଇଦେବି।"

ତତେ ତ କହିଛି ଏଦେଶକୁ Land of Milk and Honey କହନ୍ତି। ପୃଥିବୀର ଧନୀ ଦେଶମାନଙ୍କ ମଧ୍ୟରୁ ଯୁକ୍ତରାଷ୍ଟ୍ର ଆମେରିକା ଅନ୍ୟତମ। କିନ୍ତୁ ବଡ଼ କଥା ହେଲା ନିଜ ଧନକୁ ସଠିକ ଭାବରେ ଖର୍ଚ୍ଚ କରିବାର ପଦ୍ଧତି ଏ ଦେଶ ଜାଣିଛି। ସେଥିପାଇଁ ବୋଧହୁଏ ସ୍କୁଲ କଲେଜରେ, ବିଭିନ୍ନ ରିସର୍ଚ୍ଚରେ, ପାରିପାର୍ଶ୍ୱିକ ଅବସ୍ଥାର ସଂରକ୍ଷଣରେ ତଥା ଗରୀବ ରାଷ୍ଟ୍ରମାନଙ୍କୁ ସାହାଯ୍ୟରେ ଏତେ ଅର୍ଥ ଖର୍ଚ୍ଚ ହୋଇଥାଏ। ଆମେରିକାର ନାଗରିକ ହୋଇ ରହିଯାଇଥିବା ବହୁ ଭାରତୀୟଙ୍କୁ ମୁଁ ପଚାରିଛି ଯେ ସେମାନେ ନିଜ ଦେଶକୁ ଫେରି କାହିଁକି ଗଲେ ନାହିଁ। ସେମାନଙ୍କର ବଡ଼ ସ୍ୱଷ୍ଟ ଉତ୍ତର। ଆମେରିକାରେ ସେମାନଙ୍କର କାର୍ଯ୍ୟକ୍ଷେତ୍ରର ବାତାବରଣ ଭିନ୍ନ। ଏଠି ସେମାନେ ଯେଉଁ ସୁବିଧା ସୁଯୋଗ ପାଉଛନ୍ତି ତାହା ବୋଧହୁଏ ପୃଥିବୀର ଅନ୍ୟ କୌଣସି ସ୍ଥାନରେ ମିଳିବା ସମ୍ଭବ ନୁହଁ।

ଅନ୍ୟମାନଙ୍କ କଥା ତ ମୁଁ କହିପାରିବି ନାହିଁ, କିନ୍ତୁ ଏ ସବୁ ଦେଖି ମୋ ମନରେ ବଡ କଷ୍ଟ ହେଉଛି। କେବେ ଆମ ଦେଶରେ ଏଇଭଳି ସୁଖ ସୁବିଧା ମିଳିବ ? କେବେ ଦାରିଦ୍ର୍ୟ ଦୂର ହେବ ? କେବେ ପୁଣି ଗ୍ୟାସ, ଟେଲିଫୋନ୍ ଇତ୍ୟାଦି ପାଇଁ ଲାଇନ୍ ଦେବା ବନ୍ଦ ହେବ। ଭରପୁର ଆମେରିକା ସମାଜ ଦେଖିବା ପରେ ଏଇ ସବୁ ବିଷୟ ବାରମ୍ବାର ମୋ ମନକୁ ଗୋଳେଇ ପକାଉଛି।

ତୁମମାନଙ୍କ ଖବର କ'ଣ ? ପୁଅ ବହୁତ ମଜା କରୁଥିବ। ତାକୁ ଟିକିଏ ମୋ ତରଫରୁ ଗେହ୍ଲା କରିଦେବୁ। ଚିଠି ଦେବାରେ ଡେରି କରିବୁ ନାହିଁ। ରହୁଛି।

ଇତି

ତୋର 'ନାନୀ'

ୱାଶିଙ୍ଗଟନ୍ ଡି.ସି.

୨୭ ଜୁଲାଇ, ୧୯୯୧

ସ୍ନେହର ମିତ୍ର,

ଏବେ ରାତି ପ୍ରାୟ ଦଶଟା ବାଜିବ। ଘର ନିସ୍ତବ୍ଧ। ସମସ୍ତେ ଶୋଇ ପଡ଼ିଲେଣି। ଅନ୍ୟମାନଙ୍କ ପରି ମୁଁ ମଧ୍ୟ ଥକି ଯାଇଛି। କ୍ଲାନ୍ତିରେ ମୋର ଦେହ ହାତ ଭାଙ୍ଗି ପଡ଼ୁଛି। ଅଥଚ ଆଖିରେ ନିଦ ନାହିଁ। ଅତି ବେଶୀ କ୍ଳାନ୍ତ ହେଲେ ମୋର ତ ଏଇମିତି ହୁଏ। ସେଇଥିପାଇଁ ଭାବିଲି ବିଛଣାରେ ଶୋଇ ରହି କଡ ଲେଉଟାଇବା ଅପେକ୍ଷା ତତେ ଚିଠି ଲେଖାଯାଉ।

ଆମେରିକାର ରାଜଧାନୀ ୱାଶିଙ୍ଗଟନ୍ ଡ଼ି.ସି.ରୁ ତତେ ଚିଠି ଲେଖୁଛି। ମୋର ଆଗ ଚିଠି ପାଇଥିବୁ ନିଶ୍ଚୟ। ସେଇ ଚିଠି ଲେଖି ସାରିବାର ଦୁଇ ଦିନ ପରେ ଜଣାପଡିଲା ଯେ ଆମକୁ ଆହୁରି ହୁଏତ ବର୍ଷଟିଏ ଏଇଠି ରହିବାକୁ ପଡିପାରେ। କିନ୍ତୁ ଆମେ କେବଳ ତିନି ଚାରି ମାସ ରହିବା ପାଇଁ ପ୍ରସ୍ତୁତ ହୋଇ ଆସିଥିଲୁ। ପିଲାମାନେ ବାଙ୍ଗାଲୋରରେ ଯାଉଥିବା ସ୍କୁଲ୍‌ରୁ ଟ୍ରାନ୍‌ସଫର ସାର୍ଟିଫିକେଟ୍ ଅଣା ହୋଇନାହିଁ। ସେଠାକାର ଘରଟି ମଧ୍ୟ ସେଇଭଳି ରହିଛି। ଏସବୁର ବ୍ୟବସ୍ଥା ତ କରିବାକୁ ପଡିବ। ସେଇଥିପାଇଁ ସ୍ଥିର ହେଲା ଯେ ଭାରତକୁ ଯାଇ ଏ ସବୁର ବ୍ୟବସ୍ଥା କରି ତିନି ସପ୍ତାହ ଭିତରେ ଆମେ ଫେରି ଆସିବୁ। ତିନି ସପ୍ତାହ ହେଉ କି ତିନି ଦିନ- ନିଜ ଦେଶକୁ ଯିବା ଖବର ଶୁଣି ଆମ ସମସ୍ତଙ୍କର

ମନ ଯେ କେତେ ଖୁସି, ସେ କଥା ଚିଠିରେ କେମିତି ଲେଖିବି ?

ତୁ ତ ଜାଣିଛୁ, ଆମେ ଆମେରିକା ଆସିବା ବେଳେ ‘‘ରାଉଣ୍ଡ ଦି ୱାର୍ଲଡ’’ ଟିକେଟ୍ ନେଇ ଆସିଥିଲୁ। ସିଙ୍ଗାପୁର ଏଆର ଲାଇନ୍‌ସ, ଡେଲଟା ଓ ସୁଇସ୍ ଏଆର୍- ଏଇ ତିନୋଟି ଏଆର୍ ଲାଇନ୍‌ସ୍ ମିଶି କରି ଏଇ ଟିକେଟ୍‌ର ବ୍ୟବସ୍ଥା କରିଛନ୍ତି। ଏହାର ସୁବିଧା ହେଲା ଭାରତରୁ ଆମେରିକାକୁ ଯିବା ସମୟରେ ଜଣେ ପୂର୍ବପଟ (ଅର୍ଥାତ୍ ସିଙ୍ଗାପୁର, ହଙ୍ଗ୍‌କଙ୍ଗ୍ ବା ଟୋକିଓ) ଦେଇ ଯାଇ ପାରିବ ଏବଂ ଫେରିବା ବେଳେ ପଶ୍ଚିମ ବାଟରେ (ଅର୍ଥାତ୍ ଇଉରୋପ ଦେଇ) ଫେରି ପାରିବ। ଫେରିବା ସମୟରେ ଆମେରିକା ଭିତରେ ତିନୋଟି ସ୍ଥାନରେ ଓ ଇଉରୋପରେ ଦୁଇଟି ସ୍ଥାନରେ ରହି ମଧ୍ୟ ପାରିବ। ଆମେ ଆସିଥିଲୁ ଟୋକିଓ ହୋଇ, ଏବେ ଫେରିବୁ ଇଉରୋପ ବାଟରେ।

ଆମେ ବହୁତ ଆଗରୁ ଭାବି ସ୍ଥିର କରିଥିଲୁ ଯେ ଭାରତ ଫେରିବା ବେଳେ ଗ୍ରାଣ୍ଡ କ୍ୟାନିଅନ୍ (Grand Canyon) ହୋଇ ଫେରିବୁ। କିନ୍ତୁ ଆମେ ଏଆର୍‌ଲାଇନ୍‌ସ୍ ଅଫିସ୍‌ରେ ଜାଣିଲୁ ଯେ ଡେଲ୍‌ଟାର ଗ୍ରାଣ୍ଡ କ୍ୟାନିଅନ୍‌କୁ କୌଣସି ଫ୍ଲାଇଟ୍ ନାହିଁ। ମୋ ମନ ଖରାପ ହୋଇଗଲା। ଆମକୁ ସାହାଯ୍ୟ କରୁଥିବା ଝିଅଟି କହିଲା ଯେ ଗ୍ରାଣ୍ଡ କ୍ୟାନିଅନ୍ ଯିବାପାଇଁ ଚାହିଁଲେ ପ୍ରଥମେ ଲାସ୍ ଭେଗାସ୍ ଯାଇ ତା’ପରେ ସେଇଠାରୁ ଗ୍ରାଣ୍ଡ କ୍ୟାନିଅନ୍ ଯାଇ ହେବ। ଆଦୌ ବେଶୀ ବାଟ ନୁହଁ।

ଲାସ୍ ଭେଗାସ୍ ଯିବାର ଆଗ୍ରହ ନ ଥିଲା। ଜୁଆ ଖେଳିବାର ଇଚ୍ଛା ନାହିଁ କି ଉଦ୍ଦେଶ୍ୟ ନାହିଁ। ତେଣୁ ଲାସ୍ ଭେଗାସ୍ କାହିଁକି ? ପୁଣି ପିଲାକୁ ନେଇ କିଏ ଲାସ୍ ଭେଗାସ୍ ଯାଏ ? କିନ୍ତୁ ଗ୍ରାଣ୍ଡ କ୍ୟାନିଅନ୍ କଥା ଭାବି ମୁଁ ରାଜି ହୋଇଗଲି। ସେଇ ଅନୁସାରେ ଟିକେଟ୍ ହୋଇଗଲା ଲାସ୍ ଭେଗାସ୍, ୱାଶିଙ୍ଗଟନ୍ ଡି.ସି, ନିଉୟର୍କ। ଇଉରୋପରେ କେବଳ ପ୍ୟାରିସ୍। କାରଣ ହାତରେ ସୀମିତ ସମୟ। ବଜେଟ୍ ମଧ୍ୟ ସୀମିତ। ଟିକେଟ୍ ହୋଇଯିବା ପରେ ଗ୍ରାଣ୍ଡ କ୍ୟାନିଅନ୍ ଟୁର୍ ସଂପର୍କରେ ଜାଣିବା ପାଇଁ ଆମେ ଲାସ୍ ଭେଗାସ୍‌ର ବିଭିନ୍ନ ଟ୍ରାଭେଲ୍ ଏଜେଣ୍ଟଙ୍କୁ ଫୋନ୍ କଲୁ। ସେଥିରୁ ଜଣା ପଡ଼ିଲା ଯେ ଗ୍ରାଣ୍ଡ କ୍ୟାନିଅନ୍ ଟୁର୍ ପାଇଁ ଅତି କମ୍‌ରେ ତିନିଦିନ ସମୟ ଦରକାର। ଦ୍ୱିତୀୟତଃ ଏହାର ମୂଲ୍ୟ ବହୁତ ବେଶୀ। ଦୁଇଟି ଯାକ ଆମ ପକ୍ଷରେ ସମ୍ଭବ ନୁହଁ। ଏଣେ ଟିକେଟ୍

ତ ହୋଇସାରିଛି। ତେଣୁ ସ୍ଥିର କଲୁ ଗୋଟିଏ ଦିନରେ ଲାସ୍ ଭେଗାସ୍ ଦେଖି ନେଇ ୱାଶିଙ୍ଗଟନ୍ ଚାଲିଯିବୁ।

ଜୁଲାଇ ୨୪ ତାରିଖ ଦିନ ଆମେ ଡେଲ୍ଟା ଏୟାର୍ ଲାଇନ୍ସରେ ଲାସ୍ ଭେଗାସ୍ ବାହାରିଲୁ। ଆମେରିକାର ଆୟତନ ଅନୁପାତରେ ଦେଖିବାକୁ ଗଲେ ସାନ୍ ହୋସେରୁ ଲାସ୍ ଭେଗାସ୍ ବେଶୀ ବାଟ ନୁହଁ। କିନ୍ତୁ ଡେଲ୍ଟା ଏୟାର୍ ଲାଇନ୍ସର ଲାସ୍ ଭେଗାସ୍‌କୁ ସିଧାସଳଖ ଫ୍ଲାଇଟ୍ ନ ଥିବାରୁ ଆମର ପୂରାଦିନଟି ପ୍ରାୟ ଯାତ୍ରାରେ ନଷ୍ଟ ହୋଇଗଲା। ଆମେରିକାରେ ଅସଂଖ୍ୟ ଏୟାର୍ ଲାଇନ୍ସ୍। ବିମାନଯାତ୍ରାର ପରିମାଣ ମଧ୍ୟ ବହୁତ ବେଶୀ। ସେଥିପାଇଁ ପ୍ରତ୍ୟେକ ଏୟାର୍ ଲାଇନ୍ସ ପାଇଁ ଆମେରିକାର କେତୋଟି ନିର୍ଦ୍ଦିଷ୍ଟ ସ୍ଥାନ ସ୍ଥିର କରାଯାଇଛି। ଏହି ସବୁ ସ୍ଥାନକୁ କୁହାଯାଏ "hub"। ତତେ ଗୋଟିଏ ଉଦାହରଣ ଦିଏ। ସାନ୍ ହୋସେ ଡେଲ୍ଟା ଏୟାର୍ ଲାଇନ୍ସର "hub" ନୁହେଁ। ତେଣୁ ସାନ୍ ହୋସେରୁ ଜଣେ ଯଦି କୌଣସି ଏକ ସ୍ଥାନକୁ ଡେଲ୍ଟାରେ ଯାଏ, ତେବେ ପ୍ରଥମେ ଡେଲ୍ଟାର ନିକଟତମ "hub" କୁ ଯିବାକୁ ହେବ ଏବଂ ସେଠାରୁ ନିଜର ନିର୍ଦ୍ଦିଷ୍ଟ ସ୍ଥାନକୁ ଯାଇପାରିବ। ଏହି ବ୍ୟବସ୍ଥା ଦ୍ୱାରା ଆକାଶ ମାର୍ଗ ଶୃଙ୍ଖଳିତ ରହେ। କିନ୍ତୁ ଯାତ୍ରୀମାନଙ୍କୁ ଯାତ୍ରା ପଥରେ ବହୁତ ସମୟ ନଷ୍ଟ କରିବାକୁ ହୁଏ। ଲାସ୍ ଭେଗାସ୍‌ର ଅବସ୍ଥିତି ସାନ୍ ହୋସେର ଦକ୍ଷିଣ ପୂର୍ବରେ। କିନ୍ତୁ ପ୍ରଥମେ ଆମକୁ ଡେଲ୍ଟାର ନିକଟତମ "hub"-ସଲଟ୍ ଲେକ୍ ସିଟି (ଯାହାକି ସାନ୍ ହୋସେର ଉତ୍ତର ପୂର୍ବରେ) କୁ ଯିବାକୁ ପଡିଲା। ଲାସ୍ ଭେଗାସ୍ ସିଧାସଳଖ ଯାଇଥିଲେ ଆମେ ସାଢେ ଦଶଟା ସୁଦ୍ଧା ପହଞ୍ଚି ଯାଇଥାଆନ୍ତୁ କିନ୍ତୁ ଏମିତି ବୁଲିକରି ଯିବା ଫଳରେ ଲାସ୍ ଭେଗାସ୍‌ରେ ପହଞ୍ଚୁ ପହଞ୍ଚୁ ଅପରାହ୍ନ ସାଢେ ତିନି।

ସାନ୍ ହୋସେ- ସଲ୍ଟ ଲେକ୍ ସିଟି ଫ୍ଲାଇଟ୍‌ରେ ବେଶ୍ ମଜା ଘଟଣାଟିଏ ଘଟିଲା। କଂପ୍ୟୁଟର୍‌ରେ କିଛି ଗୋଟିଏ ଗଣ୍ଡଗୋଳ ହୋଇ ଆମ ଚାରି ଜଣଙ୍କୁ ଚାରୋଟି ଅଲଗା ଜାଗାରେ ସିଟ୍ ମିଳିଥାଏ। ପ୍ଲେନ୍ ଛାଡିବାର ପ୍ରାୟ ପନ୍ଦର ମିନିଟ୍ ପରେ ଗିଟି ପାଖରେ ବସିଥିବା ଜଣେ ବୟସ୍କା ଆମେରିକାନ୍ ଭଦ୍ରମହିଳା ବ୍ୟସ୍ତ ବିବ୍ରତ ହୋଇ ଏୟାର ହୋଷ୍ଟେସ୍‌କୁ ଡାକ ପକେଇଲେ। ମୁଁ ଭାବିଲି ଦୁଷ୍ଟ ଗିଟି ନିଶ୍ଚୟ କିଛି ବଦମାସୀ କରିଛି। ମୁଁ ନିଜ ସିଟ୍‌ରୁ ଉଠି ଏୟାର୍ ହୋଷ୍ଟେସ୍ ଆସିବା ଆଗରୁ ସେଠି ପହଞ୍ଚିଗଲି। ମତେ ଦେଖି ଭଦ୍ରମହିଳା ଜଣକ

ପ୍ରାୟ କାନ୍ଦ କାନ୍ଦ ହୋଇ କହିଲେ, "ମୁଁ ଭୁଲ ପ୍ଲେନ୍‌ରେ ବସିଯାଇଛି। ମୋର ସଲ୍‌ଟ ଲେକ୍ ସିଟି ଯିବା କଥା। କିନ୍ତୁ ଏଇ ଛୋଟ ଝିଅଟି କହୁଛି ଯେ ସେ ଲାସ୍ ଭେଗାସ୍ ଯାଉଛି।" ମୁଁ ବୁଝିଗଲି ଘଟଣାଟି କ'ଣ। ଗିଟି ତ ପ୍ଲେନ୍ ବଦଳାଇବା କଥା କିଛି ଜାଣେ ନାହିଁ। ତେଣୁ କହିଦେଇଛି ଯେ ଆମେ ଲାସ୍ ଭେଗାସ୍ ଯାଉଛୁ। ମୁଁ ହସି କରି ଭଦ୍ରମହିଳାଙ୍କୁ କହିଲି ଯେ ସେ ଠିକ୍ ପ୍ଲେନ୍‌ରେ ଚଢ଼ିଛନ୍ତି। ଲାସ୍ ଭେଗାସ୍‌କୁ ସିଧାସଳଖ ଫ୍ଲାଇଟ୍ ନ ଥିବାରୁ ଆମେ ସଲ୍‌ଟ ଲେକ୍ ସିଟି ହୋଇ ଯାଉଛୁ। ଭଦ୍ରମହିଳା ଆଖି ବଡ ବଡ କରି କହିଲେ, "Isn't it a strange way to travel?" ଆମେରିକାନ୍ ଭଦ୍ରମହିଳାଙ୍କୁ "hub" ବିଷୟରେ ମୁଁ ବା କ'ଣ ବୁଝେଇ ଥାଆନ୍ତି? ହସି ଦେଇ ମୋ ନିଜ ସିଟ୍‌କୁ ଚାଲିଗଲି।

ଲାସ୍ ଭେଗାସ୍ ଦେଖିବାପାଇଁ ମୋର ଆଗ୍ରହ ହୁଏତ ନ ଥିଲା, କିନ୍ତୁ ମନ ଭିତରେ ଥିଲା ଅସୀମ କୌତୂହଳ। କେବଳ ଜୁଆ ଓ ମନୋରଞ୍ଜନ ନେଇ ସହରଟିଏ କେମିତି ଯୁଗ ଯୁଗ ଧରି ଚାଲିଛି- ସେ ବିଷୟରେ କୌତୂହଳ। ଏଆର୍ ପୋର୍ଟ ଭିତରେ ପାଦ ଦେଇ ମୁଁ ଅବାକ୍ ହୋଇଗଲି। ଏଆର ପୋର୍ଟଟି ଯେମିତି ଗୋଟିଏ କ୍ୟାସିନୋ। ଚାରିଆଡେ ସ୍ଲଟ୍ ମେସିନ୍। ସ୍ଲଟ୍ ମେସିନ୍‌ରେ ନିର୍ଦ୍ଦିଷ୍ଟ ଗୋଟିଏ ପଇସା ପକେଇ ହ୍ୟାଣ୍ଡଲ୍ ଟାଣି ନେବାକୁ ହୁଏ। ହୁଏ ତ ତଳବାଟେ ଝଣଝଣ ହୋଇ ପଇସା ବାହାରି ଆସିବ ବା କିଛି ନାହିଁ। ମତେ ଯେଉଁ ଜିନିଷଟି ଦେଖି ମଜାଲାଗିଲା ତାହା ହେଲା ଯାତ୍ରୀମାନେ ନିଜନିଜର ଜିନିଷପତ୍ର ପ୍ଲେନ୍‌ରୁ ଆସିବା ପାଇଁ ଅପେକ୍ଷା କରିବା ଭିତରେ ସ୍ଲଟ୍ ମେସିନ୍ ସାମ୍ନାରେ ବସି ଯାଉଥାଆନ୍ତି। ଏପରିକି ପ୍ଲେନ୍‌ପାଇଁ ଅପେକ୍ଷା କରୁଥିବା ସମୟ ଟିକକ ମଧ୍ୟ ସ୍ଲଟ୍ ମେସିନ୍ ସାମ୍ନାରେ କଟି ଯାଉଥାଏ।

ବହୁତ ବର୍ଷ ତଳେ କିନ୍ତୁ ଏହି ସ୍ଥାନଟି ଥିଲା ମରୁଭୂମିରେ ଓଏସିସ୍‌ଟିଏ। କ୍ୟାଲିଫୋର୍ଣ୍ଣିଆର ପଡୋଶୀ ରାଜ୍ୟ ନେଭାଡା ଅନ୍ତର୍ଗତ ଏହି ଓଏସିସ୍‌ରେ ସେତେବେଳେ ମର୍ମୋନ୍‌ମାନେ ରହୁଥିଲେ। ରେଳଲାଇନ୍ ଆସିବା ପରେ ସ୍ଥାନଟି ଗୋଟିଏ ସହରରେ ପରିଣତ ହୋଇଗଲା। କିନ୍ତୁ ଲାସ୍ ଭେଗାସ୍‌ର ପ୍ରକୃତ ପରିବର୍ତ୍ତନ ଆସିଲା ୧୯୩୧ରେ। ସେହି ବର୍ଷ ଏଇ ସହରରେ ଜୁଆ ଖେଳକୁ ଆଇନର ସ୍ୱୀକୃତି ମିଳିଗଲା। ତା'ପରେ ଛତୁ ଫୁଟିବାପରି କ୍ୟାସିନୋ ଗଢି ଉଠିଲା ଏଇଠି। ସେଇଦିନଠାରୁ ଆଜି ପର୍ଯ୍ୟନ୍ତ

ଲାସ୍ ଭେଗାସ୍‌ର ରୂପରଙ୍ଗରେ କେବଳ ଅଧିକରୁ ଅଧିକ ମେକ ଆସିଛି। ମୁଁ କେଉଁଠି ପଢ଼ିଥିଲି ଯେ ଲାସ୍ ଭେଗାସ୍‌ରେ ଟୁଥ୍‌ପେଷ୍ଟ କିଣିବା ଅପେକ୍ଷା ଜୁଆ ଖେଳିବା ସୁବିଧାଜନକ। କାରଣ ନିର୍ଦ୍ଦିଷ୍ଟ ସମୟ ଛଡ଼ା ଅନ୍ୟ ସମୟରେ ଟୁଥ୍‌ପେଷ୍ଟ ବା ସେଇଭଳି ଜିନିଷ ସବୁ ମିଳୁଥିବା ଦୋକାନ ବନ୍ଦ ରହେ। କିନ୍ତୁ କ୍ୟାସିନୋଗୁଡ଼ିକ ଚବିଶ ଘଣ୍ଟା ଖୋଲା। କ୍ୟାସିନୋରେ ରାତି ନାହିଁ, ଦିନ ନାହିଁ। ଖୁବ୍ ଶୀଘ୍ର ଧନୀ ହୋଇଯିବାର ନିଶାରେ ଘାରିହୋଇ ଏଇଠି ରହିଥାଆନ୍ତି ଅସଂଖ୍ୟ ଲୋକ।

ଏହା ଭିତରେ ଆମର ସୁଟକେଶଗୁଡ଼ିକ ଆସି ଯାଇଥିଲା। ସେସବୁ ନେଇ ଆମେ ଟ୍ୟାକ୍‌ସିରେ ହୋଟେଲ୍ ଆଡ଼କୁ ଚାଲିଲୁ। ତୁ ଜାଣି ଆଶ୍ଚର୍ଯ୍ୟ ହେବୁ, ଲାସ୍ ଭେଗାସରେ ହୋଟେଲ୍‌ରେ ରହିବା ବା ଖାଇବା ଖର୍ଚ୍ଚ ବେଶୀ ନୁହଁ। ଏପରିକି ବଡ଼ ବଡ଼ ହୋଟେଲ୍‌ର ରୁମ୍ ଭଡ଼ା ବେଶ୍ କମ୍। ନିଜ ନିଜର କ୍ୟାସିନୋକୁ ଲୋକମାନଙ୍କୁ ଆକର୍ଷିତ କରିବାପାଇଁ ହୋଟେଲ୍‌ଗୁଡ଼ିକ ଏଇଭଳି ବ୍ୟବସ୍ଥା କରିଛନ୍ତି। ଆମେ ଆଗରୁ "ସର୍କସ - ସର୍କସ" ହୋଟେଲ୍‌ରେ ରୁମ୍‌ଟିଏ ବୁକ୍ କରିଥିଲୁ। ୨୭୯୩ଟି ରୁମ୍ ଥିବା ବିରାଟ ହୋଟେଲ୍। ଏଇ ହୋଟେଲ୍ ବିଷୟରେ ଆମେ ଆଗରୁ ଅନ୍ୟମାନଙ୍କଠାରୁ ଶୁଣିଥିଲୁ। କ୍ୟାସିନୋ ବ୍ୟତୀତ ଏହାର ପ୍ରଧାନ ଆକର୍ଷଣ ହେଲା ସର୍କସ୍। ହୋଟେଲ୍‌ର ତୃତୀୟ ମହଲାରେ ଦିନ ଏଗାରଟା ଠାରୁ ରାତି ବାରଟା ପର୍ଯ୍ୟନ୍ତ ସର୍କସ୍ ଚାଲିଥାଏ। ପିଲାଙ୍କୁ ନେଇ ଲାସ୍ ଭେଗାସ୍ ଆସୁଥିବା ଲୋକମାନଙ୍କୁ ହୋଟେଲ୍ ପ୍ରତି ଆକର୍ଷିତ କରିବା ପାଇଁ ଏଭଳି ବ୍ୟବସ୍ଥା।

ହୋଟେଲ୍‌ରେ ଚେକ୍ ଇନ୍ କରିବା ବେଳକୁ ପ୍ରାୟ ସାଢ଼େ ପାଞ୍ଚ। ଆଉ ବିଶ୍ରାମ ନେଉଛି କିଏ? ଲୁଗାପଟା ବଦଳେଇ ନେଇ ବାହାରି ପଡ଼ିଲୁ। ସର୍କସ ଦେଖିବା ପାଇଁ ପିଲାମାନେ ଡେଉଁଥାଆନ୍ତି। ଏଣେ ମୋ ମନରେ କ୍ୟାସିନୋ ଭିତର ଦେଖିବା ପାଇଁ କୌତୂହଳ। ହୋଟେଲ୍‌ର ଦ୍ୱିତୀୟ ମହଲାରେ କ୍ୟାସିନୋ। ସର୍କସ ଦେଖିବାକୁ ହେଲେ ପ୍ରଥମେ କ୍ୟାସିନୋ ଭିତର ଦେଇ ଯିବାକୁ ହୁଏ। କ୍ୟାସିନୋ ଭିତରେ ପାଦ ଦେଇ ମୁଁ ରହିଗଲି। ସିନେମାରେ କ୍ୟାସିନୋର ରୂପରେଖ ଦେଖିଛି; ବହିରେ ସେ ବିଷୟରେ ପଢ଼ିଛି, କିନ୍ତୁ ନିଜ ଆଖିରେ ମୁଁ ଯାହା ଦେଖିଲି ସେ ଦୃଶ୍ୟର ତୁଳନା ହୁଏନାହିଁ। କେଉଁଠି ସ୍ଲଟ୍ ମେସିନ୍, କେଉଁଠି ପୋକର୍, ବ୍ଲାକ୍‌ଜ୍ୟାକ୍। ଆମ ଭଳି ଦେଖଣାହାରୀ ଅବଶ୍ୟ କେଇଜଣ ବୁଲୁଥାନ୍ତି, କିନ୍ତୁ ଅଧିକାଂଶ ନିଜ ନିଜ ଖେଳରେ ମଗ୍ନ। ଆଖିରେ ପଲକ ପଡୁ ନଥାଏ।

ଧ୍ୟାନରେ ବସି ଥାଆନ୍ତି ଯେମିତି ।

ସାଧାରଣତଃ ଜୁଆଖେଳ (Gambling) କଥାଟି ଶୁଣିଲେ ଅଧିକାଂଶଙ୍କ ମନ ଭିତର ବିଷେଇ ଉଠେ। କିନ୍ତୁ ଯେଉଁ ଜିନିଷଟି ଦେଖି ମତେ ଅବାକ୍ ଲାଗିଲା, ସେଇଟି ହେଲା ଏଠାରେ କ୍ୟାସିନୋଗୁଡ଼ିକ ଅତି ସୁନ୍ଦର ଭାବରେ ପରିଚାଳିତ। ତୁ ଏହାକୁ ଯେ କୌଣସି ବ୍ୟବସାୟିକ ପ୍ରତିଷ୍ଠାନ ସହିତ ତୁଳନା କରିପାରୁ। ଅଧିକାଂଶ ଖେଳରୁ ଶେଷରେ କ୍ୟାସିନୋମାନଙ୍କର ହିଁ ଲାଭ ହୋଇଥାଏ (ନହେଲେ କ୍ୟାସିନୋ କିଏ କାହିଁକି ଖୋଲିବ?) କିନ୍ତୁ କିଏ କାହାକୁ ଠକି ନେବାର ଚେଷ୍ଟା କରେ ନାହିଁ ବା ଅଯଥା କେଉଁଠି ଅପ୍ରୀତିକର ଘଟଣା ଘଟେ ନାହିଁ।

କ୍ୟାସିନୋ ଭିତର ଦେଇ ଆମେ ତୃତୀୟ ମହଲାକୁ ଗଲୁ। ସର୍କସ ଛଡା ସେଇଠାରେ ଥାଏ ପିଲାଙ୍କ ପାଇଁ ବହୁରକମର ଖେଳ। ତାକୁ ଦେଖି ମୋର ପିଲାଦିନେ ଦେଖିଥିବା ମେଳା କଥା ମନେ ପଡ଼ିଗଲା। କେଉଁଠି ଲକ୍ଷ୍ୟ ବସ୍ତୁ ଉପରେ ରିଙ୍ଗ ପକାଇବାକୁ ହେବ ତ କେଉଁଠି ପଇସାଟିଏ ଏଭଳି ଭାବରେ ପକେଇବାକୁ ହେବ ଯେ ଟେବୁଲରେ ଥିବା ନାଲି ବୃତ୍ତକୁ ଛୁଇଁଯିବ। ଆମେ ଦୁଇ ଚାରୋଟି ସ୍ଥାନରେ ଚେଷ୍ଟା କଲୁ, କିନ୍ତୁ କେଉଁଠି ହେଲେ ଜିତି ପାରିଲୁ ନାହିଁ। ତା'ପରେ ସର୍କସ। ବଡ ବଡ ସର୍କସ ସହିତ ଏଇ ସର୍କସର ତୁଳନା କରିବା ଠିକ୍ ହେବ ନାହିଁ; ତେବେ ମୋ ମତରେ ମନ୍ଦ ନୁହେଁ। ସର୍କସଟି ପିଲାମାନଙ୍କୁ ଯେ ଅତି ଭଲ ଲାଗିଲା, ତାହା ତ ଜଣାଶୁଣା କଥା।

ଲାସ୍ ଭେଗାସ୍‌ର ଅଧିକାଂଶ କ୍ୟାସିନୋ ଓ ହୋଟେଲ୍ ଗୋଟିଏ ରାସ୍ତାର ଉଭୟ କଡରେ ରହିଛି। ଏହି ରାସ୍ତାଟିକୁ କହନ୍ତି "The Strip"। କିନ୍ତୁ ପ୍ରକୃତ ନାଁ ହେଲା ଲାସ୍ ଭେଗାସ ବୁଲେଭାର୍ଡ। ରାତି ଖାଇବା ପରେ ଆମେ ରାସ୍ତାକୁ ବାହାରି ଆସିଲୁ। ଯେତେବେଳେ ଏଇ ରାସ୍ତା ଦେଇ ହୋଟେଲକୁ ଆସିଥିଲୁ ସେତେବେଳେ ଦିନ ଥିଲା। ଏଇ କେତେ ଘଣ୍ଟା ଭିତରେ ରାତି ହୋଇଯାଇଛି। ଏବଂ ତା' ସଙ୍ଗେ ସଙ୍ଗେ ଲାସ୍ ଭେଗାସ୍ ବୁଲେଭାର୍ଡର ଚେହେରା ବଦଳି ଯାଇଛି। ରଙ୍ଗୀନ୍ ଆଲୁଅରେ ହୋଟେଲ୍ ଓ କ୍ୟାସିନୋ ସବୁ ଏତେ ସୁନ୍ଦର ସଜା ହୋଇଥାଏ ଯେ ମୋର ମନେହେଲା ଆମେ ଯେମିତି ଅନ୍ୟ ଏକ ସହରରେ ପହଞ୍ଚି ଯାଇଛୁ। ରାସ୍ତାରେ ଭୀଷଣ ଭିଡ। ମୋର ଖାଲି ଦଶହରା ଯାତ୍ରା କଥା ମନେ ପଡିଯାଉଥାଏ। କିଏ ଆମ ଭଳି ଅନିର୍ଦ୍ଦିଷ୍ଟ ଭାବରେ ରାସ୍ତାରେ ଘୂରୁଛି

ତ କିଏ ଗୋଟିଏ କ୍ୟାସିନୋରୁ ଅନ୍ୟ ଏକ କ୍ୟାସିନୋକୁ ଯାଉଛି। କିଛି ସମୟ ରାସ୍ତା ଉପରେ ବୁଲିବା ପରେ ଆମେ ଗୋଟିଏ ପୋଲ ଉପରେ ବସିଗଲୁ। କିଛି ସମୟ ପରେ ହଠାତ୍ ସେଇଠି ଲୋକ ଭିଡ ଆରମ୍ଭ ହୋଇଗଲା। ଏବଂ ପରେ ପରେ କେତେକ କଲେଜ ଛାତ୍ରଛାତ୍ରୀ ସୁନ୍ଦର ପୋଷାକ ପିନ୍ଧି ନାଚ ଗୀତ ଆରମ୍ଭ କରିଦେଲେ। ଭାରି ଭଲ ଲାଗୁଥାଏ। ନାଚ ଗୀତ ସରିବା ପରେ ଆମେ ହୋଟେଲକୁ ଫେରି ଆସିଲୁ। ସେତେବେଳକୁ ପ୍ରାୟ ସାଢେ ଦଶଟା।

ତା'ପରଦିନ ଏଗାରଟା ବେଳେ ୱାଶିଙ୍ଗଟନ୍ ଯିବା କଥା। ମୋର ଆଦୌ ବିଶ୍ୱାସ ହେଉ ନଥାଏ ଯେ ମୁଁ ଲାସ୍ ଭେଗାସ୍‌ରେ ମାତ୍ର କେଇ ଘଣ୍ଟା କଟେଇଛି ବୋଲି। ମନେ ହେଉଥାଏ ଆମେ ଗତ କେଇଦିନ ଧରି ଏଇଠି ରହିଛୁ ଏବଂ କିଛି ଗୋଟିଏ' ଉତ୍ସବ ପାଳନ କରି ଫେରୁଛୁ। ଏତେବେଳକେ ମୁଁ ବୁଝିଲି କାହିଁକି ଲୋକମାନେ ସୁବିଧା ପାଇଲେ ଏଇ ସହରକୁ ଚାଲିଆସନ୍ତି। ଏଠିକାର ବାତାବରଣ ଏପରି ଯେ ଜଣେ ନିତିଦିନିଆ ଜୀବନର ଚାପକୁ ଅକ୍ଳେଶରେ ଭୁଲିଯାଇପାରେ, ହେଉପଛକେ ଅଳ୍ପ କିଛି ସମୟ ପାଇଁ। ଏ ଯେମିତି ଏକ ସ୍ୱପ୍ନର ଦୁନିଆ। ଲାସ୍ ଭେଗାସ୍ ବିଷୟରେ ମୋର ଅନେକ ଭୁଲ୍ ଧାରଣା ଥିଲା। ନିଜ ଆଖିରେ ଏ ସହରଟି ନ ଦେଖିଥିଲେ ସେ ସବୁ ଭୁଲ ଧାରଣା କେବେହେଲେ ମୋ ମନରୁ ଦୂରେଇ ଯାଇ ନ ଥାଆନ୍ତା।

କ୍ୟାସିନୋ ବ୍ୟତୀତ ଲାସ୍ ଭେଗାସ୍‌ରେ ଯାହା ଦେଖିବା ପାଇଁ ପର୍ଯ୍ୟଟକମାନେ ଆସନ୍ତି ତାହା ହେଲା ବିଭିନ୍ନ ଶୋ (Show)। ବିଭିନ୍ନ ସ୍ଥାନରେ ବିଭିନ୍ନ ରକମର କାର୍ଯ୍ୟକ୍ରମ ରାତିସାରା ଚାଲିଥାଏ। ଏଥି ମଧ୍ୟରୁ କେତେଗୁଡିଏ ବେଶ୍ ଜନପ୍ରିୟ। କିନ୍ତୁ ସେଗୁଡିକ ସଂପୂର୍ଣ୍ଣ ଭାବରେ ନଗ୍ନତା-ରହିତ ନୁହଁ। ପିଲାମାନଙ୍କୁ ନେଇ ସେଇଭଳି କିଛି ଦେଖିବାକୁ ଯିବା କଥା ଭାବି ହୁଏ ନାହିଁ। ତା'ଛଡା ଅଧିକାଂଶ ଇ ତ କେବଳ ବୟସ୍କମାନଙ୍କ ପାଇଁ। ପିଲାଙ୍କୁ ଛାଡି ହୁଏତ ଆମେ ଯାଇ ପାରିଥାଆନ୍ତୁ। କିନ୍ତୁ ଅଜଣା ହୋଟେଲ୍ ରୁମ୍‌ରେ ଦୁଇ ପିଲାଙ୍କୁ ଏକା ଛାଡି ରାତି ଡେରି ପର୍ଯ୍ୟନ୍ତ ବାହାରେ ରହିବାର ଇଚ୍ଛା ନା ଥିଲା ମୋର ନା ତୋ ଭାଇନାଙ୍କର।

ଲାସ୍ ଭେଗାସ୍‌ରୁ ୱାଶିଙ୍ଗଟନ୍ ଡି.ସି.। ଅନେକ ବେଶୀ ବାଟ। ତିନି ଘଣ୍ଟାର ପାର୍ଥକ୍ୟ। ଏଇଠି ତତେ କହି ରଖେ, ଯୁକ୍ତରାଷ୍ଟ୍ର ଆମେରିକା ଦେଶଟି ଏତେ

ବଡ ଯେ ଦେଶ ଭିତରେ ଚାରୋଟି ଭିନ୍ନ ଭିନ୍ନ ସମୟ ଦେଖିବାକୁ ମିଳେ। ଭାରତରେ ଯେମିତି ସବୁ ସ୍ଥାନରେ ଗୋଟିଏ ସମୟ, ଏଠି ତା' ନୁହେଁ। ପୂର୍ବ ଆମେରିକାର ସମୟ ପଶ୍ଚିମ ଆମେରିକା ଅପେକ୍ଷା ତିନିଘଣ୍ଟା ଅଧିକ। ମଧ୍ୟ ଆମେରିକାର କେତୋଟି ଅଞ୍ଚଳର ସମୟ ପଶ୍ଚିମ ଆମେରିକା ଅପେକ୍ଷା ଗୋଟିଏ ଘଣ୍ଟା ଅଧିକ ଏବଂ ଅନ୍ୟ କେତେକ ସ୍ଥାନ ଦୁଇ ଘଣ୍ଟା ଅଧିକ। ୱାଶିଙ୍ଗଟନ୍ ଡି.ସି. ପୂର୍ବ ଆମେରିକାରେ। ତେଣୁ ଏଠିକାର ସମୟ ପଶ୍ଚିମ ଆମେରିକା ଅପେକ୍ଷା ତିନିଘଣ୍ଟା ଅଧିକ। ପରଦିନ ୱାଶିଙ୍ଗଟନ୍ ନ୍ୟାସନାଲ୍ ଏଆରପୋର୍ଟରେ ଆମେ ଯେତେବେଳେ ପହଞ୍ଚିଲୁ ସେତେବେଳେ ରାତି ପ୍ରାୟ ସାଢେ ଆଠ।

ଏଇଠି ତୋ ଭାଇନାଙ୍କର ଜଣେ ଦୂରସଂପର୍କୀୟ ଆତ୍ମୀୟ ରହନ୍ତି। ସେ ଆମର ଆସିବା ଖବର ପାଇ ତାଙ୍କ ଘରେ ରହିବାର ସବୁ ବ୍ୟବସ୍ଥା କରିଥିଲେ। ରାତିରେ ଖାଇସାରି ଆମେ ଯେତେବେଳେ ଶୋଇବାକୁ ଗଲୁ ସେତେବେଳେ ରାତି ଏଗାରଟା। କିନ୍ତୁ ନିଦ କାହିଁ? ସେତେବେଳେ କ୍ୟାଲିଫୋର୍ଣ୍ଣିଆ ସମୟ ତ ରାତି ଆଠ, ନିଦ ହେବ ବା କେମିତି? ରାତିରେ ନିଦ ଯେମିତି ଡେରିରେ ହେଲା, ସକାଳେ ସେଇପରି ନିଦ ଭାଙ୍ଗିବାରେ ଅସୁବିଧା। ସାତଟାରେ ଆଲାର୍ମ ଦେଇଥିଲେ ମଧ୍ୟ ବିଛଣା ଛାଡୁ ଛାଡୁ ସାଢେ ଆଠ ବାଜିଗଲା। ବିଜ୍ଞାନ ବଳରେ ମଣିଷ ଦୂରଦୂରାନ୍ତକୁ ସହଜରେ ଯାତ୍ରା କରି ପାରୁଛି ସତ, କିନ୍ତୁ ହାତଘଣ୍ଟାର ସମୟ ବଦଳେଇ ଦେଇ କ'ଣ ଶରୀର ଭିତରର ଘଣ୍ଟାକୁ ବଦଳେଇ ପାରୁଛି?

ଆମେ ଶୀଘ୍ର ଶୀଘ୍ର ପ୍ରସ୍ତୁତ ହୋଇ ଘରୁ ବାହାରି ପଡିଲୁ। ବିଶ୍ୱାସ ହେଉ ନ ଥାଏ ଯେ ଆମେ ଐତିହାସିକ ସହର ୱାଶିଙ୍ଗଟନ୍ ଡି.ସି.ରେ ଆସି ପହଞ୍ଚିଯାଇଛୁ। ଯେତେବେଳେ ଆମେରିକା ସ୍ୱାଧୀନ ହେଲା, ସେତେବେଳେ ରାଜଧାନୀ ଯେ କେଉଁଠି ହେବ ସେଥିନେଇ ବହୁ ବାଦବିବାଦ ଲାଗିଗଲା। ସାତ ବର୍ଷ ପରେ ସ୍ଥିର ହେଲା ଯେ ପୋଟୋମାକ୍ ନଦୀ କୂଳରେ ରାଜଧାନୀ ସ୍ଥାପନ କରାଯିବ। ଜର୍ଜ ୱାଶିଙ୍ଗଟନ୍ ଯେଉଁ ସ୍ଥାନଟି ବାଛିଲେ, ସେଇଟି ସହରର ପଦବାଚ୍ୟ ନ ଥିଲା। ସନ୍ତସନ୍ତିଆ ଅସନା ଜାଗା, ମଶା ମାଛି ଭର୍ତ୍ତି। କିନ୍ତୁ ୧୭୯୨ ମସିହାରେ ସହରଟିଏର ନକ୍ସା ତିଆରି ହେଲା ଏବଂ ପରେ ପରେ ଖୁବ୍ ଜୋରସୋରରେ କାମ ଆରମ୍ଭ ହୋଇଗଲା। ୧୮୧୨ର ଯୁଦ୍ଧ ଓ ୧୮୬୧ର ଗୃହଯୁଦ୍ଧ ସମୟରେ ସହର ତିଆରି କାମ ଅଟକି ଯାଇଥିଲା। କିନ୍ତୁ ୧୮୬୧ ପରେ କାମ ଖୁବ୍

ଶୀଘ୍ର ଶେଷ ହୋଇଗଲା । ଏହି ସହରର ସଂସ୍କୃତି, ବାତାବରଣ ମୁଁ ଦେଖିଥିବା ଅନ୍ୟ ଆମେରିକାନ୍ ସହର ଅପେକ୍ଷା ଭିନ୍ନ । ମୋର ମନେହେଲା ତୁଳନାତ୍ମକ ଭାବରେ ଏଠିକାର ଲୋକମାନେ ଅଧିକ ରକ୍ଷଣଶୀଳ । ଅନ୍ୟ ଏକ ବିଷୟ ହେଲା ଏଠାରେ ବଡ ବଡ ଶିଳ୍ପ ଦେଖିବାକୁ ମିଳେ ନାହିଁ । ତେଣୁ ୱାଶିଙ୍ଗଟନ୍ ବେଶ୍ ପରିଷ୍କାର, ପରିଚ୍ଛନ୍ନ ।

ଏଠି ଦେଖିବାପାଇଁ ବହୁତ କିଛି ରହିଛି, ସେଇଥିପାଇଁ ବୋଧହୁଏ ସବୁବେଳେ ପର୍ଯ୍ୟଟକଙ୍କର ଭିଡ ଲାଗି ରହିଥାଏ । ମୁଁ କେଉଁଠି ପଢିଥିଲି ଯେ ବର୍ଷକୁ ପ୍ରାୟ ଦୁଇକୋଟି ପର୍ଯ୍ୟଟକ ୱାଶିଙ୍ଗଟନ୍ ଡି.ସି.କୁ ଆସିଥାଆନ୍ତି । ହେଲେ ମିତୁ, ତୁ ଯଦି କେବେ ଏଠିକୁ ଆସୁ, ଆମ ଭଳି ହାତରେ ମାତ୍ର ଦୁଇଦିନ ସମୟ ରଖି ଆସିବୁ ନାହିଁ । ଅତି କମ୍‌ରେ ପାଞ୍ଚଛଅ ଦିନ ରହିବା କଥା । ଦୁଇ ଦିନରେ ତ ସବୁ କିଛି ଦେଖି ହେବ ନାହିଁ, ତେଣୁ ସବୁଠାରୁ ଭଲ ଭଲ ସ୍ଥାନଗୁଡିକୁ ବାଛି ଯିବା ପାଇଁ ସ୍ଥିର କଲୁ । ଆମେ ଶୁଣିଥିଲୁ ଯେ ଯଦି ହାତରେ ସମୟ ଓ ଅର୍ଥ ନିୟନ୍ତ୍ରିତ, ତେବେ ଏଇ ସବୁ ସ୍ଥାନ ଦେଖିବାର ସବୁଠାରୁ ଭଲ ଉପାୟ ହେଉଛି 'ଟୁର୍ ମୋବାଇଲ' । ଗୋଟିଏ ନିର୍ଦ୍ଦିଷ୍ଟ ପଥ ଦେଇ ଟୁର୍ ମୋବାଇଲ୍‌ର ଗାଡିଗୁଡିକ ଯାଏ ଏବଂ ସବୁ ଦର୍ଶନୀୟ ସ୍ଥାନ ସାମ୍ନାରେ ଅଟକି ଥାଏ । କଣ୍ଡକ୍ଟେଡ ଟୁର୍‌ରେ ଯେମିତି ଗୋଟିଏ ଦଳ ଏକାଠି ହୋଇ ସମସ୍ତ ଦର୍ଶନୀୟ ସ୍ଥାନକୁ ଯାଆନ୍ତି ଏବଂ ଇଚ୍ଛା ଥାଉ ବା ନ ଥାଉ ଏକ ନିର୍ଦ୍ଦିଷ୍ଟ ସମୟ କଟାନ୍ତି, ଏଥିରେ ତା' ନାହିଁ । ସେଇଭଳି କେତେକ ସ୍ଥାନରେ ଅଧିକ ସମୟ ରହିବାର ଇଚ୍ଛା ଥିଲେ ମଧ୍ୟ କଣ୍ଡକ୍ଟେଡ ଟୁରରେ ତାହା ସମ୍ଭବ ହୁଏ ନାହିଁ । ଏଇସବୁ କଥା ଚିନ୍ତା କରି ବୋଧହୁଏ ଟୁର୍ ମୋବାଇଲ୍ ଏକ ଅଭିନବ ଉପାୟ ସ୍ଥିର କରିଛି । ନିର୍ଦ୍ଧାରିତ ପଥରେ ପନ୍ଦର ମିନିଟ୍‌ର ତଫାତରେ ଟୁର୍ ମୋବାଇଲ୍‌ର ବସ୍ ଚାଲୁଥାଏ । ଜଣେ ଯେ କୌଣସି ସ୍ଥାନରେ ଓହ୍ଲେଇ ନିଜର ଇଚ୍ଛା ମୁତାବକ ସମୟ ସେଠାରେ କଟେଇ ସାରିବା ପରେ ପୁଣି ଅନ୍ୟ ଏକ ଟୁର୍ ମୋବାଇଲ୍ ବସ୍ ଧରି ଆଉ ଏକ ସ୍ଥାନକୁ ଯାଇ ପାରିବ । ଏଥିପାଇଁ ବାରମ୍ବାର ଟିକେଟ୍ କିଣିବାର ପ୍ରୟୋଜନ ନାହିଁ । ଥରେ ଗୋଟିଏ ଟିକେଟ୍ କିଣିଲେ ସେଇଥିରେ ଜଣେ ସାରାଦିନ ଟୁର୍ ମୋବାଇଲ୍‌ରେ ଘୁରିପାରିବ ।

ଆମେ ପ୍ରଥମେ ସବ୍‌ୱେରେ ସ୍ମିଥ୍‌ସୋନିଆନ୍ ଷ୍ଟେସନ୍ ପର୍ଯ୍ୟନ୍ତ ଗଲୁ । ସେଇଠୁ

ସ୍ମିଥ୍‌ସୋନିଆନ୍ ମିଉଜିଅମକୁ ନ ଯାଇ ଟୁର୍ ମୋବାଇଲ୍‌ର ଟିକେଟ କିଣି ବସ୍‌ରେ ଉଠିଲୁ। ତୋ ଭାଇନା ତ ଆଗରୁ ଏସବୁ ଦେଖିଛନ୍ତି। ସେ କହିଲେ ଯେ ପୃଥିବୀ ପ୍ରସିଦ୍ଧ ସ୍ମିଥ୍‌ସୋନିଆନ୍ ମିଉଜିମ୍ ଦେଖିବାକୁ ଗୋଟିଏ ଦିନ ଲାଗିଯିବ। ତେଣୁ ମିଉଜିଅମ୍ ଦେଖା ପରଦିନ ପାଇଁ ବାକୀ ରଖି ଆମେ ପ୍ରଥମେ ଗଲୁ ୟୁନାଇଟେଡ୍ ଷ୍ଟେଟ୍‌ସ କ୍ୟାପିଟଲ୍। ୨୦୯ ଏକର ପାର୍କ ଭିତରେ ଥିବା କ୍ୟାପିଟଲ୍ ହିଲ୍ ଉପରେ ଏହା ଗଢା ହୋଇଛି। ଯୁକ୍ତରାଷ୍ଟ୍ର ଆମେରିକାର ପ୍ରଧାନ ଦର୍ଶନୀୟ ସ୍ଥାନ ମଧ୍ୟରୁ ଏହା ଅନ୍ୟତମ। ଏହାର ଉଚ୍ଚତା ୭୬୬ ଫୁଟ୍, ଓସାର ୩୫୦ ଫୁଟ୍ ଏବଂ ଏହା ଭିତରେ ରହିଛି ୫୪୦ଟି କୋଠରୀ। ଏହାର ଶୀର୍ଷରେ ଥିବା ଗମ୍ବୁଜ ଉପରେ ୧୯.୫ ଫୁଟ୍ ଉଚ୍ଚ 'ମୁକ୍ତି' (Freedom)ର ବ୍ରୋଞ୍ଜ ମୂର୍ତ୍ତିଟିଏ ରହିଛି। ଅନନ୍ୟ ଏହାର ସୌନ୍ଦର୍ଯ୍ୟ। ଆମ ଦେଶର ପାର୍ଲାମେଣ୍ଟ ଭବନର ରାଜ୍ୟସଭା ଓ ଲୋକସଭା ଭଳି କ୍ୟାପିଟଲ୍‌ର ଦୁଇଟି ଭାଗ ରହିଛି- ସିନେଟ୍ ଓ କଂଗ୍ରେସ୍।

ଏକା ଏକା କ୍ୟାପିଟଲ୍‌ର ଭିତର ବୁଲି ଦେଖିବା ସମ୍ଭବ ନୁହଁ। ଭିତରେ ପାଦ ଦେବା ପରେ ଦେଖିଲୁ ଯେ ଏହା ଭିତରେ ମାଗଣାରେ ଗାଇଡେଡ୍ ଟୁର୍‌ର ବ୍ୟବସ୍ଥା ଅଛି। ଆମେ ଗୋଟିଏ ଦଳ ସହିତ ମିଶିଗଲୁ। ଟୁର୍‌ଟି ଆରମ୍ଭ ହୁଏ କ୍ୟାପିଟଲ୍‌ର ଠିକ୍ ମଧ୍ୟ ଭାଗରୁ। ସେଇଠାରେ ଥିବା ସମସ୍ତ ପେଣ୍ଟିଙ୍ଗ୍ ଦେଖି ସାରିବା ପରେ ଆମେ ଉପର ମହଲାକୁ ଗଲୁ। ଯୁକ୍ତରାଷ୍ଟ୍ର ଆମେରିକାର ସମ୍ବିଧାନ ପ୍ରସ୍ତୁତ କାଳର ବିଭିନ୍ନ କାଗଜପତ୍ର, ସ୍ୱାଧୀନତା ସଂଗ୍ରାମୀମାନଙ୍କର ବ୍ରୋଞ୍ଜ ଓ ମାର୍ବଲ୍‌ର ପ୍ରତିମୂର୍ତ୍ତି ଦେଖିସାରିବା ପରେ ଆମେ ଗଲୁ ସିନେଟ୍ ଓ କଂଗ୍ରେସ୍ ଦେଖିବା ପାଇଁ। ସେଦିନ ଶନିବାର। ସିନେଟ୍ ଓ କଂଗ୍ରେସ୍‌ର ସେସନ୍ ବନ୍ଦ ଥାଏ। ସେଇଥିପାଇଁ ବୋଧହୁଏ ଆମେ ଭିତରକୁ ଯାଇ ପାରିଲୁ। ସିନେଟ୍ ଭିତରେ ଦର୍ଶକମାନଙ୍କ ପାଇଁ ଉଦ୍ଦିଷ୍ଟ ଚୌକିରେ ବସିପଡିବା ପରେ ମୋ ଭିତରେ କେମିତି ଏକ ଶିହରଣ ଖେଳିଗଲା। ରାଜନୀତି ବିଜ୍ଞାନର ଛାତ୍ରୀ ମୁଁ। କେତେ ପଢିଛି ଏଇ ସିନେଟ୍/କଂଗ୍ରେସ ବିଷୟରେ। ଏଇଠାରେ ପୃଥିବୀର ସବୁଠାରୁ ଶକ୍ତିଶାଳୀ ରାଷ୍ଟ୍ରର ବିଭିନ୍ନ ନିଷ୍ପତ୍ତି ନିଆଯାଏ। ସତରେ କ'ଣ ମୁଁ ସେଇ ସିନେଟ୍ ଭିତରେ ହିଁ ବସିଛି? ପିଲାମାନେ ସିନେଟ୍ ଦେଖିବେ କ'ଣ ମୋ ମୁହଁକୁ ହାଁ କରି ଚାହିଁ ଥାଆନ୍ତି। କେତେ ସମୟ ପରେ ବହୁତ ଭାବିଚିନ୍ତି ଭୁମି ମତେ ପଚାରିଲା, "ମା, ତୁମେ ଏଇ ଚୌକୀରେ ବସି ଏମିତି ମନକୁ

ମନ ହସୁଛ କାହିଁକି ? ତମେ ବୋଧହୁଏ ଏମିତି ସୁନ୍ଦର ନାଲି ଭେଲ୍‌ଭେଟ୍‌ର ଚୌକୀରେ ଆଗରୁ କେବେ ବସିନାହଁ।''

ମିତୁ, ଏ ପ୍ରଶ୍ନର ମୁଁ କି ଉତ୍ତର ଦେଇଥାଆନ୍ତି ? କ୍ୟାପିଟଲ୍‌ରେ ମୋର ଆହୁରି ଅନେକ ସମୟ କଟାଇବାର ଇଚ୍ଛା ଥିଲା, କିନ୍ତୁ ସମ୍ବିଧାନର କାଗଜପତ୍ର, ପ୍ରତିମୂର୍ତ୍ତି ଏସବୁ ଦେଖି ଦେଖି ପିଲାମାନେ ବିରକ୍ତ ହୋଇଗଲେ। ସେଇମାନଙ୍କ କଥା ଭାବି ଶେଷରେ ବାହାରି ଆସିଲୁ। କ୍ୟାପିଟଲ୍ ସାମ୍ନାରେ ଲାଇବ୍ରେରୀ ଅଫ୍ କଂଗ୍ରେସ୍ (Library of Congress)। ତିନୋଟି ବିରାଟ କୋଠାକୁ ନେଇ ଏଇ ଲାଇବ୍ରେରୀ ଅଫ୍ କଂଗ୍ରେସ୍। ସବୁଠାରୁ ପୁରୁଣା କୋଠାଟିର ନାମ ଟମାସ୍ ଜେଫରସନ୍ ବିଲ୍‌ଡିଙ୍ଗ। ଏଇଟି ୧୮୯୭ରେ ତିଆରି। ତେଣୁ ଏଠାରେ ମଧ୍ୟଯୁଗର ଶିଳ୍ପକଳା ଦେଖିବାକୁ ମିଳେ। ଜନ୍ ଆଡାମ୍‌ସ ବିଲଡିଙ୍ଗରେ ଥିବା ଲାଇବ୍ରେରୀରେ ସାମାଜିକ ବିଜ୍ଞାନ ଓ ବିଜ୍ଞାନ ବ୍ୟତୀତ ଏସିଆ, ଆଫ୍ରିକା ତଥା ଅନ୍ୟାନ୍ୟ ମହାଦେଶ ଉପରେ ଅସଂଖ୍ୟ ବହି ରହିଛି। ସବୁଠାରୁ ନୂଆ କୋଠାଟି ହେଲା ଜେମ୍‌ସ ମ୍ୟାଡିସନ୍ ମେମୋରିଆଲ୍ ବିଲଡିଙ୍ଗ। ଲାଇବ୍ରେରୀ ଅଫ୍ କଂଗ୍ରେସ୍‌ରେ ପ୍ରାୟ ୨୬ ନିୟୁତ ବହି ଓ ପାମ୍ପଲେଟ୍ ରହିଛି। ଏବଂ ରହିଛି ୩୬ ନିୟୁତ ପାଣ୍ଡୁଲିପି, ମ୍ୟାପ୍ ଓ ଫଟୋ। ତା'ଛଡା ଅଛି ରେକର୍ଡିଙ୍ଗ, ସମ୍ବାଦପତ୍ର, ମାଇକ୍ରୋ ଫିଲ୍ମର ଅସଂଖ୍ୟ ରିଲ୍ ତଥା ଆମେରିକାର ବିଭିନ୍ନ ରାଷ୍ଟ୍ରପତିମାନଙ୍କର କାଗଜପତ୍ର।

ଲାଇବ୍ରେରୀ ଅଫ୍ କଂଗ୍ରେସ୍‌ର ଡାହାଣ ପଟକୁ ରହିଛି ସୁପ୍ରିମ୍ କୋର୍ଟ ବିଲ୍‌ଡିଙ୍ଗ। ସେଦିନ କୌଣସି କାରଣରୁ ଏହା ବନ୍ଦ ଥିଲା। ତେଣୁ ଆମେ ଭିତରକୁ ଯାଇ ପାରିଲୁ ନାହିଁ। କିନ୍ତୁ ସୁପ୍ରିମ୍ କୋର୍ଟ ବିଲଡିଙ୍ଗର ଚାରିପଟେ ଘୂରି ଆସି ମୁଁ ପିଲାଙ୍କ ଭଳି ଖୁସି ହୋଇଗଲି। ମୁଁ ଯେ ଆମେରିକା ସୁପ୍ରିମ୍ କୋର୍ଟର ସିଡ଼ି ଉପରେ ଠିଆ ହୋଇଛି। ଏହା କ'ଣ କିଛି କମ୍ କଥା ?

ସେତେବେଳକୁ ପ୍ରାୟ ଦିନ ଗୋଟାଏ ହେବ। ଚାଲି ଚାଲି ଭୋକ ଲାଗିଲାଣି। ମୁଁ ଆଖପାଖରେ ଆଖି ବୁଲେଇ ରେଷ୍ଟୋରାଁ ଖୋଜୁଥାଏ। କିନ୍ତୁ ତୋ ଭାଇନା କହିଲେ ଯେ ସେ ଆମକୁ ଖାଇବା ପାଇଁ ଗୋଟିଏ ବଢ଼ିଆ ଜାଗାକୁ ନେଇଯିବେ। ଟୁର୍ ମୋବାଇଲ୍ ବସ୍‌ରେ ଯାଇ ଆମେ ଯେଉଁଠି ଓହ୍ଲେଇଲୁ ସେଇଟା ହେଲା ୟୁନିଅନ୍ ଷ୍ଟେସନ୍। ବହୁ ପୁରୁଣା ଷ୍ଟେସନ୍, ଅତି ସୁନ୍ଦର ଇଟାଲୀୟ କାରୁକାର୍ଯ୍ୟ ହୋଇଛି; କିନ୍ତୁ ଭୋକରେ ପେଟ ଜଳୁଥିବା ବେଳେ କାରୁକାର୍ଯ୍ୟ ଦେଖି କ'ଣ

ପେଟ ପୂରିବ ? ଶେଷରେ କ'ଣ ଷ୍ଟେସନ୍ ଭିତରେ ଥାଳେବାଳେ ଖାଇବା ଖାଇବାକୁ ହେବ ?

ମିତ୍ର, ଭିତରେ ପାଦ ଦେଇ ମୁଁ ଅବାକ୍ ହୋଇଗଲି। ଏଇଟା ପୁଣି ଷ୍ଟେସନ୍! ଧଳା ଚକ୍‌ଚକ୍ ମାର୍ବଲ୍ ତିଆରି ବିରାଟ ହଲ୍। ଯେଉଁମାନେ ଟ୍ରେନ୍‌ରେ ଯାତ୍ରା କରିବା କଥା ସେମାନେ ଗୋଟିଏ ପାଖ ଦେଇ ଚାଲିଯାଉଥାଆନ୍ତି। ଅନ୍ୟ ପାଖରେ ଛୋଟ ବଡ ଷ୍ଟଲ୍ ଭଳି ହୋଇ ଅସଂଖ୍ୟ ଦୋକାନ। ଲୋକମାନଙ୍କର ହଇଚଇରେ ସ୍ଥାନଟି ଉଠୁଥାଏ, ପଡୁଥାଏ। ସେଇଠି ଗୋଟିଏ ରେଷ୍ଟୋରାଁରେ ବସି ଆମେ ଖାଇଲୁ। ସେ ସ୍ଥାନର ବାତାବରଣ ଏତେ ସୁନ୍ଦର ଯେ ସାଧାରଣ ସାଣ୍ଡୱିଚ୍ ଓ ଜୁସ୍ ମଧ ମନେ ହେଲା ଅତି ସୁସ୍ୱାଦୁ।

ଖାଇ ସାରିବା ପରେ ଟିକିଏ ଅଳସୁଆ ତ ଲାଗୁଥାଏ କିନ୍ତୁ ଏଣେ ଦେଖିବାକୁ ଯେ ବହୁତ ଜିନିଷ ବାକୀ ରହିଛି। ଏବଂ ଯାହା ଦେଖିବା ପାଇଁ ମୋର ସବୁଠାରୁ ଅଧିକ ଆଗ୍ରହ ସେଇ ହ୍ୱାଇଟ୍ ହାଉସ୍ (White House) ମୁଁ ଏ ପର୍ଯ୍ୟନ୍ତ ଦେଖିନାହିଁ। ହ୍ୱାଇଟ୍ ହାଉସ୍ - ଆମେରିକାର ରାଷ୍ଟ୍ରପତିଙ୍କର ବାସଭବନ। ଜର୍ଜ ୱାଶିଙ୍ଗଟନ୍‌ଙ୍କ ବ୍ୟତୀତ ଆମେରିକାର ଅନ୍ୟ ସମସ୍ତ ରାଷ୍ଟ୍ରପତି ଏଇଠାରେ ସେମାନଙ୍କର ସମୟ କାଳରେ ରହିଛନ୍ତି। ଆମେ ଶୁଣିଥିଲୁ ଯେ ହ୍ୱାଇଟ୍ ହାଉସ୍ ସାମ୍ନାରେ ଟିକେଟ୍ ବିକ୍ରି ହୁଏ ଏବଂ ଏଇ ଟିକେଟ୍ କିଣିଲେ ହ୍ୱାଇଟ୍ ହାଉସ୍ ଭିତରର କେତେକ ଅଂଶ ଜଣେ ଦେଖି ପାରିବ। କିନ୍ତୁ ଟିକେଟ ବୁଥ୍ ପାଖରେ ପହଞ୍ଚି ଆମେ ଦେଖିଲୁ ଯେ ସେଇଟି ବନ୍ଦ। ପାଖରେ ଲଗା ହୋଇଥିବା ବୋର୍ଡରେ ଲେଖାଥିଲା ଯେ ଟିକେଟ୍ କେବଳ ମଙ୍ଗଳବାରରୁ ଶନିବାର ୧୦ଟାରୁ ୧୨ଟା ପର୍ଯ୍ୟନ୍ତ ମିଳେ। ଆମ ସମସ୍ତଙ୍କର ମନ ଦୁଃଖ ହୋଇଗଲା। ଆମେ ଯଦି ଆଗରୁ ଏ ବିଷୟରେ ଜାଣିଥାଆନ୍ତୁ ତେବେ ପ୍ରଥମେ ଏଇଠିକୁ ଆସିଥାଆନ୍ତୁ। ମୋର ନିଜ ଉପରେ ରାଗହେଲା। ମୁଁ ଯଦି ୱାଶିଙ୍ଗଟନ୍ ଉପରେ ବହିଟିକୁ ମନଯୋଗ ଦେଇ ପଢିଥାଆନ୍ତି ତେବେ ଏପରି ଗୋଟିଏ ଘଟଣା ଘଟି ନ ଥାଆନ୍ତା। ତା'ପର ଦିନ ରବିବାର। ହ୍ୱାଇଟ୍ ହାଉସ୍ ଭିତରକୁ ଯାଇ ହେବ ନାହିଁ। ଆଉ ମନ କଷ୍ଟ କରି ଲାଭ ବା କ'ଣ? ଲୁହାର ଗ୍ରିଲ୍ ଭିତର ଦେଇ ହ୍ୱାଇଟ୍ ହାଉସକୁ ଆମେ ମନ ଭରି ଦେଖିନେଲୁ।

ତା'ପରେ ଆମକୁ ଟୁର୍ ମୋବାଇଲ୍‌ର ବସ୍ ଛାଡିଦେଲା ଜେଫରସନ୍

ମେମୋରିଆଲ୍ ପାଖରେ । ଟମାସ୍ ଜେଫରସନ୍‌ଙ୍କ ସ୍ମୃତିରେ ତିଆରି ଏଇ ମେମୋରିଆଲ୍ ଭିତରେ ଜେଫରସନ୍‌ଙ୍କର ପ୍ରତିମୂର୍ତ୍ତି ରହିଛି । ଏବଂ କାନ୍ଥରେ ଖୋଦେଇ ହୋଇଛି ତାଙ୍କର ପ୍ରସିଦ୍ଧ ଲେଖାଗୁଡ଼ିକର କିୟଦଂଶ ।

ଜେଫରସନ୍ ମେମୋରିଆଲ୍ ପରେ ଆମେ ଗଲୁ ଲିଙ୍କନ୍ ମେମୋରିଆଲ୍ । ଆମେରିକାର ପ୍ରସିଦ୍ଧ ରାଷ୍ଟ୍ରପତି ଆବ୍ରାହମ୍ ଲିଙ୍କନ୍‌ଙ୍କ ସ୍ମୃତିରେ ଏଇଟି ତିଆରି । ଜେଫରସନ୍ ମେମୋରିଆଲ୍ ଭଳି ଏଠାରେ ରହିଛି ଆବ୍ରାହମ୍ ଲିଙ୍କନ୍‌ଙ୍କର ଏକ ବିରାଟ ପ୍ରତିମୂର୍ତ୍ତି । ଏବଂ କାନ୍ଥରେ... "Democracy of the People, by the People and for the People." ଠାରୁ ଆରମ୍ଭ କରି ତାଙ୍କର ବହୁ ପ୍ରସିଦ୍ଧ ଭାଷଣର କେତେକ ଅଂଶ ଖୋଦେଇ କରା ହୋଇଛି । ଲିଙ୍କନ୍ ମେମୋରିଆଲ୍ ଏଭଳି ଏକ ସ୍ଥାନରେ ନିର୍ମାଣ କରାଯାଇଛି ଯେ ସେଠାରୁ ୱାଶିଙ୍ଗଟନ୍ ଅତି ସୁନ୍ଦର ଲାଗୁଥାଏ । ଆମକୁ ଯାହା ଦେଖି ଖୁବ୍ ମଜା ଲାଗିଲା, ତାହା ହେଲା ଲିଙ୍କନ୍ ମେମୋରିଆଲ୍, ୱାଶିଙ୍ଗଟନ୍ ମନୁମେଣ୍ଟ ଓ କ୍ୟାପିଟଲ୍ - ଏହି ତିନୋଟି ଯେମିତି ଗୋଟିଏ ସରଳରେଖା ଉପରେ ତିଆରି ।

ଲିଙ୍କନ୍ ମେମୋରିଆଲ ପାଖରେ ରହିଛି ଭିଏତ୍‌ନାମ୍ ଭେଟେରାନ୍ ମେମୋରିଆଲ । ଭିଏତ୍‌ନାମରେ ପ୍ରାଣ ଦେଇଥିବା ସୈନ୍ୟମାନଙ୍କ ସ୍ମୃତିରେ ତିଆରି ଏଇ ମେମୋରିଆଲ । ଚକ୍ ଚକ୍ କଳା ଗ୍ରାନାଇଟରେ ତିଆରି 'V' ଭଳି କାନ୍ଥଟିଏ । ଏହି ଗ୍ରାନାଇଟ୍ ପୁଣି ଆସିଛି ଭାରତବର୍ଷର ବାଙ୍ଗାଲୋର୍ ସହରରୁ । ଏଇଠି ଖୋଦା ହୋଇଛି ନିଜ ଜୀବନ ଦେଇଥିବା ସୈନ୍ୟମାନଙ୍କର ନାମ । ମିତୁ, ତୁ ତ ଜାଣୁ ଏମିତିରେ ଯୁଦ୍ଧ ବିଷୟଟି ମତେ ଭୀଷଣ ଯନ୍ତ୍ରଣା ଦିଏ । ଆଉ ଭିଏତ୍‌ନାମ୍ ଯୁଦ୍ଧ କଥା ବା କ'ଣ କହିବି ? ଏ ଯୁଦ୍ଧରେ ପ୍ରାଣ ଦେଇଥିବା ଅସଂଖ୍ୟ ସୈନ୍ୟଙ୍କର ବୟସ ବହୁତ କମ୍ । ଏତେ ଗୁଡ଼ିଏ ଜୀବନ ସଂପୂର୍ଣ୍ଣ ରୂପେ ବିକଶିତ ହେବା ଆଗରୁ ଯେ ଝଡ଼ିଗଲା - ଏ କଥା ଭାବି ମୋ ମନ ଖରାପ ହେଉଥାଏ । କଳା ଗ୍ରାନାଇଟ୍‌ର କାନ୍ଥରେ ହାତ ଦେବା ମାତ୍ରକେ ମୋ ଭିତରେ କ'ଣ ଯେମିତି ଓଲଟପାଲଟ ହୋଇଗଲା । ସେଇଠୁ ବୁଲିପଡି ମୁଁ ଫେରି ଆସିଲି । ରାସ୍ତା କଡରେ ପଡିଥିବା ସିମେଣ୍ଟର ଚୌକୀରେ ବସି ଭାବିଲି ଏମିତି ଗୋଟିଏ ସମୟ ଆସନ୍ତା ନାହିଁ ପୃଥିବୀର ସବୁ ଦେଶ ଶାନ୍ତିରେ ବସବାସ କରନ୍ତେ ଏବଂ "ଯୁଦ୍ଧ" ଶବ୍ଦଟି ସବୁ ଭାଷାର ଅଭିଧାନରୁ ଉଠି ଯାଆନ୍ତା !

ଭିଏତନାମ୍ ମେମୋରିଆଲ୍ ଦେଖିସାରିବା ପରେ ଆଉ କିଛି ଦେଖିବାର ଆଗ୍ରହ ନଥାଏ। ଏଣେ ସାଢେ ପାଞ୍ଚଟା ମଧ୍ୟ ବାଜିଗଲାଣି। କିନ୍ତୁ ପିଲାମାନଙ୍କ ଜିଦ୍‌ରେ ଆମେ ୱାଶିଙ୍ଗଟନ୍ ମନୁମେଣ୍ଟ ଦେଖିବାକୁ ଗଲୁ। ୫୫୫ ଫୁଟ ଉଚ୍ଚର ଏ ବିରାଟ ମନୁମେଣ୍ଟ ସାମ୍ନାରେ ପର୍ଯ୍ୟଟକମାନଙ୍କ ଲମ୍ବା ଲାଇନ୍। ଧାଡିରେ ଠିଆ ହେବାର ଆଗ୍ରହ ଓ ଶକ୍ତି ଆମ ପାଖରେ ନଥିଲା। ତେଣୁ କେବଳ ବାହାରୁ ମନୁମେଣ୍ଟଟି ଦେଖିନେଇ ଆମେ ଫେରିଆସିଲୁ।

ଏତେ ଚାଲିବାର ଅଭ୍ୟାସ କୌଣସି ଦିନ ନଥିଲା। ଗୋଟିଏ ଗୋଟିଏ ପାଦ ପକେଇବାକୁ କଷ୍ଟ ହେଉଥାଏ। ରାତିରେ କେମିତି ଖାଇ ଶୋଇଲୁ ଆଉ କିଛି ମନେନାହିଁ।

ଆଜି ସକାଳୁ ଉଠିବା ବେଳକୁ କ୍ଳାନ୍ତି ଯାଇ ନଥାଏ। ପିଲାମାନେ ତ "ଗୋଡ ବିନ୍ଧୁଛି", "ଆଉ ଟିକିଏ ଶୋଇବୁ" ଇତ୍ୟାଦି ଆରମ୍ଭ କରିଦେଲେ। କିନ୍ତୁ ଯେମିତି ମୁଁ କହିଦେଲି, "କିଏ ଡାଇନୋସରସ୍ ଦେଖିବ?" ଡିଆଁମାରି ବିଛଣାରୁ ଉଠି ଦୌଡି ଦୌଡି ସେମାନେ ପ୍ରସ୍ତୁତ ହୋଇଗଲେ। ଆଜି ଦିନଟି ଆମେ କେବଳ ସ୍ମିଥ୍‌ସୋନିଆନ୍ ମିଉଜିଅମ୍ ଦେଖି କଟେଇ ଦେଲୁ। ତଥାପି ସବୁ ଦେଖି ହେଲା ନାହିଁ।

ବ୍ରିଟିଶ୍ ବୈଜ୍ଞାନିକ ଜେମ୍‌ସ୍ ସ୍ମିଥ୍‌ସନ୍‌ଙ୍କ ମୃତ୍ୟୁ ପରେ ଯେତେବେଳେ ତାଙ୍କର ଉଇଲ୍ ପଢାଗଲା ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ। ଧନୀ ବୈଜ୍ଞାନିକ ସ୍ମିଥ୍‌ସନ୍ ତାଙ୍କର ସମସ୍ତ ସମ୍ପତ୍ତି ଆମେରିକାକୁ ଦାନ କରିଦେଇଥିଲେ। ଅଥଚ ନିଜ ଜୀବନ କାଳରେ ସେ କେବେହେଲେ ଆମେରିକାରେ ପାଦ ମଧ୍ୟ ଦେଇ ନଥିଲେ। ତାଙ୍କ ଉଇଲ୍‌ରେ ଲେଖାଥିଲା ଯେ ସ୍ମିଥ୍‌ସୋନିଆନ୍ ଇନ୍‌ଷ୍ଟିଟ୍ୟୁଟ ନାମରେ ୱାଶିଙ୍ଗଟନ୍‌ରେ ଏଭଳି ଏକ ଅନୁଷ୍ଠାନ ପ୍ରତିଷ୍ଠା କରାଯିବ ଯାହାକି ଜ୍ଞାନର ବୃଦ୍ଧି କରିବାରେ ସାହାଯ୍ୟ କରିବ।

ଆମେରିକାନ୍ କଂଗ୍ରେସ୍ ଏଭଳି ଏକ ଦାନ ପାଇ ଚକିତ ହୋଇ ଯାଇଥିଲା। କିଭଳି ଭାବରେ ଯେ ଏହି ଅର୍ଥ ଖର୍ଚ୍ଚ କରାଯିବ ସେଥିନେଇ ଦଶବର୍ଷ କେବଳ ବାଦବିବାଦ ଚାଲିଲା। ଶେଷରେ ୧୮୪୬ ମସିହାରେ ନ୍ୟାଚୁରାଲ୍ ହିଷ୍ଟରି ମିଉଜିଅମ୍ କରାଯିବା ବିଷୟ ସ୍ଥିର କରାଗଲା। କ୍ରମେ ଯେ ଗୋଟିଏ ପରେ ଗୋଟିଏ ମିଉଜିଅମ୍ ସ୍ମିଥସୋନିଆନ୍ ଇନ୍‌ଷ୍ଟିଟ୍ୟୁସନ୍ ଦ୍ୱାରା ପ୍ରତିଷ୍ଠିତ ହେବ, ଏକଥା ସେତେବେଳେ

କେହି ଭାବି ପାରି ନଥିଲେ। କେବଳ ମୁଁ କାହିଁକି ଯିଏ ପ୍ରଥମ ଥର ପାଇଁ ସ୍ମିଥ୍‌ସୋନିଆନ୍ ଦେଖେ ସେ ଅବାକ୍ ହୋଇଯାଏ ଯେ ମଲର ଉଭୟ ପାର୍ଶ୍ୱରେ ଥିବା ସବୁ କୋଠା ସ୍ମିଥ୍‌ସୋନିଆନ୍‌ର ଅନ୍ତର୍ଭୁକ୍ତ।

ଜେମ୍‌ସ ସ୍ମିଥ୍‌ସନ୍ ନିଜର ଜୀବନ କାଳ ଭିତରେ ଆମେରିକାରେ ପାଦ ଦେଇ ପାରି ନଥିଲେ; କିନ୍ତୁ ୧୯୦୪ରେ ଜେନେଭାର ଏକ ଅନାମଧେୟ କବରସ୍ଥାନରୁ ତାଙ୍କର କବର ଅଣାଯାଇ ସ୍ମିଥ୍‌ସୋନିଆନ୍ ଇନ୍‌ଷ୍ଟିଚ୍ୟୁସନ୍ ବିଲ୍‌ଡିଙ୍ଗ (ଯାହାକୁ କୁହାଯାଏ ପ୍ରାସାଦ ବା ଦି କ୍ୟାସଲ୍) ଭିତରେ ରଖାଯାଇଛି।

ସ୍ମିଥ୍‌ସୋନିଆନ୍ ଇନ୍‌ଷ୍ଟିଚ୍ୟୁସନ୍‌ରେ ୧୩ଟି ମିଉଜିଅମ୍ ଓ ଚିଡିଆ ଘର ଅନ୍ତର୍ଭୁକ୍ତ। ଏଥିରୁ ୯ଟି ମିଉଜିଅମ୍ ନ୍ୟାସନାଲ୍ ମଲ୍ (କ୍ୟାପିଟଲ୍‌ରୁ ୱାଶିଙ୍ଗଟନ୍ ମନୁମେଣ୍ଟ ପର୍ଯ୍ୟନ୍ତ ଯାଇଥିବା ରାସ୍ତାକୁ ମଲ୍ କୁହାଯାଏ)ର ଉଭୟ ପାର୍ଶ୍ୱରେ ଅବସ୍ଥିତ। ଏଗୁଡିକ ହେଲା ସ୍ମିଥ୍‌ସୋନିଆନ୍ ଇନ୍‌ଷ୍ଟିଚ୍ୟୁସନ୍ ବିଲ୍‌ଡିଙ୍ଗ, ଫ୍ରିଅର୍ ଗ୍ୟାଲେରି ଅଫ୍ ଆର୍ଟ, ସ୍କଲପ୍‌ଚର୍ ଗାର୍ଡେନ, ଦି ନ୍ୟାସନାଲ୍ ଏଆର୍ ଆଣ୍ଡ ସ୍ପେସ୍ ମିଉଜିଅମ୍, ଆରଥର୍ ସାକ୍‌ଲର୍ ଗ୍ୟାଲେରି, ନ୍ୟାସନାଲ୍ ଗ୍ୟାଲେରି ଅଫ୍ ଆଫ୍ରିକାନ୍ ଆର୍ଟ, ଦି ଆର୍ଟସ୍ ଆଣ୍ଡ ଇଣ୍ଡଷ୍ଟ୍ରିଜ ବିଲଡିଙ୍ଗ, ନ୍ୟାସନାଲ୍ ମିଉଜିଅମ୍ ଅଫ୍ ଆମେରିକାନ୍ ହିଷ୍ଟରି ଏବଂ ଦି ନ୍ୟାସ୍‌ନାଲ୍ ମିଉଜିଅମ୍ ଅଫ୍ ନ୍ୟାଚୁରାଲ୍ ହିଷ୍ଟରି। ଆମେ ପ୍ରଥମେ ଗଲୁ ନ୍ୟାଚୁରାଲ୍ ହିଷ୍ଟରି ମିଉଜିଅମ୍। ପ୍ରାଗୈତିହାସିକ ଯୁଗର ଜନ୍ତୁମାନଙ୍କ ସଂପର୍କରେ ବହୁ ତଥ୍ୟ ଏଇଠାରେ ଦେଖିବାକୁ ମିଳେ। ମିଉଜିଅମ୍ ଭିତରେ ଥିବା ଅସଂଖ୍ୟ ହଲ୍ ଭିତରୁ ଗୋଟିକରେ ରହିଛି ଡାଇନୋସରସ୍ ଏବଂ ସେ ସମୟର ଅନ୍ୟାନ୍ୟ ଜନ୍ତୁମାନଙ୍କର ହାଡ, କଂକାଳ, ଦାନ୍ତ ଇତ୍ୟାଦି। ପିଲାମାନେ ଡାଇନୋସରସ୍‌ର ଚିତ୍ର ଦେଖିଥିଲେ, କିନ୍ତୁ ତା'ର କଙ୍କାଳ ଦେଖିବା ପରେ ସେମାନଙ୍କର ଆଖି ବଡ ବଡ ହୋଇଗଲା। ଡାଇନୋସରସ୍‌ର ଲାଞ୍ଜଟିର ଲମ୍ବା ଯେ କୌଣସି ମଣିଷଠାରୁ ଅଧିକ। ଅନ୍ୟ ହଲ୍‌ମାନଙ୍କରେ ସେଇଭଳି ଆଦିମ ସାମୁଦ୍ରିକ ଜୀବନ, ମଣିଷର ସୃଷ୍ଟି ଓ ପରିବର୍ତ୍ତନ, ବିଭିନ୍ନ ମୂଲ୍ୟବାନ ପଥରର ସୃଷ୍ଟି ଇତ୍ୟାଦି ବିଷୟରେ ଦେଖିବାକୁ ମିଳେ। ଡାଇନୋସରସ୍ ହଲ୍ ପରି ସାମୁଦ୍ରିକ ଜୀବନ ହଲ୍‌ଟି ମନୋମୁଗ୍‌ଧକର। ଏଇଠାରେ ଥିବା ପ୍ରାଗୈତିହାସିକ ସାମୁଦ୍ରିକ ଜୀବଜନ୍ତୁଙ୍କ କଙ୍କାଳ ଦେଖିଲେ ବାସ୍ତବିକ ଅବାକ ଲାଗେ। ମିଉଜିଅମ୍‌ର ଉପର ମହଲାରେ ଗୋଟିଏ ହଲ୍‌ରେ ସଜା ହୋଇ ରହିଛି ବିଭିନ୍ନ ପ୍ରକାରର ପଥର। ଏଠାରେ

ଥିବା ବହୁ ମୂଲ୍ୟବାନ ପଥର ମଧ୍ୟରେ ରହିଛି ହୋପ୍ ଡାଇମଣ୍ଡ (Hope Diamond)। ହୋପ୍ ଡାଇମଣ୍ଡ ସଂପର୍କରେ ବହୁ କାହାଣୀ ମୁଁ ପଢିଛି। କିନ୍ତୁ ନୀଳ ରଙ୍ଗର ବେଶ୍ ବଡ ହୀରାଟି ଦେଖି ମୋର କୌଣସି ଭାବାନ୍ତର ହେଲାନାହିଁ। ଅଥଚ ଏଇ ହୀରାଟି ନେଇ କେତେ ମୃତ୍ୟୁ ଓ ହତ୍ୟା ଘଟି ଯାଇଛି।

ନ୍ୟାଚୁରାଲ୍ ହିଷ୍ଟରି ମିଉଜିଅମ୍‌ରେ ଘଣ୍ଟାଟିଏ କଟେଇବା ପାଇଁ ସ୍ଥିର କରିଥିଲେ ମଧ୍ୟ କେମିତି ଯେ ଦୁଇଘଣ୍ଟା କଟିଗଲା ଜଣା ପଡିଲା ନାହିଁ। ଆମେ ଜାଣିଥିଲୁ ଯେ ଗୋଟିଏ ଦିନରେ ୧୩ଟି ମିଉଜିଅମ୍ ଦେଖିବା ଅସମ୍ଭବ। ତେଣୁ କେବଳ ମଲ୍‌ର ଉଭୟ ପାର୍ଶ୍ୱରେ ଥିବା ମିଉଜିଅମ୍‌ଗୁଡିକ ଦେଖିଲୁ।

ମତେ ନ୍ୟାସନାଲ୍ ଗ୍ୟାଲେରି ଅଫ୍ ଆର୍ଟଟି ବହୁତ ଭଲ ଲାଗିଲା। ଏଠି ସାଇତା ହୋଇ ରହିଛି ବହୁ ପୃଥିବୀ ପ୍ରସିଦ୍ଧ କଳାକୃତି। ଦା ଭିନ୍‌ସିଙ୍କଠାରୁ ଆରମ୍ଭ କରି ଅନ୍ୟାନ୍ୟ ଇଉରୋପୀୟ ମଧ୍ୟଯୁଗୀୟ କଳାକାରମାନଙ୍କର ପେଣ୍ଟିଙ୍ଗ ଏଇଠି ଦେଖିବାକୁ ମିଳେ।

କିନ୍ତୁ ପିଲାମାନେ ଆର୍ଟ ମିଉଜିଅମ୍‌ରେ ବିରକ୍ତ ହୋଇଗଲେ। ସେମାନଙ୍କୁ ବେଶୀ ଭଲ ଲାଗିଲା ଆର୍ଟ ଆଣ୍ଡ ଇଣ୍ଡଷ୍ଟ୍ରିଜ୍ ବିଲ୍‌ଡିଙ୍ଗ ଓ ନ୍ୟାସନାଲ୍ ଏଆର୍ ଆଣ୍ଡ ସ୍ପେସ୍ ମିଉଜିଅମ୍। ପ୍ରଥମଟିରେ ରହିଛି ବିଭିନ୍ନ ଯାନବାହାନର ନମୁନା। ପୁରୁଣା ଯୁଗର ହାତଟଣା ଗାଡିଠାରୁ ଆରମ୍ଭ କରି ଅତ୍ୟାଧୁନିକ ଯାନବାହାନ। ଆଉ ନ୍ୟାସନାଲ ଏଆର ଆଣ୍ଡ ସ୍ପେସ୍ ମିଉଜିଅମ୍‌ର କି ବର୍ଣ୍ଣନା ମୁଁ କରିବି? ଏଠିକାର ୨୦ଟି ଗ୍ୟାଲେରୀରେ ପୃଥିବୀର ପ୍ରଥମ ଉଡାଜାହାଜଠାରୁ ଆରମ୍ଭ କରି ଆଧୁନିକ ଜେଟ୍ ତଥା ମହାକାଶଯାନଗୁଡିକ ରହିଛି। ଆପୋଲୋ ୧୧ର କମାଣ୍ଡ ମଡ୍ୟୁଲ୍‌କୁ ମିଉଜିଅମ୍‌ର ଠିକ୍ ମଧ୍ୟସ୍ଥଳୀରେ ରଖାଯାଇଛି। ଏଇଠି ଭୀଷଣ ଭିଡ ହେଉଥାଏ। ଏହାଛଡା ଏଠି ରହିଛି ରାଇଟ୍ ଭ୍ରାତୃଦ୍ୱୟଙ୍କର "Flyer", ଚାର୍ଲସ୍ ଲିଣ୍ଡବର୍ଗଙ୍କର "Spirit of St.Louis", ଜନ୍ ଗ୍ଲେନ୍‌ଙ୍କର "Friendship 7" ଇତ୍ୟାଦି। ଗୋଟିଏ ହଲରେ ଚନ୍ଦ୍ର ସଂପର୍କରେ ବିଭିନ୍ନ ତଥ୍ୟ ଓ ଫଟୋ ରହିଛି। ସେଇଠି ମଧ୍ୟ ଅଛି ଚନ୍ଦ୍ରରୁ ଅଣାଯାଇଥିବା ପଥର। ଦର୍ଶକମାନେ ଇଚ୍ଛା କଲେ ପଥରକୁ ଛୁଇଁ ପାରିବେ। ପିଲାମାନେ ପଥରରେ ହାତ ଦେଇ ଭାରି ଖୁସି ହେଲେ।

ଆମେ ସ୍ମିଥ୍‌ସୋନିଆନ୍ ମିଉଜିଅମ୍ ଦେଖିସାରି ମାତ୍ର ଦୁଇତିନି ଘଣ୍ଟା ଆଗରୁ

ଫେରିଛୁ। କାଲି ଯିବୁ ନିଉୟର୍କ। ମୋର ଏବେ ବିଶ୍ରାମ ନେବା ଉଚିତ, କିନ୍ତୁ ନୂଆ ନୂଆ ଜିନିଷ ଦେଖି ମୋ ମନ ଅତି ଖୁସି ହୋଇଯାଇଛି; ଶୋଇବା କଥା ଭାବି ପାରୁନାହିଁ। ନିଉୟର୍କରେ ଆମେ ରହିବୁ ଚାରିଦିନ। ତା'ପରେ ପ୍ୟାରିସ୍। ଆମେ ପ୍ୟାରିସ୍‌ରେ ପାଞ୍ଚଦିନ ରହିବାପାଇଁ ସ୍ଥିର କରିଛୁ। ମୁଁ ନିଉୟର୍କରୁ ତୋତେ ପୁଣି ଚିଠି ଲେଖିବି। ଆଜି ପାଇଁ ଏତିକି। ରହୁଛି।

ଇତି

ତୋର 'ନାନୀ'

ଜନ୍ ଏଫ୍.କେନେଡି ଏଆର୍‌ପୋର୍ଟ
୨ ଅଗଷ୍ଟ, ୧୯୯୧

ସ୍ନେହର ମିତ୍ରୁ,

ଏବେ ଦିନ ଦୁଇଟା ବାଜି ଦଶ ମିନିଟ୍। ଆଉ ତିନିଘଣ୍ଟା ପରେ ଆମେ ନିଉୟର୍କ ଛାଡ଼ିବୁ। ସୁଇସ୍ ଏଆର୍‌ରେ ଜୁରିକ୍। ଜୁରିକ୍‌ରୁ ପ୍ୟାରିସ୍। ଆଉ କିଛି ସମୟ ଡେରି କରି ଆମେ ହୁଏତ ଜନ୍ ଏଫ୍.କେନେଡି ଏଆର୍‌ପୋର୍ଟକୁ ଆସିପାରି ଥାଆନ୍ତୁ। କିନ୍ତୁ ଏଠିକାର ରାସ୍ତାରେ ଟ୍ରାଫିକ୍ ଜାମ୍ ତ ଅତି ସାଧାରଣ କଥା। ତେଣୁ ଗୋଟାଏ ବାଜିବା ଆଗରୁ ବାହାରି ଆସିଲୁ। ଅଥଚ ରାସ୍ତା ଫାଙ୍କା। ପଇଁଚାଳିଶ ମିନିଟ୍ ଭିତରେ ଟ୍ୟାକ୍‌ସି ଆମକୁ ଏଆର୍‌ପୋର୍ଟରେ ପହଞ୍ଚେଇ ଦେଲା। ଏବେ କେବଳ ଘଣ୍ଟାକୁ ଚାହିଁକରି ବସିବା କଥା। ଚାରିଆଡେ ଘୋ ଘା, ପାଟିତୁଣ୍ଡ। କେଉଁଠି ଖାଲି କୋକ୍‌ର ଗ୍ଲାସ୍ ଗଡୁଛି ତ କେଉଁଠି ଅଧାପିଆ କଫି କପ୍ ଥୁଆହୋଇଛି। ଏଇଟା ପୁଣି ଆମେରିକାର ଗୋଟିଏ ପ୍ରଧାନ ଏଆର୍‌ପୋର୍ଟ!

ଏଆର୍‌ପୋର୍ଟଟି ଦେଖି ଆଶ୍ଚର୍ଯ୍ୟ ହେବାର କିଛି ନାହିଁ। କାରଣ ନିଉୟର୍କ ସହରଟି ଯେମିତି ଏଆର୍‌ପୋର୍ଟଟି ତ ସେମିତି ହେବ। ଗତ ଚାରିଦିନ ଧରି ନିଉୟର୍କକୁ ମୁଁ ଦେଖୁଛି। କିନ୍ତୁ ସତ କହୁଛି ମିତ୍ରୁ, ୱାଶିଙ୍ଗଟନ୍ ଛାଡ଼ିବା ବେଳେ ନିଉୟର୍କ ଦେଖିବା ପାଇଁ ଯେମିତି ଆଗ୍ରହ ଥିଲା, ଏବେ ମନେ ହେଉଛି ସେ ଆଗ୍ରହ ନିରର୍ଥକ।

ତୁ ମୋର ପୂର୍ବ ଚିଠି ପାଇଥିବୁ ନିଶ୍ଚୟ। ସେ ଚିଠି ଲେଖିବାର ପରଦିନ ସକାଳୁ ଆମେ ୱାଶିଙ୍ଗଟନ୍‌ରୁ ବାହାରି ପଡିଲୁ। ୱାଶିଙ୍ଗଟନ୍‌ରୁ ନିଉୟର୍କ ସିଟି ଖୁବ୍ ଗୋଟାଏ ବେଶୀ ବାଟ ନୁହଁ। କିନ୍ତୁ ଡେଲ୍‌ଟା ଏଆର୍‌ଲାଇନ୍‌ସର ଦୟାରେ ଆମକୁ ପ୍ରଥମେ ତାହାର ହବ୍ (Hub) ସିନ୍‌ସିନାଟିକୁ ଯିବାକୁ ପଡିଲା। ସିନ୍‌ସିନାଟିରୁ ନିଉୟର୍କ। ମୋର ଖାଲି ମନେ ପଡୁଥାଏ 'ସିଧା ନାକ ନ ଧରି ହାତ ବୁଲେଇ ନାକ ଧରିବା କଥା'। କେବଳ ଯାତ୍ରାରେ ସାରା ଦିନଟାଯାକ କଟିଗଲା।

ସିନ୍‌ସିନାଟିରୁ ନିଉୟର୍କ ଯିବାବେଳେ ମୋ ପାଖରେ ଯେଉଁ ଭଦ୍ରଲୋକ ବସିଥିଲେ ତାଙ୍କ ସହିତ ବେଶ୍ ଗପ ଜମିଗଲା। ମଧ୍ୟବୟସ୍କ ବ୍ୟବସାୟୀ ଲୋକ। ଇସ୍‌ରାଏଲ୍‌ରୁ ଆସିଥାଆନ୍ତି। କଥାରୁ କଥାରୁ ଜାଣିଲି ଯେ ଜେରୁଜେଲମ୍‌ରେ ବିରାଟ ବହି ବ୍ୟବସାୟ ତାଙ୍କର। ସେଇ ସଂକ୍ରାନ୍ତରେ ଆମେରିକା ଆସିବା। କଥାବାର୍ତ୍ତା ମଝିରେ ଏଆର୍ ହୋଷ୍ଟେସ୍ ଖାଇବା ଦେଇଗଲେ। ଉପରେ ଘୋଡା ହୋଇଥିବା ଆଲୁମିନିୟମ୍ ଫଏଲ୍‌କୁ ଉଠେଇ ଦେଇ ମୁଁ ଖାଇବି କି ନ ଖାଇବିର ଦ୍ୱନ୍ଦ୍ୱରେ ପଡିଗଲି। ଏଣେ ପେଟରେ ଭୋକ, ଅଥଚ ସାମ୍ନାରେ ଥିବା ଖାଦ୍ୟ ଦେଖି ଆଦୌ ଖାଇବାକୁ ଆଗ୍ରହ ହେଉନାହିଁ। ସାଣ୍ଡୱିଚ୍, ସୁପ୍ ଓ ସାଲାଡ୍। ଇସ୍‌ରାଏଲୀ ଭଦ୍ରଲୋକ ଜଣକ ମୋ ମନର ଦ୍ୱନ୍ଦ୍ୱକୁ ବୁଝିପାରିଲେ ବୋଧହୁଏ। ହସିକରି ପଚାରିଲେ, "ଆମେରିକାନ୍ ଖାଦ୍ୟ ଖାଇବାକୁ ବଡ କଷ୍ଟ ହୁଏ, ନୁହେଁ କି?" ମୁଁ ଉତ୍ତର ଦେଲି ଯେ ଆମମାନଙ୍କର ରାଗ, ମସଲା ଦିଆ ଖାଦ୍ୟ ଖାଇବା ଅଭ୍ୟାସରେ ପଡିଯାଇଛି। ସେଇଥିପାଇଁ ମନେ ହେଉଛି ଆମେରିକାନ୍ ଖାଦ୍ୟର କୌଣସି ସ୍ୱାଦ ଯେମିତି ନାହିଁ। ଭଦ୍ରଲୋକ କିଛି ନ କହି ବ୍ୟାଗ୍ ଖୋଲିଲେ ଏବଂ ଡବାଟିଏ କାଢି ମୋ ଛୋଟ ଟେବୁଲ ଉପରେ ରଖିଲେ। ତା'ପରେ ମନ୍ତ୍ରଣା କରିବା ସ୍ୱରରେ କହିଲେ, "ଆମେ ଜିଉମାନେ ବହୁତ ରାଗ ଓ ବିଭିନ୍ନ ଧରଣର ସ୍ପାଇସେସ୍ ଖାଉ। ତେଣୁ ମୋର ମଧ୍ୟ ଆମେରିକାନ୍ ଖାଦ୍ୟ ଖାଇବାକୁ ବଡ କଷ୍ଟ ହୁଏ। ସେଇଥି ପାଇଁ ଏ ଡବାଟି ମୁଁ ପାଖରେ ରଖିଥାଏ। ଯେତେବେଳେ ନିହାତି ନ ଖାଇହୁଏ, ସେତେବେଳେ ଏ ଡବାଟି ଖୋଲେ। ଖୋଲି କରି ଦେଖନ୍ତୁ ନା।" ମନରେ କୌତୁହଳ ନେଇ ଡବାଟି ଖୋଲିଲି। ଜାଣିଛୁ ମିତୁ, ଡବା ଭିତରେ କ'ଣ ଥିଲା? ଭଜା ହୋଇଥିବା ଶୁଖିଲା ଲଙ୍କା। ଶୁଖିଲା ନାଲି ଲଙ୍କା କିନ୍ତ ସେଦିନ କମାଲ୍ କରିଦେଲା। ବାଁ ହାତରେ ଭଜା ଲଙ୍କାଟାଏ ଧରି ଟିକିଏ

କାମୁଡା (ମୋର ଦହି ପଖାଳ କଥା ମନେ ପଡିଯାଉଥାଏ), ଡାହାଣ ହାତରେ ଚାମଚରେ ସୁପ୍- ଖାଇବାଟା ସତରେ ଜମିଗଲା।

ଖାଇବା ଶେଷ ହେବା ପରେ ଜିଉ ଭଦ୍ରଲୋକ ଜଣଙ୍କ ହିନ୍ଦୁ ଧର୍ମ ନେଇ ଆମ ସାଙ୍ଗରେ ଆଲୋଚନା ଆରମ୍ଭ କରିଦେଲେ। ଶାସ୍ତ୍ର, ବେଦବେଦାନ୍ତରେ ତାଙ୍କର ଜ୍ଞାନ ଦେଖି ମୁଁ ଅବାକ୍ ହୋଇଗଲି। ତାଙ୍କ ସାଙ୍ଗରେ ଗପୁ ଗପୁ କେମିତି ଯେ ରାସ୍ତା ସରିଗଲା ଜଣା ପଡିଲା ନାହିଁ। ନିଉୟର୍କର ଲା ଗାର୍ଡିଆ ଏଆର୍‌ପୋର୍ଟରେ ପ୍ଲେନ୍ ଯେତେବେଳେ ଓହ୍ଲାଇଲା, ସେତେବେଳେ ଅପରାହ୍ନ ଚାରିଟା।

ଏଇ ନିଉୟର୍କ। ଯୁକ୍ତରାଷ୍ଟ୍ର ଆମେରିକାର ସବୁଠାରୁ ବଡ ଓ ବ୍ୟସ୍ତତମ ସହର। ଦେଶର ବ୍ୟବସାୟିକ ପ୍ରାଣକେନ୍ଦ୍ର। ଆମେରିକା କହିଲେ ଆଗ ମନକୁ ଆସେ ନିଉୟର୍କ। ୩୧୪ ବର୍ଗ ମାଇଲର ବିରାଟ ଜନବହୁଳ ସହର। କିନ୍ତୁ କେଉଁଠି ପଢିଥିଲି ଯେ ସମୁଦାୟ ସହରର ଶତକଡା ୧୭ ଭାଗ କେବଳ ପାର୍କ ଓ ଖେଳପଡିଆ। ବାସ୍ତବରେ ବିସ୍ମୟକର। ଷ୍ଟାଟେନ୍ ଦ୍ୱୀପର ଚାଷଜମି ସବୁ ଏମ୍ପାୟାର ଷ୍ଟେଟ୍ ବିଲ୍‌ଡିଙ୍ଗଠାରୁ ମାତ୍ର କେତେ ମିନିଟ୍ ରାସ୍ତା। ସେଇଭଳି ବ୍ରଡଓ୍ୱେର ଚମକ ଦକ୍ଷିଣ ବ୍ରଙ୍କ୍‌ସ (South Bronx)ର ହା ହୁତାଶମୟ ବାତାବରଣରୁ ବେଶୀ ଦୂରରେ ନୁହଁ। ଏଇ ସହରର ପ୍ରତି ବର୍ଗ ମାଇଲରେ ୨୬, ୩୦୩ ଜଣ ଲୋକ ରହିଛନ୍ତି; ଅଥଚ ଏଇଠି ମଧ୍ୟ ରହିଛି ଶହ ଶହ ମିଉଜିଅମ୍, ଆର୍ଟ ଗ୍ୟାଲେରୀ ଓ ଥିଏଟର୍। ହୁଏତ ଏଇଥିପାଇଁ ଅନେକେ ଏହାକୁ କହନ୍ତି "ସିଟି ଅଫ୍ କନ୍‌ଟ୍ରାଷ୍ଟସ୍"।

ଏଇ କନ୍‌ଟ୍ରାଷ୍ଟ ବା ପାର୍ଥକ୍ୟ ନିଉୟର୍କର ପାଞ୍ଚୋଟି 'ବୋରୋ' (borough) ଭିତରେ ମଧ୍ୟ ଦେଖିବାକୁ ମିଳେ। ଏଇ ପାଞ୍ଚୋଟି ବୋରୋ ହେଲା- ବ୍ରଙ୍କ୍‌ସ, ବ୍ରୁକ୍‌ଲିନ୍, ମାନ୍‌ହାଟାନ୍, କୁଇନ୍‌ସ ଏବଂ ରିଚମଣ୍ଡ ବା ଷ୍ଟାଟେନ ଆଇଲ୍ୟାଣ୍ଡ। ଏଥିରୁ ବ୍ରଙ୍କ୍‌ସକୁ ଛାଡିଦେଲେ ବାକୀ ଚାରୋଟି ବୋରୋ ଗୋଟିଏ ଗୋଟିଏ ଦ୍ୱୀପ। କେବଳ ପୋଲ ବା ଟନେଲ୍ ଦ୍ୱାରା ସେମାନେ ପରସ୍ପର ସହିତ ସଂଯୁକ୍ତ। ସେଇଥିପାଇଁ ବୋଧହୁଏ ନିଉୟର୍କରେ ଏତେ ବେଶୀ ବ୍ରିଜ୍ ଓ ଟନେଲ୍ ଦେଖିବାକୁ ମିଳେ। ତୁ ଶୁଣି ଆଶ୍ଚର୍ଯ୍ୟ ହେବୁ ଯେ ମାନହାଟାନ୍‌ରୁ ବିଭିନ୍ନ ସ୍ଥାନକୁ ଯିବା ପାଇଁ ହଡ୍‌ସନ୍ ନଦୀ ଉପରେ ଅଠରଟି ପୋଲ ରହିଛି!

ଆମେ ପ୍ରଥମେ ସ୍ଥିର କରିଥିଲୁ ଯେ ମାନହାଟାନର କୌଣସି ଏକ ହୋଟେଲରେ

ରହିବୁ। କିନ୍ତୁ ଆମର ଜଣେ ପରିଚିତ ଭାରତୀୟ ପରିବାର ତାହା ଆଉ କରେଇ ଦେଲେ ନାହିଁ। ସେମାନେ ରହନ୍ତି ଷ୍ଟାମ୍‌ଫୋର୍ଡରେ- ମାନ୍‌ହାଟାନ୍‌ରୁ ପ୍ରାୟ ଘଣ୍ଟାକର ରାସ୍ତା। ଆମର ନିଉୟର୍କ ଆସିବା ସ୍ଥିର ହେବା ପରଠାରୁ ସେମାନେ ଆମକୁ ବାରମ୍ବାର ଫୋନ୍ କରି କହି ରଖିଥିଲେ ଯେ ଆମେ ଯେମିତି ତାଙ୍କ ଘରେ ରହୁ। ନିଜେ ଅନୀଶ ଭାଇ ଓ ଚିତ୍ରା ଭାଉଜ ଏଆର୍‌ପୋର୍ଟ ଆସି ଆମମାନଙ୍କୁ ତାଙ୍କ ଘରକୁ ନେଇଗଲେ।

ସେଦିନ ରାତି ଖାଇବା ଶେଷ ହେବା ପରେ ଟେବୁଲ ଚାରିପଟେ ଗୋଲ ହୋଇ ବସି ଆମେ ନିଉୟର୍କରେ କ'ଣ ଦେଖିବୁ, କେମିତି ଦେଖିବୁ- ଏ ବିଷୟରେ ଆଲୋଚନା ଚାଲିଲା। ମୁଁ ଟୁରିଷ୍ଟ ଗାଇଡ୍‌ରୁ ପଢିଥିବା ଦର୍ଶନୀୟ ସ୍ଥାନଗୁଡ଼ିକର ନାଁ ଗଡ ଗଡ ହୋଇ କହିପକେଇଲି- ଷ୍ଟାଚ୍ୟୁ ଅଫ୍ ଲିବର୍‌ଟି, ଏମ୍ପାୟାର ଷ୍ଟେଟ୍ ବିଲଡିଙ୍ଗ, ଓ୍ୱାର୍ଲଡ ଟ୍ରେଡ ସେଣ୍ଟର୍, ସେଣ୍ଟ ପ୍ୟାଟ୍ରିକ୍‌ସ କ୍ୟାଥେଡ୍ରାଲ୍। ଅନୀଶ ଭାଇଙ୍କର ନୂଆ ଚାକିରୀ ଆରମ୍ଭ କରିଥିବା ଝିଅ ସ୍ୱପ୍ନା ମତେ ପଚାରିଲା, "ଆଣ୍ଟି, ଆପଣମାନେ ନିଉୟର୍କରେ ଏକା ଏକା ବୁଲି ପାରିବେ ତ?" କଲେଜରେ ପଢୁଥିବା ତା'ର ସାନ ଭଉଣୀ ଶର୍ବରୀ ତାକୁ ଚୁପ୍ କରେଇ ଦେଇ କହିଲା, "ଏକା ଏକା ନ ବୁଲି ପାରିବାର କ'ଣ ଅଛି ଯେ? ଆପଣଙ୍କର ଅଣ୍ଟାରେ ବାନ୍ଧିବା ପର୍ସ ଅଛି?... ନାହିଁ?...ତା'ହେଲେ ଆପଣ ଏଇ ଝୁଲା ପର୍ସକୁ ସାମ୍ନାପଟକୁ ରଖିବେ ଓ ତା' ଉପରେ ହାତଟିଏ ପକେଇଥିବେ। କେହି ଯେମିତି ଛଡେଇ ନେଇ ନ ପାରେ। ଚାରିପଟକୁ ଟିକିଏ ଲକ୍ଷ୍ୟ ରଖି ଚାଲିବେ। ଏଇ ଗତକାଲି ଗୋଟିଏ ଘଟଣା ମେଟ୍ରୋ ଭିତରେ ଘଟି ଯାଇଛି ତ। ଇଉରୋପରୁ ଆସିଥିବା ପରିବାରଟିଏ ଯାଉଥିଲେ। ତିନି ଜଣ ଲୋକ ଛୁରୀ ଦେଖାଇ ପର୍ସ, ଗହଣା ଇତ୍ୟାଦି ମାଗିଲେ। ଲୋକ ଜଣକ ବୋଧହୁଏ ପାଟିତୁଣ୍ଡ ଆରମ୍ଭ କରିଦେଲେ। ବାସ୍, ପେଟରେ ଛୁରୀ ଭୁଷି ଦେଇ ତିନିଜଣ ଛୁ।"

ଚିତ୍ରା ଭାଉଜ କଫି କପ୍ ଆମ ସାମ୍ନାରେ ରଖି କହିଲେ, "ଗୋଟିଏ କଥା ମନେରଖିବ- କୌଣସି ଗଳିରେ ଭୁଲରେ ପାଦ ଦେବ ନାହିଁ। କେବଳ ବଡ ରାସ୍ତାରେ ଚାଲିବ। ଦରକାର ପଡିଲେ ଟ୍ୟାକ୍‌ସି ନେବ। କାରଣ ଅଧିକାଂଶ ହିଂସାତ୍ମକ ଘଟଣା ଗଳିମାନଙ୍କରେ ହିଁ ହୁଏ।" ତା' ପରେ ମୁଁ ବେକରେ ପିନ୍ଧିଥିବା ସରୁ ଚେନ୍‌ଟିକୁ ଦେଖାଇ କହିଲେ, "ଯିବା ଆଗରୁ ଗହଣାତକ ଖୋଲି ଦେଇ

ଯିବ। ହଁ, ପାଖରେ ବେଶୀ ପଇସା ରଖିବ ନାହିଁ। ଯେତିକି ନିହାତି ଦରକାର ସେତିକି। ଆଉ ସେତିକି ତୁମେ ସ୍ୱାମୀ ସ୍ତ୍ରୀ ଦୁଇଜଣ ଅଧା ଅଧା କରି ରଖିବ।''

ଏ ସବୁ ଶୁଣି ସେତେବେଳକୁ ମୋର ପିଳେହି ପାଣି। ମୁଁ ତୋ ଭାଇନାଙ୍କୁ କହିଲି ଯେ ମୋର ନିଉୟର୍କ ସହର ଭିତରକୁ ଯିବା ଦରକାର ନାହିଁ। ଏଇଠୁ ଏଇଠୁ ଛୁରିକ୍ ପକାଇଲେ ମଣିଷ ପ୍ରାଣ ବଞ୍ଚିବ।

ମୋର କଥା ଶୁଣି ଚାରିଜଣଯାକ ହସି ହସି ଗଡିଗଲେ। ସୁପ୍ରା କହିଲା, ''ଆଣ୍ଟି, ଆପଣ ଏତେ ଡରୁଛନ୍ତି? ମୁଁ ତ ପୁଣି ଏକା ଅଫିସ୍ ଯାଉଛି। ଆଉ ଶର୍ବରୀ ଏକା କଲେଜ ଯାଉଛି। ଆମେ ସବୁଦିନ ମେଟ୍ରୋରେ ଯାଉଛୁ ଓ ଫେରୁଛୁ।'' ଅନୀଶ ଭାଇ କହିଲେ, ''ନିଉୟର୍କରେ ଗାଡି ଚଳେଇବା ଭାରି କଷ୍ଟ। ସେଥିପାଇଁ ମୁଁ ବି ସବୁଦିନ ମେଟ୍ରୋରେ ଅଫିସ୍ ଯିବା ଆସିବା କରେ। ଡରିବାର କିଛି ନାହିଁ। କାଲି ମୁଁ ଅଫିସ୍ ଗଲାବେଳେ ତୁମେମାନେ ମୋ ସାଙ୍ଗରେ ଚାଲ। ମୁଁ କହିଦେବି କେଉଁଠି ଓହ୍ଲେଇବାକୁ ହେବ।''

ତଥାପି ମୋ ଡର ଭାଙ୍ଗି ନ ଥାଏ। ମୁଁ ପଚାରିଲି, ''ଏଠି କ'ଣ ଟୁରିଷ୍ଟ ବସ୍ ବା ସେଇଭଳି କୌଣସି ଜିନିଷ ନାହିଁ?''

ଶର୍ବରୀର ହଠାତ୍ ଯେମିତି ମନେ ପଡିଗଲା, ''ନିଉୟର୍କ ଦେଖିବାର ସବୁଠାରୁ ଭଲ ଉପାୟ ମୁଁ ଜାଣିଛି। ସର୍କଲ୍ ଲାଇନ୍ ଟୁର୍। ମାନହାଟାନ୍‌ର ଚାରିପଟେ ହଡ୍‌ସନ୍ ନଦୀ ଉପର ଦେଇ ଷ୍ଟିମର୍‌ରେ ଟୁର୍। ନିଉୟର୍କର ସବୁ ଦର୍ଶନୀୟ ସ୍ଥାନର ପାଖ ଦେଇ ଷ୍ଟିମର୍‌ଟି ଯାଏ। କୋଉଠି ଓହ୍ଲେଇ ହେବ ନାହିଁ। କିନ୍ତୁ ଭିଡ ନାହିଁ, ଠେଲାପେଲା ନାହିଁ, ପିକ୍ ପକେଟ୍‌ର ଭୟ ମଧ୍ୟ ନାହିଁ।''

ମୁଁ ତୋ ଭାଇନାଙ୍କର ଉତ୍ତରକୁ ଅପେକ୍ଷା ନ କରି ମାଡି ବସିଲି ଯେ ଏଇ ସର୍କଲ୍ ଲାଇନ୍ ଟୁର୍ ହିଁ ଆମ ପାଇଁ ସବୁଠାରୁ ଭଲ। ମୋତେ ଯେ ଡର ଲାଗୁଛି ତା' ନୁହଁ (ମୁଁ ଯେ ବୀରା ରମଣୀ!!) ପିଲାଙ୍କ କଥା ତ ପୁଣି ଭାବିବାକୁ ହେବ। ବିଚରା ପିଲା ଦିଇଟା ଚାଲି ଚାଲି ଥକିଯିବେ ଯେ!

ତା' ପରଦିନ ସକାଳୁ ଆମେ ବାହାରି ପଡିଲୁ। ମେଟ୍ରୋରେ ଷ୍ଟାମ୍‌ଫୋର୍ଡ଼ରୁ ନିଉୟର୍କ। ଷ୍ଟେସନ୍‌ରୁ ଟ୍ୟାକ୍‌ସି ଧରି ପିଅର୍ ୩୯। ସେଇଠୁ ଆରମ୍ଭ ହୁଏ ସର୍କଲ୍ ଲାଇନ୍ ଟୁର୍। ୩୫ ମାଇଲର ଷ୍ଟିମର ଯାତ୍ରା। ସମୁଦାୟ ଲାଗେ ୩ ଘଣ୍ଟା। ଟିକେଟ୍ କାଟି ଆମେ ଷ୍ଟିମର ଭିତରେ ପଶିଲୁ। ତଳ ଉପର ହୋଇ ବଡ

ଷ୍ଟିମର୍‌ଟିରେ ଦୁଇଟି ମହଲା ତିଆରି ହୋଇଥାଏ ଏବଂ ଡେକ୍ କଡରେ ଧାଡି ହୋଇ କାଠ ଚୌକୀ ସବୁ ପଡିଥାଏ। ତଳ ଡେକ୍‌ରେ ମଧ୍ୟ ଥାଏ ଦୁଇଟି ଦୋକାନ। ସେଠି ଖାଇବା ଜିନିଷ, କୋଲ୍‌ଡ ଡ୍ରିଙ୍କ୍‌ସ ତଥା ଛୋଟ ଛୋଟ ଉପହାର କିଣିବାକୁ ମିଳୁଥାଏ। ଆମେ ଉପର ଡେକ୍‌କୁ ଚାଲିଗଲୁ। ପ୍ରାୟ ଦଶ ମିନିଟ୍ ପରେ ଷ୍ଟିମର୍ ଛାଡିଲା।

ହଡ୍‌ସନ୍ ନଦୀ ଉପର ଦେଇ ଷ୍ଟିମର୍‌ଟି ଚାଲିଥାଏ। ବାଁପଟେ ମାନ୍‌ହାଟାନ୍। ନିଉୟର୍କର ପ୍ରସିଦ୍ଧ ସ୍କାଏଲାଇନ୍ (skyline) ଷ୍ଟିମର୍‌ରୁ ଦିଶୁଥାଏ ଅନନ୍ୟ। ନୂଆ ପୁରୁଣା, ଭିନ୍ନ ଉଚ୍ଚତା ଓ ଭିନ୍ନ ଆକାରର ପ୍ରାସାଦ ସବୁ ମୁଣ୍ଡ ଉପରକୁ ଟେକି ଠିଆ ହୋଇଥାଆନ୍ତି। ଯାତ୍ରା ଆରମ୍ଭ କରିବା ପରେ ପରେ ହିଁ ଆଖିରେ ପଡିଲା ଏମ୍ପାୟାର୍ ଷ୍ଟେଟ୍ ବିଲ୍‌ଡିଙ୍ଗ। ୧୦୨ ମହଲାର ଏଇ ଆକାଶଚୁମ୍ବୀ ପ୍ରାସାଦ ମାତ୍ର ଦେଢବର୍ଷ ଭିତରେ ନିର୍ମିତ ହୋଇଥିଲା। ୧୯୩୧ ମସିହା ଏପ୍ରିଲ୍ ମାସରେ ଯେତେବେଳେ ଏହାର ନିର୍ମାଣ କାର୍ଯ୍ୟ ଶେଷ ହେଲା ସେତେବେଳେ ପୃଥିବୀର ସବୁ କୋଣରେ ଖେଳି ଯାଇଥିଲା ବିସ୍ମୟ। ଏଭରେଷ୍ଟ ଭଳି ଉଚ୍ଚ ଏକ କୋଠା ନିର୍ମାଣ କରିବା ଯେ ମଣିଷ ପକ୍ଷରେ ସମ୍ଭବ, ସେକଥା ବିଶ୍ୱାସ କରିପାରୁ ନ ଥିଲେ ବିଶ୍ୱବାସୀ। ଏମ୍ପାୟାର୍ ଷ୍ଟେଟ୍ ବିଲ୍‌ଡିଙ୍ଗର ଉଚ୍ଚତା ୧୨୫୦ ଫୁଟ। କୋଠା ଉପରେ ରହିଥିବା ଟେଲିଭିଜନ୍ ଟାୱାର୍‌କୁ ଯଦି ମିଶାଯାଏ, ତେବେ ଉଚ୍ଚତା ହେବ ୧୪୭୨ ଫୁଟ। ଷ୍ଟିମର୍‌ରେ ଚାଲିଥିବା କମେଣ୍ଟରୀରୁ ମୁଁ ଜାଣିଲି ଯେ ରାସ୍ତାରୁ ୧୦୨ ମହଲା ପର୍ଯ୍ୟନ୍ତ ରହିଛି ୧୮୬୦ଟି ପାହାଚ। ଚିନ୍ତା କରିଲେ ମୁଣ୍ଡ ଘୁରେଇ ଯାଏ।

୧୯୭୧ ମସିହା ପର୍ଯ୍ୟନ୍ତ ଏମ୍ପାୟାର୍ ଷ୍ଟେଟ୍ ବିଲ୍‌ଡିଙ୍ଗ୍ ଥିଲା ବିଶ୍ୱର ଉଚ୍ଚତମ କୋଠା। ଏବେ ଏହି ଗୌରବ ନେଇ ନେଇଛି ୱାର୍ଲଡ ଟ୍ରେଡ୍ ସେଣ୍ଟର୍। ତଥାପି ଏମ୍ପାୟାର୍ ଷ୍ଟେଟ୍ ବିଲଡିଙ୍ଗର ସମ୍ମାନ କୌଣସି ମାତ୍ରାରେ ଊଣା ହୋଇନାହିଁ। ଏହା ଏବେ ମଧ୍ୟ ଆମେରିକାର ଏକ ପ୍ରଧାନ ଦର୍ଶନୀୟ ସ୍ଥାନ। ଗୋଟିଏ ସର୍ଭେରୁ ଜଣାପଡିଛି ଯେ ନିଉୟର୍କରେ ଥିବା ସମସ୍ତ ଦର୍ଶନୀୟ ସ୍ଥାନ ମଧ୍ୟରୁ ସବୁଠାରୁ ଅଧିକ ପର୍ଯ୍ୟଟକ ଏମ୍ପାୟାର୍ ଷ୍ଟେଟ୍ ବିଲଡିଙ୍ଗକୁ ଆସିଥାଆନ୍ତି। ହୁଏତ ଭବିଷ୍ୟତରେ ଆହୁରି ଅନେକ ସୌଧ ନିର୍ମିତ ହେବ ଯାହାକି ଉଚ୍ଚତାର ଦୌଡରେ ଏମ୍ପାୟାର୍ ଷ୍ଟେଟ୍ ବିଲଡିଙ୍ଗକୁ ବହୁତ ପଛରେ ପକାଇ ଦେବ। କିନ୍ତୁ ଯାହା

ଯୋଗୁଁ ନିଉୟର୍କକୁ ବି ଏମ୍ପାୟାର୍ ଷ୍ଟେଟ୍(The Empire State) ବୋଲି କୁହାଯାଇ ଥାସୁଛି, ସେଇ ବିଲଡିଙ୍ଗର ଗୌରବ ଏଥିନେଇ କୌଣସି ଦିନ କମ୍ ହେବ ନାହିଁ।

ଏମ୍ପାୟାର୍ ଷ୍ଟେଟ୍ ବିଲଡିଙ୍ଗ ବ୍ୟତୀତ ମାନହାଟାନ୍‌ର ଆକାଶରେ ଦମ୍ଭର ସହିତ ମୁଣ୍ଡ ଟେକି ଅନ୍ୟ ଯେଉଁ ସୌଧଗୁଡ଼ିକ ଠିଆ ହୋଇ ରହିଥାଆନ୍ତି ସେମାନଙ୍କ ମଧ୍ୟରେ ପ୍ରଧାନ ହେଉଛି ୱାର୍ଲଡ ଟ୍ରେଡ୍ ସେଣ୍ଟର୍ ଓ ୟୁନାଇଟେଡ୍ ନେସନ୍‌ସ ବିଲଡିଙ୍ଗ।

ଷ୍ଟିମରରୁ ୱାର୍ଲଡ ଟ୍ରେଡ ସେଣ୍ଟରର ୧୧୦ ମହଲାର ଟାୱାର ଦୁଇଟିକୁ ଚିହ୍ନିବା ପାଇଁ ଡେରି ଲାଗିଲା ନାହିଁ। ଯେତେବେଳେ ଆର୍କିଟେକ୍ଟ ମିନୋରୁ ୟାମାସାକି ୧୯୭୧ ମସିହାରେ ଉପର ୮ ମହଲା ନିର୍ମାଣ କରି ୱାର୍ଲଡ ଟ୍ରେଡ୍ ସେଣ୍ଟରକୁ ଏମ୍ପାୟାର ଷ୍ଟେଟ୍ ବିଲଡିଙ୍ଗଠାରୁ ଅଧିକ ଉଚ୍ଚ କରିଦେଲେ, ସେତେବେଳେ ତାଙ୍କୁ ବହୁ ସମାଲୋଚନାର ଶୀକାର ହେବାକୁ ପଡିଥିଲା। ସମ୍ବାଦପତ୍ର ମାନଙ୍କଠାରୁ ଆରମ୍ଭ କରି ଜନସାଧାରଣ ପର୍ଯ୍ୟନ୍ତ ସମସ୍ତେ ତାଙ୍କର ଏଭଳି କାର୍ଯ୍ୟର ନିନ୍ଦା କରିଥିଲେ। ନିଉୟର୍କର ପ୍ରାଣସ୍ପନ୍ଦନ ଯେଉଁ ଏମ୍ପାୟାର ଷ୍ଟେଟ୍ ବିଲଡିଙ୍ଗ- ତାହାର ଉଚ୍ଚତାକୁ ଟପିଯିବା ଯେମିତି ଏକ ବିରାଟ ଦୋଷାବହ ଘଟଣା; ନିଉୟର୍କର ଆତ୍ମଚେତନା ପ୍ରତି ଏକ ଅପମାନ।

ଦୂରରୁ କଣ୍ଢେଇ ଭଳି ମନେ ହେଉଥିବା ୱାର୍ଲଡ ଟ୍ରେଡ୍ ସେଣ୍ଟର ଟାୱାର ଦୁଇଟିର ଉଚ୍ଚତା ୧୩୫୦ ଫୁଟ। ଦକ୍ଷିଣ ଟାୱାରର ୧୧୦ ମହଲାରେ ରହିଛି ପୃଥିବୀର ଉଚ୍ଚତମ Observation Deck। ଉତ୍ତର ଟାୱାରର ଶୀର୍ଷରେ ରହିଛି ପ୍ରସିଦ୍ଧ "Window of the World" ରେଷ୍ଟୋରାଁ। ଅବଜରଭେସନ୍ ଡେକ୍‌ରୁ ବା Window of the World ରେଷ୍ଟୋରାଁରୁ ନିଉୟର୍କ ସହରର ଦୃଶ୍ୟ ଦେଖାଯାଏ ଅନନ୍ୟ। କିନ୍ତୁ ମୋ ମତରେ ଯଦି ସୌନ୍ଦର୍ଯ୍ୟର ମାପକାଠିରେ ମପାଯାଏ, ତେବେ ୱାର୍ଲଡ ଟ୍ରେଡ୍ ସେଣ୍ଟର ତା'ର ଆଖପାଖର ବହୁ କୋଠା ନିକଟରେ ସହଜରେ ହାର ମାନିଯିବ।

ନିଜର ବିଶାଳ ଉଚ୍ଚତା ନେଇ ୱାର୍ଲଡ ଟ୍ରେଡ୍ ସେଣ୍ଟର୍ ଓ ଏମ୍ପାୟାର୍ ଷ୍ଟେଟ୍ ବିଲଡିଙ୍ଗ ହୁଏତ ଦର୍ଶକକୁ ଚମକେଇ ଦେଇଥାଏ, କିନ୍ତୁ ରାଷ୍ଟ୍ରସଂଘ ବା ୟୁନାଇଟେଡ ନେସନ୍‌ସ ବିଲଡିଙ୍ଗର ଆଧୁନିକ ବାତାବରଣ ମନରେ ପ୍ରଶାନ୍ତି ଭରିଦିଏ।

ଷ୍ଟିମର୍‌ରେ ଧାରା ବିବରଣୀ ଦେଉଥିବା ବ୍ୟକ୍ତି ଜଣକ ଯେତେବେଳେ ୟୁନାଇଟେଡ ନେସନ୍‌ସ ବିଲ୍‌ଡିଙ୍ଗକୁ ଚିହ୍ନଟ କରାଇ ଦେଲେ, ମୁଁ ସତରେ ଆଶ୍ଚର୍ଯ୍ୟ ହୋଇଗଲି। କିଏ କହିବ ଯେ ୫୦ ବର୍ଷ ତଳେ ଏଇଟି ଥିଲା ସହରର ଏକ ଆବର୍ଜନାମୟ ଅଂଶ। କଂସେଇଖାନା ଠାରୁ ଆରମ୍ଭ କରି ମଇଳା ଗଦା ପର୍ଯ୍ୟନ୍ତ ସବୁକିଛି ଥିଲା ଏଇଠାରେ। ଅଥଚ ଏବେ ସୁଦୃଶ୍ୟ ସୌଧମାନଙ୍କରେ ଘେରା ସମସ୍ତ ଅଞ୍ଚଳଟି। ଅନୀଶ ଭାଇ ରାଷ୍ଟ୍ରସଂଘରେ ହିଁ କାମ କରନ୍ତି। ସେ କହିଥିଲେ ଯେ ତା' ପରଦିନ ସେ ଆମମାନଙ୍କୁ ରାଷ୍ଟ୍ରସଂଘ ଭିତର ବୁଲେଇ ଦେଖାଇ ଦେବେ। ପରଦିନ କଥା ଭାବି ମୋ ମନଟି ହଠାତ୍ ଖୁସି ହୋଇଗଲା।

ଷ୍ଟିମର୍‌ରେ ଆହୁରି କିଛି ବାଟ ଗଲା ପରେ ଡାହାଣପଟେ ପଡ଼ିଲା ଏଲିସ୍ ଦ୍ୱୀପ (Ellis Island)। ୧୮୯୨ରୁ ୧୯୨୪ ପର୍ଯ୍ୟନ୍ତ ଆମେରିକାକୁ ଆସୁଥିବା ଲକ୍ଷ ଲକ୍ଷ ଇମିଗ୍ରାଣ୍ଟଙ୍କୁ ଏଲିସ୍ ଦ୍ୱୀପ ଦେଇ ଆସିବାକୁ ପଡୁଥିଲା। ଆମେରିକାରେ ପ୍ରବେଶ କରିବା ପାଇଁ ଏଇଠାରୁ ଅନୁମତି ନେଇ ସାରିବା ପରେ ସେମାନେ ଆମେରିକା ଭୂଇଁରେ ପାଦ ରଖି ପାରୁଥିଲେ। ୧୯୨୪ ପରେ ଅବଶ୍ୟ ଏଇ ବ୍ୟବସ୍ଥା ବନ୍ଦ କରି ଦିଆଗଲା। କିନ୍ତୁ ୧୯୯୦ ମସିହାରେ ଏଇଠି ସ୍ଥାପନ କରାହୋଇଛି ଗୋଟିଏ ସଂଗ୍ରହାଳୟ। ବହୁ ପୁରୁଣା କୋଠାଟି ଷ୍ଟିମର୍‌ରୁ ଭାରି ସୁନ୍ଦର ଲାଗୁଥାଏ। ସଂଗ୍ରହାଳୟ ବ୍ୟତୀତ ଏହି ଦ୍ୱୀପରେ ରହିଛି ଗୋଟିଏ ବିରାଟ ପ୍ରାଚୀର। ଏଇ ପ୍ରାଚୀରରେ ତମ୍ବାରେ ଖୋଦେଇ ହୋଇ ପ୍ରାୟ ୨ ଲକ୍ଷ ଇମିଗ୍ରାଣ୍ଟଙ୍କର ନାମ ଲେଖା ହୋଇଛି।

ଏଲିସ ଦ୍ୱୀପ ନିକଟରେ ଷ୍ଟାଚ୍ୟୁ ଅଫ୍ ଲିବର୍‌ଟି। ଆମେରିକା କହିଲେ ପ୍ରଥମେ ଯାହା ମନକୁ ଆସେ ତାହା ବୋଧହୁଏ ଏଇ ଷ୍ଟାଚ୍ୟୁ ଅଫ୍ ଲିବର୍‌ଟି- ୧୫୧ ଫୁଟ ଉଚ୍ଚର ବିରାଟ ପ୍ରତିମୂର୍ତ୍ତି। ଯାହା ବିଷୟରେ ମୁଁ ଏତେ ପଢ଼ିଛି, ଶୁଣିଛି, ମୋ ଆଖି ସାମ୍ନାରେ ସେଇ ଜଳନ୍ତା ମଶାଲ ହାତରେ ଧରିଥିବା ନାରୀ ମୂର୍ତ୍ତି! ନୂତନ ପୃଥିବୀର ଦ୍ୱାରଦେଶକୁ ଆଲୋକିତ କରି ବିଶ୍ୱବାସୀଙ୍କୁ ପଥ ଦେଖାଇବା ଯାହାର ଉଦ୍ଦେଶ୍ୟ।

ଏହି ବିରାଟ ସ୍ମାରକୀ ସ୍ଥାପିତ ହେଲା ଅକ୍ଟୋବର ୨୮, ୧୮୮୬ରେ। କିନ୍ତୁ ଏଇଭଳି ଏକ ସ୍ମାରକୀ ନିର୍ମାଣ କରିବାର ଯୋଜନାଟି ଆମେରିକାର ଗୃହଯୁଦ୍ଧ ଶେଷ ହେବାର କିଛିଦିନ ପରେ ଆରମ୍ଭ ହୋଇଥିଲା। ଫ୍ରାନ୍‌ସର ରାଜଧାନୀ

ପ୍ୟାରିସ ନିକଟରେ ଥିବା ଭର୍ସାଇ (Versailles) ସହରରେ ରହୁଥିଲେ ଫରାସୀ ଐତିହାସିକ Edouard de Labourlaye । ତାଙ୍କ ଘରେ ସେଦିନ ଆୟୋଜିତ ହୋଇଥାଏ ଛୋଟ ରାତ୍ରିଭୋଜନଟିଏ । ସେଇ ସନ୍ଧ୍ୟାରେ ଏଇଭଳି ଏକ ସ୍ମାରକୀ ନିର୍ମାଣ କରିବା ବିଷୟ ପ୍ରଥମ ଆଲୋଚିତ ହେଲା ।

ସେଦିନର ରାତ୍ରି ଭୋଜନରେ ଉପସ୍ଥିତ ଥିଲେ ଫ୍ରେଡେରିକ୍ ବାର୍ଥୋଲଡି । ସେତେବେଳେ ପ୍ରତିମୂର୍ତ୍ତି ନିର୍ମାଣ କ୍ଷେତ୍ରରେ ବାର୍ଥୋଲଡିଙ୍କର ବହୁତ ସୁନାମ । କିଛି ବର୍ଷ ପରେ ସ୍ମାରକୀ ନିର୍ମାଣ ଯୋଜନାଟି ବାସ୍ତବ ରୂପ ନେଲା ଏବଂ ଏହ ନିର୍ମାଣ କରିବାର ଦାୟିତ୍ୱ ଦିଆଗଲା ବାର୍ଥୋଲଡିଙ୍କୁ । ସ୍ଥିର ହେଲା ଯେ ଫ୍ରାନ୍ ଓ ଆମେରିକାର ବନ୍ଧୁତ୍ୱର ଚିହ୍ନ ସ୍ୱରୂପ ଫ୍ରାନ୍ସ ଆମେରିକାକୁ ଉପହାର ଦେ ଏଇ ମୂର୍ତ୍ତି । ଦୁଇ ଦେଶ ମଧ୍ୟରେ ବନ୍ଧୁତ୍ୱ ଆରମ୍ଭ ହୋଇଥିଲା ଆମେରିକ ସ୍ୱାଧୀନତା ଆନ୍ଦୋଳନ ସମୟରୁ । ଫରାସୀ ସାହାଯ୍ୟ ନ ପାଇଥିଲେ ବୋଧହୁ ଜର୍ଜ ୱାଶିଙ୍ଗଟନ୍ଙ୍କୁ ବିଜୟ ହାସଲ କରିବା ପାଇଁ ଆହୁରି ଅଧିକ ପରିଶ୍ରମ କରିବାକୁ ପଡିଥାଆନ୍ତା ।

୧୯୮୬ରେ ଷ୍ଟାଚ୍ୟୁ ଅଫ ଲିବର୍‌ଟିର ଶତବାର୍ଷିକୀ ପାଳିତ ହୋଇଯାଇଛି । ଏହା ଭିତରେ ଶହେବର୍ଷ ବିତି ଯାଇଛି ସତ, କିନ୍ତୁ ଏବେ ମଧ୍ୟ ଆମେରିକାର ହୃଦୟରେ ଷ୍ଟାଚ୍ୟୁ ଅଫ ଲିବର୍‌ଟିର ମହତ୍ତ୍ୱ ପୂର୍ବ ପରି ଉଜ୍ଜଳ ରହିଛି । ତିନି ଘଣ୍ଟାର ଷ୍ଟିମର୍ ଯାତ୍ରା ଶେଷ କରି ଆମେ ଯେତେବେଳେ ପିଅର୍ ୩୯କୁ ଫେରି ଆସିଲୁ ସେତେବେଳେ ଦିନ ଦୁଇଟା । ଆଖପାଖରେ ଅଳ୍ପ ବୁଲାବୁଲି କରି ସନ୍ଧ୍ୟା ପୂର୍ବରୁ ମେଟ୍ରୋରେ ଷ୍ଟାମଫୋର୍ଡ ଫେରି ଆସିଲୁ ।

ପରଦିନ ସକାଳୁ ମୋର ଉତ୍ସାହ ଦେଖେ କିଏ । ଅନୀଶ ଭାଇ ଆମମାନଙ୍କୁ ବାରଟା ବେଳେ ତାଙ୍କର ଅଫିସ୍‌କୁ ଆସିବା ପାଇଁ କହିଥିଲେ । ଆମେ କିନ୍ତୁ ପହଞ୍ଚିଗଲୁ ପ୍ରାୟ ଅଧଘଣ୍ଟା ଆଗରୁ ।

ଜନ୍ ଡି. ରକେଫେଲର୍ ଯେତେବେଳେ ୧୮ ଏକରର ବିରାଟ ସ୍ଥାନଟିକୁ ରାଷ୍ଟ୍ରସଂଘକୁ ଉପହାର ସ୍ୱରୂପ ଦେଇଦେଲେ, ସେତେବେଳେ ରାଷ୍ଟ୍ରସଂଘ ସ୍ଥି କଲା ଯେ ନିଉୟର୍କରେ ହିଁ ପ୍ରତିଷ୍ଠା ହେବ ଏହାର ମୁଖ୍ୟ କାର୍ଯ୍ୟାଳୟ । ଏବ ସହରର ଆବର୍ଜନାମୟ ଅଂଶଟିର ରୂପ ଖୁବ୍ ଶୀଘ୍ର ବଦଳି ଗଲା । ବର୍ତ୍ତମାନ ରାଷ୍ଟ୍ରସଂଘ ଦେଖିବା ପାଇଁ ଏଠାରେ ପର୍ଯ୍ୟଟକଙ୍କର ଭିଡ ହୁଏ । ଚ୍ଚନପଥର ଓ

ମାର୍ବଲ ତିଆରି ଜେନେରାଲ ଆସେମ୍ବ୍ଲି ବିଲଡିଙ୍ଗର ଦର୍ଶକମାନଙ୍କ ପାଇଁ ଉଦ୍ଦିଷ୍ଟ ପ୍ରବେଶ ଦ୍ୱାର ଦେଇ ଆମେ ଯେତେବେଳେ ଭିତରେ ପାଦ ଦେଲୁ ମୋର ମନେହେଲା ମୁଁ ଯେମିତି ସ୍ୱପ୍ନ ରାଜ୍ୟରେ ପହଞ୍ଚି ଯାଇଛି। ବିଶ୍ୱଶାନ୍ତି ଓ ବନ୍ଧୁତ୍ୱ ସ୍ଥାପନ କରିବା ପାଇଁ ଯେଉଁ ଅନୁଷ୍ଠାନ ସଚରାଚର କାର୍ଯ୍ୟ କରି ଯାଉଛି ମୁଁ ଯେ ସେଇଠାରେ ହିଁ ଠିଆ ହୋଇଛି!

ଆମ ପାଇଁ ଅପେକ୍ଷା କରି ରହିଥିଲେ ଅନୀଶ ଭାଇ। ତାଙ୍କ ସାଙ୍ଗରେ ଆମେ ପ୍ରଥମେ ଲଞ୍ଚ୍ ଖାଇଲୁ ସଭ୍ୟମାନଙ୍କ ପାଇଁ ଉଦ୍ଦିଷ୍ଟ ଡାଇନିଙ୍ଗ ରୁମ୍‌ରେ। ମୁଁ ଏଇଠିକୁ ଆସି ଜାଣିଲି ଯେ ପୂର୍ବରୁ ରିଜର୍ଭେସନ୍ କରିଲେ ଯେ କୌଣସି ବ୍ୟକ୍ତି ଏଇଠାରେ ଖାଇ ପାରିବ। ଦୁଇପ୍ରହର ଖାଇବା ଖାଇସାରି ଆମେ ଅନୀଶ ଭାଇଙ୍କ ସାଙ୍ଗରେ ବିଭିନ୍ନ ମିଟିଙ୍ଗ ରୁମ୍ ଦେଖିବାକୁ ଗଲୁ। ଜେନେରାଲ ଆସେମ୍ବ୍ଲି, ସିକ୍ୟୁରିଟି କାଉନସିଲ, ଟ୍ରଷ୍ଟସିପ୍ କାଉନସିଲ, ଇକନମିକ ଏବଂ ସୋସିଆଲ କାଉନସିଲ- ବାରବର୍ଷ ତଳେ ରାଜନୀତି ବିଜ୍ଞାନ ଅନର୍ସ ପାଇଁ ପଢିଥିବା ବିଷୟଗୁଡ଼ିକ ମୋ ଆଖି ସାମ୍ନାରେ ଜୀବନ୍ତ ହୋଇଗଲା। ବିଭିନ୍ନ ଦେଶର ସଭ୍ୟମାନେ ଉପହାର ଦେଇଥିବା ବହୁରକମର ଜିନିଷରେ ସଜାହୋଇ ରହିଥାଏ ରାଷ୍ଟ୍ରସଂଘର ବିଭିନ୍ନ କୋଠରୀ ସବୁ। ଜେନେରାଲ ଆସେମ୍ବ୍ଲି ବିଲଡିଙ୍ଗର ବେସ୍‌ମେଣ୍ଟରେ ଥିବା ୟୁ.ଏନ. କ୍ରାଫ୍ଟ ସପ୍‌ରୁ ଛୋଟ ଛୋଟ ଜିନିଷ କିଣି ଆମେ ଚାରିଟା ବେଳେ ଫେରିଲୁ।

ହାତରେ ମାତ୍ର ଆଉ ଗୋଟିଏ ଦିନ। ପ୍ରଥମ ରାତି ପରି ଖାଇବା ଟେବୁଲରେ ପୁଣି ଆଲୋଚନା ଆରମ୍ଭ ହୋଇଗଲା- କେଉଁଠି ଏଇ ଦିନଟି ଉପଯୋଗ କରିବା ସବୁଠାରୁ ଭଲ ହେବ। ସୁପ୍ରା କହିଲା, "ବ୍ରଡ ୱେ। ନିଉୟର୍କ ଆସିବ, ଅଥଚ ଥିଏଟର୍ ଦେଖିବ ନାହିଁ!" ହେଲେ ପିଲାଙ୍କୁ ନେଇ କ'ଣ ଥିଏଟର୍ ଯାଇ ହେବ? ଶର୍ବରୀ କହିଲା, "ରକେଫେଲର ସେଣ୍ଟର।" ନହେଲେ କୁଆଡେ ଆମର ନିଉୟର୍କ ଦେଖା ଅସଂପୂର୍ଣ୍ଣ ରହିଯିବ! ଅନୀଶଭାଇ ଓ ଚିତ୍ରାଭାଉଜ ମଧ୍ୟ ଏକମତ ହେଲେ।

ରକେଫେଲର ସେଣ୍ଟର ନାଁଟି ବହୁତଥର ଶୁଣିଥିଲେ ମଧ୍ୟ ଏହା ବିଷୟରେ କୌଣସି ପରିଷ୍କାର ଧାରଣା ଆମ ମନରେ ନ ଥିଲା! ତା' ପର ଦିନ ଷ୍ଟେସନରୁ ଟ୍ୟାକ୍‌ସି ନେଇ ଫିଫ୍‌ଥ ଷ୍ଟ୍ରିଟ୍ ଗଲାବେଳେ ମନରେ ଥାଏ ଅଶେଷ କୌତୂହଳ। କ'ଣ ଅଛି ଏଇଠି? ମିତୁ, ରକେଫେଲର ସେଣ୍ଟର ଦେଖିବା ପରେ ମୁଁ ବୁଝିପାରିଲି କାହିଁକି ଶର୍ବରୀ କହୁଥିଲା ଯେ ଏହା ନ ଦେଖି ଚାଲିଗଲେ ନିଉୟର୍କ ବୁଲା

ସଂପୂର୍ଣ୍ଣ ହେବ ନାହିଁ।

ରକେଫେଲର ସେଣ୍ଟରକୁ କହନ୍ତି 'City within a City'। ଏହା ଭିତରେ ଥିବା ୨୧ଟି କୋଠା ଭିତରେ ଆମର ଗୋଟିଏ ଦିନ ଯେ କେମିତି କଟିଗଲା ଆଦୌ ଜଣାପଡ଼ିଲା ନାହିଁ। ରେଷ୍ଟୋରାଁ, ଲୁଗା ଦୋକାନଠାରୁ ଆରମ୍ଭ କରି ଜୋତା ମରାମତି, ଭଣ୍ଡାରୀ ଦୋକାନ- ସବୁ ରହିଛି ଏହା ଭିତରେ। ପୋଷ୍ଟ ଅଫିସ, ବ୍ୟାଙ୍କ, ସିନେମାହଲ, ସ୍କୁଲ-' କ'ଣ ନାହିଁ ଏଇଠି? ଏଇଠି ଅଫିସ କରିଛନ୍ତି ବହୁ ବିଦେଶୀ ରାଷ୍ଟ୍ର, ବିଭିନ୍ନ ଏଆରଲାଇନସ ତଥା ବଡ ବଡ କମ୍ପାନୀ ସବୁ। ମାଟି ତଳେ ରହିଛି ପ୍ରାୟ ଦୁଇ ମାଇଲ ଲମ୍ବା ରାସ୍ତା। ଏଇ ରାସ୍ତା ଦେଇ ରକେଫେଲର ସେଣ୍ଟରର ଯେ କୌଣସି କୋଠାକୁ ଯିବା ସମ୍ଭବ। ଆମେ ଯେତେବେଳେ ରକେଫେଲର ସେଣ୍ଟରରେ ପହଞ୍ଚିଲୁ ସେତେବେଳେ ଝିପିଝିପି ବର୍ଷା ଆରମ୍ଭ ହୋଇ ଯାଇଥିଲା। କିନ୍ତୁ ବୁଲାବୁଲି କରିବାବେଳେ ଆମର କୌଣସି ଅସୁବିଧା ହୋଇନାହିଁ। କାରଣ ଗୋଟିଏ କୋଠାରୁ ଆଉ ଗୋଟିଏ କୋଠାକୁ ଗଲାବେଳେ ରାସ୍ତାକୁ ଯିବାର ଆବଶ୍ୟକତା ନାହିଁ।

ରକେଫେଲର ସେଣ୍ଟରର ତିଆରି ନେଇ ବହୁ ସୁନ୍ଦର ସୁନ୍ଦର କାହାଣୀ ରହିଛି। ଅକ୍ଟୋବର ୧୯୨୮ରେ ଜନ୍ ଡି. ରକେଫେଲର (ଜୁନିଅର) ନିଉୟର୍କରେ ଏକ ନୂତନ ଅପେରା ହାଉସ ଖୋଲିବା ଯୋଜନାରେ ମନ ପ୍ରାଣ ଢାଳିଦେଲେ। ଏହି ଯୋଜନା ଅନୁସାରେ ସ୍ଥିର ହେଲା ଯେ କଲମ୍ବିଆ ବିଶ୍ୱବିଦ୍ୟାଳୟଠାରୁ ବଡ ଜମିଟିଏ ଲିଜ୍‌ରେ ନିଆଯିବ ଏବଂ ଜମିର ଠିକ ମଝିରେ ମେଟ୍ରୋପଲିଟାନ୍ ଅପେରା କମ୍ପାନୀ ନିର୍ମାଣ କରାଯିବ। ଏହା ଚାରିପଟେ ଥିବା ଜମିଗୁଡ଼ିକ ବ୍ୟବସାୟିକ ଅନୁଷ୍ଠାନ ଖୋଲିବା ପାଇଁ ଲିଜ୍‌ରେ ଦିଆଯିବ। ଏହି ବିଶାଳ ଯୋଜନାଟି କାର୍ଯ୍ୟକାରୀ ହେବା ପୂର୍ବରୁ ଅପେରା କମ୍ପାନୀଟି ଅର୍ଥାଭାବ ତଥା ଆଇନଗତ ଅସୁବିଧା ଯୋଗୁଁ ଯୋଜନାରୁ ଓହରିଗଲା। ରକେଫେଲରଙ୍କ ପାଖରେ ରହିଗଲା ଜମିର ଲମ୍ବା ଲିଜ୍ ଯେଉଁଥିପାଇଁ ତାଙ୍କୁ ବର୍ଷକୁ ୩,୩୦୦,୦୦୦ ଡଲାର ଭଡା ଦେବାକୁ ପଡିବ। ତାଙ୍କ ସାମ୍ନାରେ ଥିଲା ଦୁଇଟି ରାସ୍ତା- ଏଇ ବିଶାଳ ଯୋଜନାଟିକୁ ରଦ୍ଦ କରିଦେବେ ନଚେତ୍ ନିଜେ ଯୋଜନାର ଭାର ମୁଣ୍ଡେଇ ନେବେ। ବହୁ ଚିନ୍ତା କରି ସେ ସ୍ଥିର କଲେ ଯେ ସଂପୂର୍ଣ୍ଣ ନିର୍ମାଣ ଦାୟିତ୍ୱ ସେ ନିଜେ ନେବେ। ବର୍ତ୍ତମାନ ସେହି ସ୍ଥାନର ମୂଲ୍ୟ କଳନା କରି ହୁଏ ନାହିଁ।

ଅଥଚ ଦିନେ ଏହି ଜମି ଥିଲା ଚାଷ ଜମି। ୧୮୦୧ ମସିହାରେ ଡକ୍ଟର ଡେଭିଡ ହୋଗସାକ ଏହି କୋଡ଼ିଏ ଏକରର ଚାଷଜମିକୁ ପ୍ରସିଦ୍ଧ ଏଲଜିନ ବୋଟାନିକାଲ ଗାର୍ଡେନସରେ ପରିଣତ କରିବା ପାଇଁ ଚେଷ୍ଟା ଚଳାଇଲେ। କିନ୍ତୁ ବିଭିନ୍ନ ଆର୍ଥିକ ଅସୁବିଧାରୁ ତାଙ୍କ ଯୋଜନାଟି ସଫଳ ହୋଇପାରିଲା ନାହିଁ। ଡକ୍ଟର ହୋଗସାକ ଏକର ପ୍ରତି ୧୨୫ ଡଲାରରେ ଜମିକୁ ନିଉୟର୍କ ଷ୍ଟେଟକୁ ବିକ୍ରି କରିଦେଲେ। ଏହାର କିଛି ବର୍ଷ ପରେ ନିଉୟର୍କ ଷ୍ଟେଟ କଲମ୍ବିଆ ବିଶ୍ୱବିଦ୍ୟାଳୟକୁ ସାହାଯ୍ୟ ଉଦ୍ଦେଶ୍ୟରେ ଜମିତକ ଦାନ କରିଦେଲା।

ବହୁବର୍ଷ ଲିଜ୍‌ରେ ଦେବା ପରେ ୧୯୮୦ ମସିହାରେ କଲମ୍ବିଆ ବିଶ୍ୱବିଦ୍ୟାଳୟ ଜମିକୁ ରକେଫେଲର ସେଣ୍ଟରକୁ ବିକ୍ରି କରି ଦେଇଛି।

ମେଟ୍ରୋରେ ଷ୍ଟାମଫୋର୍ଡ ଫେରିବାବେଳେ ଭାବୁଥିଲି ରକେଫେଲର ଏଭଳି ଏକ ଦୁଃସାହସିକ ପଦକ୍ଷେପ ନେଇ ନଥିଲେ ଜମିଟିର କିଭଳି ଉପଯୋଗ ହୋଇଥାଆନ୍ତା ? ସେତେବେଳେ ସାହସ କରି ସେ ରକେଫେଲର ସେଣ୍ଟର ଗଢ଼ିଥିଲେ ବୋଲି ଏହା ଏବେ ଆମେରିକାର ସବୁଠାରୁ ଅଧିକ ମୂଲ୍ୟବାନ ବ୍ୟକ୍ତିଗତ ସମ୍ପତ୍ତିରେ ପରିବର୍ତ୍ତିତ ହୋଇ ପାରିଛି।

ଆଜି ସକାଳେ ଜିନିଷପତ୍ର ପ୍ୟାକ କରି ନେବା ପରେ ଆଉ କିଛି କରିବାର ନଥିଲା। ଅନୀଶ ଭାଇଙ୍କର ବହି ଥାକରୁ ନିଉୟର୍କ ଉପରେ ବହିଟିଏ ଆଣି ଆଖି ବୁଲାଉଥିଲି। ହଠାତ୍ ଆଖି ପଡ଼ିଗଲା ପ୍ରସିଦ୍ଧ ଆମେରିକାନ କବି ଓ୍ୱାଲଟ ହ୍ୱିଟମାନ୍‌ଙ୍କ ଲେଖା ପ୍ରବନ୍ଧଟିଏ ଉପରେ। ପ୍ରବନ୍ଧଟିର ଶୀର୍ଷକ ଥିଲା 'ପର୍ଯ୍ୟଟକମାନଙ୍କ ପାଇଁ ପଦେ ଚେତାବନୀ'। ଏଥିରେ ସେ ଲେଖିଥିଲେ : ''ସନ୍ଧ୍ୟା ପରେ ଅଯଥା ରାସ୍ତା ବା ପାର୍କକୁ ଯିବ ନାହିଁ। ତୁମକୁ ଚେତାଇ ଦେବା ଅର୍ଥ, ସ୍ୱୀକାର କରିବା ଯେ ଈଶ୍ୱରଙ୍କ ସୃଷ୍ଟିର ଯେ କୌଣସି ସ୍ଥାନ ଅପେକ୍ଷା ନିଉୟର୍କରେ ଅଧିକ ହିଂସାତ୍ମକ ତଥା ଭୟଙ୍କର ଘଟଣା ଘଟିଥାଏ। ନିଉୟର୍କର ରାସ୍ତାଘାଟରେ ଘୁରି ବୁଲୁଥିବା ଜନସାଧାରଣଙ୍କ ଭିତରେ ମିଶିକରି ରହିଛନ୍ତି ଶହ ଶହ (ହଜାର ହଜାର କହିବା ଉଚିତ ହେବ) ଶଇତାନ। ଏମାନେ ତୁମ ପଛରୁ ଛପି ଛପି ଆସିବେ ବା ମାତାଲର ଅନୁକରଣରେ ତୁମ ଦେହରେ ବାଡେଇ ହୋଇ ପକେଟ ଖାଲି କରିଦେବେ ଅଥବା ସମୟ ବା ରାସ୍ତା ପଚାରିବାର ବାହାନାରେ ତୁମକୁ ଅଟକେଇ ଆକ୍ରମଣ କରିବେ। ଏମାନେ ତୁମ ମୁଣ୍ଡ ଫଟାଇ ଦେଇ ପାରନ୍ତି ବା ତୁମକୁ ମାରି

ଦେଇପାରନ୍ତି । ଚିତ୍କାର କରିବାକୁ ମଧ୍ୟ ତୁମେ ସମୟ ପାଇବ ନାହିଁ । ସନ୍ଧ୍ୟା ପରେ ଯଦି ତୁମକୁ ନିହାତି କେଉଁଠିକୁ ଯିବାକୁ ହୁଏ, ତେବେ ବୁଲାଣିଆ ହେଉ ପଛକେ ଭଦ୍ର ରାସ୍ତାରେ ଯିବ । ଯଦି ରାସ୍ତା ଭୁଲି ଯାଇଛ, ତେବେ କୌଣସି ଭଦ୍ର ଦୋକାନକୁ ଯାଇ ରାସ୍ତା ପଚାରି ପାର ବା ଯେ କୌଣସି ନୀଳ ପୋଷାକ ପିନ୍ଧା ପୋଲିସର ସାହାଯ୍ୟ ନେଇପାର । କହିବା ବାହୁଲ୍ୟ, ପ୍ରତି ଛକରେ ତୁମେ ପୋଲିସ ଦେଖିବାକୁ ପାଇବ ।''

ହ୍ୱିଟ୍‌ମ୍ୟାନ ଏହି ଲେଖାଟି ଲେଖିଥିଲେ ୧୮୫୬ ମସିହାରେ । ତାହା ପରେ ଏତେ ବର୍ଷ ବିତି ଗଲାଣି । କିନ୍ତୁ ନିଉୟର୍କ ସହରର ରାସ୍ତାଘାଟ ଏବେ ମଧ୍ୟ ସୁରକ୍ଷିତ ନୁହେଁ । ବରଂ ନିଶାଦ୍ରବ୍ୟର ଅଧିକ ପ୍ରଚଳନରେ ସହରଟି ହୋଇ ଯାଇଛି ହିଂସାତ୍ମକ ଘଟଣାର କେନ୍ଦ୍ରସ୍ଥଳୀ । ସହରର କୌଣସି ଅଂଶ ଏଥିରୁ ମୁକ୍ତ ନୁହେଁ- କେଉଁଠି ହୁଏତ ବେଶୀ, କେଉଁଠି କମ୍ । ମାନହାଟାନ୍ ଠାରୁ ଆରମ୍ଭ କରି କୁଇନ୍‌ସ ପର୍ଯ୍ୟନ୍ତ- ସବୁଠାରେ ରହିଛି ହିଂସାତ୍ମକ ଘଟଣା ଘଟିବାର ଆଶଙ୍କା । ଏଥିପାଇଁ ସବୁ ଦୋଷ ନିଶାଦ୍ରବ୍ୟକୁ ଦିଆଯାଇ ପାରିବ ନାହିଁ । କିଛି ଦୋଷ ରହିଛି ସମାଜରେ । ନିଉୟର୍କ ସମାଜରେ ଦେଖିବାକୁ ମିଳେ ବହୁ ଜାତି, ବହୁ ବର୍ଣ୍ଣ, ବହୁ ଧର୍ମର ଲୋକ । ଏକ ଉନ୍ନତ, ସୁନ୍ଦର ଜୀବନର ଆଶା ନେଇ ଏମାନେ ଆସି ପହଞ୍ଚିଥିଲେ ଏଇ ସ୍ୱପ୍ନର ସହରରେ । କିନ୍ତୁ ବହୁ କାରଣରୁ ଏମାନଙ୍କର ସ୍ୱପ୍ନ ସଫଳ ହୋଇ ପାରି ନାହିଁ, ଏମାନେ ଲକ୍ଷ୍ୟସ୍ଥଳରେ ପହଞ୍ଚି ପାରି ନାହାନ୍ତି । ଜୀବନର ପ୍ରତି ପଦକ୍ଷେପରେ ଧକ୍କା ଖାଇ ଖାଇ ଏମାନଙ୍କ ମଧ୍ୟରୁ ଅନେକେ ହିଂସାର ରାସ୍ତା ଗ୍ରହଣ କରି ନେଇଛନ୍ତି ।

ଚିନ୍ତା କରିଲେ ଦୁଃଖ ଲାଗେ । ଯେଉଁ ସମାଜରେ ଏତେ ସମୃଦ୍ଧି ସେଇ ସମାଜରେ ଏତେ ହିଂସା, ଦ୍ୱେଷ କାହିଁକି ? ସାଧାରଣ ଲୋକଙ୍କ ଜୀବନରେ କ'ଣ ଏହାର କୌଣସି ଛାପ ପଡୁନାହିଁ ?

ମୁଁ ପଢୁଥିବା ବହିର ଶେଷ ପୃଷ୍ଠା ଓଲଟେଇଲି । ଜଣେ ଗୃହିଣୀଙ୍କ ସହିତ ସାକ୍ଷାତକାରର କେତେକ ଅଂଶ ଛପା ହୋଇଥିଲା ସେଇଠି । ଗୃହିଣୀଜଣକ କହିଥିଲେ, ''ନିଉୟର୍କ ସହରର ଅବସ୍ଥା ଦିନକୁ ଦିନ ଖରାପ ହେବାକୁ ଲାଗିଛି ।...କିଛିଦିନ ତଳେ ଗୋଟିଏ ଡିପାର୍ଟମେଣ୍ଟାଲ ଷ୍ଟୋର୍ ଭିତରେ ଦୁଇଟି ଯୁବକ ବନ୍ଧୁକ ଦେଖାଇ ମୋ ପର୍ସ ନେଇଗଲେ । ଅତି ଆବର୍ଜନାମୟ ସହର ଏଇ ନିଉୟର୍କ । କିନ

ଏ ସହର ଛାଡି ଆଉ କେଉଁଠିକୁ ଯିବା କଥା ଆମେ ଚିନ୍ତା କରି ପାରୁନାହୁଁ। ଆମେରିକାର ଅନ୍ୟ କୌଣସି ସହରର ଆତ୍ମା ନାହିଁ। ଅଥଚ ଏ ସହରର ଗୋଟିଏ ଜୀବନ୍ତ ଆତ୍ମା ରହିଛି। ସେ ଦୃଷ୍ଟିରୁ ଦେଖିଲେ ନିଉୟର୍କ ଅନନ୍ୟ। ଅତି ସୁନ୍ଦର।''

ଏହି ଭାଷା, ଏହି ସ୍ୱର କେବଳ ଜଣେ ଗୃହିଣୀଙ୍କର ନୁହଁ। ନିଉୟର୍କରେ ଘର କରି ରହିଥିବା ଅଧିକାଂଶ ଲୋକଙ୍କର ଏହି ଏକା ମତ। ସେମାନେ ସମାଲୋଚନା କରିବେ, ଘଟୁଥିବା ବିଭିନ୍ନ ଘଟଣାର ନିନ୍ଦା କରିବେ, କିନ୍ତୁ କଦାପି ସହର ଛାଡି ଯିବେ ନାହିଁ।

ନିଉୟର୍କକୁ ଏତକି ଭଲ ପାଉଥିବା ଲୋକମାନଙ୍କ ସ୍ୱର ସହିତ ହୁଏତ ମୁଁ ସ୍ୱର ମିଳାଇ ପାରୁନାହିଁ। କିନ୍ତୁ ଆଜି ନିଉୟର୍କ ଛାଡି ଯିବା ବେଳକୁ ମୋର କାହିଁକି ମନେ ହେଉଛି ଯେ ଏ ସହର ବଞ୍ଚି ରହିବ। କାରଣ ବଞ୍ଚି ରହିବାର କୌଶଳ ଏହାକୁ ଜଣା।

ଆଜି ଏତିକି। ପ୍ୟାରିସ ଦେଖିବା ପାଇଁ, ପ୍ୟାରିସ ଭୂଇଁରେ ପାଦ ଦେବା ପାଇଁ ମନ ଅଥୟ ହୋଇ ଉଠିଲାଣି। ପ୍ୟାରିସରୁ ତତେ ପୁଣି ଚିଠି ଦେବି। ରହୁଛି।

ଇତି
ତୋର 'ନାନୀ'

୭ ଅଗଷ୍ଟ, ୧୯୯୧

ମିତୁ,

ମୋର ସ୍ନେହ ନେବୁ। ଏଇ ମାତ୍ର କ୍ୟାପ୍‌ଟେନ୍ ଘୋଷଣା କଲେ ଯେ ତୁର୍କିର ରାଜଧାନୀ ଆଙ୍କରା ଉପର ଦେଇ ଆମ ପ୍ଲେନ୍ ଉଡିଯାଉଛି। ଆଉ ମାତ୍ର କେତୋଟି ଘଣ୍ଟାର ବ୍ୟବଧାନ। ତା'ପରେ ଭାରତ। ନିଜ ଦେଶ ପ୍ରତି ଆକର୍ଷଣ ଯେ କେତେ ଗଭୀର, ଦେଶ ଛାଡି ବାହାରକୁ ନ ଗଲେ ଜଣେ ବୁଝି ପାରିବ ନାହିଁ। ମନ ଅଧୀର ହୋଇଯାଉଛି, ହୃତ୍‌ପିଣ୍ଡର ସ୍ପନ୍ଦନ ବଢିଯାଉଛି, ହେଲେ ସମୟ କଟୁ ନାହିଁ। ପ୍ରତି ପାଞ୍ଚ ମିନିଟ୍‌ର ବ୍ୟବଧାନରେ ମୋ ଆଖି ଘୁରି ଆସୁଛି ଘଡି ଉପରୁ। ମନର ବେଗରେ ଉଡାଜାହାଜଟି ଉଡି ଯାଇ ପାରନ୍ତା ନାହିଁ!

ଅଥଚ ଆଜି ସକାଳେ ଆମେ ଯେତେବେଳେ ପ୍ୟାରିସ୍‌ର ଚାର୍ଲସ୍ ଡି ଗଲ୍ ଏଆର୍‌ପୋର୍ଟରେ ପହଞ୍ଚିଲୁ ମୋ ମନ ବେଶ୍ ଖରାପ ହୋଇ ଯାଇଥିଲା। ଆଉ କେଇଟା ଦିନ ରହି ହୋଇ ନ ଥାଆନ୍ତା! କ'ଣ ବା ଆମେ ଦେଖିଲୁ ଏଇ ପାଞ୍ଚୋଟି ଦିନ ଭିତରେ! କେତେ ଟିକିଏ ବା ଦେଖିଲୁ! ପ୍ୟାରିସ୍‌ରେ ଘର କରି ରହୁଥିବା ଲୋକଙ୍କ ପ୍ରତି ମନରେ ସାମାନ୍ୟ ଈର୍ଷା ବି ହୋଇଥିଲା।

ବହୁତ ଦିନ ତଳେ ଗୋଟିଏ ଭ୍ରମଣ ସଂପର୍କିତ ବହିରେ ପଢିଥିଲି ଯେ ଫ୍ରାନ୍‌ସକୁ ବାଦ୍ ଦେଇ ପ୍ୟାରିସ୍ ବଞ୍ଚି ପାରିବ। କିନ୍ତୁ ପ୍ୟାରିସ୍‌କୁ ବାଦ୍ ଦେଲେ ଫ୍ରାନ୍‌ସର କୌଣସି ଅସ୍ତିତ୍ୱ ହିଁ ନାହିଁ। କଥାଟିର ସତ୍ୟତା ପ୍ୟାରିସ୍ ଦେଖି ସାରିବା

ପରେ ମୁଁ ଅନୁଭବ କରିପାରିଥିଲି। ବହିରେ ପଢିଥିବା, ସିନେମାରେ ଦେଖିଥିବା ପ୍ୟାରିସ୍‌ର ମୂଲ୍ୟ ମୋ ଆଖିରେ ଅନେକ ବଡ ହୋଇଯାଇଥିଲା। ସତରେ ପ୍ୟାରିସ୍ ଅନନ୍ୟା। ପୃଥିବୀର ଅନ୍ୟ କୌଣସି ସହର ସହିତ ଏହାର ତୁଳନା ହୁଏ ନାହିଁ।

ପାଞ୍ଚ ଦିନ ତଳେ ଆମେ ଯେତେବେଳେ ସୁଇସ୍ ଏୟାରରେ ଜୁରିକ୍ ହୋଇ ପ୍ୟାରିସ୍‌ରେ ପହଞ୍ଚିଲୁ, ସେତେବେଳେ ଦିନ ଦୁଇଟା। ଆମକୁ ନେବା ପାଇଁ ତୋ ଭାଇନାଙ୍କର ସାଙ୍ଗ ସଂଜୟ ମୂର୍ତ୍ତି ଆସିଥିଲେ। ଆମର ସଂଜୟଙ୍କ ଫ୍ଲାଟ୍‌ରେ ରହିବା କଥା। ଫ୍ଲାଟ୍‌ଟି ସେନ୍ (Seine) ନଦୀ ପାଖରେ। ଫ୍ଲାଟ୍‌ରେ ପହଞ୍ଚି ବାଲ୍‌କନିରେ ପଡିଥିବା ବେତ ଚୌକୀରେ ଆମେ କ୍ଳାନ୍ତ ହୋଇ ବସିଗଲୁ। ଏମିତିରେ ଦେଖିଲେ ଶାରୀରିକ କ୍ଳାନ୍ତି ଅପେକ୍ଷା ମାନସିକ କ୍ଳାନ୍ତି ଅଧିକ। ଗୋଟିଏ ମହାଦେଶରୁ ଅନ୍ୟ ଏକ ମହାଦେଶ। ଆଟଲାଣ୍ଟିକ ପାରି ହୋଇ ଗୋଟିଏ ଦେଶରୁ ଅନ୍ୟ ଏକ ଦେଶ ଶରୀର ସହିତ ମନ ଉପରେ ବି ଏହାର ପ୍ରଭାବ ପଡୁନାହିଁ କି ?

ସଂଜୟ ଚାହା କରି ଆଣିଲେ। ଚାହା ପିଉପିଉ ମୋ ଆଖି ପଡିଗଲା କିଛି ଦୂରରେ ଦେଖାଯାଉଥିବା ଅତି ଜଣାଶୁଣା ଏକ ରୂପରେଖା ଉପରେ। ଆଇଫେଲ୍ ଟାୱାର୍ ! ମୋ ଚାହା ପିଆ ସେତିକି। ଅସଂଖ୍ୟ ସ୍ଥାନରେ ଅସଂଖ୍ୟ ପରିପ୍ରେକ୍ଷୀରେ ଏଇ ଆଇଫେଲ୍ ଟାୱାର୍‌ର ଛବି ଦେଖି ଦେଖି ମନ ଭିତରେ ତାହାର ଏଭଳି ଏକ ଜୀବନ୍ତ ରୂପ ବସି ଯାଇଛି ଯେ ଆଖି ସାମ୍ନାରେ ତାକୁ ଦେଖି ମଧ୍ୟ ବିଶ୍ୱାସ ହେଉ ନଥାଏ। ସଂଜୟ କହିଲେ ଯେ ଆଇଫେଲ୍ ଟାୱାର୍ ବେଶୀ ଦୂରବାଟ ନୁହଁ। ସେତେବେଳେ ସମୟ ତ ମାତ୍ର ତିନିଟା, ଆମେ ଖୁସିରେ ଆଇଫେଲ୍ ଟାୱାର୍ ଦେଖି ଆସି ପାରିବୁ।

ବାସ୍, ଆମର ସବୁତକ କ୍ଳାନ୍ତି ଚାଲିଗଲା। ଆମେ ବାହାରି ପଡିଲୁ। ସଂଜୟ କିନ୍ତୁ ଆମ ସାଙ୍ଗରେ ଆସି ପାରିଲେ ନାହିଁ। ତାଙ୍କୁ ଅଫିସ୍ ଫେରିଯିବାକୁ ହେଲା। ତାଙ୍କଠାରୁ ରାସ୍ତା ବୁଝିନେଇ ଆମେ ଚାଲିଲୁ। ମନରେ ଆଶଙ୍କା। ଫରାସୀ ଭାଷା ଆଦୌ ଜଣା ନାହିଁ। ଆମେ ଶୁଣିଛୁ ଯେ ଫରାସୀ ଭାଷା ନ ଜାଣିଲେ ଫ୍ରାନ୍‌ସରେ କାହା ସାଙ୍ଗରେ କଥାବାର୍ତ୍ତା କରି ହେବ ନାହିଁ। ତା'ଛଡା ଫ୍ରାନ୍‌ସ ଓ ଇଂଲାଣ୍ଡର ପୁରୁଣା ଶତ୍ରୁତା ଏବେ ପ୍ରତିଯୋଗିତାରେ ପରିଣତ ହୋଇଛି। ସେଇଥିପାଇଁ ଫରାସୀ ଲୋକମାନେ ଇଂରାଜୀ ଭାଷାକୁ ଖୁବ୍ ଗୋଟିଏ ସୁ-ନଜରରେ ଦେଖନ୍ତି ନାହିଁ।

ମୁଁ ମନରେ ଜୋର୍ ବାନ୍ଧିଲି। ଯଦି ଜାପାନୀ ଭାଷା ନ ଜାଣି ଟୋକିଓରେ ଚଲାବୁଲା କରିପାରିଲି, ପ୍ୟାରିସ୍‌ରେ ଅସୁବିଧା ବା ହେବ କାହିଁକି? ସଂଜୟ ଦେଇଥିବା ନିର୍ଦ୍ଦେଶ ଅନୁସାରେ ଆମେ ମେଟ୍ରୋ ଷ୍ଟେସନ୍ ଆଡେ ଚାଲିଲୁ। ଟିକେଟ୍ କାଟି ଆଇଫେଲ୍ ଟାୱାର୍‌ର ନିକଟତମ ମେଟ୍ରୋ ଷ୍ଟେସନ୍‌ରେ ପହଞ୍ଚିବାକୁ କୌଣସି ଅସୁବିଧା ହେଲା ନାହିଁ। ରାସ୍ତା କଡର ସୂଚନା ଦେଖି ଦେଖି ଆମେ ଚାଲିଲୁ। ମାତ୍ର କେଇ ମିନିଟ୍‌ର ରାସ୍ତା। ତା'ପରେ ଆଖି ସାମ୍ନାରେ ବିଶାଳ ଆଇଫେଲ୍ ଟାୱାର୍।

ଆଇଫେଲ୍ ଟାୱାର୍‌ର ବୟସ ପ୍ରାୟ ଶହେ ବର୍ଷ। ପ୍ୟାରିସ୍‌ର ବହୁ ପ୍ରାଚୀନ ଇତିହାସ ତୁଳନାରେ ଶହେଟା ବର୍ଷ ହୁଏତ କିଛି ବି ନୁହଁ। କିନ୍ତୁ ଆଇଫେଲ୍ ଟାୱାର୍‌କୁ ବାଦ୍ ଦେଇ ବର୍ତ୍ତମାନର ପ୍ୟାରିସ୍ ବିଷୟ ଚିନ୍ତା କରି ହୁଏ ନାହିଁ। ନିଉୟର୍କ କହିଲେ ଯେମିତି ମନକୁ ଆସେ 'ଷ୍ଟାଚ୍ୟୁ ଅଫ୍ ଲିବର୍‌ଟି', ଲଣ୍ଡନ କହିଲେ ଯେମିତି 'ବିଗ୍‌ବେନ୍' କଥା ମନେ ପଡେ, ସେଇଭଳି ପ୍ୟାରିସ୍ କହିଲେ ଆଖି ସାମ୍ନାରେ ପ୍ରଥମ ଭାସି ଉଠେ ଆଇଫେଲ୍ ଟାୱାର୍‌ର ଚିତ୍ର।

ଅଥଚ ଟାୱାରଟି ନିର୍ମାଣ ହେବାପରେ ଏହାକୁ ନେଇ କେତେ ବାଦ ବିବାଦ ସୃଷ୍ଟି ନ ହୋଇଥିଲା! ଫରାସୀ ବିଦ୍ରୋହର ଶତବାର୍ଷିକୀ ଉଦ୍ଦେଶ୍ୟରେ ସେତେବେଳେ 'ପ୍ୟାରିସ୍ ପ୍ରଦର୍ଶନୀ'ର ଆୟୋଜନ କରାଯାଇଥିଲା। ଏଥିପାଇଁ ପ୍ରଖ୍ୟାତ ଇଞ୍ଜିନିୟର ଗୁସ୍ତାଭ୍ ଆଇଫେଲ୍‌ଙ୍କୁ ଏଇଭଳି ଏକ ଟାୱାର ନିର୍ମାଣ କରିବା ଦାୟିତ୍ୱ ଦିଆ ହୋଇଥିଲା। ୧୮୮୯ ମସିହାରେ ଆଇଫେଲ୍ ଟାୱାର ନିର୍ମାଣ କାର୍ଯ୍ୟ ଶେଷ ହେଲା। ସ୍ଥିର ହୋଇଥିଲା ଯେ କୋଡ଼ିଏ ବର୍ଷ ପରେ ପ୍ୟାରିସ୍ ପ୍ରଦର୍ଶନୀ ଶେଷ ହେଲେ ଟାୱାରଟି ଭାଙ୍ଗି ଦିଆଯିବ।

କିନ୍ତୁ କୋଡ଼ିଏ ବର୍ଷ ଅପେକ୍ଷା କରିବା ପାଇଁ ପ୍ରସ୍ତୁତ ନ ଥିଲେ ପ୍ୟାରିସ୍‌ବାସୀ। ସେମାନଙ୍କ ମତରେ ସୌନ୍ଦର୍ଯ୍ୟମୟୀ ପ୍ୟାରିସ୍ ଶରୀରରେ ଏ ଏକ କଳଙ୍କ। ଏହାକୁ ଯଥାଶୀଘ୍ର ଦୂରେଇ ଦେବା ଉଚିତ। ମୋପାସାଁ, ଡୁମାସ ତଥା ତତ୍କାଳୀନ ଫ୍ରାନ୍ସର ବହୁ ଗଣ୍ୟମାନ୍ୟ ବ୍ୟକ୍ତି ଏକାଠି ହୋଇ ସରକାରଙ୍କୁ ଚିଠି ଲେଖିଥିଲେ ଯେ ଏହି ଲୁହା ତିଆରି ଅସୁନ୍ଦର ସ୍ମାରକୀକୁ ପ୍ୟାରିସ୍ ବକ୍ଷରୁ ଦୂରେଇ ଦିଆଯାଉ। ବହୁ ଆଲୋଚନା ପରେ ସରକାର ସ୍ଥିର କଲେ ଯେ ପ୍ରଦର୍ଶନୀର କୋଡ଼ିଏଟି ବର୍ଷ କେବଳ ସେମାନେ ଅପେକ୍ଷା କରିବେ। ମାତ୍ର କୋଡ଼ିଏ ବର୍ଷ ପରେ

ଯେତେବେଳେ ଏହାକୁ ଭାଙ୍ଗିବା କଥା ଉଠିଲା, ସେତେବେଳେ ଫରାସୀ ସରକାର ଅନୁଭବ କଲେ ଯେ ଏହି ଟାୱାର୍ ଭାଙ୍ଗିବା ବହୁ କଷ୍ଟସାଧ୍ୟ। ଏଥିପାଇଁ ଅନେକ ସମୟ ଓ ଅର୍ଥ ବ୍ୟୟ କରିବାକୁ ହେବ। ଅପର ପକ୍ଷରେ କୋଡ଼ିଏ ବର୍ଷ ମଧ୍ୟରେ ଆଇଫେଲ୍ ଟାୱାର୍ ପ୍ରମାଣ କରି ଦେଇଛି ଯେ ଏହା ସଂପୂର୍ଣ୍ଣ ମୂଲ୍ୟହୀନ ନୁହଁ। ଫ୍ରାନ୍ସର ଉଚ୍ଚତମ ରେଡିଓ ଟ୍ରାନ୍ସମିଟର ରୂପେ ଓ ପ୍ରଧାନ ପର୍ଯ୍ୟଟକ ଆକର୍ଷଣ ରୂପେ ଏହାର ଯଥେଷ୍ଟ ମୂଲ୍ୟ ରହିଛି। ଏଣୁ ଶେଷରେ ସ୍ଥିର ହେଲା ଯେ ଆଇଫେଲ୍ ଟାୱାର୍ ଭଙ୍ଗାଯିବ ନାହିଁ।

ବର୍ତ୍ତମାନ ଆଇଫେଲ୍ ଟାୱାରର ଉଚ୍ଚତା ୧୦୫୧ ଫୁଟ। ପ୍ରଥମ ମହଲା ୧୮୭ ଫୁଟ ଓ ଦ୍ୱିତୀୟ ମହଲା ୩୭୭ ଫୁଟ ଉଚ୍ଚ। ଯେଉଁ ଦିନ ପାଗ ଭଲ ଥାଏ, ସେଦିନ ଏହା ଉପରୁ ଦେଖିଲେ ୫୦ ମାଇଲ୍‌ର ଦୃଶ୍ୟ ପରିଷ୍କାର ଦେଖାଯାଏ। ଟାୱାର ଉପରକୁ ଯିବା ପାଇଁ ଏଲିଭେଟର୍ ରହିଛି। ଏଥିପାଇଁ ଅବଶ୍ୟ ଟିକେଟ୍ ଲାଗେ। ଆମେ ଦେଖିଲୁ ଯେ ଅନେକ ଲୋକ ସିଡ଼ିରେ ଚଢ଼ି ଉପରକୁ ଚାଲିଥାଆନ୍ତି। ସେମାନଙ୍କର ସାହସକୁ ଧନ୍ୟବାଦ ଜଣେଇ ଆମେ ଟିକେଟ୍ କାଟି ଏଲିଭେଟର୍‌ରେ ଉପରକୁ ଉଠିଲୁ।

ଅଗଷ୍ଟ ମାସରେ ପ୍ୟାରିସ୍‌କୁ ସବୁଠାରୁ ଅଧିକ ପର୍ଯ୍ୟଟକ ଆସିଥାଆନ୍ତି, ତେଣୁ ଲମ୍ବା ଧାଡ଼ିରେ ଠିଆ ହେବାକୁ ପଡ଼ିଲା। ଶେଷରେ ଆମେ ଯେତେବେଳେ ଅବ୍‌ଜରଭେସନ୍ ରୁମ୍‌ରେ ପହଞ୍ଚିଲୁ ସେତେବେଳେ ପ୍ରାୟ ସାଢ଼େ ଚାରିଟା। ଖରାଦିନ। ଆକାଶ ମଧ୍ୟ ପରିଷ୍କାର। କାଚ କାନ୍ଥ ଦେଇ ପ୍ୟାରିସ୍‌ର ସେ ଯେଉଁ ଅପରୂପ ଦୃଶ୍ୟ ଆମେ ଦେଖିଲୁ, ତା'ର କି ବର୍ଣ୍ଣନା ମୁଁ କରିବି? ସେଇ କେତୋଟି ମୁହୂର୍ତ୍ତ ଆମକୁ ଯେମିତି ଅନ୍ୟ ଏକ ଜଗତକୁ ନେଇଗଲା। ମନରୁ ପୋଛି ହୋଇଗଲା ଲମ୍ବା ଧାଡ଼ିରେ ଠିଆ ହେବାର କଷ୍ଟ ଏବଂ ଲୋକ ଭିଡ଼। ଏଣେ ଭିଡ଼ ବଢ଼ିବାରେ ଲାଗିଥାଏ। ଆଉ ଭିଡ଼କୁ ଅସ୍ୱୀକାର କରି ହେଲା ନାହିଁ, ଆମେ ଶେଷରେ ତଳକୁ ଫେରିଆସିଲୁ।

ଅନ୍ଧାର ହେବାକୁ ଆହୁରି ଅନେକ ଡେରି। ଏତେ ଶୀଘ୍ର ଫ୍ଲାଟ୍‌କୁ ଫେରିଯିବାର ଇଚ୍ଛା ନଥାଏ। ସେଇଥିପାଇଁ ଆମେ ସ୍ଥିର କଲୁ ଯେ ଆର୍କ ଦ ଟ୍ରେୟାମ୍ଫ (Arc de Triomphe)ଦେଖିବା ପାଇଁ ଯିବୁ। ଏଇଠି ତତେ କହି ରଖେ ତୁଳନାତ୍ମକ ଭାବରେ ଦେଖିଲେ ପ୍ୟାରିସ୍ ଅନ୍ୟାନ୍ୟ ଦେଶର ରାଜଧାନୀମାନଙ୍କ ଅପେକ୍ଷା ବେଶ୍ ଛୋଟ।

ଅଧିକାଂଶ ଦର୍ଶନୀୟ ସ୍ଥାନ ବା ମିଉଜିଅମ୍ ପରସ୍ପରର ଖୁବ୍ ନିକଟରେ । ତେଣୁ ହାତରେ ସମୟ ଥିଲେ ଅନେକ ପର୍ଯ୍ୟଟକ ଚାଲି ଚାଲି ବୁଲିଥାଆନ୍ତି । କିନ୍ତୁ ସେଇ ସମୟ ଜିନିଷଟିର ତ ଘୋର ଅଭାବ ଆମ ପାଖରେ । ଶେଷରେ ଟ୍ୟାକ୍‌ସିଟିଏ ଧରି ବାହାରିଲୁ ।

ଐତିହାସିକ ସହର ପ୍ୟାରିସ । ଏହାର ପୃଷ୍ଠଭୂମିରେ ବହୁ ଘଟଣା ଘଟିଯାଇଛି । ବହୁ ପ୍ରସିଦ୍ଧ, ଅପ୍ରସିଦ୍ଧ ଲୋକଙ୍କ କାହାଣୀରେ ସମୃଦ୍ଧ ହୋଇଛି ଏହାର ଆକାଶ, ବତାସ, ମାଟି, ପଥର । ସେଇଭଳି ଗୋଟିଏ କାହାଣୀ ଯୋଡ଼ା ଏଇ ଆର୍କ ଦ ତ୍ରେୟାମ୍ଫ ସହିତ । ୫୦ ମିଟର ଉଚ୍ଚ, ୪୫ ମିଟର ଚଉଡା ଆର୍କ ଦ ତ୍ରେୟାମ୍ଫ ଐତିହାସିକ ପ୍ୟାରିସ୍‌ର ଏକ ସୁନ୍ଦର ନମୁନା । ସମ୍ରାଟ ନେପୋଲିଅନ୍ ନିଜର ବିଜୟ ଓ ବିଶାଳ ସାମ୍ରାଜ୍ୟ ଗଠନର ସ୍ମାରକୀ ରୂପେ ଏହା ନିର୍ମାଣ କରିବା ବିଷୟ ପ୍ରଥମେ ଚିନ୍ତା କରିଥିଲେ । ସେ ମନେ କରିଥିଲେ ଯେ ହୁଏତ ଏଇଭଳି ଏକ ସ୍ମାରକୀ ଗଠନ କରିବା ପାଇଁ ବେଶୀ ସମୟ ଲାଗିବ ନାହିଁ । କିନ୍ତୁ ଯୋଦ୍ଧା ନେପୋଲିଅନ୍‌ଙ୍କର କାରିଗରୀ ବିଦ୍ୟାରେ ବା କେତେ ଆଉ ଦକ୍ଷତା ! ୧୮୧୦ ମସିହାରେ ଯେତେବେଳେ ନୂତନ ସାମ୍ରାଜ୍ଞୀ ମ୍ୟାରିଲୁଇସ୍ ପ୍ୟାରିସରେ ପାଦ ଦେଲେ, ସେତେବେଳେ ଆର୍କ ଦ ତ୍ରେୟାମ୍ଫର ନିର୍ମାଣ କାର୍ଯ୍ୟ ଅଧା ମଧ୍ୟ ହୋଇନାହିଁ । ଏକ ଲଜ୍ଜାକର ପରିସ୍ଥିତିରୁ ଉଦ୍ଧାର ପାଇବା ପାଇଁ ଏହା ଉପରେ ରଙ୍ଗୀନ କାନ୍‌ଭାସ୍‌ର ଧନୁଟିଏ କରି ଘୋଡେଇ ଦେବାକୁ ହୋଇଥିଲା । ଏହାର ନିର୍ମାଣ କାର୍ଯ୍ୟ ଶେଷ ହୋଇଥିଲା ୧୮୩୬ରେ - ନେପୋଲିଅନ୍‌ଙ୍କ ମୃତ୍ୟୁର ପ୍ରାୟ ୨୦ ବର୍ଷ ପରେ । ଏହାର ଚାରୋଟି ସ୍ତମ୍ଭରେ ରହିଛି ତତ୍କାଳୀନ ସ୍ଥାପତ୍ୟ କଳାର ସୁନ୍ଦର ନିଦର୍ଶନ । ସବୁଗୁଡିକ ଭିତରୁ ଫ୍ରାଙ୍କ୍ ର୍‍୍ୟୁଡଙ୍କର La Maiseillaise ବୋଧହୁଏ ଶ୍ରେଷ୍ଠତମ । ତୁ ଆର୍କ ଦ ତ୍ରେୟାମ୍ଫ ଓ ସେଇଠାରୁ ବାହାରିଥିବା ସିଧା ରାସ୍ତାଗୁଡିକର ଚିତ୍ର ଦେଖିଥିବୁ ନିଶ୍ଚୟ । କେନ୍ଦ୍ରରେ ରହିଛି ଆର୍କ ଦ ତ୍ରେୟାମ୍ଫ ଏବଂ ଏଇଠାରୁ ଆରମ୍ଭ ହୋଇ ବିଭିନ୍ନ ଦିଗରେ ଲମ୍ବିଯାଇଛି ୧୨ଟି ରାସ୍ତା । ଆକାଶମାର୍ଗରୁ ଦେଖିଲେ ମନେ ହେବ ତାରକାଟିଏ ।

ବାରଟି ରାସ୍ତା ମଧ୍ୟରୁ ସବୁଠାରୁ ବେଶୀ ଜଣାଶୁଣା ଏବଂ ଜନପ୍ରିୟ ହେଉଛି ସାଁ ଜେଲିଜି (Champs Elysee) । ଏଇଟି ବର୍ତ୍ତମାନ ପ୍ୟାରିସ୍‌ର ପ୍ରଧାନ ରାସ୍ତା । ଅଥଚ ଉନବିଂଶ ଶତାବ୍ଦୀରେ ଏଇ ରାସ୍ତାଟିର ବେଶ ଦୁର୍ନାମ ଥିଲା ।

ଏବଂ ଏଠାରେ ଥିବା ପାଞ୍ଚ ଛଅଟି କୁଖ୍ୟାତ କୋଠାରୁ ଭଦ୍ରପରିବାର ଲୋକମାନେ ଦୂରେଇ ରହିବା ପାଇଁ ପସନ୍ଦ କରୁଥିଲେ। ସେଇ ସାଁ ଜେଲିଜିର କି ପରିବର୍ତ୍ତନ! ଦୁଇ କିଲୋମିଟର ଲମ୍ବା ରାସ୍ତାଟିର ଉଭୟ ପାର୍ଶ୍ୱରେ ଗଢ଼ି ଉଠିଛି ପ୍ୟାରିସ୍‌ର ନାମକରା ଦୋକାନ ବଜାର, କ୍ୟାଫେ, ରେସ୍ତୋରାଁ, ଏଥାର୍ ଲାଇନ୍‌ସ ଅଫିସ୍, ସିନେମା ହଲ୍ ଇତ୍ୟାଦି। ରଙ୍ଗୀନ ଆଲୁଅରେ ସୁସଜ୍ଜିତ ରାସ୍ତାଟି ଦେଖିଲେ ମନେ ହୁଏ ଯେପରି ଗୋଟିଏ ଉତ୍ସବ ପାଳିତ ହେଉଛି। ଆର୍କ ଦ ତ୍ରେ୍ୟାମ୍ଫ ଦେଖି ସାରିବା ପରେ ଆମେ ସାଁ ଜେଲିଜିରେ ଚାଲି ଚାଲି ବୁଲିଲୁ। ସମୁଦାୟ ଦୁଇ କିଲୋମିଟର୍ ତ ଚାଲିବା ସମ୍ଭବ ନଥିଲା। ଚାଲି ଚାଲି ଯେତେବେଳେ ଗୋଡ ଥକିଗଲା, ସେତେବେଳେ ଆମେ ସାଁ ଜେଲିଜି ଷ୍ଟେସନ୍‌କୁ ଯାଇ ମେଟ୍ରୋରେ ସଂଜୟଙ୍କ ଫ୍ଲାଟ୍‌କୁ ଫେରି ଆସିଲୁ।

ରାତିରେ ଆରମ୍ଭ ହୋଇଗଲା ଜେଟ୍‌ଲ୍ୟାଗ୍। ଆଉ ନିଦ ହେଉଛି କେଉଁଠି? ଶୋଇବା ଆଗରୁ ସେଥିପାଇଁ ବହୁ ଆଲୋଚନା ଚାଲିଲା- ତା' ପରଦିନ ଯିବୁ କୁଆଡେ? ଲୁଭ୍ (Louvre) ମିଉଜିଅମ୍ ନା ଭର୍ସାଇ ପ୍ରାସାଦ (Palace of Versailles)? ଭର୍ସାଇ ପ୍ରାସାଦ ଯିବାକୁ ହେଲେ ଅନ୍ୟ ଲାଇନ୍‌ର ଟ୍ରେନ୍ ଧରିବାକୁ ହେବ। ତୃତୀୟ ଦିନ ସଂଜୟଙ୍କ ଛୁଟୀ। ସେଇଦିନ ସଂଜୟଙ୍କୁ ନେଇ ଭର୍ସାଇ ଯିବା କଥା ସ୍ଥିର କଲୁ। ପରଦିନ ତାହେଲେ ଲୁଭ୍ ମିଉଜିଅମ୍।

ମେଟ୍ରୋର ପ୍ୟାଲେସ୍ ରୟାଲ୍ ଷ୍ଟେସନ୍‌ରୁ ବାହାରିବା କ୍ଷଣି ଆଖିରେ ପଡ଼ିଲା ଲୁଭ୍। ମୁଁ ଶୁଣିଥିଲି ଲୁଭ୍ ଫ୍ରାନ୍‌ସର ପ୍ରାଚୀନ ପ୍ରାସାଦଟିଏ। କିନ୍ତୁ ଏହାକୁ କେବଳ ପ୍ରାସାଦ କହିଲେ ଭୁଲ୍ ହେବ; ପ୍ରାସାଦଶ୍ରେଣୀ କହିବା ଉଚିତ। ମିଉଜିଅମ୍‌ର ଗେଟ୍ ପାଖରେ ଲଗା ହୋଇଛି ଫଳକଟିଏ। ସେଇଠି ଲେଖା ହୋଇଥିଲା ଯେ ଲୁଭ୍ ଇଉରୋପର ସବୁଠାରୁ ବଡ ପ୍ରାସାଦ। ଇଉରୋପ କାହିଁକି, ମୋର ମନେ ହେଉଛି ଏହା ନିଶ୍ଚୟ ପୃଥିବୀର ବିଶାଳତମ ପ୍ରାସାଦ ହୋଇଥିବ। ଚାହିଁ ଦେଖିଲେ ଆଖି ପାଏ ନାହିଁ। ଜାଣିଛୁ, ବର୍ତ୍ତମାନର ପ୍ରାସାଦଟିକୁ ନିର୍ମାଣ କରିବାକୁ ୬୬୬ ବର୍ଷ ଲାଗିଯାଇଥିଲା। କହିବା ବାହୁଲ୍ୟ, ଫରାସୀ ଇତିହାସରେ ଏହାର ଏକ ବହୁତ ବଡ ଭୂମିକା ରହିଛି।

ଲୁଭ୍ ଶବ୍ଦଟି ଯେ କେଉଁଠାରୁ ଆସିଲା, ସେ ବିଷୟରେ କେହି ସଠିକ୍ ଭାବରେ କିଛି ଜାଣନ୍ତି ନାହିଁ। କିନ୍ତୁ ଅଧିକାଂଶ ଐତିହାସିକଙ୍କ ମତରେ ଲୁଭ୍

ଶବ୍ଦଟିର ଅର୍ଥ fortress ବା ଦୁର୍ଗ। ଏକଥା ସତ ଯେ ସେନ୍ ନଦୀ କୂଳେ କୂଳେ ଗଢି ଉଠିଥିବା ପ୍ରାଚୀରର ଗୋଟିଏ ଅଂଶ ଥିଲା ଲୁଭ୍। ସେତେବେଳେ ଏହାର ଉଦ୍ଦେଶ୍ୟ ଥିଲା ଜଳଦସ୍ୟୁ ଓ ଅନ୍ୟାନ୍ୟ ଆକ୍ରମଣକାରୀଙ୍କ ଆକ୍ରମଣରୁ ପ୍ୟାରିସ୍‌କୁ ରକ୍ଷା କରିବା। ୧୨୦୦ ମସିହାରେ ଏଇ ସୁରକ୍ଷା ଉଦ୍ଦେଶ୍ୟରେ ଲୁଭ୍‌ର ଯେଉଁ ଅଂଶଟି ନିର୍ମିତ ହୋଇଥିଲା ବର୍ତ୍ତମାନ ତାହାର କୌଣସି ଅସ୍ତିତ୍ୱ ହିଁ ନାହିଁ।

ଏବେ ଯେଉଁ ଲୁଭ୍‌କୁ ଆମେ ଦେଖୁଛୁ, ତାହା ଆରମ୍ଭ କରିଥିଲେ ପ୍ରଥମ ଫ୍ରାଙ୍କ୍। ସେ ଯେତେବେଳେ ଲୁଭ୍‌ରେ ରହିବା ପାଇଁ ସ୍ଥିର କଲେ, ସେତେବେଳେ ଏହାକୁ ନୂତନ ରୂପ ଦେବା ଜରୁରୀ ହୋଇ ପଡିଲା। ପ୍ରଥମ ଫ୍ରାଙ୍କ କଳାର ଉପାସକ ଥିଲେ। ଏଣୁ ନିଜ ପ୍ରାସାଦକୁ ବିଭିନ୍ନ ଚିତ୍ରପଟ, ପ୍ରତିମୂର୍ତ୍ତି ଦ୍ୱାରା ସଜେଇ ରଖିଥିଲେ। ଏସବୁ ଆହରଣ କରିବା ପାଇଁ ସେ ସବୁ ପ୍ରକାରର ଉପାୟ ଅବଲମ୍ବନ କରିଥିଲେ। ଲୁଣ୍ଠନ, ଆକ୍ରମଣ - କିଛି ବାଦ୍ ଯାଇ ନଥିଲା। କିନ୍ତୁ କଳାକାରକୁ ସମ୍ମାନ ଦେଇ ଜାଣିଥିଲେ ପ୍ରଥମ ଫ୍ରାଙ୍କ। ବିଭିନ୍ନ ଦେଶର କଳାକାରମାନଙ୍କୁ ଫ୍ରାନସରେ ରହିବା ପାଇଁ ସେ ଅନୁରୋଧ ଜଣେଇ ଥିଲେ। ତାଙ୍କର ସାହାଯ୍ୟ ଓ ଆଗ୍ରହ ବହୁ କଳାକାରଙ୍କୁ ପ୍ୟାରିସ୍ ଟାଣି ଆଣିଥିଲା। ଏମାନଙ୍କ ମଧ୍ୟରେ ପ୍ରଧାନ ଥିଲେ ଲିଓନାର୍ଡୋ ଦା ଭିନ୍‌ସି। ଦା ଭିନ୍‌ସି ଇଟାଲୀରୁ ଆସିବାବେଳେ 'ମୋନାଲିସା'କୁ ମଧ୍ୟ ସାଙ୍ଗରେ ନେଇ ଆସିଥିଲେ।

ଟିକେଟ୍ କାଟି ଲୁଭ୍ ମିଉଜିଅମ୍ ଭିତରେ ପଶିବା ପରେ ଆମର ପ୍ରଥମ ଲକ୍ଷ୍ୟ ହେଲା ପୃଥିବୀ ପ୍ରସିଦ୍ଧ ସେଇ 'ମୋନାଲିସା'କୁ ଥରଟିଏ ଦେଖିବା ପାଇଁ। ଲକ୍ଷ ଲକ୍ଷ ପେଣ୍ଟିଙ୍ଗ୍, ପ୍ରତିମୂର୍ତ୍ତି ଥିବା ମିଉଜିଅମ୍‌ରେ 'ମୋନାଲିସା'କୁ ଖୋଜି ପାଇବା ପାଇଁ କିନ୍ତୁ ଆଦୌ ଅସୁବିଧା ହେଲାନାହିଁ। ଟିକେଟ୍ ସାଙ୍ଗରେ ଥିଲା ମିଉଜିଅମ୍‌ର ମ୍ୟାପ୍‌ଟିଏ। ସେଇଥିରୁ ଜାଣିଲୁ ଯେ ପ୍ରଥମ ମହଲାରେ ଅଛି ମୋନାଲିସା। କାନ୍ଥରେ ଲେଖା ହୋଇଥିବା ସାଇନ୍‌ବୋର୍ଡ ଦେଖି ଦେଖି ଆମେ 'ମୋନାଲିସା' ପାଖରେ ପହଞ୍ଚିଗଲୁ।

ପୃଥିବୀର ସବୁଠାରୁ ବେଶୀ ଜଣାଶୁଣା ତଥା ଜନପ୍ରିୟ ଏଇ ପେଣ୍ଟିଙ୍ଗ। ସେଥିପାଇଁ ଏହାକୁ ବହୁତ ଯତ୍ନରେ ରଖାଯାଇଛି। କାଚ ପରଦାର ଅନ୍ତରାଳରେ ମୋନାଲିସା। କାଚ ପରଦାଟିକୁ ମଧ୍ୟ ଯେପରି କେହି ଛୁଇଁ ନ ପାରନ୍ତି ସେଥିପାଇଁ

କିଛି ଦୂରରେ ରହିଛି ଦଉଡିଟିଏ । ଦଉଡି ଟପି ସାମ୍ନାକୁ କେହି ଯାଇ ପାରିବେ ନାହିଁ ବା ଫ୍ଲାସ୍ ବ୍ୟବହାର କରି କେହି କ୍ୟାମେରାରେ ଫଟୋ ଉଠେଇ ପାରିବେ ନାହିଁ। କୋଠରୀର ବିଭିନ୍ନ ସ୍ଥାନରୁ ମିଉଜିଅମ୍‌ର କେତେଜଣ କର୍ମକର୍ତ୍ତା ଦର୍ଶକମାନଙ୍କର ଉପରେ ଶ୍ୟେନଦୃଷ୍ଟି ବୁଲେଇ ଥାଣୁଥାଆନ୍ତି । 'ମୋନାଲିସା'ର ଚିତ୍ର ତୁ ଦେଖିଲୁ ନିଶ୍ଚୟ । ସେଇ ଅପରୂପ ହସଟି ନେଇ କେତେ ଆଲୋଚନା, କିନ୍ତୁ ଲୁଭ୍ ମିଉଜିଅମ୍‌ର ଅନ୍ୟାନ୍ୟ କଳାକୃତି ଦେଖିବା ପରେ ମୁଁ ବୁଝିପାରିଲି ନାହିଁ କାହିଁକି ମୋନାଲିସାକୁ ଏତେ ସମ୍ମାନ ଦିଆଯାଇଛି । ମୁଁ ଥାଙ୍କି ଜାଣେ ନାହିଁ, ଗୋଟିଏ ଚିତ୍ରର ଭଲ ମନ୍ଦ ବାଛିବା ହୁଏତ ମୋ ପକ୍ଷରେ ସମ୍ଭବ ନୁହଁ, କିନ୍ତୁ ଜଣେ ସାଧାରଣ ଦର୍ଶକର ଆଖିନେଇ ମୁଁ ଯାହା ଦେଖିଲି ମୋର କାହିଁକି ମନେହେଲା ଯେ ଲୁଭ୍ ମିଉଜିଅମ୍‌ରେ ଏଭଳି ଅନେକ ପେଣ୍ଟିଙ୍ଗ ରହିଛି ଯାହାକି ମୋନାଲିସାଠାରୁ ବହୁତ ସୁନ୍ଦର । ଏପରିକି ଦା ଭିନ୍‌ସିଙ୍କ ଅନ୍ୟ କେତୋଟି ପେଣ୍ଟିଙ୍ଗ୍ ମତେ ମୋନାଲିସାଠାରୁ ଅଧିକ ଭଲ ଲାଗିଲା ।

ମୋନାଲିସା ଦେଖିବା ପାଇଁ ଯେତିକି ଭିଡ ହେଉଥାଏ, ଠିକ୍ ସେତିକି ଭିଡ ଭେନସ୍ ଦି ମିଲୋ (Venus de Milo)ମୂର୍ତ୍ତି ନିକଟରେ । ଗ୍ରୀସିୟ ସ୍ଥାପତ୍ୟ କଳାର ଏକ ସୁନ୍ଦର ନିଦର୍ଶନ ଏହି ଭେନସ୍ ଦି ମିଲୋ । ମୁଁ ଆଖି ଫେରାଇ ପାରୁ ନଥାଏ । କେବଳ ଭେନସ୍ ଦି ମିଲୋ କାହିଁକି, ଏହି ଅଂଶରେ ଥିବା ବିଭିନ୍ନ ମୂର୍ତ୍ତିର ସୌନ୍ଦର୍ଯ୍ୟ ଅତୁଳନୀୟ । ଗୋଟିଏ ସ୍ଥାନରେ ରହିଛି ଦୁଇ ହଜାର ବର୍ଷ ପୂର୍ବେ ନିର୍ମିତ ଏଥେନାଙ୍କ ମୂର୍ତ୍ତି । ମୂର୍ତ୍ତିଟି ଏତେ ସୁନ୍ଦର ଓ ଏତେ ଜୀବନ୍ତ ଯେ ଆମେ ବହୁତ ସମୟ ସେଇଠି କଟେଇ ଦେଲୁ । ସେଇଭଳି "The Winged Victory" ମୂର୍ତ୍ତିର ତୁଳନା ନାହିଁ । ମୂର୍ତ୍ତିଟି ସଂପୂର୍ଣ୍ଣ ବିଧ୍ୱସ୍ତ ଭାବରେ ମିଳିଥିଲା । ବହୁ ଧୈର୍ଯ୍ୟ ଓ ଚେଷ୍ଟାରେ ଏହାକୁ ଯୋଡା ଯାଇ ପାରିଛି ।

"ସୁନ୍ଦରରେ ତୃପ୍ତିର ଅବସାଦ ନାହିଁ" - କଥାଟି ଯେ କେତେ ସତ ଲୁଭ୍ ଦେଖିଲେ ଜଣେ ବୁଝିପାରିବ । ଇଉରୋପର ବିଭିନ୍ନ ଦେଶର ପ୍ରସିଦ୍ଧ ଶିଳ୍ପୀଙ୍କର ଚିତ୍ରକଳା ଦେଖୁ ଦେଖୁ ଆମେ ମିଉଜିଅମ୍‌ର ଗୋଟିଏ ପରେ ଗୋଟିଏ କୋଠରୀ ଅତିକ୍ରମ କରି ଚାଲିଥାଉ । ଚାଲି ଚାଲି ଆମ ପାଦ ଥକିଗଲା । କିନ୍ତୁ ମନ ରହିଥାଏ ସତେଜ । ହେଲେ ଦିନ ଦୁଇଟା, ସାଢେ ଦୁଇଟା ବେଳକୁ ମିଉଜିଅମ୍ ଭିତରେ ଥିବା ରେଷ୍ଟୋରାଁରେ କିଛି ଖାଇ ନେବା ପରେ ପିଲାମାନେ ଆଉ

ଉଠିପାରିଲେ ନାହିଁ। ମୋ ମନ ଏଣେ ଛଟପଟ। ମାଇକେଲ୍ ଆଞ୍ଜେଲୋଙ୍କର ବିଭିନ୍ନ କଳାକୃତି ଥିବା ଅଂଶଟି ଯେ ମୁଁ ଏପର୍ଯ୍ୟନ୍ତ ଦେଖିନାହିଁ। ସେସବୁ ନ ଦେଖି ଫେରିଯିବି କେମିତି? ଶେଷରେ ତୋ ଭାଇନା ଓ ମୁଁ ପାଳିକରି ଯାଇ ଆଞ୍ଜେଲୋଙ୍କର ନିର୍ମିତ ବିଭିନ୍ନ ସ୍ଥାପତ୍ୟ କଳା ରହିଥିବା ଅଂଶଟି ଦେଖି ଆସିଲୁ। ଏଇଟି ମିଉଜିଅମ୍‌ର ପ୍ରାୟ ଶେଷ ଆଡକୁ ରହିଛି। ବଡ ଆଶ୍ଚର୍ଯ୍ୟର କଥା ସେପାଖ ଅଂଶଟିରେ ଭିଡ ଆଦୌ ନ ଥିଲା। କେବଳ କେତେକ ନୂତନ କଳାକାର ଏହି ସବୁ ମୂର୍ତ୍ତି ସାମ୍ନାରେ ନିବିଷ୍ଟ ଚିତ୍ତରେ ବସି କାଗଜରେ ନକଲ କରୁଥାଆନ୍ତି।

ଲୁଭ୍ର ମିଉଜିଅମ୍ ଦେଖିବାର ସୁଯୋଗ ମୁଁ ପାଇଲି, ଏଥିପାଇଁ ଅଦୃଶ୍ୟକୁ ଧନ୍ୟବାଦ ଦେବା କଥା। କିନ୍ତୁ ମିତ୍ର, ଏମିତି ଦେଖାକୁ କ'ଣ ସତରେ 'ଦେଖା' କୁହାଯାଇ ପାରିବ? ମନକୁ କେବଳ ଆଶ୍ୱାସନା ଦେବା କଥା। ଯେତେବେଳେ ମୁଁ ପ୍ରତ୍ୟେକ କୋଠରୀର ପ୍ରତିଟି ପେଣ୍ଟିଙ୍ଗ୍‌କୁ ଭଲଭାବରେ ଦେଖି ବୁଝିପାରିବି ସେଇଦିନ ହିଁ ମୁଁ କହି ପାରିବି ଯେ ମୁଁ ଲୁଭ୍ର ଦେଖିଛି।

ନିଜ ମନକୁ ଏଇଭଳି ବହୁ ପ୍ରକାର ବୁଝେଇ ଆମେ ଚାରିଟା ପାଞ୍ଚଟା ବେଳକୁ ଲୁଭ୍ର ମିଉଜିଅମ୍‌ରୁ ବାହାରିଲୁ। ସେତେବେଳେ ଶୋଷରେ ତଣ୍ଟି ଶୁଖିଯାଉଛି ଆମର। କେଉଁଠି ଟିକିଏ କୋକ୍ ବା କଫି ପିଇବାର ଇଚ୍ଛା। ମୁଁ ଆଗଭର ହୋଇ କହି ପକେଇଲି, "ଚାଲ ଗୋଟିଏ କ୍ୟାଫେକୁ ଯିବା।" ପ୍ୟାରିସ୍ ଆସି ପୁଣି କ୍ୟାଫେ ନ ଦେଖି କିଏ ଫେରିଯାଇ ପାରେ? ଲୁଭ୍ର ସାମ୍ନା ରାସ୍ତାର ଉଭୟ ପାର୍ଶ୍ୱରେ ଅସଂଖ୍ୟ କ୍ୟାଫେ। ଏଇ ସବୁ କ୍ୟାଫେର ବିଶେଷତ୍ୱ ହେଲା ଏହି ଯେ କେବଳ ଚାରିକାନ୍ଥ ମଧ୍ୟରେ ସୀମିତ ନରହି ଫୁଟ୍‌ପାଥ ଉପରକୁ ଏହାର ପରିସୀମା ଲମ୍ବି ଆସିଛି। ଫୁଟ୍‌ପାଥ୍ ଉପରେ ସଜା ହୋଇ ରହିଛି ଚଉକି ଟେବୁଲ୍। ଅନେକ ଲୋକ ସେଇଠି ବସି କଫି ପିଉଛନ୍ତି।

ଆମେ ଗୋଟିଏ ଛୋଟ କ୍ୟାଫେ ଭିତରେ ପଶିଲୁ। କାନ୍ଥରେ ଲଗା ହୋଇଛି ମେନୁ। କିନ୍ତୁ ସେଇଟି ଫରାସୀ ଭାଷାରେ ଲେଖା। ତେବେ କୋକ୍ ଓ କଫି ଶବ୍ଦ ଦୁଇଟିକୁ ପଢିବାକୁ ଅସୁବିଧା ହେଲା ନାହିଁ। କିନ୍ତୁ ତା' ପାଖରେ ଦୁଇ ପ୍ରକାରର ଦାମ୍ – ୧୦ ଫ୍ରାଙ୍କ ଓ ୧୯ ଫ୍ରାଙ୍କ୍ ଲେଖା ହୋଇଥାଏ। ଏହାର ପୁଣି ଅର୍ଥ କ'ଣ? ରୁମି କହିଲା ଏଠି ବୋଧହୁଏ ବଡ ଗ୍ଲାସ, ଛୋଟ ଗ୍ଲାସ ପାଇଁ ଦୁଇ ରକମର ଦାମ୍। ତା' ସମ୍ଭବ। ଆମକୁ ଦେଖି ୱେଟରଟିଏ ଚାଲିଆସିଲା।

ଆମେ ତାକୁ ମେନୁ ଦେଖାଇ ଛୋଟ ଗ୍ଲାସରେ ୨ଟି କୋକ୍ ଓ ସାନ କପ୍‌ରେ ୨ଟି କଫି ଆଣିବାକୁ କହିଲୁ। ଭଙ୍ଗା ଭଙ୍ଗା ଇଂରାଜୀରେ ସେ ପଚାରିଲା, "Standing or sitting?" ଆମେ ସେ ପର୍ଯ୍ୟନ୍ତ ଠିଆ ହୋଇଥାଉ। ତା' କଥା ଠିକ୍ ବୁଝି ହେଲା ନାହିଁ। ବୋଧହୁଏ ସେ କହିବାକୁ ଚାହୁଁଛି ଯେ ଆମେ ଏପର୍ଯ୍ୟନ୍ତ ବସିନାହୁଁ କାହିଁକି। ତେଣୁ "Sitting" ବୋଲି କହି ଫୁଟ୍‌ପାଥର ଚାରୋଟି ଚୌକିରେ ବସି ପଡିଲୁ। ଆମର ଠିକ୍ ପାଖରେ ଦୁଇଜଣ ସଂଭ୍ରାନ୍ତ ବୟସ୍କା ମହିଳା ବସି ଗପୁଥାଆନ୍ତି। ତାଙ୍କ ସାମ୍ନାର କଫି କପ୍‌ରେ ତଳକୁ ରହିଯାଇଥିବା କଫି ଦେଖି ଜଣା ପଡୁଥାଏ ଯେ ବହୁତ ବେଳୁ ବସିରହିଛନ୍ତି ସେମାନେ। ସେମାନେ ଉଠୁ ନ ଥାଆନ୍ତି ବା କେହି ତାଙ୍କୁ ଉଠିବାକୁ କହୁ ନ ଥାଆନ୍ତି। ସେ ଯାହାହେଉ, ଆମର କଫି ଓ କୋକ୍ ଆସିଗଲା। ତା'ର ଅଳ୍ପ ସମୟ ପରେ ୱେଟର ବିଲ୍‌ଟି ଆମ ପାଖରେ ରଖି ଦେଇଗଲା। ୭୬ ଫ୍ରାଙ୍କ୍!! ନିଶ୍ଚୟ କିଛି ଭୁଲ୍ ହୋଇଛି। ଆମକୁ ତ ଛୋଟ କପ୍‌ରେ କଫି ଦେଲା, କୋକ୍‌ର ପରିମାଣ ମଧ୍ୟ ସାଧାରଣ, ତାହେଲେ ବଡ କପ୍‌ର ପଇସା କାହିଁକି? ତୋ ଭାଇନା କହିଲେ, "ଛାଡିଦିଅ। କିଛି ଗୋଟାଏ କାରଣ ଥିବ। ଆମେ ହୁଏତ ଠିକ୍ ବୁଝିନେ।" କ୍ୟାଫେ ଭିତରେ ପଶିବା ପାଇଁ ମୁଁ ହିଁ ଆଗଭର ହୋଇଥିଲି। ତେଣୁ ୱେଟର ସାଙ୍ଗରେ ଯୁକ୍ତି କରିବା ପାଇଁ ବାହାରି ପଡିଲି। ଦୁଇଗୁଣ ଦାମ୍! ସହଜେ ଛାଡିଦେବି? ୱେଟରକୁ ଡାକି ମେନୁ ଓ ବିଲ୍ ଦେଖାଇ ପଚାରିଲି ଜଣକ ପିଛା ୧୦ ଫ୍ରାଙ୍କ୍ ହେବା କଥା, ୧୯ ଫ୍ରାଙ୍କ୍ କାହିଁକି? ନିସ୍ପୃହ ଭାବରେ ମତେ ଦେଖିଲା ୱେଟରଟି। ତା'ପରେ କହିଲା, "Standing drinking 10 francs, Sitting drinking 19 francs." ଆମ ମୁହଁର ଅବସ୍ଥା ଦେଖିବା ଭଳି। ଠିଆ ହୋଇ ପିଇବା ଓ ବସିକରି ପିଇବାରେ ଯେ ଏମିତି ଗୋଟିଏ ପଇସାର ପାର୍ଥକ୍ୟ ଥାଇପାରେ ପ୍ରଥମ ଥର ପାଇଁ ଶୁଣିଲୁ ଆମେ। ଫ୍ଲାଟକୁ ଫେରି ସଂଜୟଙ୍କୁ ଏ ବିଷୟରେ ପଚାରିଲୁ। ସଂଜୟ ହସି ହସି ଗଡିଗଲେ। ତା'ପରେ କହିଲେ, "ମୋର ଭୁଲ୍। ମୁଁ ପ୍ରଥମରୁ ତୁମମାନଙ୍କୁ କହି ଦେବା ଉଚିତ ଥିଲା ଯେ ବସି କରି କଫି ପିଇବା ଓ ଠିଆ ହୋଇ କଫି ପିଇବାରେ ଏ ଦେଶରେ ବହୁତ ତଫାତ୍।" ମିତୁ, ତୁ ନିଶ୍ଚୟ ଭାବୁଥିବୁ ଏତକି ପାର୍ଥକ୍ୟ କାହିଁକି? କାରଣଟି ବଡ ସରଳ। ପ୍ୟାରିସ୍‌ର ଲୋକମାନେ କ୍ୟାଫେକୁ କେବଳ କଫି ପିଇବାକୁ ଆସନ୍ତି

ନାହିଁ; ସେମାନେ ଆସନ୍ତି ଅବସର ବିନୋଦନ ପାଇଁ। ସିଧା କଥାରେ କହିଲେ 'ଆଡ୍ଡା' ଦେବା ପାଇଁ ଆସନ୍ତି। ଗୋଟିଏ କପ୍ କଫି ଅର୍ଡର କରି ଦୁଇତିନି ଘଣ୍ଟା ସାଙ୍ଗମାନଙ୍କ ସାଙ୍ଗରେ କ୍ୟାଫେରେ କଟେଇବା ଅତି ସାଧାରଣ କଥା। ତେଣୁ ତା'ର ତ ଗୋଟିଏ ମୂଲ୍ୟ ଅଛି।

ତା'ପରେ ଦିନ ଭର୍ସାଇ ପ୍ରାସାଦ (Palace of Versailles) ଦେଖିଯିବା କଥା। ପ୍ୟାରିସ୍‌ଠାରୁ ୨୦ କି.ମି. ଦୂର ଭର୍ସାଇ ଫ୍ରାନସର ଏକ ପ୍ରଧାନ ପର୍ଯ୍ୟଟନ ସ୍ଥଳୀ। ୧୬୮୨ରୁ ୧୭୮୯ ପର୍ଯ୍ୟନ୍ତ ଏହା ଫରାସୀ ରାଜନୀତିର କେନ୍ଦ୍ରସ୍ଥଳୀ ଥିଲା। ତତ୍‌କାଳୀନ ସମ୍ରାଟମାନଙ୍କର ଯଥେଚ୍ଛାଚାରିତା ଓ ଉଚ୍ଛୃଙ୍ଖଳ ଜୀବନ ଯାପନର ମୂକସାକ୍ଷୀ ଏଇ ଭର୍ସାଇ ପ୍ରାସାଦ। ତୁ ତ ଜାଣିଛୁ ନିଶ୍ଚୟ, ୧୭୮୯ର ଫରାସୀ ବିଦ୍ରୋହର ଏହା ଗୋଟିଏ ପ୍ରଧାନ କାରଣ।

ପ୍ରଥମେ ଭର୍ସାଇଠାରେ ତ୍ରୟୋଦଶ ଲୁଇ ଶିକାର ନିମନ୍ତେ କାଠର ଘରଟିଏ ନିର୍ମାଣ କରେଇଥିଲେ। ପରେ ଏହାକୁ ପଥରର ଛୋଟ ପ୍ରାସାଦଟିଏରେ ପରିବର୍ତ୍ତିତ କରେଇ ନେଇଥିଲେ ସେ। ତାଙ୍କ ପରେ ଚତୁର୍ଦ୍ଦଶ ଲୁଇ ସମ୍ରାଟ ହେଲେ ଓ ସାମ୍ରାଜ୍ୟ ବିସ୍ତାର କରିବାକୁ ଲାଗିଲେ। ସେତେବେଳେ ସେ ଏଇଭଳି କିଛି କରିବାକୁ ଚାହିଁଥିଲେ ଯାହା କି ତାଙ୍କର ବ୍ୟକ୍ତିଗତ ଗରିମାକୁ ବିଶ୍ୱବାସୀଙ୍କ ସମ୍ମୁଖରେ ତୋଳି ଧରିବ। ସେ ମନେ କରିଥିଲେ ଯେ ସେ ଏଭଳି ଏକ ପ୍ରାସାଦ ନିର୍ମାଣ କରିବେ ଯାହାର ରାଜସଭାରେ ୩୦୦୦ରୁ ୪୦୦୦ ବ୍ୟକ୍ତି ବସିବାର ବ୍ୟବସ୍ଥା ରହିବ। ଏବଂ ଏହି ପ୍ରାସାଦରେ ରାଜପରିବାର ବସବାସ କରିଲେ ମଧ୍ୟ ସାଧାରଣ ଜନତାର ପ୍ରବେଶାଧିକାର ରହିବ। ଏଇଭଳି ଚିନ୍ତା କରି ତ୍ରୟୋଦଶ ଲୁଇଙ୍କ ଭର୍ସାଇ ପ୍ରାସାଦର ରୂପରେଖା ବଦଳେଇଦେଲେ ସେ। ନୂତନ ପ୍ରାସାଦରେ ଥିଲା ବିଶାଳ ରାଜସଭା ଏବଂ ଜନତାଙ୍କୁ ରାଜ ପ୍ରାସାଦରେ ପ୍ରବେଶାଧିକାର ମଧ୍ୟ ଦିଆଯାଇଥିଲା। ଚତୁର୍ଦ୍ଦଶ ଲୁଇ ଯେଉଁମାନଙ୍କୁ 'ସାଧାରଣ ଜନତା' ପର୍ଯ୍ୟାୟଭୁକ୍ତ କରିଥିଲେ ସେମାନେ ଯେ ଦଳେ ଚାଟୁକାର ଓ ସଭା ପରିଷଦ - ସେ ଏକ ଭିନ୍ନ କାହାଣୀ।

ମେଟ୍ରୋରେ ଭର୍ସାଇ ପର୍ଯ୍ୟନ୍ତ ଯିବା ସମ୍ଭବ ନୁହଁ। ତେଣୁ ଅଧାବାଟ ମେଟ୍ରୋରେ ଯାଇ ତା'ପରେ ଅନ୍ୟ ଏକ ଟ୍ରେନ୍ ବଦଳାଇବାକୁ ହେଲା। ଷ୍ଟେସନ୍‌ଠାରୁ ଅଳ୍ପ ଦୂରରେ ପ୍ରାସାଦ। ଚାରିଆଡେ ଦଳ ଦଳ ପର୍ଯ୍ୟଟକ। ଲୋକ ଭିଡ ସହିତ

ଆମେ ମିଶିଗଲୁ। ତା'ପରେ ଭର୍ସାଇ ପ୍ରାସାଦ। ମିତ୍ର, ହଠାତ୍ ମୋର ବିଦ୍ୟୁତ୍ ସାମଲଙ୍କ କଥା ମନେ ପଡିଗଲା। କଲେଜରେ ଯେତେବେଳେ ବିଦ୍ୟୁତ୍‌ସାର୍ ଫରାସୀ ଇତିହାସ ପଢାଉଥିଲେ ସେତେବେଳେ ତାଙ୍କ କ୍ଲାସଗୁଡିକ ଏତେ ସୁନ୍ଦର ହେଉଥିଲା ଯେ ଅନ୍ୟାନ୍ୟ ବିଷୟର ଛାତ୍ରଛାତ୍ରୀମାନେ ଆସି ଆମ କ୍ଲାସ୍‌ରେ ଭିଡ ଜମଉଥିଲେ। ତାଙ୍କର ପଢେଇବା ଶୈଳୀଟି ସ୍ୱତନ୍ତ୍ର। ଇତିହାସର ବିଭିନ୍ନ ଘଟଣାଗୁଡିକୁ ସେ ବଖାଣି ଯାଉଥିଲେ ଗୋଟିଏ ସୁନ୍ଦର କାହାଣୀ ଭଳି। ସେଇ ଥରକରେ ସେଗୁଡିକ ସେଇଥିପାଇଁ ମନ ଭିତରେ ସାଇତି ହୋଇ ରହିଯାଉଥିଲା। ଆଶ୍ଚର୍ଯ୍ୟର କଥା, ଏତେବର୍ଷ ପରେ ମଧ ମୁଁ ସେସବୁ ଭୁଲିନାହିଁ। ବିଦ୍ୟୁତ୍ ସାର୍ ପଢେଇଥିବା ଚତୁର୍ଦ୍ଦଶ ଲୁଇ, ଷୋଡଶ ଲୁଇ ଓ ମେରି ଆଣ୍ଟୋନିଟିଙ୍କ ଭର୍ସାଇ ପ୍ରାସାଦ ଆଜି ମୋ ସାମ୍ନାରେ।

ସ୍ୱପ୍ନରେ ଚାଲିବା ଭଳି ମୁଁ ଆଗେଇଗଲି ଟିକେଟ୍ ଘର ଆଡକୁ। ଭର୍ସାଇ ପ୍ରାସାଦର ଯେଉଁ ଅଂଶଟି ଏକାନ୍ତ ଭାବରେ ରାଜପରିବାରର ଥିଲା ଏବଂ ଯେଉଁଠାରେ ଏବେ ମଧ ଅମୂଲ୍ୟ ଆସବାବପତ୍ର ସାଇତା ହୋଇ ରହିଛି, ସେହି ଅଂଶଟି ଦେଖିବାକୁ ହେଲେ ଟିକେଟ୍ କାଟିବାକୁ ପଡେ। ତା'ପରେ ସେଠାରେ ଥିବା ବିଭିନ୍ନ ଗାଇଡ୍ ଦଳ ଦଳ ପର୍ଯ୍ୟଟକଙ୍କୁ ଦେଖାଇ ଆଣନ୍ତି ସେସବୁ।

ପ୍ରାସାଦର ପ୍ରଧାନ ଅଂଶ ହେଉଛି ଗ୍ରାଣ୍ଡ ଆପାର୍ଟମେଣ୍ଟସ୍। ଏଠାରେ ସମ୍ରାଟ ଓ ସାମ୍ରାଜ୍ଞୀଙ୍କର ନିଜସ୍ୱ କୋଠରୀମାନ ରହିଛି। ତତେ ତ ଆଗରୁ ଲେଖିଛି ଯେ ଚତୁର୍ଦ୍ଦଶ ଲୁଇଙ୍କ ଦ୍ୱାରା ପ୍ରଚଳିତ ପ୍ରଥା ଅନୁସାରେ ସମ୍ରାଟ, ସାମ୍ରାଜ୍ଞୀଙ୍କ କୋଠରୀଗୁଡିକ ଏକାନ୍ତ ଭାବରେ ସେମାନଙ୍କର ନଥିଲା। ଚତୁର୍ଦ୍ଦଶ ଲୁଇ ଯେତେବେଳେ ନିଦରୁ ଉଠୁଥିଲେ ସେତେବେଳେ ଦାମୀ ପରଦାରେ ଘେରା ପଲଙ୍କଠାରୁ ଅଳ୍ପ ଦୂରରେ ପଡିଥିବା ଚୌକିମାନଙ୍କରେ ଅପେକ୍ଷା କରି ରହୁଥିଲେ ତାଙ୍କର ବିଭିନ୍ନ ସଭାସଦ୍। ଏପରିକି ମେରି ଆଣ୍ଟୋନିଟି ଯେତେବେଳେ ତାଙ୍କର ପ୍ରଥମ ସନ୍ତାନଙ୍କୁ ଜନ୍ମ ଦେଲେ ସେତେବେଳେ ତାଙ୍କ କୋଠରୀରେ ଅପେକ୍ଷା କରି ରହିଥିଲେ ଅସଂଖ୍ୟ ଲୋକ। ଜନତା ଓ ସାମ୍ରାଜ୍ଞୀଙ୍କ ମଧ୍ୟରେ ମାତ୍ର ଗୋଟିଏ ପର୍ଦ୍ଦାର ବ୍ୟବଧାନ ଥିଲା। ଏଇସବୁ କୋଠରୀର ଆସବାବପତ୍ରର ମୂଲ୍ୟ କଳନା କରିହୁଏ ନାହିଁ। କାନ୍ଥରେ ଲଗା ହୋଇଥିବା ଚିତ୍ରପଟଠାରୁ ଆରମ୍ଭ କରି ବିଛଣାରେ ପଡିଥିବା ସୁନା ଜରିଦିଆ ଚଦର ପର୍ଯ୍ୟନ୍ତ - ସବୁଠାରେ ବିଳାସିତାର ଚମକ। ଗାଇଡ୍

କହିଲେ ଯେ ଫରାସୀ ବିଦ୍ରୋହ ସମୟରେ ପ୍ରାସାଦଟିର ଆଭ୍ୟନ୍ତର ସଂପୂର୍ଣ୍ଣ ଭାବରେ ଧ୍ୱସ୍ତବିଧ୍ୱସ୍ତ ହୋଇ ଯାଇଥିଲା । ବହୁ ପରିଶ୍ରମ କରି ବର୍ତ୍ତମାନର ସରକାର ଫରାସୀ ବିଦ୍ରୋହ ପୂର୍ବର ଐଶ୍ୱର୍ଯ୍ୟ ଫେରାଇ ଆଣିଛନ୍ତି । ଫରକ୍ ଏତିକି ଯେ ବର୍ତ୍ତମାନ ଏଠି ରହିବା ପାଇଁ କେହି ସମ୍ରାଟ୍ ନାହାନ୍ତି; ଏହା କେବଳ ଏକ ପର୍ଯ୍ୟଟନସ୍ଥଳୀ ।

ଗ୍ରାଣ୍ଡ ଆପାର୍ଟମେଣ୍ଟର ପ୍ରଧାନ ଆକର୍ଷଣ Galerie des Glaces ବା ଯାହାକୁ କହନ୍ତି ହଲ୍ ଅଫ୍ ମିରର୍ସ । ୭୫ ମିଟର ଲମ୍ବା ଏହି ହଲରେ ୩୦୦୦ରୁ ୪୦୦୦ ସଭାସଦ ବସିବାର ବ୍ୟବସ୍ଥା ଥିଲା । ଏହାର ଗୋଟିଏ ପଟ କାନ୍ଥରେ ରହିଛି ୧୭ଟି ବିଶାଳ ଝରକା । ଝରକା ବାହାରେ ଫୁଲ ବଗିଚା । ଫୁଲ ବଗିଚାର ସୌନ୍ଦର୍ଯ୍ୟ ପ୍ରତିଫଳିତ ହୁଏ କୋଠରୀର ଅନ୍ୟ କାନ୍ଥରେ ଥିବା ୧୭ଟି ମାର୍ବଲ୍ ଘେରା ଦର୍ପଣରେ । ହଲ୍‌ର ଛାତରେ ଚତୁର୍ଦ୍ଦଶ ଲୁଇଙ୍କ ରାଜତ୍ୱର ପ୍ରଥମ ୧୭ ବର୍ଷର ଘଟଣା ଉପରେ ପର୍ଯ୍ୟବସିତ ହୋଇଥିବା ଚିତ୍ରପଟମାନ ରହିଛି । ହଲ୍ ଅଫ୍ ମିରର୍ସ ବାସ୍ତବିକ ତତ୍କାଳୀନ ଫରାସୀ ଶିଳ୍ପ କଳାର ଏକ ସୁନ୍ଦର ନମୁନା । କେବଳ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ନୁହଁ, ଐତିହାସିକ ଦୃଷ୍ଟିକୋଣରୁ ମଧ୍ୟ ଏହାର ଯଥେଷ୍ଟ ମହତ୍ତ୍ୱ ରହିଛି । ୧୮୭୧ ମସିହାରେ ଏହି ହଲ୍ ଅଫ୍ ମିରର୍ସରେ ବିସମାର୍କ ଜର୍ମାନ ସାମ୍ରାଜ୍ୟ ସ୍ଥାପନ ବିଷୟରେ ପ୍ରଥମ ଘୋଷଣା କରିଥିଲେ । ସେହିପରି ୧୯୧୯ରେ ପ୍ରଥମ ବିଶ୍ୱଯୁଦ୍ଧ ପରେ ଭର୍ସାଇ ସନ୍ଧି (Treaty of Versailles) ଏଇଠାରେ ସ୍ୱାକ୍ଷରିତ ହୋଇଥିଲା ।

ପ୍ରାସାଦର ଅନ୍ୟ ଗୋଟିଏ ବିଶେଷ ଅଂଶ ହେଲା ଅପେରା (Opera) । ୧୭୭୦ ମସିହାରେ ଏଇ ଅପେରା ଗୃହର କାର୍ଯ୍ୟ ଶେଷ ହୋଇଗଲା । ଷୋଡଶ ଲୁଇ ଓ ମେରି ଆଣ୍ଟୋନିଟିଙ୍କର ବିବାହ ଉତ୍ସବ ପାଳନ ଥିଲା ପ୍ରଧାନ ଉଦ୍ଦେଶ୍ୟ । ଫରାସୀ ବିଦ୍ରୋହ ସମୟରେ ବିଦ୍ରୋହକାରୀମାନେ ଅପେରା ଗୃହଟିକୁ ସଂପୂର୍ଣ୍ଣଭାବରେ ନଷ୍ଟ କରି ଦେଇଥିଲେ । ୧୯୫୭ ମସିହାରେ ଯେତେବେଳେ ଇଂଲାଣ୍ଡର ରାଣୀ ଦ୍ୱିତୀୟ ଏଲିଜାବେଥ୍ ଭର୍ସାଇ ପ୍ରାସାଦ ଦେଖି ଆସିବା କଥା ଉଠିଲା, ସେତେବେଳେ ଫରାସୀ ସରକାର ଏହାର ପୁନର୍ବିନ୍ୟାସ କରିଥିଲେ ।

ଭର୍ସାଇ ପ୍ରାସାଦର ୧୦୦ ହେକ୍ଟର ଆୟତନର ବଗିଚା ଏହାର ଏକ ବିରାଟ ଆକର୍ଷଣ । ବିଶ୍ୱାସ ହୁଏ ନାହିଁ ଯେ ଏକଦା ଏହି ସ୍ଥାନଟି ବଗିଚା

କରିବା ପାଇଁ ଆଦୌ ଉପଯୁକ୍ତ ନ ଥିଲା । ଆର୍କିଟେକ୍ଟ ଲେନୋତ୍ରେ ନିଜେ ତତ୍ତ୍ୱାବଧାନ କରି ପାହାଡ ଭଙ୍ଗେଇ ମାଟି ସମାନ କରେଇ ବିଭିନ୍ନ ସ୍ଥାନରୁ ଗଛ ଆଣି ଏଇଠି ଲଗେଇଥିଲେ । ଫୁଲ ବଗିଚା, ମାର୍ବଲର ପ୍ରତିମୂର୍ତ୍ତି, ଫୁଆରା, ମାର୍ବଲ୍ ପୋଖରୀ ଏସବୁକୁ ନେଇ ସ୍ୱର୍ଗର ନନ୍ଦନକାନନ ଭଳି ବଗିଚାଟିଏ ଶେଷରେ ସୃଷ୍ଟି ହୋଇପାରିଥିଲା । ଚତୁର୍ଦ୍ଦଶ ଲୁଇଙ୍କ ସମୟର ଏଇ ବଗିଚାରେ ସେତେବେଳେ ପ୍ରାୟ ଦେଢଲକ୍ଷ ଭିନ୍ନ ଭିନ୍ନ କିସମର ଗଛ ଲଗାଯାଇଥିଲା । ଏବେ ଅବଶ୍ୟ ସେଠାରେ ଥିବା ଗଛର ସଂଖ୍ୟା ଅନେକ କମ୍ ।

ଭର୍ସାଇ ପ୍ରାସାଦ ଓ ବଗିଚା ଭିତରେ ଆମର ଦିନଟି ଖୁବ୍ ଶୀଘ୍ର କଟିଗଲା ଏବଂ ସଂନ୍ଧ୍ୟା ହୋଇ ଆସିବା ପରେ ଅବୁଝା ମନକୁ ଟାଣି ନେଇ ଆମେ ଷ୍ଟେସନ୍ ଆଡେ ଚାଲିଲୁ ।

ସେଇଦିନ ଭର୍ସାଇରୁ ଫେରି ପ୍ୟାରିସ୍‌ରେ ପହଞ୍ଚିବା ପରେ ବେଶ୍ ମଜାର ଘଟଣାଟିଏ ଘଟିଲା । ଆମ କ୍ୟାମେରାର ରିଲ୍ ସରିଯାଇଥାଏ । ନୂଆ ରିଲ୍ କିଣିବାକୁ ଆମେ ଫଟୋ ଦୋକାନଟିଏ ଭିତରେ ପଶିଲୁ । ପୁରୁଣା ରିଲ୍‌ଟିକୁ ପ୍ରିଣ୍ଟ କରିବା ପାଇଁ ମଧ୍ୟ ଦେବା କଥା । ଫଟୋ ଦୋକାନର ମାଲିକ ଆମକୁ ରିଲ୍ ବିକ୍ରି କଲେ, କିନ୍ତୁ ଫଟୋ ପ୍ରିଣ୍ଟ କରିବା ପାଇଁ ମନା କରିଦେଲେ । ସେ କହିଲେ ଯେ ସେ ପନ୍ଦର ଦିନ ପାଇଁ ଦୋକାନ ବନ୍ଦ କରି ଭେନିସ୍ ବୁଲିବାକୁ ଯାଉଛନ୍ତି । ତେଣୁ ଆମ ରିଲ୍ ପ୍ରିଣ୍ଟ୍ କରିବେ କେମିତି ? ମୁଁ କୌତୂହଳରେ ପଚାରିଦେଲି, "ଅଗଷ୍ଟ ମାସ ଟୁରିଷ୍ଟଙ୍କ ସମୟ । ଆପଣ ଏଭଳି ସମୟରେ ଦୋକାନ ବନ୍ଦ କରି ଦେଉଛନ୍ତି ?" ଫଟୋ ଦୋକାନୀ ଜଣକ ଉତ୍ତର ଦେଲେ, "ପଇସା ରୋଜଗାର କ'ଣ ଜୀବନର ସବୁ କିଛି ? ମୁଁ ପ୍ରତ୍ୟେକ ବର୍ଷ ଏଇ ସମୟରେ ବୁଲିବାକୁ ଯାଏ । ଯେତେଦିନ ପାରିବି କରିଯିବି ।" ପରେ ସଂଜୟ ମତେ କହିଲେ ଯେ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଅଗଷ୍ଟ ମାସରେ କୁଆଡେ ବହୁତ ଦୋକାନ ବନ୍ଦ ରହେ । କାରଣ ସେସବୁର ପରିଚାଳକମାନେ ବୁଲିବାକୁ ଚାଲିଯାଆନ୍ତି । ମୁଁ ଆଶ୍ଚର୍ଯ୍ୟ ନ ହୋଇ ରହିପାରିଲି ନାହିଁ । କାହିଁ ବସ୍ତୁବାଦୀ ଆମେରିକା, ଆଉ କାହିଁ ଏ ପ୍ୟାରିସ୍ !

ପ୍ୟାରିସ୍‌ରେ ଆମର ଚତୁର୍ଥଦିନ କଥା ଏଥର କହେ । ସେଦିନ ପାଗ ଭାରି ବଢିଆ । ବେଶୀ ଖରା ନାହିଁ । ନୀଳ ଆକାଶକୁ କେହି ଯେମିତି ଧୋଇ ପୋଛି

ପରିଷ୍କାର କରିଦେଇଛି। ମନ ଖୁସିରେ ମୁଁ ପ୍ରସ୍ତୁତ ହେବାରେ ଲାଗିଲି। ପ୍ୟାରିସ୍ ଆସିବା ଆଗରୁ ମୁଁ ଯେଉଁ ଲିଷ୍ଟ କରିଥିଲି, ସେଥିରେ "ନିଶ୍ଚୟ ଦେଖିବାକୁ ହେବ"- ଏ ପର୍ଯ୍ୟାୟରେ ଥିଲା ନୋଟ୍ରେଡାମ୍ (Notre Dame)। ନୋଟ୍ରେଡାମ୍ ପୃଥିବୀର ବହୁ ପୁରୁଣା କ୍ୟାଥେଡ୍ରାଲ। ୧୧୬୩ ମସିହାରେ ଏହାର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଥିଲା, ମାତ୍ର ଶେଷ ହେବାକୁ ପ୍ରାୟ ୧୬୫ ବର୍ଷ ଲାଗିଥିଲା। ନୋଟ୍ରେଡାମ୍ ଯେତେବେଳେ ପ୍ରଥମ ନିର୍ମିତ ହେଲା ସେତେବେଳେ ରେନାସାଁ ଯୁଗର ଛାପ ଏହା ଭିତରେ ଥିବା ଚିତ୍ରପଟ, କାନ୍ଥ, ପୂଜାମଣ୍ଡପ, କାଚ ଝରକା ଓ ଛାତରେ ଦେଖାଯାଇଥିଲା। କିନ୍ତୁ କ୍ରମେ ଫରାସୀ ଲୋକମାନେ ରେନାସାଁ ଯୁଗର ଛାପକୁ ଘୁଞ୍ଚେଇ କ୍ୟାଥେଡ୍ରାଲ୍‌କୁ ଆଧୁନିକ କରିବାର ଚେଷ୍ଟାକଲେ। ସେଇଥିପାଇଁ ସେମାନେ ଏଠାରେ ଥିବା ବିଭିନ୍ନ ପ୍ରତିମୂର୍ତ୍ତିରୁ ମଧ୍ୟଯୁଗୀୟ ରଙ୍ଗ ଯଥା- ନୀଳ, ବାଇଗଣୀ, ସବୁଜ ଓ ହଳଦିଆ ଉଠେଇ ନେଇଥିଲେ ଏବଂ କ୍ୟାଥେଡ୍ରାଲ୍‌ର ଆଭ୍ୟନ୍ତରକୁ ଧଳା କରିଦେଇଥିଲେ।

ଫରାସୀ ବିଦ୍ରୋହ ପରେ ନୋଟ୍ରେଡାମ୍ ପ୍ରତି ଲୋକଙ୍କର ଆଗ୍ରହ କମିଗଲା ଏବଂ ଅଯତ୍ନରେ ଏହା ନଷ୍ଟ ହୋଇଯିବାକୁ ଲାଗିଲା। ନେପୋଲିଅନ୍ ବୋନାପାର୍ଟ ଯେତେବେଳେ ଫ୍ରାନ୍‌ସର ସମ୍ରାଟରୂପେ ନିଜକୁ ଘୋଷଣା କଲେ ସେତେବେଳେ ସେ ଏହି ନୋଟ୍ରେଡାମ୍‌ରେ ନିଜର ଅଭିଷେକ କରାଇବା ପାଇଁ ଚାହିଁଥିଲେ। ଫଳରେ ତାଙ୍କ ରାଜତ୍ୱକାଳରେ କ୍ୟାଥେଡ୍ରାଲ୍‌ଟିର ପୂର୍ବ ଗୌରବ ଫେରି ଆସିଥିଲା। କିନ୍ତୁ ତାଙ୍କ ପରେ ପୁନର୍ବାର ଅଯତ୍ନର ଶୀକାର ହୋଇପଡିଲା ନୋଟ୍ରେଡାମ୍। ଶୁଣାଯାଏ ଯେ ସେଇ ସମୟରେ ଏହାକୁ ଜଣେ ଠିକାଦାର କିଣି ନେଇ ଥିଲେ। ଠିକାଦାର ଜଣକ କ୍ୟାଥେଡ୍ରାଲକୁ ଭାଙ୍ଗି ସେଇ ସ୍ଥାନରେ ଅନ୍ୟ କିଛି ଗଢିବାର ଯୋଜନା ମଧ୍ୟ କରୁଥିଲେ। ସେଭଳି ଯେ କିଛି ଘଟି ନାହିଁ ଏବଂ ନୋଟ୍ରେଡାମ୍ ଯେ ପୁନର୍ବାର ଜନପ୍ରିୟ ହୋଇପାରିଛି, ଏଥିପାଇଁ ସମ୍ମାନର ଅଧିକାରୀ କେବଳ ଜଣେ। ସେ ଔପନ୍ୟାସିକ ଭିକ୍ଟର ହ୍ୟୁଗୋ (Victor Hugo)। ତାଙ୍କର ଉପନ୍ୟାସ ନୋଟ୍ରେଡାମ୍ ଦ ପ୍ୟାରିସ୍ (The Hunchback of Notre Dame) ବହୁତ ଜନପ୍ରିୟ ହୋଇଥିଲା ଏବଂ ପ୍ୟାରିସ୍‌ବାସୀଙ୍କ ମାନସିକତାରେ ଏଇ କ୍ଷୟ ହୋଇ ଯାଉଥିବା ପ୍ରାଚୀନ କ୍ୟାଥେଡ୍ରାଲ ପ୍ରତି ତୀବ୍ର ଆକର୍ଷଣ ସୃଷ୍ଟି କରିଥିଲା। ଶେଷରେ ଲୋକମତକୁ ଅସ୍ୱୀକାର କରି ନପାରି ଫରାସୀ ସରକାର ବହୁ ଅର୍ଥ ବ୍ୟୟରେ

ନୋତ୍ରେଦାମ୍‌ର ହୃତ ଗୌରବକୁ ଫେରାଇ ଆଣିଥିଲେ ।

ଆମେ ଯେତେବେଳେ ନୋତ୍ରେଦାମ୍‌ରେ ପହଞ୍ଚିଲୁ ସେତେବେଳେ ସକାଳ ସାଢେ ନଅ । ତା' ପୂର୍ବଦିନ ଭର୍ସାଇ ପ୍ରାସାଦରେ ଚାଲି ଚାଲି ଓ ବଗିଚାରେ ଦୌଡାଦୌଡି କରି ପିଲାମାନେ ଏତେ ବେଶୀ କ୍ଳାନ୍ତ ହୋଇ ଯାଇଥିଲେ ଯେ ସେମାନେ ଆମ ସାଙ୍ଗରେ ଆସିବାକୁ ମନା କରି ଦେଲେ । ମୁଁ ହୁଏତ ବାଧ୍ୟ କରିଥାଆନ୍ତି, କିନ୍ତୁ ସଂଜୟଙ୍କର ଛୁଟୀ ଥିଲା । ପିଲାମାନଙ୍କୁ ତାଙ୍କ ପାଖରେ ଛାଡି ଆସିଥାଉ ।

କ୍ୟାଥେଡ୍ରାଲ୍ ପାଖରେ ପହଞ୍ଚି ଦେଖିଲୁ ଲମ୍ବା ଧାଡି । ମୁଁ ଜଣଙ୍କୁ ପଚାରି ବୁଝିଲି ଯେ ଟିକେଟ୍ ପାଇଁ ଏଇ ଧାଡି । ଆମେ ଭାବିଲୁ ପ୍ୟାରିସ୍‌ର ପ୍ରତ୍ୟେକ ସ୍ଥାନରେ ତ ଟିକେଟ୍ ବ୍ୟବସ୍ଥା ଅଛି । ତେଣୁ ପ୍ରାଚୀନ ଚର୍ଚ୍ଚ ହିସାବରେ ନୋତ୍ରେଦାମ୍‌ରେ ପଶିବା ପାଇଁ ବୋଧହୁଏ ଟିକେଟ୍ କାଟିବାକୁ ପଡେ । ଆମେ ମଧ୍ୟ ଧାଡିରେ ଠିଆ ହେଇଗଲୁ । ଟିକେଟ୍ କାଟି ସାରିବାପରେ ଆମକୁ ଗୋଟିଏ କୋଠରୀ ଭିତରକୁ ଯିବାକୁ ହେଲା । ତା'ପରେ ସିଡ଼ି ଘର ଏବଂ ପରେ ପରେ ପାହାଚ ପରେ ପାହାଚ । ଯଦି ପ୍ରଥମରୁ ଆମେ ଜାଣିଥାଆନ୍ତୁ ଯେ ନୋତ୍ରେଦାମ୍‌ର ଟାୱାର ଉପରକୁ ଯିବାକୁ ଏ ଟିକେଟ୍ ବ୍ୟବସ୍ଥା, ତେବେ ଆମେ ଆଦୌ ଧାଡିରେ ଠିଆ ହୋଇ ନ ଥାଆନ୍ତୁ । ବର୍ତ୍ତମାନ କରିବାର କିଛି ନାହିଁ । ଟାୱାରରେ ଘୁରି ଘୁରି ୩୮୭ଟି ପାହାଚ । ଉଠି ଉଠି ଗୋଡ ଥକି ଯାଉଥାଏ, କିନ୍ତୁ ମୁହୂର୍ତ୍ତେ ଠିଆ ହେବାର ବାଟ ନାହିଁ । ପଛରେ ଆଗରେ ଲୋକ । ଝରକା ନାହିଁ, ଖୋଲା ପବନ ଆସିବାର ରାସ୍ତା ନାହିଁ । ପ୍ରଥମ ଚିନ୍ତା ଯାହା ମୋ ମନକୁ ଆସିଲା ଯେ ଠାକୁରଙ୍କର ବଡ ଦୟା, ପିଲାଏ ଆମ ସାଙ୍ଗରେ ନାହାନ୍ତି । ଦାନ୍ତ କାମୁଡି ଆମେ କୌଣସି ପ୍ରକାର ଉପରେ ପହଞ୍ଚିଗଲୁ । ଥରେ ଉପରେ ପହଞ୍ଚିଗଲା ପରେ ମନେ ହେଲା ଜୀବନଟା ଯେମିତି ରହିଗଲା । ଟାୱାର ଉପରୁ ଅବଶ୍ୟ ପ୍ୟାରିସ୍‌ର ଦୃଶ୍ୟ ଖୁବ୍ ସୁନ୍ଦର ଦିଶୁଥାଏ । କିନ୍ତୁ ମୋର ମନେ ହେଲା ଯେ କେବଳ ସେତିକି ପାଇଁ ଟାୱାର ଚଢିବାର ଓ ଜଣକ ପିଛା ୩୦ ଫ୍ରାଙ୍କ୍ ଦେଇ ଟିକେଟ୍ କାଟିବାର କୌଣସି ମାନେ ହୁଏ ନାହିଁ । ତା'ଛଡା ଯିଏ ଆଇଫେଲ୍ ଟାୱାର୍ ଉପରୁ ପ୍ୟାରିସ୍‌ର ଦୃଶ୍ୟ ଦେଖିଛି ତାକୁ ନୋତ୍ରେଦାମ୍‌ର ଟାୱାର ଉପରୁ ପ୍ୟାରିସ୍‌ର ଦୃଶ୍ୟ ଦେଖିବା ପାଇଁ ଭଲ କାହିଁକି ଲାଗିବ ? ଆମେ ଅଧିକ ସମୟ

ସେଠି ନଗହି ଦକ୍ଷିଣ ଟାୱାର ବାଟେ ତଳକୁ ଫେରି ଆସିଲୁ।

ସିଢ଼ିରୁ ବାହାରି ବୁଲିକରି କ୍ୟାଥେଡ୍ରାଲ୍ ଭିତରକୁ ଯିବାକୁ ହୁଏ। ଏଥିପାଇଁ ଟିକେଟ୍ ଲାଗେ ନାହିଁ। ଏହା ଭିତରେ ଥିବା ଅନେକ ପ୍ରତିମୂର୍ତ୍ତିର ମୁଣ୍ଡ ନାହିଁ। ଫରାସୀ ବିଦ୍ରୋହ ସମୟରେ ବିକ୍ଷୁବ୍ଧ ଜନତା ଏସବୁ ଭାଙ୍ଗି ଦେଇଥିଲେ। ୧୯୭୭ ମସିହାରେ ଏକ ପୁରୁଣା ବ୍ୟାଙ୍କର ଭଲ୍ଟ ଭିତରୁ ଏଇସବୁ ପ୍ରତିମୂର୍ତ୍ତିର ମୁଣ୍ଡ ମିଳିଛି। କେହି ହୁଏ ତ ଲୁଚେଇ ରଖିଥିଲା। ଏସବୁ ଏବେ ମିଉଜିଅମ୍‌ରେ ରଖା ହୋଇଛି।

ନୋତ୍ରେଦାମ୍ ଦେଖି ସାରିବା ପରେ ଆମେ ଚାରି ପାଞ୍ଚୋଟି ଟେବୁଲ ଥିବା ଅତି ଛୋଟ କିନ୍ତୁ ସୁନ୍ଦର ଏକ କ୍ୟାଫେ ଭିତରେ ପଶିଲୁ। ଏଥର କିନ୍ତୁ ବସି ପଡିବାର ଭୁଲ୍ କରିଲୁ ନାହିଁ। ଠିଆ ହୋଇ କଫି ପିଉ ପିଉ ମୋ ଆଖି ପଡିଲା କାଉଣ୍ଟରେ ଥିବା ବାର୍‌ରେ। ବାର୍‌ର ଗୋଟିଏ ଅଂଶରେ ଅନେକ ପ୍ରକାରର ପାନୀୟ, ଅନ୍ୟ ଅଂଶରେ କେବଳ ବହି। କୌତୁହଳ ଦମନ କରି ନ ପାରି ଆମକୁ କଫି ଦେଇଥିବା ମହିଳାଙ୍କୁ ପଚାରିଲି, "ଏ ବହି ସବୁ କାହାର?" ଭଦ୍ରମହିଳା ଇଂରାଜୀ କହି ପାରୁ ନ ଥାଆନ୍ତି। ସେଇଠି ବସି ବିଅର ପିଉଥିବା ଜଣେ ଭଦ୍ରବ୍ୟକ୍ତିଙ୍କୁ ମଧ୍ୟସ୍ଥ କରାଇ ଆମେ କଥାବାର୍ତ୍ତା ଆରମ୍ଭ କରିଦେଲୁ। ସେଇଠୁ ଜାଣିଲି ଯେ ଏ ଛୋଟ କ୍ୟାଫେ ଓ ବାର୍‌ର ମାଲିକାଣୀ ସେ ନିଜେ। ବହିଗୁଡିକ ତାଙ୍କର। ସେ ବହି ପଢିବାକୁ ଭଲପାଆନ୍ତି, କିନ୍ତୁ ଦିନର ଅଧିକାଂଶ ସମୟ କ୍ୟାଫେରେ କଟିଯାଏ। ସେଥିପାଇଁ ବହି ଏଇଠି ରଖିଛନ୍ତି, ବର୍ତ୍ତମାନ ପଢୁଥିବା ବହିଟିକୁ ସେ ମତେ ଦେଖାଇଲେ। ଫରାସୀ ଭାଷାରେ ଲେଖାହୋଇଥିବା ରୁସୋଙ୍କର ବହିଟିଏ। ମୁଁ ଆଶ୍ଚର୍ଯ୍ୟ ନ ହୋଇ ରହିପାରିଲି ନାହିଁ। ଗଳ୍ପ, ଉପନ୍ୟାସ କଥା ଭିନ୍ନ, ଗୋଟିଏ କ୍ୟାଫେ ଓ ବାର ସମ୍ଭାଳି ରୁସୋଙ୍କ ବହି ପଢିବା - ଏହା କେବଳ ପ୍ୟାରିସ୍‌ରେ ହିଁ ସମ୍ଭବ।

ଏତେ ସମୟ ଘର ଭିତରେ ରହି ପିଲାମାନେ ବିରକ୍ତ ହୋଇଯାଇଥିଲେ। ଆମକୁ ଦେଖି ବୁଲି ବାହାରିଲେ। ନୋତ୍ରେଦାମ୍‌ର ଟାୱାର ଚଢିବାପରେ ଆମର ଆଉ ବୁଲିବାର ଧୈର୍ଯ୍ୟ ନଥିଲା, କିନ୍ତୁ ପିଲାଙ୍କ ଆଗ୍ରହ ଭାଙ୍ଗି ନପାରି ବାହାରିଲୁ। ଯିବୁ କେଉଁଠିକୁ? ସଂଜୟ ଟୁଲୋଇ ବଗିଚା (Tuilleris Garden) କଥା କହିଲେ।

ବଗିଚା ଶବ୍ଦଟି ଶୁଣି ଫୁଲ ବଗିଚା କଥା ଭାବି ବସିବୁ ନାହିଁ। ମୁଁ ମଧ୍ୟ ସେଇ ଭୁଲ୍ ପ୍ରଥମେ କରିଥିଲି। କିନ୍ତୁ ଏ ବଗିଚା ଭିନ୍ନ। ଶୁଣିଛି ଏହାକୁ ଅନେକ କହନ୍ତି ପ୍ୟାରିସର ସର୍ବଶ୍ରେଷ୍ଠ ବଗିଚା (the noblest garden in Paris)। କିନ୍ତୁ ବଗିଚା କାହିଁ? ମୁଁ ଅବାକ୍ ହୋଇଯାଉଥାଏ। ଫୁଲ ଓ ଘାସ ନ ଥାଇ ପୁଣି ବଗିଚା? ଏଇଠି ରହିଛି ସଳଖ ରାସ୍ତା, କାଟଛାଣ୍ଟ କରାଯାଇଥିବା ଗଛ ଓ ବିଭିନ୍ନ ପ୍ରତିମୂର୍ତ୍ତି। ରାଣୀ କ୍ୟାଥେରିନ୍ ଦି ମେଦିସିଙ୍କ ସମୟରେ ଏହା ପ୍ରଥମେ ଆରମ୍ଭ ହୋଇଥିଲା। କିନ୍ତୁ ପରେ ଚତୁର୍ଦ୍ଦଶ ଲୁଇଙ୍କ ସମୟରେ ଲେନୋତ୍ରେ ଏହାକୁ ନୂତନ ରୂପ ଦେଇଥିଲେ। ଏକ କିଲୋମିଟର ଲମ୍ବା ବିରାଟ ବଗିଚା। କିଛି ନକରି ବସି ରହିବାକୁ ଭଲଲାଗୁଥାଏ। ଦୂରରେ ଦେଖାଯାଉଥାଏ ଟୁଲୋଇ ପ୍ରାସାଦ। କିନ୍ତୁ ଆଉ ଧାଡିରେ ଠିଆ ହେବାର ବା ବନ୍ଧ ଘରଭିତରେ ପାଦରଖିବାର ଇଚ୍ଛା ଆମର ନଥାଏ। ତେଣୁ ସେଇଠି ସନ୍ଧ୍ୟାଟି କଟେଇ ଦେଲୁ।

ଗତକାଲି ସକାଳୁ ଉଠିବା କ୍ଷଣି ମୋର ମନେ ପଡିଗଲା ଯେ ସେଇଟି ପ୍ୟାରିସ୍‌ରେ ଆମର ଶେଷ ଦିନ। ଶେଷ ଦିନଟିକୁ ଅତି ସ୍ମରଣୀୟ କରିବା ପାଇଁ ଆମେ ସ୍ଥିର କଲୁ ଯେ କୌଣସି ଦର୍ଶନୀୟ ସ୍ଥାନକୁ ଯିବୁ ନାହିଁ। ଜଣେ ପର୍ଯ୍ୟଟକ ହିସାବରେ ଚାରୋଟି ଦିନ ତ ବେଶ୍ ବୁଲାହେଲା, ଏଇ ଗୋଟିଏ ଦିନ ଏବେ ପ୍ୟାରିସ୍‌ର ରାସ୍ତା ଘାଟରେ, ସେନ୍ ନଦୀ କୂଳେ କୂଳେ ବୁଲି ବୁଲି କଟିଯାଉ। ସେୟା ହେଲା। ମିତୁ, କି ସୁନ୍ଦର ଭାବରେ ଯେ ଦିନଟି କଟିଲା, ସେ କଥା ଲେଖି ହେବନାହିଁ। ମୋ ମତରେ କୌଣସି ଏକ ସ୍ଥାନକୁ ପ୍ରକୃତରେ ଉପଭୋଗ କରିବା ପାଇଁ ଯେଉଁଠିକୁ ପର୍ଯ୍ୟଟକମାନେ ଯାଉ ନଥିବେ ସେଠାକୁ ଯିବା ଉଚିତ୍। ସେନ୍ ନଦୀ କୂଳର ବହି ଦୋକାନ ବୁଲା, ନୋତ୍ରେଦାମ୍ ପାଖରେ ଥିବା ଚଢେଇ ବଜାର ଦେଖା, ରାସ୍ତା କଡରେ ବିକ୍ରି ହେଉଥିବା ପ୍ୟାନ୍‌କେକ୍ ଖିଆ- ଏସବୁର କ'ଣ ତୁଳନା ହୁଏ?

ପାଞ୍ଚୋଟି ଦିନ ଭିତରେ ପ୍ୟାରିସ୍‌କୁ ଯେତିକି ସମ୍ଭବ ଆମେ ଦେଖିଲୁ। କିନ୍ତୁ ଏଇ ଦିନ କେତୋଟିରେ ମତେ ଜାଗାଟି ଅତିବେଶୀ ଭଲ ଲାଗିଯାଇଛି। ଏ ସହରର ଗୋଟିଏ ନୈସର୍ଗିକ ସୌନ୍ଦର୍ଯ୍ୟ ରହିଛି। ସେଥିପାଇଁ ବୋଧହୁଏ କେଉଁ ପୁରୁଣା ଯୁଗରୁ ଲେଖକ, ଔପନ୍ୟାସିକ, କବି, ଚିତ୍ରକାର ଏହି ସହରକୁ ନିଜର କରି ଆସିଛନ୍ତି।

ପ୍ୟାରିସ୍ ମତେ ଭଲ ଲାଗିବାର ଆଉ ଗୋଟିଏ କାରଣ ହେଲା ସଙ୍ଗୀତ। ଆମର ଦିନଟିଏ ଏମିତି କଟିନାହିଁ ଯେଉଁଦିନ କି ଆମକୁ ବାଟଘାଟରେ ସଙ୍ଗୀତ ଶୁଣିବାକୁ ମିଳିନାହିଁ। ରାସ୍ତାକଡରେ ତିନି ଚାରିଜଣ ଏକାଠି ହୋଇ ଭିନ୍ନ ଭିନ୍ନ ବାଦ୍ୟ ଯନ୍ତ୍ର ଧରି ବସିଯାଇଛନ୍ତି ଏବଂ ରାସ୍ତାରେ ଯାଉଥିବା ଲୋକ, ଗାଡି ମଟର ଏସବୁକୁ ଉପେକ୍ଷା କରି ସୃଷ୍ଟି କରୁଛନ୍ତି ସୁନ୍ଦର ବାଦ୍ୟ ବିଚିତ୍ରା। ସେଇପରି ନିଜର କ୍ୟାସେଟ୍ ବିକ୍ରି କରିବା ପାଇଁ କେଇଜଣ ଯୁବକ ଯୁବତୀ ଜନପ୍ରିୟ ପର୍ଯ୍ୟଟକ ସ୍ଥଳୀ ନିକଟରେ ବସିଯାଇ ସୃଷ୍ଟି କରୁଛନ୍ତି ଜୀବନ୍ତ ବିଜ୍ଞାପନ। ଆଉଥରେ ମେଟ୍ରୋରେ ଗଲାବେଳେ ଆମ ଟ୍ରେନ୍ ଭିତରକୁ ପଶି ଆସିଲା ଝିଅଟିଏ। ଡାହାଣ ହାତରେ ଗିଟାର ଓ ବାଁ ହାତରେ ବହି ବ୍ୟାଗ୍। ସିଟ୍ କଡରେ ବହି ବ୍ୟାଗ୍‌ଟି ରଖିଦେଇ ସେ ଗିଟାର ବଜେଇ ଗୀତ ଆରମ୍ଭ କଲା। ଆମେ ତ କିଛି ବୁଝିପାରିଲୁ ନାହିଁ। କିନ୍ତୁ ଝିଅଟିର ଗଳା ଭାରି ବଢିଆ। ଗୀତ ସରିବା ପରେ ସେ ହାତରେ ପର୍ସଟିଏ ଧରି ସମସ୍ତଙ୍କ ପାଖକୁ ଗଲା। ମୁଁ ଦେଖିଲି ଯେ ସେ କାହାକୁ ମୁହଁ ଖୋଲି କିଛି ନ କହିଲେ ମଧ୍ୟ ସମସ୍ତେ କିଛି କିଛି ପଇସା ତା' ପର୍ସରେ ପକେଇ ଦେଉଛନ୍ତି। ମୁଁ ମଧ୍ୟ କିଛି ଫ୍ରାଙ୍କ୍ ତା' ପର୍ସରେ ରଖିଦେଲି।

ମିତୁ, ମୁଁ ଆମେରିକାର ଏତେଗୁଡିଏ ସ୍ଥାନ ଦେଖିବା ପରେ ପ୍ୟାରିସ୍ ଦେଖିଲି। ପ୍ରଥମ ଯାହା ମୋ ମନକୁ ଆସିଲା ତାହା ହେଲା ଏଇଠିକାର ଲୋକମାନେ ଆମେରିକା ଭଳି ଏତେଟା ଯାନ୍ତ୍ରିକ ନୁହନ୍ତି। ତୁ ହୁଏତ ପଚାରିପାରୁ ପାଞ୍ଚଟା ଦିନ ଭିତରେ ଏଭଳି ଗୋଟିଏ ଧାରଣା ମୁଁ କେମିତି କରିନେଲି। କିନ୍ତୁ ଏଇ ଦିନ କେତୋଟି ମଧ୍ୟରେ ମୁଁ ଯେତେଜଣ ସାଧାରଣ ଲୋକଙ୍କ ସଂସ୍ପର୍ଶରେ ଆସିଛି ସେମାନଙ୍କୁ ଦେଖି ଜାଣିପାରୁଛି ଯେ ଏଠିକାର ଲୋକମାନେ ସମୟ ପଛରେ ଦୌଡନ୍ତି ନାହିଁ, ବରଂ ହାତରେ ଥିବା ସୀମିତ ସମୟକୁ ଉପଭୋଗ କରନ୍ତି। ନୋତ୍ରେଦାମ୍ ପାଖରେ ଥିବା କ୍ୟାଫେର ଭଦ୍ରମହିଳାଙ୍କ କଥା କହ ବା ଭେନିସ୍ ଭ୍ରମଣରେ ଯାଉଥିବା କ୍ୟାମେରା ଦୋକାନୀ କଥା କହ - ଏମାନେ ଜୀବନକୁ ଉପଭୋଗ କରି ଶିଖିଛନ୍ତି। ରୁଟୀନ୍ ବନ୍ଧା ଜୀବନ ଯାତ୍ରାରେ ଜଡିତ ହୋଇ ଯାଇ ନିଜ ଜୀବନକୁ ଶୁଖିଲା, ନୀରସ କରିଦେଇନାହାନ୍ତି।

ବହୁବର୍ଷ ତଳେ ଇଉରୋପ ବୁଲିବାପରେ ଜଣେ ପର୍ଯ୍ୟଟକ ମତ ଦେଇଥିଲେ, "In England, everything is allowed except what is forbidden.

In Germany, everything is forbidden except what is allowed. In Russia, everything is forbidden even what is allowed. In France, everything is allowed even what is forbidden."

ଇଂଲାଣ୍ଡ, ଜର୍ମାନୀ, ରୁଷିଆ ତ ଦେଖିନାହିଁ। କିନ୍ତୁ ଫ୍ରାନ୍‌ସ ସଂପର୍କରେ ପର୍ଯ୍ୟଟକ ଜଣଙ୍କ ଯେଉଁ ମତ ଦେଇଛନ୍ତି ତାହାର ସତ୍ୟତା ମୁଁ ପ୍ୟାରିସ୍ ଦେଖି ଅନୁଭବ କରିପାରିଛି।

ହୁଏତ ପୁଣିଥରେ ମତେ ପ୍ୟାରିସ୍ ଆସିବାର ସୁଯୋଗ ମିଳିବ। ସେତେବେଳେ କିନ୍ତୁ ମୁଁ ପାଞ୍ଚଦିନ ପାଇଁ ଆସିବି ନାହିଁ, ଆସିବି ହାତରେ ଯଥେଷ୍ଟ ସମୟ ନେଇ। ପ୍ୟାରିସ୍‌କୁ, ଫ୍ରାନ୍‌ସକୁ ଆଉ ଟିକିଏ ନିବିଡ ଭାବରେ ଦେଖିବି।

ଏବେ କ୍ୟାପଟେନ୍ ପୁଣି ଘୋଷଣା କଲେ ଯେ ଆମ ପ୍ଲେନ୍ କରାଚୀ ଉପରେ ପହଞ୍ଚି ଗଲାଣି। ଆଉ ମାତ୍ର ଅଳ୍ପ ସମୟ। ତା'ପରେ ଦିଲ୍ଲୀ। ଭାରତରେ ଏ ଚିଠି ପହଞ୍ଚିବା ଆଗରୁ ବୋଧହୁଏ ତୋ ସାଙ୍ଗରେ ମୋର ଦେଖା ହୋଇଯିବ।

ବର୍ତ୍ତମାନ ପାଇଁ ତେବେ ଏତିକି। ରହୁଛି।

ଇତି
ତୋର 'ନାନୀ'

କୁପରଟିନୋ
୧୫ ଅକ୍ଟୋବର, ୯୧

ସ୍ନେହର ମିତୁ,

ଆଜି ସକାଳ ଡାକରେ ତୋ ଚିଠି ପାଇଛି। ଏହା ଭିତରେ କେମିତି ଯେ ଦେଢ଼ଟା ମାସ କଟିଗଲା ବୁଝିପାରୁନାହିଁ। ଆମେରିକାରେ ପହଞ୍ଚିବା ପରେ ପରେ ହିଁ ତତେ ଚିଠି ଲେଖିବା କଥା ଥିଲା। କିନ୍ତୁ କିଛି କାର୍ଯ୍ୟବ୍ୟସ୍ତତା, ଆଉ କିଛିଟା ଅଳସୁଆମୀରେ ଏତେ ଗୁଡାଏ ଦିନ କଟିଗଲା। ଆମେ ଭାରତ ଛାଡିଥିଲୁ ସେପ୍‌ଟେମ୍ବର ମାସ ଦୁଇ ତାରିଖରେ ଆଉ ଆଜି ଅକ୍ଟୋବର ପନ୍ଦର ତାରିଖ।

ପ୍ରଥମ ଥର ଯେତେବେଳେ ଭାରତ ବାହାରେ ମୁଁ ପାଦ ଦେଇଥିଲି, ସେତେବେଳେ ନୂଆ ଜାଗା, ବିଦେଶ ଜାଗା ଦେଖିବା ପାଇଁ ମନ ଭିତରେ ବହୁ ଆଗ୍ରହ ଜମି ରହିଥିଲା। ଏଥରକ କିନ୍ତୁ ସେଇଭଳି କୌଣସି କୌତୁହଳ ନଥିଲା। ଚିନ୍ତା କରିଲେ ଆଶ୍ଚର୍ଯ୍ୟ ଲାଗେ; ମଣିଷ ନୂଆ ଜିନିଷ ଦେଖିବାରେ କେତେ ଶୀଘ୍ର ଅଭ୍ୟସ୍ତ ହୋଇଯାଏ ! କେତେ ଶୀଘ୍ର ନିଜକୁ ଖାପ ଖୁଆଇ ନିଏ ନୂତନ ପରିବେଶରେ !! ଗତଥର ଟାଙ୍ଗୀ ଏଆରପୋର୍ଟର ଏଲିଭେଟରଠାରୁ ଆରମ୍ଭ କରି ଆମେରିକାର ରାସ୍ତାଘାଟ- ସବୁକିଛି ମତେ ଅବାକ୍ କରି ଦେଇଥିଲା; କିନ୍ତୁ ଏଥରକ ମନେ ହେଲା ସବୁ ଯେମିତି ଖୁବ୍ ଚିହ୍ନା। କଫି ପିଇବା ପାଇଁ କେଉଁଠାକୁ ଯିବାକୁ

ପଡିବ, ମୁହଁ ଧୋଇବା ପାଇଁ କେଉଁ ଏଲିଭେଟର୍ ନେବାକୁ ହେବ- ଏସବୁ ଯେ ଆଗରୁ ଜଣା !

ଯାତ୍ରାଟି ହୁଏତ ସଂପୂର୍ଣ୍ଣ ରୂପେ ଧରାବନ୍ଧା ହୋଇ ଯାଇଥାଆନ୍ତା, କିନ୍ତୁ ମାଡ୍ରାସ୍ ଏଆର୍‌ପୋର୍ଟରେ ଫ୍ଲାଇଟ୍ ପାଇଁ ଅପେକ୍ଷା କରି ବସିଥିବା ବେଳେ ହଠାତ୍ ଆମ ମୁଣ୍ଡରେ ଗୋଟିଏ ବୁଦ୍ଧି ପଶିଲା । ସିଙ୍ଗାପୁରରେ ଆମ ପ୍ଲେନ୍ ପହଞ୍ଚିବ ସକାଳ ସାଢେ ଛଅଟାରେ, ପୁଣି ସାନ୍‌ଫ୍ରାନ୍‌ସିସ୍‌କୋକୁ ଯିବା ଫ୍ଲାଇଟ୍ ସନ୍ଧ୍ୟା ସାଢେ ପାଞ୍ଚରେ । ହାତରେ ଏଗାର ଘଣ୍ଟା ସମୟ । ଏଆର୍‌ପୋର୍ଟରେ ବୁଲେଇ ବୁଲେଇ ବା ଲକ୍ଷ୍ୟହୀନ ଭାବରେ ଡ୍ୟୁଟି ଫ୍ରି ଦୋକାନମାନଙ୍କରେ ବୁଲି ବୁଲି ଏଇ ଏଗାରଟି ଘଣ୍ଟା ନ କଟେଇ ସିଙ୍ଗାପୁର ସହର ଭିତରେ ତ ବୁଲାଯାଇପାରେ । ତୋ ଭାଉନା କିନ୍ତୁ ଗୋଟିଏ ସର୍ତ୍ତ ରଖିଲେ । ସେ କହିଲେ, "ସିଙ୍ଗାପୁର ଭିତରେ ମୁଁ ଦୋକାନ ବୁଲେଇ ନେଇ ପାରିବି ନାହିଁ ।" ମୋର ଯେ ସେମିତି କିଛି କିଣିବାର ଥିଲା ତା' ନୁହଁ, କିନ୍ତୁ ଦୋକାନ ନ ଦେଖି ସିଙ୍ଗାପୁରରେ କ'ଣ ବା କରାଯାଇପାରେ ? ପୃଥିବୀର ବ୍ୟସ୍ତତମ ବ୍ୟବସାୟିକ ସହର ସିଙ୍ଗାପୁର । ଏଠି ବା ଅଛି କ'ଣ ? ସିଙ୍ଗାପୁର ବୁଲି ଆସିଥିବା ମୋର ସବୁ ଜଣାଶୁଣା ଲୋକଙ୍କ ମୁହଁରୁ ମୁଁ ଶୁଣିଛି, ସେମାନେ ଏଇଠିକି ଆସନ୍ତି ଜିନିଷ କିଣିବା ପାଇଁ । ବିଦେଶୀ କ୍ୟାମେରା, ଘଡି, ମ୍ୟୁଜିକ୍ ସିଷ୍ଟମ, ଭିଡିଓ, କସ୍‌ମେଟିକ୍‌ସ ବା ଲୁଗାପଟା- ଏସବୁ କିଣିବା ହିଁ ସେମାନଙ୍କର ସିଙ୍ଗାପୁର ଯାତ୍ରାର ପ୍ରଧାନ ଉଦ୍ଦେଶ୍ୟ । ତେଣୁ ଦୋକାନ ବଜାରକୁ ବାଦ୍ ଦେଇ ପୁଣି କି ସିଙ୍ଗାପୁର !

ମିତ୍ର, କି ଭୁଲ୍ ଧାରଣା ମୋର ଥିଲା । ଦୋକାନ ବଜାର ଛଡା ସହରଟିରେ ଯେ ଏତେ କିଛି ଦେଖିବାର ଅଛି ତା' ତ ମୁଁ ଜାଣି ନ ଥିଲି । ଯଦି ମୁଁ ଆଗରୁ ଟୁରିଷ୍ଟ ଗାଇଡ୍‌ଟିଏ ପଢିଥାଆନ୍ତି ତେବେ ଏଇମିତି ଭୁଲ୍ ଧାରଣାଟିଏକୁ ମନ ଭିତରେ ଆଦୌ ସ୍ଥାନ ଦେଇ ନ ଥାଆନ୍ତି । ତୁ ଯଦି କେବେ ସିଙ୍ଗାପୁର ବୁଲି ଆସୁ ତେବେ ତା' ପୂର୍ବରୁ ଟୁରିଷ୍ଟ ଗାଇଡ୍‌ଟିଏ ପଢିବାକୁ ଭୁଲିବୁ ନାହିଁ । ସେଥିରେ କେବଳ ଯେ ସହରରେ ରହିଥିବା ପର୍ଯ୍ୟଟନ ସ୍ଥଳୀର ବର୍ଣ୍ଣନା ଥାଏ, ତା' ନୁହଁ । ବରଂ କେଉଁ ସ୍ଥାନଟି ଅତି ସୁନ୍ଦର ଏବଂ କେଉଁଠାକୁ ଯାଇ ସମୟ ନଷ୍ଟ କରିବା ଅନାବଶ୍ୟକ- ଏସବୁ ପରିଷ୍କାର ଭାବରେ ଲେଖାଥାଏ । ତା'ଛଡା ଏଥିରୁ ହୋଟେଲ୍, ରେଷ୍ଟୋରାଁର ନାମ ତଥା କେଉଁଟା ଭଲ, କେଉଁଟା ମନ୍ଦ

ସେ ସବୁ ମଧ୍ୟ ଜାଣିବାକୁ ମିଳେ। ଗାଇଡ୍ ବହିଟି ପଢି ପ୍ରଥମରୁ ଯୋଜନାଟିଏ ପ୍ରସ୍ତୁତ କରି ସିଙ୍ଗାପୁର ଆସିଲେ ତୋ ଯାତ୍ରା ଅବିସ୍ମରଣୀୟ ହୋଇ ପାରିବ।

ଅନେକ ଦିନ ତଳେ ସିଙ୍ଗାପୁରର ପ୍ରାଚୀନ ଇତିହାସ ଉପରେ ବହିଟିଏ ମୋ ହାତକୁ ଆସିଥିଲା। ସେଇଥିରେ ସିଙ୍ଗାପୁର ନାମକରଣ ନେଇ ଯେଉଁ ସୁନ୍ଦର କାହାଣୀଟି ପଢିଥିଲି, ତାହା ମୋ ମନକୁ ବେଶ୍ ଛୁଇଁ ଯାଇଥିଲା। ତୁ ଜାଣି ଆଶ୍ଚର୍ଯ୍ୟ ହେବୁ ଯେ ସିଙ୍ଗାପୁର ହେଉଛି ''ସିଂହପୁରା'' ଶବ୍ଦଟିର ଅପଭ୍ରଂଶ। ଆଉ ଏହି 'ସିଂହପୁରା' ଶବ୍ଦଟି ଆସିଛି ସଂସ୍କୃତ ଭାଷାରୁ। ଏହାର ଅର୍ଥ ''ସିଂହର ସହର''। କିପରି ଯେ ସ୍ଥାନଟିର ନାମ 'ସିଂହପୁରା' ହେଲା ସେଇ ଗପଟି ଏବେ ତତେ ମୁଁ କହେ।

କାହାଣୀଟି ଜଣେ ରାଜପୁତ୍ରଙ୍କୁ ନେଇ। ରାଜାପୁଅ ଜଣକ ଗୋଟିଏ ଜଳପରୀର ପ୍ରେମରେ ପଡିଗଲେ ଏବଂ ତାକୁ ବିବାହ କରି ତା'ର ସମୁଦ୍ରତଳ ମହଲରେ ରହିଗଲେ। ସମୟ କ୍ରମେ ସେମାନଙ୍କର ତିନୋଟି ପୁଅ ହେଲେ। ଏଇ ପୁଅମାନେ କିନ୍ତୁ ସମୁଦ୍ର ତଳେ ନ ରହି ସୁମାତ୍ରାର 'ପାଲେମ୍‌ବାଙ୍ଗ'ଠାରେ ନିଜର ରାଜ୍ୟ ସ୍ଥାପନ କଲେ। ଏମାନଙ୍କ ମଧ୍ୟରେ ସବୁଠାରୁ ସାନ 'ନୀଳଉତ୍ତମ'। ନୀଳଉତ୍ତମଙ୍କର ନୂଆ ନୂଆ ଜାଗା ଦେଖିବାର ଖୁବ୍ ସଉକ। ଥରେ ପ୍ରଶାନ୍ତ ମହାସାଗରରେ ନିଜର ନୌକାରେ ବୁଲୁ ବୁଲୁ ତାଙ୍କ ଆଖିରେ ପଡିଲା ଦ୍ୱୀପଟିଏ। ଦ୍ୱୀପଟିର ନିକଟକୁ ଯିବାକୁ ଚାହିଁଲେ ସେ। କିନ୍ତୁ ଇତି ମଧ୍ୟରେ ସମୁଦ୍ରରେ ଗୋଟିଏ ବିରାଟ ଝଡ ଆସିଲା ଏବଂ ନୀଳଉତ୍ତମଙ୍କର ନୌକାଟି ଓଲଟି ପଡିଲା। ନୀଳଉତ୍ତମ ଭାସି ଭାସି ଯାଇ ଏଇ ଦ୍ୱୀପ କୂଳରେ ପହଞ୍ଚିଲେ। ସାମ୍ନାରେ ଆଗରୁ କେବେ ଦେଖି ନ ଥିବା ଏକ ଅଦ୍ଭୁତ ଜନ୍ତୁ। ସ୍ଥାନୀୟ ଲୋକଙ୍କୁ ପଚାରି ଜାଣିଲେ ଯେ ଜନ୍ତୁଟିର ନାମ 'ସିଂହ'। ପରେ ଯେତେବେଳେ ନୀଳଉତ୍ତମ ଦ୍ୱୀପଟିରେ ନିଜର ରାଜ୍ୟ ସ୍ଥାପନ କରିବାକୁ ଚାହିଁଲେ, ସେତେବେଳେ ସେ ପ୍ରଥମେ ଭେଟିଥିବା ଜନ୍ତୁଟିର ନାମ ଅନୁସାରେ ଦ୍ୱୀପଟିର ନାମ ରଖିଥିଲେ ''ସିଂହପୁରା''। କାହାଣୀଟି କେତେ ଦୂର ସତ, ତାହା କେହି ଜାଣନ୍ତି ନାହିଁ। ତେବେ ଦ୍ୱୀପଟିର ନାମ ଯେ ଏକଦା 'ସିଂହପୁରା' ଥିଲା, ଏକଥା ସତ।

ପରେ ଯେତେବେଳେ ବ୍ରିଟିଶ୍ ଇଷ୍ଟ ଇଣ୍ଡିଆ କମ୍ପାନୀର ଜଣେ ଅଫିସର- ଷ୍ଟାମଫୋର୍ଡ ରାଫଲସ୍ ୧୮୧୯ରେ ଏଇଠାରେ ବ୍ରିଟିଶ୍ ପ୍ରାଧାନ୍ୟ ସ୍ଥାପନ କରିଲେ,

ସେତେବେଳେ ସେମାନଙ୍କର ଉଚ୍ଚାରଣରେ ''ସିଂହପୁରା'' ନାମଟି ବଦଳିଗଲା ''ସିଙ୍ଗାପୁର''ରେ। ଆଧୁନିକ ସିଙ୍ଗାପୁର କଥା ଚିନ୍ତା କଲେ ଯାହାଙ୍କ ନାମ ପ୍ରଥମ ମନକୁ ଆସେ ସେ ହେଉଛନ୍ତି ଏଇ ଷ୍ଟାମ୍‌ଫୋର୍ଡ ରାଫଲସ୍। ମାତ୍ର ପନ୍ଦର ବର୍ଷ ବୟସରେ ଷ୍ଟାମ୍‌ଫୋର୍ଡ ଇଷ୍ଟ ଇଣ୍ଡିଆ କମ୍ପାନୀରେ କିରାଣୀ ରୂପେ ଯୋଗ ଦେଇଥିଲେ। କିନ୍ତୁ ନିଜର ଅଧ୍ୟବସାୟ ବଳରେ ମାତ୍ର ୩୦ ବର୍ଷ ବୟସରେ ସେ ଜାଭାର ଗଭର୍ଣ୍ଣର ଜେନେରାଲ୍ ହୋଇ ପାରିଥିଲେ।

ସାର୍ ଷ୍ଟାମ୍‌ଫୋର୍ଡ କିନ୍ତୁ ତତ୍‌କାଳୀନ ଗଭର୍ଣ୍ଣର ଜେନେରାଲମାନଙ୍କ ପରି ନିଷ୍ଠୁର ନଥିଲେ। ସେ ସ୍ଥାନୀୟ ଲୋକମାନଙ୍କର ସୁଖ ଦୁଃଖ ବୁଝିବାକୁ ଚେଷ୍ଟା କରିଥିଲେ। ସେ ବୋଧହୁଏ ହାତଗଣତା ବ୍ରିଟିଶ ଅଫିସର୍‌ମାନଙ୍କ ମଧ୍ୟରୁ ଜଣେ, ଯିଏ କି ସ୍ଥାନୀୟ ଲୋକମାନଙ୍କ ସହିତ ଭଲ ଭାବରେ ମିଶି ପାରିବା ପାଇଁ ମାଲୟ ଭାଷା ଶିଖି ନେଇଥିଲେ। କିନ୍ତୁ ''ନେଟିଭ'ମାନଙ୍କ ସହିତ ମଣିଷ ଭଳି ବ୍ୟବହାର କରିବାର ଫଳ ତାଙ୍କୁ ଭୋଗିବାକୁ ପଡିଲା। ବ୍ରିଟିଶ ସରକାରର ବିଷଦୃଷ୍ଟିରେ ସେ ପଡିଗଲେ ଏବଂ ତାଙ୍କୁ 'ଶାସ୍ତି' ଦେବା ପାଇଁ ଅନାମଧେୟ ବେନ୍ କୁଲେନ୍ ଅଞ୍ଚଳର ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ରୂପେ ପଠାଇ ଦିଆଗଲା। ଏହି ଶାସ୍ତି କିନ୍ତୁ ସାର୍ ଷ୍ଟାମ୍‌ଫୋର୍ଡ ରାଫଲସଙ୍କ ଜୀବନରେ ଥିଲା ଆଶୀର୍ବାଦ ଭଳି। ଏହି ନିଯୁକ୍ତି ସମୟରେ ସେ ଜାଣିବାକୁ ପାଇଲେ ଯେ, ଡଚ୍ ଇଷ୍ଟଇଣ୍ଡିଆ କମ୍ପାନୀ କ୍ରମଶଃ ଦୂର ପ୍ରାଚ୍ୟରେ ନିଜର ପ୍ରାଧାନ୍ୟ ବିସ୍ତାର କରିବାରେ ଲାଗିଛି। ଭାରତରେ ନିଜର ସ୍ଥାନ ସୁଦୃଢ କରିବାପାଇଁ ବ୍ରିଟିଶ ଇଷ୍ଟ ଇଣ୍ଡିଆ କମ୍ପାନୀ ଏତେ ବେଶୀ ତତ୍ପର ଯେ ଦୂର ପ୍ରାଚ୍ୟ ପ୍ରତି ଦୃଷ୍ଟି ଦେବା ଆଦୌ ସମ୍ଭବ ହେଉନାହିଁ। କେବଳ ସେତିକି ନୁହଁ ଦୂର ପ୍ରାଚ୍ୟରେ ବ୍ରିଟିଶ ଅଧୀନରେ ଥିବା ମାତ୍ର ଦୁଇଟି ଦ୍ୱୀପ ବେନ୍‌କୁଲେନ୍ ଓ ପେନାଙ୍ଗକୁ ଡଚ୍‌ମାନଙ୍କୁ ଦେଇ ତା' ବଦଳରେ ଭାରତରେ କେତୋଟି ଡଚ୍ ଅଧୀନସ୍ଥ ଅଞ୍ଚଳ ଅଧିକାର କରିବା ବିଷୟ ବ୍ରିଟିଶ ଇଷ୍ଟ ଇଣ୍ଡିଆ କମ୍ପାନୀ ଚିନ୍ତା କରିବା ଆରମ୍ଭ କରିଦେଇଥାଏ।

ଏଇ ସବୁ ଘଟଣା ଦେଖି ବିବ୍ରତ ହୋଇ ପଡିଥିଲେ ସାର୍ ରାଫଲସ୍। ଶେଷରେ ସେ ଭାରତର ଗଭର୍ଣ୍ଣର ଜେନେରାଲ ଲର୍ଡ ହେଷ୍ଟିଙ୍ଗସ୍‌ଙ୍କୁ ଦୂର ପ୍ରାଚ୍ୟର ବିଶେଷ କରି 'ସିଙ୍ଗାପୁର'ର ମହତ୍ତ୍ୱ ବୁଝେଇ ପାରିଥିଲେ। ଭାରତ ଓ ଚୀନକୁ ଯାଉଥିବା ଜାହାଜମାନ ଏହି ଦ୍ୱୀପର ବନ୍ଦରକୁ ବ୍ୟବହାର କରିପାରିବ ଏବଂ

ତର୍‌ମାନଙ୍କର ସାମ୍ରାଜ୍ୟ ବୃଦ୍ଧିରେ ବାଧା ମଧ୍ୟ ଦେଇ ପାରିବ। ଲର୍ଡ ହେଷ୍ଟିଙ୍ଗସ୍‌ଙ୍କଠାରୁ ଅନୁମତି ପାଇବା ପରେ ଜାନୁଆରୀ ୨୯, ୧୮୧୯ରେ ସାର୍ ଷ୍ଟାମ୍‌ଫୋର୍ଡ ରାଫଲସ୍ ସିଙ୍ଗାପୁରରେ ପାଦ ଦେଇଥିଲେ। ସିଙ୍ଗାପୁରରେ ବ୍ରିଟିଶ୍ ଇଷ୍ଟଇଣ୍ଡିଆ କମ୍ପାନୀର ବିଜୟ ପତାକା ଉଡିଲା ସତ, କିନ୍ତୁ ସନ୍ତସନ୍ତିଆ ଜଙ୍ଗଲଘେରା ଦ୍ୱୀପଟିରେ ସାର୍ ରାଫଲସ୍‌ଙ୍କୁ ବହୁତ କଷ୍ଟ କରିବାକୁ ପଡିଥିଲା। ମଶା, ମାଛି, ମୂଷା ଆଉ କୁମ୍ଭୀର ଘେରା ଦ୍ୱୀପଟି ଯେ ଏଇଭଳି ଏକ ପ୍ରଧାନ ବ୍ୟବସାୟିକ କେନ୍ଦ୍ରରେ ପରିଣତ ହୋଇ ପାରିଲା, ଏଥିପାଇଁ ସବୁ ଗୌରବର ଅଧିକାରୀ ସାର୍ ରାଫଲସ୍।

ସିଙ୍ଗାପୁରର ପରିବର୍ତ୍ତନ ନେଇ ବହୁତ ମଜା ମଜା କାହାଣୀମାନ ରହିଛି। ଦ୍ୱୀପଟି ତ ବ୍ରିଟିଶ୍ ଇଷ୍ଟଇଣ୍ଡିଆ କମ୍ପାନୀ ହାତକୁ ଆସିଲା, କିନ୍ତୁ ଜଙ୍ଗଲରେ ଇଂରେଜମାନେ ଚଳିବେ କେମିତି? ଖାଇବେ କ'ଣ? ତେଣୁ ସମୁଦ୍ର କୂଳରେ ପରୀକ୍ଷା ସୂତ୍ରରେ ବହୁ ରକମର ଫସଲ ଚାଷ କରାଗଲା, କିନ୍ତୁ ଦେଖାଗଲା ଯେ ନଡିଆ ବ୍ୟତୀତ ଆଉ କୌଣସି ଫସଲ ହେଲା ନାହିଁ। ଜଣେ କୃଷିବିତ୍ ମତ ଦେଲେ ଯେ ଅନ୍ୟାନ୍ୟ ଫସଲ ଚାଷ କରିବା ପାଇଁ ସମୁଦ୍ରରୁ ଦୂରକୁ ଅର୍ଥାତ୍ ଦ୍ୱୀପ ଭିତରକୁ ଯିବାକୁ ପଡିବ। କିନ୍ତୁ ଦ୍ୱୀପ ଭିତରର ଘନ ଜଙ୍ଗଲ ଭିତରେ ପଶିବ କିଏ? ଜଙ୍ଗଲ ପରିଷ୍କାର ହେବ କେମିତି? ସେଇଠି ଯେ ମଣିଷଖିଆ ବାଘ ଭର୍ତ୍ତି। ଶୁଣାଯାଉଥିଲା ଯେ ଗୋଟିଏ ବର୍ଷ ଭିତରେ ୩୦୦ ମଣିଷ ବାଘମାନଙ୍କର ଶୀକାର ହୋଇ ସାରିଛନ୍ତି। ଏହି ସମସ୍ୟାର ମୁକାବିଲା କରିବା ପାଇଁ ସରକାର ଏକ ନୂତନ ଉପାୟ ଚିନ୍ତା କଲେ। ଘୋଷଣା କରାଗଲା ଯେ, ଯିଏ ଗୋଟିଏ ମୃତ ବାଘ ଆଣି ଦେଖାଇବ, ତାକୁ ପୁରସ୍କାର ଦିଆଯିବ। ପୁରସ୍କାର ଲୋଭରେ ବହୁ ଶିକାରୀ ତତ୍ପର ହୋଇ ପଡିଲେ। କ୍ରମେ ବାଘ ବଂଶ ନିପାତ ହୋଇଗଲା। ସିଙ୍ଗାପୁରର ଶେଷ ବାଘଟିକୁ ଯେଉଁ ସ୍ଥାନରେ ଗୁଳି କରି ମରା ଯାଇଥିଲା ସେଇଠାରେ ଏବେ ଗଢି ଉଠିଛି ଏକ ବିରାଟ ହୋଟେଲ ଏବଂ ହୋଟେଲଟିର ଉପଯୁକ୍ତ ନାମକରଣ କରାଯାଇଛି "ରାଫଲସ୍"। ବର୍ତ୍ତମାନ ସିଙ୍ଗାପୁର ଚିଡିଆଖାନା ବ୍ୟତୀତ ଦ୍ୱୀପର କୌଣସି ଅଂଶରେ ବାଘ ଦେଖିବାକୁ ମିଳେ ନାହିଁ।

ସାର୍ ରାଫଲସ୍‌ଙ୍କ ଆଗ୍ରହ ଓ ତତ୍ତ୍ୱାବଧାନରେ ସିଙ୍ଗାପୁର ବାଣିଜ୍ୟର କେନ୍ଦ୍ରସ୍ଥଳୀ ହୋଇ ପଡିଲା ଏବଂ ଏହାର ସୁନାମ ଚାରିଆଡେ ବ୍ୟାପିବାକୁ ଲାଗିଲା। ସେତେବେଳେ

ଏହି ନୂତନ ଦ୍ୱୀପ ପ୍ରତି ଆକର୍ଷିତ ହୋଇ ମଧ୍ୟଏସିଆ, ଚୀନ, ଭାରତ ଓ ଇଉରୋପର ଅନ୍ୟାନ୍ୟ ଦେଶରୁ ବଣିକମାନେ ଆସି ପହଞ୍ଚିବାରେ ଲାଗିଲେ। ସେମାନଙ୍କର ଉଦ୍ଦେଶ୍ୟ ଥିଲା ବ୍ୟବସାୟରେ ବେଶ୍ ଲାଭ କରିନେଇ ନିଜନିଜର ଦେଶକୁ ଫେରିଯିବେ। କିନ୍ତୁ ଏମାନଙ୍କ ମଧ୍ୟରୁ ଅଧିକାଂଶ ଆଉ ଫେରି ନ ଯାଇ ବସବାସ କରି ଏଇଠି ରହିଗଲେ। ସେଇଥିପାଇଁ ବୋଧହୁଏ ଏଇ ଦେଶରେ ବହୁ ଧର୍ମ, ବହୁ ସଭ୍ୟତା ଓ ବହୁ ସଂସ୍କୃତିର ସମ୍ମିଶ୍ରଣ ଦେଖାଯାଏ। କେଉଁଠୁ ଗୋଟେ ପଢିଥିଲି ଯେ ବର୍ତ୍ତମାନ ସିଙ୍ଗାପୁରବାସୀ ବୋଲି ଯେଉଁମାନଙ୍କୁ କୁହାଯାଉଛି, ସେମାନଙ୍କ ମଧ୍ୟରୁ ଅଧିକାଂଶ ଏକଦା ଥିଲେ ଭାରତ, ଚୀନ ବା ମାଲୟେସିଆର ଅଧିବାସୀ। ଏଆରପୋର୍ଟରୁ ଟ୍ୟାକ୍ସି ନେଇ ଗଲାବେଳେ ରାସ୍ତାଘାଟରେ ଚଲାଚଲ କରୁଥିବା ଲୋକମାନଙ୍କୁ ଦେଖି ମୁଁ କଥାଟିର ସତ୍ୟତା ଅନୁମାନ କରି ପାରିଲି। କିଏ ଶାଢୀ ପିନ୍ଧିଛି ତ କିଏ ସାରଙ୍ଗ। କିଏ ପୁଣି ପିନ୍ଧିଛି ସ୍କାର୍ଟ, ବ୍ଲାଉଜ। ଅଥଚ ସମସ୍ତେ ମିଶି ଯାଇଛନ୍ତି ସିଙ୍ଗାପୁରର ଜୀବନସ୍ରୋତରେ।

ଆମ ଟ୍ୟାକ୍ସି ଆଗେଇ ଚାଲିଥାଏ। ରାସ୍ତାର ଦୁଇ କଡରେ ମୁଣ୍ଡ ଟେକି ରହିଥିବା ଅଟ୍ଟାଳିକାମାନ ଦେଖି ମୁଁ ଭାବୁଥିଲି ୨୩୫ ବର୍ଗମାଇଲ ବିସ୍ତୃତ ଜଙ୍ଗଲୀ ଦ୍ୱୀପର ମାତ୍ର ଦୁଇ ଶହ ବର୍ଷ ମଧ୍ୟରେ କି ବିରାଟ ପରିବର୍ତ୍ତନ! ଦ୍ୱୀପଟି ଅତ୍ୟାଧୁନିକ ହୋଇଛି। ଉନ୍ନତ ହୋଇଛି। କିନ୍ତୁ ସିମେଣ୍ଟ ବା କଂକ୍ରିଟ୍‌ର ଜଙ୍ଗଲ ହୋଇ ଯାଇନାହିଁ। ସ୍ଥାନେ ସ୍ଥାନେ ବଗିଚା, ପାର୍କ। ନିଜ ଦ୍ୱୀପକୁ ସମ୍ପୂର୍ଣ୍ଣ ରୂପେ ସୁନ୍ଦର କରିବାକୁ ସିଙ୍ଗାପୁରବାସୀ ଯେମିତି ଦୃଢ ପ୍ରତିଜ୍ଞ। ମୁଁ କୌଣସି ଏକ ଖବର କାଗଜରେ ଥରେ ପଢିଥିଲି ଯେ ସିଙ୍ଗାପୁରର ସରକାର ବାୟୁମଣ୍ଡଳ ଯେପରି ଦୂଷିତ ନ ହୁଏ, ସେଥିନେଇ ବେଶ୍ ତତ୍ପର। ଏତେ ବଡ ସହର, କିନ୍ତୁ ତୁଳନାତ୍ମକ ଭାବରେ ଗାଡିର ସଂଖ୍ୟା ଖୁବ୍ କମ୍। ମୁଁ ଶୁଣିଛି ଯେ ଗାଡି କିଣିବା ପୂର୍ବରୁ ଏଠାରେ ସରକାରଙ୍କଠାରୁ ଅନୁମତି ନେବାକୁ ପଡେ।

ବେଶ୍ କିଛି ସମୟ ପରେ ଆମ ଟ୍ୟାକ୍ସି ସହରର କୋଳାହଳମୟ ରାସ୍ତାରୁ ବାହାରି ଆସିଲା। ଏ ଯେମିତି ଏକ ଭିନ୍ନ ସହର; ବଡ ବଡ କୋଠା, ଚକ୍‌ଚକ୍ ଦୋକାନର ଅନ୍ତରାଳରେ ଯେ ଏକ ଅକୃତ୍ରିମ ସିଙ୍ଗାପୁର ରହିଛି, ଏ କଥା କେତେଜଣ ବା ଜାଣନ୍ତି! ସିଙ୍ଗାପୁରର ଏଇ ଅଂଶରେ ରହିଛି ଚିଡିଆଖାନା। ପୃଥିବୀର ଶ୍ରେଷ୍ଠ ଚିଡିଆଖାନାଗୁଡିକ ମଧ୍ୟରେ ଏହା ଅନ୍ୟତମ। ତୁ ତ ଜାଣୁ,

ତାରଘେରା ପଞ୍ଜୁରୀ ଭିତରେ ପଶୁପକ୍ଷୀଙ୍କୁ ଦେଖିଲେ ମତେ ଭୀଷଣ କଷ୍ଟ ହୁଏ। ତେଣୁ ଚିଡ଼ିଆଖାନାର ନାଁ ଶୁଣି ମୋ ମନରେ ବିଶେଷ ଆଗ୍ରହ ନ ଥିଲା। କିନ୍ତୁ ଟିକେଟ କାଟି ଭିତରେ ପଶିବା ପରେ ମୁଁ ଜାଣିଲି ଯେ, ସିଙ୍ଗାପୁରର ଚିଡ଼ିଆଖାନା ଅନ୍ୟାନ୍ୟ ବହୁ ଚିଡ଼ିଆଖାନାଠାରୁ ଭିନ୍ନ। ଏହାର ବିଶେଷତ୍ୱ ହେଲା, ଏଠାରେ ପଶୁପକ୍ଷୀଙ୍କୁ ପ୍ରାକୃତିକ ବାତାବରଣରେ ରଖାଯାଇଥାଏ। ମୁଁ ଖୁସି ହୋଇଗଲି। ଚିଡ଼ିଆଖାନା ତ ମୁଁ ଅନେକ ଦେଖିଛି, କିନ୍ତୁ ମୋର ଯେମିତି ମନେହେଲା ଯେ ସିଙ୍ଗାପୁର ଚିଡ଼ିଆଖାନାର ଗୋଟିଏ ସ୍ୱତନ୍ତ୍ର ମାଧୁର୍ଯ୍ୟ ରହିଛି। ବଡ ଆଶ୍ଚର୍ଯ୍ୟର କଥା, ତାରଜାଲି ବା ପଞ୍ଜୁରୀ ଏଠି ଖୁବ୍ କମ୍ ଦେଖିବାକୁ ମିଳେ। ସତରେ ମିତ୍ର, ଖୋଲା ମେଲା ଜାଗାରେ ସାମ୍ରାଜ୍ୟ ବିସ୍ତାର କରି ରହିଥିବା ପଶୁପକ୍ଷୀଙ୍କର ବ୍ୟବହାର ବି ଭିନ୍ନ।

ଏତେ ବଡ ଚିଡ଼ିଆଖାନା। ଚାଲି ଚାଲି ବୁଲିବା ସମ୍ଭବ ନୁହଁ। ସେଇଥିପାଇଁ ଏଠି ଟ୍ରାମ୍ କାର୍‌ର ବ୍ୟବସ୍ଥା ରହିଛି। ଟିକେଟ କାଟି ଆମେ ଟ୍ରାମ୍ କାରରେ ବସି ଚାଲିଲୁ। ଟ୍ରାମ୍‌ରେ ଲାଗିଛି ଟେପ୍‌ରେକର୍ଡର୍। ଟ୍ରାମ୍‌ର ଗତି ସାଙ୍ଗକୁ ଧାରା ବିବରଣୀ ଚାଲିଛି। ବିଭିନ୍ନ ପଶୁପକ୍ଷୀ ଦେଖି ସାରିବା ପରେ ଆମକୁ ଟ୍ରାମ୍‌କାର୍‌ଟି ଛାଡିଦେଲା ଓରାଙ୍ଗଓଟାନ୍ ରହିଥିବା ସ୍ଥାନ ନିକଟରେ। ସିଙ୍ଗାପୁର ଚିଡ଼ିଆଖାନାର ପ୍ରଧାନ ଆକର୍ଷଣ ହେଉଛି ଏଠି ଥିବା ବହୁ ଓରାଙ୍ଗଓଟାନ୍। ସେମାନଙ୍କର ମଣିଷ ଭଳି ବ୍ୟବହାର ଦେଖିଲେ ଜଣେ ଆଶ୍ଚର୍ଯ୍ୟ ନ ହୋଇ ରହି ପାରିବ ନାହିଁ। ହଠାତ୍ ଆମର ଦୃଷ୍ଟି ପଡିଗଲା ଗୋଟିଏ ସାଇନ୍ ବୋର୍ଡ ଉପରେ। ସେଇଠି ଲେଖାଥିଲା "Have breakfast with an Orangoton" 'ଓରାଙ୍ଗଓଟାନ ସାଙ୍ଗରେ ଜଳଖିଆ ଖାଇବା'। ସେ ପୁଣି କ'ଣ ?

ତୋ ଭାଇନା କିଛି ନ କହି ଆମକୁ ଚିଡ଼ିଆଖାନାର ରେସ୍ତୋରାଁ ଭିତରକୁ ନେଇଗଲେ। ରେସ୍ତୋରାଁ ଭିତରେ, ବାହାରେ ବେଶ୍ ଭିଡ। ରେସ୍ତୋରାଁ ଭିତରେ ପଶି ଗୋଟିଏ ଟେବୁଲ ଚାରିକଡେ ବସିଯିବା ପରେ ଆମ ଆଖି ବଡବଡ ହୋଇଗଲା। ଆମଠାରୁ ଅଳ୍ପ ଦୂରରେ ଚୌକୀ ଉପରେ ଭଦ୍ରଲୋକଟିଏ ଭଳି ବସି ରହିଛି ଗୋଟିଏ ଓରାଙ୍ଗଓଟାନ୍। ତା' ସାମ୍ନାରେ କଦଳୀ ଓ ବହୁ ରକମର ଫଳମୂଳ। ଖୋଲା ହୋଇ ରହିଥିବା ଓରାଙ୍ଗଓଟାନଟି ନିର୍ବିକାର ଭାବରେ କଦଳୀର ଚୋପା ଖୋଲି ଖାଇ ଚାଲିଥାଏ।

ଓରାଙ୍ଗଓଟାନ୍ ପାଖରେ ବସି ଫଟୋ ଉଠେଇବା ପାଇଁ ଲମ୍ବା ଧାଡ଼ି । ଛୋଟ ପିଲାମାନେ ଓରାଙ୍ଗଓଟାନ୍ ବାଁକଡରେ ବସି ଯାଉଥାଆନ୍ତି । ପଛରେ ଠିଆ ହୋଇଥିବା ଚିଡ଼ିଆଖାନାର କର୍ମକର୍ତ୍ତା ଜଣକ ଓରାଙ୍ଗଓଟାନ୍‌ର ବାଁ ହାତଟିକୁ ପିଲାମାନଙ୍କର କାନ୍ଧରେ ପକେଇ ଦେଉଥାଆନ୍ତି । ଆଉ ସାଙ୍ଗେ ସାଙ୍ଗେ ଫଟୋ ଉଠେଇ ନେଉଥାଆନ୍ତି ପିଲାମାନଙ୍କର ମା' ବାପାମାନେ । ମଝିରେ ମଝିରେ ଓରାଙ୍ଗଓଟାନ୍‌ଟି ଚାରିଆଡେ ଆଖି ବୁଲେଇ ନେଉଥାଏ । ପୁଣି ତଳକୁ ଚାହିଁ ଖାଇବାରେ ମନ ଦେଉଥାଏ । ସେଇ ମୁହୂର୍ତ୍ତରେ ମୋର ମନେ ହେଲା ଯେ ଚିଡ଼ିଆଖାନା ବୁଲି ଦେଖିବାଟା ଆମର ସାର୍ଥକ ହୋଇଗଲା ।

ଓରାଙ୍ଗ୍ଓଟାନ୍ ସାଙ୍ଗରେ ଜଳଖିଆ ଖାଇବା ଯେ ଏଠିକାର ଏକମାତ୍ର ଆକର୍ଷଣ, ତା' ନୁହଁ । ଏଠାରେ ଅନ୍ୟ ଏକ ବିରାଟ ଆକର୍ଷଣ ହେଲା ''ବିଭିନ୍ନ ଜନ୍ତୁଙ୍କର ଖେଳ'' ବା Animal Show । ଆମେ ଯେହେତୁ ଖୁବ୍ ଶୀଘ୍ର ଚିଡ଼ିଆଖାନାରେ ପହଞ୍ଚି ଯାଇଥିଲୁ, ସେଇଥିପାଇଁ ହାତରେ କମ୍ ସମୟ ଥିଲେ ମଧ୍ୟ ସବୁଗୁଡ଼ିକ ଖେଳ ଦେଖିପାରିଲୁ । ''ମାଙ୍କଡମାନଙ୍କର ଖେଳ'', ''ହାତୀମାନଙ୍କ ଖେଳ'', ''ସିଲ୍ ଓ ସି ଲାୟନ୍‌ଙ୍କର ଖେଳ''- କି ସୁନ୍ଦର ! ଖେଳ ସରିଯିବା ପରେ ମଧ୍ୟ ଦର୍ଶକମାନେ ନିଜ ନିଜର ସ୍ଥାନରୁ ଘୁଞ୍ଚୁ ନ ଥାଆନ୍ତି । ତାଳିମାଡରେ କମ୍ପି ଯାଉଥାଏ ସ୍ଥାନଟି ।

ତୁ ସର୍କସରେ ଜନ୍ତୁମାନଙ୍କର ଖେଳ ଦେଖିଥିବୁ ନିଶ୍ଚୟ । ସର୍କସ୍‌ର ଖେଳ ଓ ଚିଡ଼ିଆଖାନାର ପଶୁପକ୍ଷୀଙ୍କ ଖେଳ ଭିତରେ ତଫାତ୍ ଅନେକ । ସର୍କସ୍‌ରେ ଦର୍ଶକମାନଙ୍କର ମନୋରଞ୍ଜନ କରିବା ପାଇଁ ଜନ୍ତୁମାନଙ୍କୁ ଶାସ୍ତିର ଭୟ ଦେଖାଇ ଖେଳଗୁଡ଼ିକ ଶିଖାଯାଇଥାଏ । ଖେଳଗୁଡ଼ିକ ପୁଣି କି ଭୟଙ୍କର । ନିଆଁ ଭିତରେ ଡେଇଁବା, ଦାନ୍ତରେ ଲୁହା କାମୁଡ଼ି ଝୁଲି ରହିବା- ଏସବୁ ତ ନିହାତି ବର୍ବରୋଚିତ । କିନ୍ତୁ ଚିଡ଼ିଆଖାନାର ଜନ୍ତୁମାନେ ଯଦିଓ ଦର୍ଶକମାନଙ୍କୁ ଆନନ୍ଦ ଦେଇଥାଆନ୍ତି, ସେମାନେ ପ୍ରଦର୍ଶନ କରୁଥିବା ଅଧିକାଂଶ ଖେଳ ହେଉଛି ସେମାନଙ୍କର ପ୍ରାକୃତିକ ବ୍ୟବହାର । ଖେଳ ପରିଚାଳକମାନେ ବିଭିନ୍ନ ରକମର ଶବ୍ଦ ମାଧ୍ୟମରେ ଜନ୍ତୁମାନଙ୍କର ବ୍ୟବହାର ନିୟନ୍ତ୍ରଣ କରେଇ ଥାଆନ୍ତି । ଆମେ ସେମାନଙ୍କଠାରୁ ଜାଣିଲୁ ଯେ ଜନ୍ତୁମାନଙ୍କୁ ଖାଇବାକୁ ନ ଦେଇ ବା ମାଡ ଭୟ ଦେଖାଇ ଏସବୁ ଖେଳ ଶିଖାଯାଇ ନାହିଁ । ବରଂ ଠାର ଓ ଶବ୍ଦ ମାଧ୍ୟମରେ ଜନ୍ତୁମାନଙ୍କ ସହିତ ବନ୍ଧୁତ୍ୱ

ସ୍ଥାପନ କରି ସେମାନଙ୍କର ସବୁଦିନିଆ ବ୍ୟବହାରକୁ ଦର୍ଶକମାନଙ୍କୁ ଦେଖାଯାଇଥାଏ। ସି ଲାୟନ ଓ ସିଲ୍ ଖେଳର ଉଦାହରଣ ତତେ ଦେଉଛି। ଖେଳ ପରିଚାଳକଙ୍କର କଥା ଅନୁସାରେ ଏମାନେ ଲାଞ୍ଜ ଉପରେ ଭରା ଦେଇ ଚାଲୁଥାଆନ୍ତି। ଶରୀରର ଦୁଇପଟେ ଥିବା ପକ୍ଷକୁ ତାଳି ପରି ବଜାଉଥାଆନ୍ତି; ପାଟିରେ ବିଭିନ୍ନ ରକମର ଶବ୍ଦ କରୁଥାଆନ୍ତି, କେତେବେଳେ ପୁଣି ମୁହଁ ଉପରେ ବଲଟିଏ ରଖି ପାଣି ଭିତରେ ଚାଲିବା ଭଳି ପହଁରୁ ଥାଆନ୍ତି। ଏଇ ସମସ୍ତ ହେଉଛି ସିଲ୍ ବା ସି ଲାୟନମାନଙ୍କର ଅକୃତ୍ରିମ ବ୍ୟବହାର।

ପଶୁ ପକ୍ଷୀମାନଙ୍କର ଖେଳ ଦେଖି ସାରିବା ପରେ ଆମେ ଟ୍ରାମକାରରେ ଚିଡିଆଖାନାର ଫାଟକ ନିକଟକୁ ଫେରି ଆସିଲୁ। ଚିଡିଆଖାନାର ବ୍ୟବସ୍ଥା ଏତେ ସୁନ୍ଦର ଯେ ମାତ୍ର ଚାରିଘଣ୍ଟା ମଧ୍ୟରେ ପ୍ରାୟ ସବୁକିଛି ଦେଖା ହୋଇଗଲା। ହାତରେ ତଥାପି ଅନେକ ସମୟ। ତେଣୁ ଆମେ ସ୍ଥିର କଲୁ ଯେ ପ୍ରସିଦ୍ଧ ଜୁରଙ୍ଗ୍ ଅଭୟାରଣ୍ୟ (Jurong Bird Sanctuary) ଦେଖିବାକୁ ଯିବୁ।

ଜୁରଙ୍ଗ୍ ହେଉଛି ସିଙ୍ଗାପୁରର ପ୍ରଧାନ ଶିଳ୍ପାଞ୍ଚଳ। ବିଭିନ୍ନ କାରଖାନା ଓ ଅଫିସ୍ ମେଳରେ ଗଢାଯାଇଛି ଏଇ ଅଭୟାରଣ୍ୟଟି। ମଣିଷ ଓ ପ୍ରକୃତି ଉଭୟଙ୍କ ସହଯୋଗରେ ଅଭୟାରଣ୍ୟଟି ହୋଇ ପାରିଛି ଅନନ୍ୟ। ଅଭୟାରଣ୍ୟର ପ୍ରବେଶ ଦ୍ୱାରରେ ରହିଛି ବହି ଦୋକାନଟିଏ। ଏଇଠି ରଖାଯାଇଥିବା ଗୋଟିଏ ପାମ୍ପଲେଟ୍ ମୁଁ ଉଠାଇ ଆଣିଲି। ସେଇଠି ଲେଖାଥିଲା :

"ପ୍ରକୃତିକୁ ବାଦ୍ ଦେଇ ମଣିଷ କେବେହେଲେ ଚଳି ପାରିବ ନାହିଁ। ମଣିଷ ଯେହେତୁ ପ୍ରତି ପଦକ୍ଷେପରେ ପ୍ରକୃତି ଉପରେ ନିର୍ଭରଶୀଳ, ସେଥିପାଇଁ ତା'ର ମଧ୍ୟ କିଛି କର୍ତ୍ତବ୍ୟ ରହିଛି। ମଣିଷର ମନେ ରଖିବା ଉଚିତ୍ ଯେ ବିଶ୍ୱରେ ଥିବା ବିଭିନ୍ନ ଜୀବନର ରକ୍ଷଣାବେକ୍ଷଣର ଦାୟିତ୍ୱ ସଂପୂର୍ଣ୍ଣ ରୂପେ ତା'ର।"

କଥାଟି କେତେ ସୁନ୍ଦର! ଏଇ କଥାଟିର ଯଥାର୍ଥତା ଅଭୟାରଣ୍ୟ ମଧ୍ୟରେ ଦେଖାଯାଏ। ମଣିଷର ହାତ ତିଆରି କୃତ୍ରିମ ଜଙ୍ଗଲ ମଧ୍ୟରେ ଉଡି ବୁଲୁଛନ୍ତି ବହୁ ପ୍ରକାରର ପକ୍ଷୀ। କେଉଁଠି ପୋଖରୀ ଉପର ଦେଇ ଉଡି ଯାଉଛନ୍ତି ସ୍ପେନିଶ୍ ଫ୍ଲାମିଙ୍ଗୋ (Spanish Flamingo) ତ କେଉଁଠି ଅଷ୍ଟ୍ରେଲିଆର ଏମୁମାନେ ନିର୍ଭୟ ଭାବରେ ଠୁକୁ ଠୁକୁ ହୋଇ ଚାଲୁଥାଆନ୍ତି। କେଉଁଠି ପୁଣି ଗଛ କୋରଡରେ ବସି ପକ୍ଷୀମାନେ ସୃଷ୍ଟି କରୁଥାଆନ୍ତି ସୁନ୍ଦର ସଙ୍ଗୀତର ସ୍ୱର।

ତିନିଟା ଘଣ୍ଟା କେମିତି ଯେ ଚାଲିଗଲା ଜଣା ପଡିଲା ନାହିଁ। ଆଉ ବାକୀ ରହିଥିବା ସମୟ ଏତେ କମ୍ ଯେ ଅନ୍ୟ କୌଣସି ପର୍ଯ୍ୟଟନ ସ୍ଥଳୀକୁ ଯିବା ସମ୍ଭବ ନୁହଁ। କିନ୍ତୁ ଏଥାରପୋର୍ଟ ଯାଇ ସେଇତକ ସମୟ ନଷ୍ଟ କରିବାର କୌଣସି ଅର୍ଥ ହୁଏ ନାହିଁ। ତୋ ଭାଇନା କହିଲେ, ''ସିଙ୍ଗାପୁରର ସୁନ୍ଦର ଅଞ୍ଚଳଗୁଡ଼ିକ ତ ଦେଖିଲ, ଏଥର ଚାଲ ଲିଟିଲ୍ ଇଣ୍ଡିଆ (Little India) ଦେଖାଇ ନେବି।'' ଲିଟିଲ୍ ଇଣ୍ଡିଆ ଅର୍ଥାତ୍ କ୍ଷୁଦ୍ର ଭାରତ। ସିଙ୍ଗାପୁରର ଏଇ ଅଞ୍ଚଳରେ ଭାରତୀୟମାନଙ୍କ ସଂଖ୍ୟା ବହୁତ ବେଶୀ। ସେଇଠି ଥିବା ବିଭିନ୍ନ ଦୋକାନ ବଜାର ମଧ୍ୟ ପ୍ରାୟ ଭାରତୀୟମାନଙ୍କ ଦ୍ୱାରା ପରିଚାଳିତ। କିଣାକିଣି ଉଦ୍ଦେଶ୍ୟରେ ଭାରତରୁ ଆସୁଥିବା ଅଧିକାଂଶ ଲୋକ ଲିଟିଲ ଇଣ୍ଡିଆର ଦୋକାନମାନଙ୍କୁ ହିଁ ସାଧାରଣତଃ ଆସିଥାଆନ୍ତି। ଏହାର କାରଣ ହେଲା, ଦୋକାନୀମାନେ ପ୍ରାୟ ସେଇସବୁ ଜିନିଷ ଏକାଠି କରି ରଖିଥାଆନ୍ତି, ଯାହାକି ଜଣେ ସାଧାରଣ ଭାରତୀୟ କିଣିବାକୁ ଚାହିଁଥାଏ। ମିତୁ, ଆମ ଟ୍ୟାକ୍‌ସିଟି ଯେତେବେଳେ ଲିଟିଲ୍ ଇଣ୍ଡିଆରେ ପହଞ୍ଚିଲା, ମୋର ବିଶ୍ୱାସ ହେଲା ନାହିଁ ଯେ ଏହା ହେଉଛି ସିଙ୍ଗାପୁରର ଗୋଟିଏ ଅଂଶ। ସିଙ୍ଗାପୁରର ଅନ୍ୟାନ୍ୟ ଅଞ୍ଚଳଠାରୁ କେତେ ତଫାତ୍। ମୋର କଟକର ଗଳି କଥା ମନେ ପଡିଗଲା। ଅପରିଷ୍କାର ରାସ୍ତା କଡରେ ଅନାକର୍ଷଣୀୟ ଦୋକାନ, ରେଷ୍ଟୋରାଁ ସବୁ। ଏଇଠିକୁ ପୁଣି ଏତେ ସଉକରେ ଲୋକମାନେ କିଣାକିଣି କରିବାକୁ ଆସନ୍ତି ?

ହଠାତ୍ ମୋର ଆଖିରେ ପଡିଗଲା ଭାରତରେ ବହୁ ସୁନାମ କରିଥିବା ଗୋଟିଏ ତଥାକଥିତ ପ୍ରସିଦ୍ଧ ଦୋକାନ। ମୋ ମନରେ କୌତୁହଳ, କ'ଣ ଅଛି ଏ ଦୋକାନରେ ଯେ ସିଙ୍ଗାପୁର ଆସୁଥିବା ଅଧିକାଂଶ ଭାରତୀୟ ଏହାର ଏତେ ପ୍ରଶଂସା କରିଥାଆନ୍ତି ? ଟ୍ୟାକ୍‌ସି ଅଟକେଇ ଆମେ ଦୋକାନ ଭିତରେ ପାଦ ଦେଲୁ। ତିନି ମହଲାର ବିରାଟ ଦୋକାନ। ଖୁନ୍ଦା ହୋଇ ରହିଛି ଜିନିଷ। ଖୁବ୍ ସାବଧାନରେ ଚାଲିବାକୁ ପଡୁଥାଏ। ଜଣେ ସାଧାରଣତଃ ଯାହା ଯାହା କିଣିବାକୁ ଚାହିଁଥାଏ, ସେ ସବୁର ଅଭାବ ନାହିଁ। କିନ୍ତୁ ସେଇସବୁ ଜିନିଷ ସଜା ହୋଇ ରହିଛି ବୋଲି କହିବାଟା ଉଚିତ ହେବ ନାହିଁ। ବରଂ ଜିନିଷ ''ଗଦା'' ହୋଇ ରଖା ହୋଇଛି କହିବାଟା ଅଧିକ ପ୍ରଯୁଜ୍ୟ ହେବ। କାହିଁକି ଯେ ଏମାନେ ଜିନିଷଗୁଡ଼ିକ ସିଙ୍ଗାପୁରର ଅନ୍ୟାନ୍ୟ ଅଞ୍ଚଳର ଦୋକାନ ଭଳି ସଜେଇ ରଖି ନାହାନ୍ତି ବୁଝି

ପାରିଲି ନାହିଁ। 'ଆଖିକୁ ସୁନ୍ଦର ଲାଗିବା' କଥା ତ ପୁଣି ଅଛି।

ଲିଟିଲ୍ ଇଣ୍ଡିଆର ଦୋକାନ ବଜାର, ରାସ୍ତାଘାଟ ଦେଖିବା ପରେ ମୋ ମନ ଖରାପ ହୋଇଗଲା। 'ଭାରତ' ଶବ୍ଦ ସହିତ ଯୋଡା ସିଙ୍ଗାପୁରର ଏଇ ଅଂଶଟି ଆଉ ଟିକିଏ ପରିଷ୍କାର ପରିଚ୍ଛନ୍ନ ଓ ସୁନ୍ଦର ହୋଇ ପାରି ନ ଥାଆନ୍ତା! ଏହାକୁ ଦେଖିବା ପରେ ବିଦେଶୀମାନଙ୍କର ଆମ ଦେଶ ଓ ଦେଶବାସୀଙ୍କ ସମ୍ପର୍କରେ କି ଧାରଣା ହେବ ?

ଲିଟିଲ୍ ଇଣ୍ଡିଆ ଦେଖି ସାରିବା ପରେ ଆଉ କୁଆଡେ ଯିବାର ସମୟ ନ ଥିଲା। ଏଆର୍‌ପୋର୍ଟକୁ ଆମେ ଫେରି ଆସିଲୁ। ପୁଣି ପନ୍ଦର ଷୋହଳ ଘଣ୍ଟାର ଲମ୍ବା ଯାତ୍ରା। ତୁ ହୁଏତ ଭାବୁଥିବୁ ଯେ ଖୁବ୍ କଷ୍ଟ ହୋଇଥିବ ମୋତେ। ନା- ଆଦୌ ନୁହଁ। ଅଧା ସମୟ ତ ମୋର ଶୋଇ ଶୋଇ କଟିଗଲା। ବାକୀ ସମୟତକ ମୁଁ ସିଙ୍ଗାପୁରରେ ଦେଖି ପାରି ନ ଥିବା ଦର୍ଶନୀୟ ସ୍ଥାନର ଲିଷ୍ଟଟିଏ ପ୍ରସ୍ତୁତ କରିବାରେ କଟେଇ ଦେଲି। ଲୋକମାନେ ସିନା ଜିନିଷ କିଣିବା ପାଇଁ ସିଙ୍ଗାପୁର ବାରମ୍ବାର ଯାଆନ୍ତି, କିନ୍ତୁ ମୁଁ ଆଉ ଥରେ ଯିବି ବାକୀ ରହି ଯାଇଥିବା ଦର୍ଶନୀୟ ସ୍ଥାନ ସବୁ ଦେଖିବାକୁ। ''ଦୂର ପ୍ରାଚ୍ୟର ରାଣୀ''କୁ ଆଉ ଟିକିଏ ନିକଟରୁ ଦେଖିବି।

ଆଜି ପାଇଁ ତେବେ ଏତିକି। ଆଶା କରୁଛି ତୁମେମାନେ ଭଲରେ ଥିବ। ତୋ ଚିଠିର ଅପେକ୍ଷାରେ ରହିଲି। ମୋ ଭଳି ଉତ୍ତର ଦେବାରେ ଡେରି ଆଦୌ କରିବୁ ନାହିଁ।

ଇତି

ତୋର 'ନାନୀ'

କୁପରଟିନୋ
ନଭେମ୍ବର ୨୪, ୧୯୯୧

ସ୍ନେହର ମିତୁ,

ତୋ ଚିଠି ପାଇଛି। ଚିଠିରେ କଟକ ଦଶହରାର ଯେଉଁ ବିସ୍ତୃତ ବିବରଣୀ ତୁ ଦେଇଛୁ, ତାକୁ ପଢ଼ିବା ପରେ ମୋର ପିଲାଦିନ କଥା ମନେ ପଡ଼ିଗଲା। ସେତେବେଳେ ଯିଏ ଯେଉଁଠି ଥାଉ ନା କାହିଁକି, ଦଶହରା ବେଳେ ସମସ୍ତେ ଆସି ଏକାଠି ହେଉଥିଲେ କଟକରେ। ଅଜାଘରେ। ତଳ ତେଲଙ୍ଗା ବଜାରର ବିରାଟ ଦୁଇ ମହଲା କୋଠା। ବର୍ଷର ଅଧିକାଂଶ ସମୟ ଘରଟି ଖାଲି ପଡ଼ିଥାଏ, କିନ୍ତୁ ଦଶହରାର କେତୋଟି ଦିନ ସଂପୂର୍ଣ୍ଣ ରୂପେ ବଦଳିଯାଏ ଘରଟିର ଚେହେରା। ପ୍ରତି କୋଠରୀରେ ସୁଟ୍‌କେଶ, ଲୁଗା, ପତ୍ରିକା- କାହାର କେଉଁ ଜିନିଷ ଜାଣିବା କଷ୍ଟକର। ଆଉ ସେଇ ଯେଉଁ ବିରାଟ ଲମ୍ବା ବାରଣ୍ଡା- ସେଠି ଥିଲା ଆମ ପିଲାମାନଙ୍କର ରାଜୁତି। ସାନମାମୁଁଙ୍କୁ 'ନେତା' କରି ଭଙ୍ଗା କାଠପାଳିଆ ଓ ରବର୍ ବଲ୍‌ରେ କ୍ରିକେଟ୍‌ଠାରୁ ଆରମ୍ଭ କରି ଲୁଡୁ, ଟ୍ରେଡ୍, ତାସ୍, ସ୍କ୍ରାବଲ୍- କେଉଁଟା ବି ବାଦ୍ ଯାଏ ନାହିଁ। ଖେଳ ସାଙ୍ଗରେ ଅନବରତ ପାଟି ଚାଲିଥାଏ। ଦାମ ମହାରାଜର ମିଠା ଠାରୁ ଆରମ୍ଭ କରି ରଘୁ ଦହିବରା, ଆଳୁଦମ୍, ଗୁପୁନି, ବାଖରାବାଦର ସେଉ ଗାଣ୍ଠିଆ।

ଦିନସାରା ପାଟି ଚାଲିଲେ ମଧ୍ୟ ଦିପହରେ ବା ରାତିରେ ଖାଇବା ବେଳକୁ

କିଛି ଅସୁବିଧା ହୁଏ ନାହିଁ। ତଳେ ଆସନ ପକାଇ କଦଳୀପତ୍ରରେ ଖାଇବା ଯେତିକି ମଜା, ରାତିରେ ସତରଞ୍ଜି, ଗଦି ପକେଇ ଚଟାଣରେ କରାଯାଇଥିବା ବିଛଣାରେ ଧାଡି ହୋଇ ଶୋଇ ଗପ କରିବା ସେତିକି ମଜା। ନବମୀ ଦିନ ଦୁଇ ପ୍ରହର ଖିଆ ସରୁଣୁ ନ ସରୁଣୁ ଆମେମାନେ ଡେଇଁବା ଆରମ୍ଭ କରି ଦେଉ। ସେଦିନ ମେଢ ଦେଖି ଯିବା ଦିନ। ଦିନ ଚାରିଟା ବେଳେ ଦାଣ୍ଡ ବାରଣ୍ଡାରେ ଗୋଡ ଉପରେ ଗୋଡ ପକେଇ ଅଜା ବସିଯାଆନ୍ତି। କିଏ ଜଣେ ଯାଇ ଛଅ ସାତଟା ରିକ୍ସା ଡାକି ଆଣେ। ଅଜା ରିକ୍ସାବାଲାଙ୍କ ସାଙ୍ଗରେ ରାସ୍ତା ଆଉ ଭଡା ଛିଣ୍ଡେଇ ସାରିବା ବେଳକୁ ଆମେ ସବୁ ନୂଆ ଲୁଗାପଟା ପିନ୍ଧି ତିଆର। ତା'ପରେ ରିକ୍ସାରେ ବସି କଟକ ବୁଲା। ଫେରିବା ପରେ ମା, ମାଉସୀ ବା ମାଇଁ ଆଉ ରୋଷେଇ ଘରେ ପଶନ୍ତି ନାହିଁ। ପାଖ ହୋଟେଲ୍‌ରୁ ରୁଟୀ ତରକାରୀ କିଣା ହୋଇ ଆସେ।

ଦଶମୀ ଦିନ ରାତିରୁ ମୂର୍ତ୍ତି ବିସର୍ଜନ ଆରମ୍ଭ ହୋଇଯାଏ। ରାତିଯାକ ଅଧା ଶୋଇ ଅଧା ଚେଇଁ ବିସର୍ଜନ ଦେଖିଲେ ମଧ୍ୟ ଏକାଦଶୀ ଦିନ ଆମେ ଖୁବ୍ ସକାଳୁ ଉଠିପଡୁ। ସେଦିନ ଯେ କାଠଯୋଡୀ କୂଳରେ ଯାତ୍ରା। ସକାଳୁ ଉଠି ଆମେ କେବଳ ଅପେକ୍ଷା କରିଥାଉ କେତେବେଳେ 'ଯାତ୍ରାଖର୍ଚ୍ଚ' ମିଳିବ। ବଡମାନଙ୍କଠାରୁ ଯାତ୍ରା ଖର୍ଚ୍ଚ ମିଳିଯିବା ପରେ ଏକାଠି ହୋଇ ଯାତ୍ରା ଦେଖା, ମାଟି କଣ୍ଢେଇ, ବନ୍ଧୁକ, ବେଲୁନ୍ କିଣା, କଟକ ଚାଟ୍ ଖିଆ- ପଇସାତକ ଉଡେଇ ଦେଇ ଘରକୁ ଫେରୁ ଫେରୁ ଦିନ ସାଢେ ବାରଟା, ଗୋଟାଏ।

କେତେ ଶୀଘ୍ର ଦିନ ଚାଲିଯାଏ।

ଆଜି ଅଜା ଆଉ ନାହାନ୍ତି, କିନ୍ତୁ 'ଅଜା ଘର' ସେଇମିତି ଅଛି। ଏବେ ମଧ୍ୟ ଦଶହରା ବେଳେ ସମସ୍ତେ ଏକାଠି ହେବାର ଚେଷ୍ଟା କରନ୍ତି, ରିକ୍ସାରେ ବସି ମୂର୍ତ୍ତି ଦେଖି ଯାଆନ୍ତି। ଆମକୁ ଆଉ ଯାତ୍ରା ଖର୍ଚ୍ଚ ମିଳେ ନାହିଁ। ବରଂ ଆମେ ଯାତ୍ରା ଖର୍ଚ୍ଚ ଦେଇଥାଉ। କିନ୍ତୁ ଦେବା ଓ ପାଇବାର ଆନନ୍ଦ ତ ସେଇ ଏକ।

ଆଉ ଏ ବର୍ଷ କଥା ଦେଖ। ଏହା ଭିତରେ ଦଶହରା ଆସି ଚାଲିଗଲା, ଅଥଚ ମୁଁ ଏଠି ତା'ର ଆଭାସ ମଧ୍ୟ ପାଇଲି ନାହିଁ। ତୁ ନିଶ୍ଚୟ ଭାବୁଥିବୁ, ଆମେରିକାରେ ଏତେ ଭାରତୀୟ, ସେମାନେ କ'ଣ ଏକାଠି ହୋଇ କୌଣସି

ଭାରତୀୟ ଉତ୍ସବ ପାଳନ କରନ୍ତି ନାହିଁ? ହଁ, ଭାରତୀୟମାନେ କେତୋଟି ବିଶେଷ ଉତ୍ସବ ସାଧ ମତେ ପାଳନ କରନ୍ତି, କିନ୍ତୁ ବେଶ୍ କିଛି ତଫାତ୍ ରହିଯାଏ। ତତେ ଉଦାହରଣଟିଏ ଦେଉଛି। ଆମେ ରହୁଥିବା ସହରଠାରୁ କିଛି ଦୂର ପ୍ଲେଜାଣ୍ଟନ୍ (Pleasanton) ସହରରେ ଦୁର୍ଗାପୂଜା ହୁଏ। ଚାନ୍ଦା ଦେଇ ପୂଜା ହୁଏ, ଭୋଜିଭାତ ହୁଏ। କିନ୍ତୁ ପୂଜାଟି ଠିକ୍ ପୂଜା ନୁହଁ। ବରଂ ସମସ୍ତେ ଏକାଠି ହେବାର ଦିନ କହିପାରୁ। ଏହାର କାରଣ ହେଲା ଏଠି ଦୁର୍ଗାପୂଜା ଠିକ୍ ତିଥି ନକ୍ଷତ୍ର ଅନୁସାରେ ପାଳନ କରାଯାଏ ନାହିଁ। ଏହା ପାଳିତ ହୁଏ 'ୱିକ୍ ଏଣ୍ଡ'ରେ ଅର୍ଥାତ୍ ଶନିବାର ବା ରବିବାରରେ। ଜୀବନଯାତ୍ରାର ବେଗ ଏ ଦେଶରେ ଏତେ ଚଞ୍ଚଳ, କାହାର ବା କାମରୁ ଛୁଟୀ ନେଇ ଉତ୍ସବ ପାଳନ କରିବାକୁ ସମୟ ଅଛି?

ଆମେରିକାରେ ଭାରତୀୟମାନଙ୍କର ସଂଖ୍ୟା ତୁଳନାତ୍ମକ ଭାବରେ କମ୍। ତେଣୁ ସେମାନଙ୍କର ଉତ୍ସବ ଯଦିବା ପାଳିତ ହୁଏ, ଆଖିରେ ପଡେ ନାହିଁ। କିନ୍ତୁ ଏହାର ଅର୍ଥ ନୁହଁ, ଆମେରିକାବାସୀ କୌଣସି ରକମର ଉତ୍ସବ ପାଳନ କରନ୍ତି ନାହିଁ। ବରଂ ଆମର ଯେମିତି ଦଶହରା ପରେ କୁମାର ପୂର୍ଣ୍ଣମୀ, କାଳୀପୂଜା, ଦୀପାବଳୀ, ପ୍ରଥମାଷ୍ଟମୀ- ଗୋଟିଏ ପରେ ଗୋଟିଏ ପର୍ବର ଧାଡି ଲାଗିଯାଏ, ଠିକ୍ ସେଇଭଳି ଅକ୍ଟୋବର ମାସରୁ ଆମେରିକାର ପ୍ରତି କୋଣରେ ଉତ୍ସବର ଲହରୀ ଖେଳିଯାଏ। ହ୍ୟାଲୋୱିନ୍, ଥ୍ୟାଙ୍କ୍ସଗିଭିଙ୍ଗ୍, କ୍ରିସ୍ମାସ୍ ଏବଂ ନୂଆବର୍ଷ।

ଅକ୍ଟୋବର ମାସ ହେବା ପରେ ପରେ ହିଁ ମୁଁ ପିଲାମାନଙ୍କ ମୁହଁରୁ କେତୋଟି ନୂଆ ନୂଆ କଥା ଶୁଣିବାକୁ ପାଇଲି।

"ମା, ଜାଣ, ହ୍ୟାଲୋୱିନ୍‌ରେ ଆମ ସ୍କୁଲ୍‌ରେ ପ୍ୟାରେଡ୍ ହେବ। ଯାହାର ବେଶ ସବୁଠାରୁ ଭୟଙ୍କର ହେବ, ତାକୁ ପ୍ରଥମ ପୁରସ୍କାର ଦିଆଯିବ।"

"ମା, ହ୍ୟାଲୋୱିନ୍ ପାଇଁ ମତେ ଡାହାଣୀ (Witch) ପୋଷାକ କିଣିଦେବ। ତା' ସାଙ୍ଗରେ ଡାହାଣୀର ମୁଖା ଓ ଗୋଟାଏ ଝାଡୁ।"

ହ୍ୟାଲୋୱିନ୍! ହ୍ୟାଲୋୱିନ୍! ଆଉ ଯେମିତି ଆଲୋଚନା କରିବା ପାଇଁ ଆମର କୌଣସି କଥା ନାହିଁ। ହ୍ୟାଲୋୱିନ୍ ଶବ୍ଦଟି ଯେ ମୁଁ ଆଗରୁ ଆଦୌ ଶୁଣିନାହିଁ, ତା' ନୁହଁ। ଏହା ଗୋଟିଏ ଖ୍ରୀଷ୍ଟିଆନ୍ ଉତ୍ସବ; କେବଳ ଏତିକି ଜଣା ଥିଲା। କିନ୍ତୁ କ'ଣ ଏଇ ହ୍ୟାଲୋୱିନ୍, କାହିଁକି ଏହା ପାଳିତ ହୁଏ- ଏ ସବୁ ବିଷୟରେ ମୋର କୌଣସି ଧାରଣା ନଥିଲା। ପିଲାଙ୍କୁ ପଚାରି କିଛି ଲାଭ

ହେଲା ନାହିଁ। "ହ୍ୟାଲୋଓ୍ବିନ୍‌ରେ ସମସ୍ତେ ଭାରି ମଜା କରନ୍ତି।" "ସମସ୍ତେ ବିଭିନ୍ନ ରକମର ପୋଷାକ ଓ ମୁଖା ପିନ୍ଧନ୍ତି।" -ଏଇ ଭଳିଆ ଦୁଇ ଚାରିଟା ସରଳ ଉତ୍ତର ଦେଇ ସେମାନେ ମୋ ଜେରାରୁ ବର୍ତ୍ତିଗଲେ। ମୁଁ କିନ୍ତୁ ଏତିକିରେ ସନ୍ତୁଷ୍ଟ ହୋଇ ପାରିଲି ନାହିଁ। ମୋର କେତେଜଣ ସାଙ୍ଗଙ୍କୁ ପଚାରି, ଲାଇବ୍ରେରୀରେ କେତୋଟି ବହିର ପୃଷ୍ଠା ଓଲଟାଇ ମୁଁ ଶେଷରେ ଯାହା ଜାଣିବାକୁ ପାଇଲି ତାହା ହେଉଛି ଏଇମିତି-

ଯଦିଓ ହ୍ୟାଲୋଓ୍ବିନ୍ ବର୍ତ୍ତମାନ ଏକ ଖ୍ରୀଷ୍ଟିଆନ୍ ଉତ୍ସବ, ଏହାର ଆରମ୍ଭ ଖ୍ରୀଷ୍ଟଧର୍ମର ବହୁ ପୂର୍ବରୁ ଆୟାରଲ୍ୟାଣ୍ଡରେ ହୋଇଥିଲା। ଏଇମିତିରେ ଦେଖିଲେ ପ୍ରାୟ ଅଢ଼େଇହଜାର ବର୍ଷ ତଳର ପୁରୁଣା ଉତ୍ସବ ଏଇଟି। ସେତେବେଳେ ଫସଲ ଅମଳର ଉତ୍ସବ ରୂପେ ଏହା ଆୟାରଲାଣ୍ଡରେ ପାଳିତ ହେଉଥିଲା। ଖରାଦିନର ହାଡଭଙ୍ଗା ଖଟଣୀ ପରେ ଯେତେବେଳେ ଅମାରଗୁଡିକ ଫସଲରେ ଭରିଯାଉଥିଲା, ସେତେବେଳେ ସ୍ୱସ୍ତିର ନିଃଶ୍ୱାସ ନେଇ ଲୋକମାନେ ନିଆଁ ପୁଇଁବାକୁ ବସି ଯାଉଥିଲେ। ଖରାଦିନ ଶେଷ। ସାମ୍ନାରେ ଶୀତ। ଖରାଦିନକୁ ବିଦାୟ ଦେବା, ଶୀତଦିନକୁ ସ୍ୱାଗତ ଜଣାଇବା ଓ ପୂର୍ବପୁରୁଷଙ୍କୁ ମନେ ପକାଇବା ଥିଲା ଏଇ ଉତ୍ସବର ଉଦ୍ଦେଶ୍ୟ। ସେତେବେଳେ ଲୋକମାନେ ପାହାଡ ଉପରେ ନିଆଁ ଜାଳି ପୂର୍ବପୁରୁଷମାନଙ୍କର ଆତ୍ମାକୁ ସ୍ୱାଗତ ଜଣାଉଥିଲେ। ଅନ୍ୟ କେତେକ ଅଞ୍ଚଳରେ ନିଆଁ ଭିତରକୁ ବିଭିନ୍ନ ଜିନିଷ ପକେଇବାର ପ୍ରଥା ଥିଲା। ଅନେକଟା ଆମମାନଙ୍କର ଅଗ୍ନିପୂର୍ଣ୍ଣିମା ଭଳି। ବିଭିନ୍ନ ରକମର ଜିନିଷ ନିଆଁକୁ ପକେଇ ସାରିବା ପରେ ତା' ପରଦିନ ପାଉଁଶ ଭିତରୁ ସେଇ ଜିନିଷ ଗୁଡିକର ଅବସ୍ଥା ଦେଖି, ସେଇ ଅନୁସାରେ ଭବିଷ୍ୟତ ଗଣନା କରାଯାଉଥିଲା। ଉଦାହରଣ ସ୍ୱରୂପ ଯଦି ଜଣେ ଲୋକ ଗୋଟିଏ ନିଆଁ ଭିତରକୁ ପକାଏ ଏବଂ ତା' ପରଦିନ ପାଉଁଶ ଭିତରେ ସେଇ ଗୋଟିଟି ଯଦି ଦେଖା ନ ଯାଏ, ତେବେ ଗଣନା କରାଯାଉଥିଲା ଯେ ଲୋକଟିର ଆୟୁଷ ଆଉ ବେଶୀ ଦିନ ନାହିଁ। ସେହିପରି ଅବିବାହିତ ବ୍ୟକ୍ତିଟିଏ ନିଆଁ ଭିତରକୁ ବାଦାମ ପକାଇଲେ ସେଗୁଡିକ ଯଦି ଫୁଟି ଉଠୁଥିଲା, ତେବେ ତାହାର ଅର୍ଥ ଧରାଯାଉଥିଲା ଯେ ବ୍ୟକ୍ତିଟିର ବିବାହ ସୁଖମୟ ହେବ ନାହିଁ। ଭବିଷ୍ୟତ ଗଣନା କରିବା ପାଇଁ ନିଆଁ ଭିତରକୁ ଜିନିଷ ପକେଇବା ଏକମାତ୍ର ପଦ୍ଧତି ନ ଥିଲା। ଅନ୍ୟାନ୍ୟ ବହୁ ରକମ ଉପାୟ କରି ଭବିଷ୍ୟତ ଗଣନା କରାଯାଉଥିଲା।

ଅବିବାହିତା ଝିଅମାନେ ଗୋଟିଏ ହାତରେ ମହମବତୀ ଓ ଅନ୍ୟ ହାତରେ ଦର୍ପଣ ନେଇ ଅନ୍ଧାର ଘର ଭିତରେ ବା ସିଡ଼ି ତଳେ ଚାଲୁଥିଲେ। ସେମାନଙ୍କର ଧାରଣା ଥିଲା ଯେ ହାତରେ ଧରିଥିବା ଦର୍ପଣରେ ସେମାନେ ସେମାନଙ୍କର ଭବିଷ୍ୟତ ସ୍ୱାମୀମାନଙ୍କର ମୁହଁ ଦେଖି ପାରିବେ। ସେଇଭଳି ଅବିବାହିତ ଯୁବକଟିଏର ଆଖିରେ ଅନ୍ଧପୁଟୁଳି ବାନ୍ଧି ତାକୁ ତିନୋଟି ଗିନାରୁ ଗୋଟିଏ ଛୁଇଁବାକୁ କୁହାଯାଉଥିଲା। ସେ ଯଦି ଖାଲି ଥିବା ଗିନାଟି ବାଛୁଥିଲା, ତେବେ ଧରାଯାଉଥିଲା ଯେ ସେ ସାରା ଜୀବନ ଅବିବାହିତ ହିଁ ରହିବ। ଯଦି ସେ କାଦୁଅ ପାଣି ଥିବା ଗିନାକୁ ଧରି ପକାଉଥିଲା, ତେବେ ଗଣନା କରାଯାଉଥିଲା ଯେ ସେ ଜଣେ ବିଧବାକୁ ବିବାହ କରିବ। ଯଦି ସେ ସ୍ୱଚ୍ଛ ପାଣି ଥିବା ଗିନାକୁ ଛୁଉଁଥିଲା, ତେବେ ଧରାଯାଉଥିଲା ଯେ କମ୍ ବୟସର ଝିଅଟିଏ ତା'ର ପତ୍ନୀ ହେବ। ଆଉ ଗୋଟିଏ ଅଦ୍ଭୁତ ଧାରଣା ଲୋକମାନଙ୍କର ଥିଲା ଯେ, ଏହି ରାତିରେ ଯଦି ଜଣେ ରୁଟିର ଟୁକୁଡ଼ାଟିଏ ଖାଇକରି ଶୁଏ, ତେବେ ତା'ର ସମସ୍ତ ଇଚ୍ଛା ପୂରଣ ହୁଏ।

ଖ୍ରୀଷ୍ଟଧର୍ମର ପ୍ରସାର ପରେ ଖ୍ରୀଷ୍ଟିଆନ୍‌ମାନେ ପ୍ରଥମେ ଏହି ପ୍ରାଚୀନ ପ୍ରଥାକୁ ହତାଦର କଲେ ମଧ୍ୟ କ୍ରମେ ଗ୍ରହଣ କରିନେଲେ। କିନ୍ତୁ ଥରେ ଗ୍ରହଣ କରି ନେବା ପରେ ଖ୍ରୀଷ୍ଟିଆନ୍‌ମାନେ ଏହାର ପରିଭାଷା ବଦଳାଇ ଦେଲେ। ସେମାନଙ୍କ ମତରେ ହ୍ୟାଲୋୱିନ୍ ଅର୍ଥ 'Holy ବା Hallowed Evening'। ନଭେମ୍ବର ୧କୁ ଖ୍ରୀଷ୍ଟିଆନ୍‌ମାନେ "ଅଲ୍ ସେଣ୍ଟସ୍ ଡେ" ବା 'ମହାତ୍ମାମାନଙ୍କର ଦିବସ' ରୂପେ ପାଳନ କରନ୍ତି। ଜଣାଅଜଣା ସବୁ ମହାତ୍ମାଙ୍କର ଉଦ୍ଦେଶ୍ୟରେ ସମର୍ପିତ ଏଇ ଦିନଟି। 'ଅଲ୍ ସେଣ୍ଟସ୍ ଡେ'ର ପୂର୍ବ ସନ୍ଧ୍ୟାକୁ ହ୍ୟାଲୋୱିନ୍ ରୂପେ ପାଳନ କରାଯିବା ପାଇଁ ଶେଷରେ ଖ୍ରୀଷ୍ଟିଆନ୍‌ମାନେ ସ୍ଥିର କଲେ।

ଯେତେବେଳେ ଆୟାରଲ୍ୟାଣ୍ଡର ଲୋକମାନେ ନୂତନ ପୃଥିବୀର ସନ୍ଧାନରେ ଆସି ଆମେରିକାରେ ପହଞ୍ଚିଲେ, ସେତେବେଳେ ସେମାନେ ଏଇ ପ୍ରଥାକୁ ଆମେରିକାରେ ପହଞ୍ଚାଇ ଦେଲେ। ନୂତନ ଦେଶରେ, ନୂତନ ପରିବେଶରେ ପ୍ରାଚୀନ ପ୍ରଥାଟିରେ ବହୁ ପରିବର୍ତ୍ତନ ଦେଖାଗଲା। ଯେମିତି 'ଲଣ୍ଠନ ଜାଳିବା ପ୍ରଥା'। ହ୍ୟାଲୋୱିନ୍‌ର ଗୋଟିଏ ପ୍ରଧାନ ପ୍ରଥା ହେଲା ଲଣ୍ଠନଟିଏ ଜାଳି ଘର ଦୁଆରରେ ରଖିବା। ଏହାକୁ କୁହାଯାଏ, Jack 'O'-Lantern। ଏଭଳି ଏକ ନାମ ପଛରେ ମଜାର କାହାଣୀଟିଏ ରହିଛି।

ଆୟାରଲ୍ୟାଣ୍ଡରେ ଗୋଟିଏ କୃପଣ ଲୋକ ଥିଲା । ତା' ନାଁ ଥିଲା ଜ୍ୟାକ୍ । ଜ୍ୟାକ୍ ସବୁବେଳେ ସଇତାନ୍ ସାଙ୍ଗରେ ଥଟ୍ଟା ଖେଳୁଥିଲା । ବିରକ୍ତ ହୋଇ ସଇତାନ୍ ତାକୁ ଅଭିଶାପ ଦେଇଥିଲା ଯେ, ମୃତ୍ୟୁ ପରେ ଜ୍ୟାକ୍ ନା ସ୍ୱର୍ଗକୁ ଯାଇ ପାରିବ ନା ନର୍କକୁ । ସେ କେବଳ ଲଣ୍ଠନଟିଏ ଧରି ପୃଥିବୀ ଚାରିପାଖରେ ଅନବରତ ଘୁରିବ । ସଇତାନ୍ ସାଙ୍ଗରେ ଥଟ୍ଟା ଖେଳିବାର ପରିମାଣକୁ ମନେ ରଖିବା ପାଇଁ ହ୍ୟାଲୋଓ୍ୱିନ୍ ଦିନ ଲଣ୍ଠନ ଜାଳନ୍ତି ସମସ୍ତେ । ଆମେରିକା ଆସିବା ପରେ ଆଇରିଶ ଲୋକମାନେ ଦେଖିଲେ ଯେ କାଗଜ କାଟି ଲଣ୍ଠନ ତିଆରି କରିବା ଅପେକ୍ଷା ଆମେରିକାରେ ମିଳୁଥିବା ବିଶାଳ କଖାରୁଗୁଡ଼ିକରେ ଲଣ୍ଠନ ତିଆରି କରିବା ଭାରି ସୁବିଧାଜନକ । ସେହିଦିନଠାରୁ ଆଜିଯାଏ କଖାରୁରେ ଲଣ୍ଠନ କରିବା ପ୍ରଥା ଚାଲିଆସୁଛି । କଖାରୁର ଭିତର ଚାଞ୍ଛି ପରିଷ୍କାର କରି ଏହାର ମୋଟା ଖୋଳପାରେ ଆଖି, ନାକ, ପାଟି ଭଳି କଣା କରାଯାଏ ଏବଂ ଏହା ଭିତରେ ମହମବତୀଟିଏ ଜଳେଇ ଦିଆଯାଏ ।

ହ୍ୟାଲୋଓ୍ୱିନ୍‌ର ବେଶ୍ କିଛିଦିନ ଆଗରୁ ରାସ୍ତା କଡ଼ମାନଙ୍କରେ କଖାରୁ ବିକ୍ରି ହେବା ଆରମ୍ଭ ହୋଇଯାଏ । ସେଇଭଳି ଡିପାର୍ଟମେଣ୍ଟାଲ୍ ଷ୍ଟୋର୍‌ମାନଙ୍କରେ ବିଭିନ୍ନ ପ୍ରକାରର ବେଶ ପୋଷାକ, ମୁଖା ବିକ୍ରି କରାଯାଏ । ପିଲାମାନଙ୍କ ମଧ୍ୟରେ ଆଲୋଚନା ଚାଲେ କିଏ କେମିତି ବେଶ ହେବ । ସମସ୍ତେ ଯେ କେବଳ ଡାହାଣୀ, ରାକ୍ଷସ ବା ସଇତାନ ବେଶ ହୁଅନ୍ତି ତା' ନୁହଁ । ଅନେକ ମଧ୍ୟ ବାଘ, ଭାଲୁ, ଠେକୁଆ ବା ପରୀ, ବ୍ୟାଲେରିନା ଏଇଭଳି ବେଶ ହୋଇଥାଆନ୍ତି ।

ହ୍ୟାଲୋଓ୍ୱିନ୍ ସନ୍ଧ୍ୟାରେ ଅର୍ଥାତ୍ ଅକ୍ଟୋବର ୩୧ ସନ୍ଧ୍ୟାରେ ଏଇ ସବୁ ବେଶ ପୋଷାକ ପିନ୍ଧି ମୁହଁ ହାତ ରଙ୍ଗ କରି ପିଲାମାନେ ଘର ଘର ବୁଲନ୍ତି । ହାତରେ ବ୍ୟାଗ୍ । କବାଟ ଠକ୍ ଠକ୍ କରି ସେମାନେ କହନ୍ତି, 'Trick or Treat' । ଏତିକି ଶୁଣିବା ପରେ ଘରେ ଥିବା ଲୋକମାନେ ଆଗରୁ କିଣି ରଖିଥିବା ଚକଲେଟ ଆଣି ପିଲାମାନଙ୍କ ବ୍ୟାଗ୍‌ରେ ରଖିଦିଅନ୍ତି । 'ଟ୍ରିକ ଅର୍ ଟ୍ରିଟ୍' ପ୍ରଥାଟି ବେଶୀ ପୁରୁଣା ନୁହଁ । ପ୍ରାଚୀନ ଯୁଗରେ 'ଅଲ୍ ସେଣ୍ଟସ୍ ଡେ'ର ପୂର୍ବ ସନ୍ଧ୍ୟାରେ ଗରୀବ ଲୋକମାନେ ଘର ଘର ବୁଲି କେକ୍ ମାଗୁଥିଲେ । ସେଇ ପ୍ରଥାକୁ ବଞ୍ଚେଇ ରଖିବା ପାଇଁ ଛୋଟ ପିଲାମାନେ ଘର ଘର ବୁଲି ଚକୋଲେଟ ମାଗିଥାଆନ୍ତି ।

ସ୍କୁଲରେ ସାଙ୍ଗମାନଙ୍କର ପ୍ରଭାବ, ଏଣେ ପଡ଼ିଶା ଘର ପିଲାମାନଙ୍କର ବିଭିନ୍ନ

ଆୟୋଜନ- ଏସବୁ ଦେଖି ରୁମି, ଗିଟି ଡେଇଁବା ଆରମ୍ଭ କରିଦେଲେ। ସେମାନଙ୍କର ମଧ୍ୟ ପୋଷାକ ଦରକାର, ମୁଖା ଦରକାର। ମୁଁ ବାଧ୍ୟରେ ପଡି ଦୋକାନକୁ ଯାଇ ଜଣକ ପାଇଁ ଭାଲୁର ପୋଷାକ ଓ ଅନ୍ୟ ଜଣକ ପାଇଁ ଠେକୁଆର ପୋଷାକ କିଣି ଆଣିଲି।

ଅକ୍ଟୋବର ୩୧ ତାରିଖ ଦିନ ସକାଳୁ ଉଠି ସେମାନଙ୍କର ଯେମିତି ଆଉ କିଛି କଥା ନାହିଁ। ନିଜ ନିଜର ପୋଷାକ ନେଇ ସେମାନେ ସ୍କୁଲ ଚାଲିଗଲେ। ଦିନ ସାଢେ ବାରଟା ବେଳେ ସ୍କୁଲରେ ପ୍ୟାରେଡ। ମୁଁ ଠିକ୍ ସମୟରେ ପହଞ୍ଚିଗଲି। ମିତୁ, ସେ କି ଦୃଶ୍ୟ! ସ୍କୁଲର ଶିକ୍ଷକ, ଶିକ୍ଷୟିତ୍ରୀଙ୍କଠାରୁ ଆରମ୍ଭ କରି ସମସ୍ତ ଛାତ୍ରଛାତ୍ରୀ ବିଭିନ୍ନ ରକମର ପୋଷାକ ପିନ୍ଧି ଚାଲିଥାଆନ୍ତି। ମତେ ଯାହା ଦେଖି ଖୁବ୍ ମଜା ଲାଗିଲା ତାହା ହେଉଛି ପ୍ରଧାନ ଶିକ୍ଷକଙ୍କର ପୋଷାକ। ସେ ଜଣେ ବ୍ୟାଲେରିନାର ପୋଷାକ ପିନ୍ଧିଥାଆନ୍ତି। ଗୋଲାପୀ ରଙ୍ଗର ନାଇଲନ୍ ସ୍କାର୍ଟ, ବ୍ଲାଉଜ୍, ମୁଣ୍ଡରେ ମିଛ ସୁନେଲୀ ବାଳ, ବାଳରେ ଗୋଲାପୀ କ୍ଳିପ୍, ଗୋଡରେ ଗୋଲାପୀ ଷ୍ଟକିଙ୍ଗସ୍। ଅଥଚ ଭଦ୍ରବ୍ୟକ୍ତିଙ୍କ ନାକ ତଳେ ଲମ୍ବା ଲମ୍ବା ନିଶ! ଗିଟିର ଶିକ୍ଷୟିତ୍ରୀ ମିସେସ କୋଲ୍ ହଳଦିଆ ପୋଷାକ ପିନ୍ଧି, ମୁହଁ ଚାରିପଟେ ହଳଦିଆ ପାଖୁଡା ଲଗେଇ ସୂର୍ଯ୍ୟମୁଖୀ ଫୁଲ ହୋଇଥାଆନ୍ତି। ସେହିପରି କଳା ପୋଷାକ ପିନ୍ଧି, ମୁହଁରେ ନିଶ, ଲମ୍ବା ଲମ୍ବା ଦାନ୍ତ ଲଗେଇ ସଇତାନ ସାଜିଥାଆନ୍ତି ବହୁତ ପୁଅ। କଳା ଗାଉନ ପିନ୍ଧି, ମୁହଁରେ ମୁଖା ପିନ୍ଧି ଝାଡୁଟିଏ ହାତରେ ଧରି ଡାହାଣୀ ବା ୱିଚ୍ ସାଜିଥାଆନ୍ତି ଅନେକ ଝିଅ। ଦେଖିବାକୁ ଭାରି ମଜା ଲାଗୁଥାଏ।

ସ୍କୁଲରୁ ଫେରି ପିଲାମାନେ ଜିଦ୍ ଆରମ୍ଭ କରିଦେଲେ। ପଡିଶା ଘର ପିଲାମାନେ 'Trick or Treat' ପାଇଁ ଘର ଘର ବୁଲିବେ। ସେମାନଙ୍କ ଭଳି ଏମାନେ ମଧ୍ୟ ଯିବାକୁ ଚାହାନ୍ତି। ମୁଁ ବଡ ହଇରାଣରେ ପଡିଲି। ତୁ ଶୁଣିଛୁ କି ନାହିଁ ଜାଣିନି, ତେବେ ଏଇ 'ଟ୍ରିକ୍ ଅର୍ ଟ୍ରିଟ୍' ସମୟରେ ବହୁ ଦୁର୍ଘଟଣା ତଥା ଭୟଙ୍କର ଘଟଣା ଘଟିବାର କଥା ମୁଁ ପଢିଛି ଓ ଶୁଣିଛି। ହ୍ୟାଲୋୱିନର ଏଇ ପର୍ଯ୍ୟାୟଟି ଗୋଟିଏ ଆନନ୍ଦମୟ ଘଟଣା ରୂପେ ଆରମ୍ଭ ହୋଇଥିଲା। କିନ୍ତୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପରେ ଦେଖାଗଲା ଯେ ଏହାର ସୁଯୋଗ ନେଇ ସମାଜରେ ବହୁ ଅଘଟଣ ଘଟୁଛି। ଝରକା କାଚଠାରୁ ଆରମ୍ଭ କରି ରାସ୍ତାର ବଲବ୍ ଭଙ୍ଗା, ଗାଡିର ଟାୟାର୍ କଟା, ରାସ୍ତାଘାଟରେ ନିଆଁଲଗା- ଏସବୁ ଘଟଣା ବହୁ ପରିମାଣରେ ଘଟିବାକୁ

ଲାଗିଲା । ଶେଷରେ ବିଭିନ୍ନ ସ୍ୱେଚ୍ଛାସେବୀ ଦଳ ଓ ସ୍କୁଲ କର୍ମକର୍ତ୍ତା ଏକାଠି ହୋଇ ହ୍ୟାଲୋଓ୍ୱିନ୍‌ର ବିଭିନ୍ନ କାର୍ଯ୍ୟକଳାପକୁ କିପରି ଯେ ସୁସଂହତ କରାଯାଇ ପାରିବ, ତାହାର ଯୋଜନା କଲେ । ତା' ପରଠାରୁ ସ୍କୁଲମାନଙ୍କରେ, ପାର୍କରେ ହ୍ୟାଲୋଓ୍ୱିନ ପ୍ୟାରେଡର ବ୍ୟବସ୍ଥା କରାଗଲା । ଏତେ ସବୁ ବ୍ୟବସ୍ଥା ପରେ ମଧ୍ୟ ହ୍ୟାଲୋଓ୍ୱିନ୍‌ରେ ଯେ କୌଣସି ରକମର ଅଘଟଣ ଘଟୁନାହିଁ ତା' ତ ନୁହଁ । ତେଣୁ ପିଲାଙ୍କୁ ଛାଡିଦେବି ବା କେମିତି ? ଶେଷରେ ମୁଁ ମୋ ପଡୋଶୀକୁ ପଚାରିଲି । ସେ କହିଲା, "ପିଲାଙ୍କୁ ଆଦୌ ଏକା ଛାଡିବ ନାହିଁ । ମୋ ପୁଅ ତା'ର କେତେଜଣ ସାଙ୍ଗଙ୍କ ସାଙ୍ଗରେ ଏକାଠି ହୋଇ ଯିବ । ତୁମ ପିଲାଙ୍କୁ ସେମାନଙ୍କ ଦଳରେ ମିଶେଇ ଦିଅ । ତା'ଛଡା ମୁଁ ମଧ୍ୟ ସେମାନଙ୍କ ସାଙ୍ଗରେ ଯିବି ଏବଂ ସେମାନେ ଯେ କେବଳ ଏଇ ଆଖପାଖରେ ଚିହ୍ନାଜଣା ଘରକୁ ଯାଆନ୍ତି, ସେଇଟା ଦେଖିବି । ତୁମେ ମୋ ସାଙ୍ଗରେ ଆସୁନାହଁ କାହିଁକି ?"

ମୁଁ ସାଙ୍ଗେ ସାଙ୍ଗେ ରାଜି ହୋଇଗଲି । ଏଣେ ରାତିଟାରେ ପିଲାଙ୍କୁ ଛାଡିଦେବା ପାଇଁ ସାହସ ନାହିଁ, ତେଣେ ମନରେ ସମସ୍ତ ଘଟଣାଟି ଦେଖିବା ପାଇଁ କୌତୁହଳ । ଆମେ ସାତଟା ବେଳେ ଘରୁ ବାହାରିବା କଥା । ପ୍ରାୟ ସାଢେ ଛଅଟା ବେଳେ କଲିଂ ବେଲ ବାଜିଲା । ମୁଁ କବାଟ ଖୋଲୁ ଖୋଲୁ ପଞ୍ଚାଏ ବାଘ, ଭାଲୁ, ରାକ୍ଷସ, ସଇତାନ ଚିଁ ଚିଁ କରି ଚିତ୍କାର କରି ଉଠିଲେ 'Trick or Treat' । ତିନିବର୍ଷରୁ ଆରମ୍ଭ କରି ସାତ ଆଠବର୍ଷର ପିଲା ଦଳଟାଏ । ଟିକିଏ ଦୂରରେ ଜଣେ ଭଦ୍ରଲୋକ ଠିଆ ହୋଇଥାଆନ୍ତି । ମୁଁ ହସିଦେଇ ଘର ଭିତରକୁ ଚାଲିଗଲି । ଆଗରୁ କିଣି ରଖିଥିବା ଚକୋଲେଟ୍ ପ୍ୟାକେଟରୁ ଚକୋଲେଟ୍ କାଢି ସମସ୍ତଙ୍କ ବ୍ୟାଗ୍‌ରେ ଦେଲି । ଏଇ ଦଳଟି ଯିବା ପରେ ପରେ ଆଉ ଦଳେ । ସାତଟାଯାଏଁ ଆଉ କଲିଂ ବେଲ ବାଜିବା ବନ୍ଦ ନାହିଁ ।

ସାତଟା ବେଳେ ଆମେ ବାହାରି ପଡିଲୁ । ଅଧିକାଂଶ ଘର ସାମ୍ନାରେ କଖାରୁ କଟା ହୋଇ ତିଆରି ହୋଇଛି "Jack-'O'-Lantern" । ଯାହା ଘର ସାମ୍ନାରେ କଖାରୁ ନାହିଁ ବା ବାହାରେ ଆଲୁଅ ଜଳୁ ନାହିଁ, ସେ ଘରକୁ ପିଲାମାନେ ଯାଉ ନଥାଆନ୍ତି । ଘର ବାହାର ଅନ୍ଧାର ରହିବାର ଅର୍ଥ ହୁଏତ ଘରେ କେହି ନାହାନ୍ତି ବା ସେମାନେ ଚାହାନ୍ତି ନାହିଁ ଯେ କେହି ତାଙ୍କ ଘରକୁ 'Trick or Treat' ଉଦ୍ଦେଶ୍ୟରେ ଆସୁ । ଘର ଘର ବୁଲି ବ୍ୟାଗ ଭର୍ତ୍ତି ଚକୋଲେଟ ନେଇ

ପ୍ରାୟ ଦେଢଘଣ୍ଟା ପରେ ପିଲାଏ ଘରେ ପାଦ ଦେଲେ। ହ୍ୟାଲୋଓ୍ବିନର ଉତ୍ତେଜନା, ପୁଣି ବ୍ୟାଗଭର୍ତ୍ତି ଚକୋଲେଟ ପାଇଯିବାର ଆନନ୍ଦ - ପିଲାଙ୍କୁ ଶାନ୍ତ କରାଇ ଖୁଆଇ ଶୁଆଇବା ପାଇଁ ଆମକୁ ବହୁତ କଷ୍ଟ କରିବାକୁ ପଡିଲା।

ନଭେମ୍ବର ପହିଲା। ସେଦିନ ପିଲାମାନେ ସ୍କୁଲକୁ ଯିବା ପରେ ସେମାନଙ୍କର ହ୍ୟାଲୋଓ୍ବିନର ପୋଷାକକୁ ଭାଙ୍ଗି ପୁରୁଣା ଲୁଗା ବ୍ୟାଗ ଭିତରେ ରଖିଦେଇ ମୁଁ ସ୍ୱସ୍ତିର ନିଃଶ୍ୱାସ ନେଲି। ଗତ ଗୋଟାଏ ମାସ ଧରି ଏ ଯେଉଁ 'ଅଶାନ୍ତି' ଚାଲିଥିଲା, ଯା'ହେଉ ତା'ର ଶେଷ ହେଲା। ଏଥରକ ଟିକିଏ ଚୁପଚାପ ରହି ଘରେ ପଢାପଢି କରିବେ ପିଲାମାନେ।

ହେଲେ ମିତୁ, ସେଦିନ ସ୍କୁଲରୁ ଫେରିବାକ୍ଷଣି ଗିଟି ଆଉ ଘେରାଏ ନାଚିଗଲା, "ମା, ୨୬ ତାରିଖରେ ଥ୍ୟାଙ୍କସ ଗିଭିଙ୍ଗ ଡେ (Thanks-giving day)। ମୋ ସାଙ୍ଗମାନେ କହୁଛନ୍ତି ଯେ ସେଦିନ ଘରଲୋକ ସମସ୍ତେ ଏକାଠି ହୋଇ ଟର୍କି ଆଉ 'ପମ୍ପକିନ ପାଇ' ଖାଇବେ। ମା' ତୁମେ ଆମ ପାଇଁ ଟର୍କି ରାନ୍ଧି ଦେବ ତ?" ରୁମି ଖୁବ୍ ଗମ୍ଭୀର ହୋଇ କହିଲା, "ଆମକୁ ଥ୍ୟାଙ୍କସ ଗିଭିଙ୍ଗ ଟର୍କି ଉପରେ ମନରୁ ଫାନ୍ଦି ଗପଟିଏ ଲେଖିବାକୁ ପଡିବ।"

ମିତୁ ରେ, ମୁଁ ମୁଣ୍ଡରେ ହାତ ଦେଇ ବସିଗଲି। ହ୍ୟାଲୋଓ୍ବିନର ଉତ୍ତେଜନା ସରୁଣୁ ନସରୁଣୁ ଥ୍ୟାଙ୍କସ୍ ଗିଭିଙ୍ଗ ଡେ'ର ଉତ୍ତେଜନା ଆରମ୍ଭ ହୋଇଗଲା।

ଥ୍ୟାଙ୍କସ ଗିଭିଙ୍ଗ ଖ୍ରୀଷ୍ଟିଆନ୍ ଉତ୍ସବ ନୁହଁ, ଏହା ହେଉଛି ସଂପୂର୍ଣ୍ଣରୂପେ ଏକ ଆମେରିକାନ୍ ଉତ୍ସବ। ଉତ୍ସବ ନ କହି ଭୋଜି କହିବା ହିଁ ଉପଯୁକ୍ତ ହେବ। କାରଣ ଖାଇବା ହିଁ ଏହି ଦିନର ପ୍ରଧାନ ବିଶେଷତ୍ୱ। ପରିବାରର ସଦସ୍ୟମାନେ ଏକାଠି ହୋଇ "ରୋଷ୍ଟ ଟର୍କି, କ୍ରାନ୍‌ବେରି ସସ୍ ଏବଂ ପମ୍ପକିନ ପାଇ" ଖାଇଥାଆନ୍ତି। ଯେମିତି ହଳଦୀପତ୍ର ପିଠାକୁ ବାଦ୍ ଦେଇ ପ୍ରଥମାଷ୍ଟମୀ କଥା ଚିନ୍ତା କରି ହୁଏନାହିଁ, ପୋଡପିଠା ବ୍ୟତୀତ ରଜ ଉତ୍ସବର କୌଣସି ମାନେ ହୁଏ ନାହିଁ, ଠିକ୍ ସେଇମିତି ଟର୍କି ଓ ପମ୍ପକିନ୍ ପାଇକୁ ବାଦ୍ ଦେଇ ଥ୍ୟାଙ୍କସ ଗିଭିଙ୍ଗ ଦିବସର କୌଣସି ଅର୍ଥ ହୁଏ ନାହିଁ।

ବର୍ତ୍ତମାନ ଯଦିଓ ଥ୍ୟାଙ୍କସ ଗିଭିଙ୍ଗ ଏକ ଆମେରିକାନ୍ ଉତ୍ସବ, ପ୍ରଥମ ଥ୍ୟାଙ୍କସ ଗିଭିଙ୍ଗର ଇତିହାସ ଖୋଜି ବସିଲେ ବହୁ ପୁରୁଣା ଯୁଗକୁ ଓ ଆମେରିକା ବାହାରକୁ ଯିବାକୁ ପଡିବ। ହ୍ୟାଲୋଓ୍ବିନ୍ ଭଳି ଥ୍ୟାଙ୍କସ ଗିଭିଙ୍ଗ ମଧ୍ୟ ଫସଲ

ଅମଳର ଉତ୍ସବ ରୂପେ ଆରମ୍ଭ ହୋଇଥିଲା। ଫସଲ ଅମଳ ସରିବା ପରେ ଈଶ୍ୱରଙ୍କୁ ଧନ୍ୟବାଦ ଜଣାଇ ଉତ୍ସବ ପାଳନ କରିବା ପ୍ରାୟ ସବୁ ଦେଶ, ସବୁ ଜାତିରେ ଦେଖାଯାଏ। ସେହିପରି ପ୍ରାଚୀନ ଗ୍ରୀସ୍‌ରେ ଫସଲ ଅମଳର ଦେବୀ ଡେମେଟର୍‌ଙ୍କ ଉଦ୍ଦେଶ୍ୟରେ ଓ ପ୍ରାଚୀନ ରୋମରେ ଶସ୍ୟର ଦେବୀ ସେରେସ୍‌ଙ୍କ ଉଦ୍ଦେଶ୍ୟରେ ଉତ୍ସବ ପାଳିତ ହେଉଥିଲା। ଏଇସବୁ ଉତ୍ସବର ଝଲକ ଥ୍ୟାଙ୍କ୍‌ସ ଗିଭିଙ୍ଗ ଦିବସରେ ଦେଖିବାକୁ ମିଳେ।

ଆମେରିକାରେ ଆସି ପହଞ୍ଚିଥିବା ପ୍ରଥମ ଇଉରୋପୀୟ ଦଳଟି ଇଂଲାଣ୍ଡର ଚର୍ଚ୍ଚ ବିରୁଦ୍ଧରେ ବିଦ୍ରୋହ କରି ନିଜ ଦେଶ ଛାଡିବା ପାଇଁ ବାଧ୍ୟ ହୋଇଥିଲେ। ୧୬୦୭ ମସିହାରେ ଏହି ଦଳଟି ହଲାଣ୍ଡ ବା ବର୍ତ୍ତମାନର ନେଦରଲ୍ୟାଣ୍ଡକୁ ଚାଲିଯାଇଥିଲେ ଏବଂ ବାରବର୍ଷ ପରେ ନୂତନ ପୃଥିବୀର ସନ୍ଧାନରେ ବାହାରି ଆମେରିକାରେ ଆସି ପହଞ୍ଚିଥିଲେ। ଏଇ ଦଳଟି "ମେ ଫ୍ଲାୱାର୍" (May Flower) ଜାହାଜରେ ଆସି ଡିସେମ୍ବର ୧୬୨୦ରେ ପ୍ଲାଏମାଉଥ୍‌ଠାରେ ଓହ୍ଲାଇ ଥିଲେ। କିନ୍ତୁ ଦୁର୍ଭାଗ୍ୟକୁ ଯାତ୍ରା ସୁଖମୟ ହୋଇ ନଥିଲା। ଯାତ୍ରା ଶେଷରେ ଦେଖାଗଲା ଯେ ସେମାନେ ସାଙ୍ଗରେ ଆଣିଥିବା ସମସ୍ତ ଖାଦ୍ୟପଦାର୍ଥ ପ୍ରାୟ ଶେଷ ହୋଇ ଯାଇଛି ଏବଂ ନୂତନ ଦେଶରେ ଚାଷ କରିବା ପାଇଁ ଆଣିଥିବା ଅଧିକାଂଶ ବିହନ ପଚି ନଷ୍ଟ ହୋଇଯାଇଛି। କେବଳ ସେତିକି ନୁହଁ, ଯାହା ବା ବିହନ ଭଲ ଅବସ୍ଥାରେ ଥିଲା, ସେ ସବୁକୁ ଶୀତଦିନରେ ଚାଷ କରିବା ସମ୍ଭବ ହେଲା ନାହିଁ। ଏଣେ ଦୁର୍ବଳ ସ୍ୱାସ୍ଥ୍ୟ, ତେଣେ ଖାଦ୍ୟାଭାବ। ଲୋକମାନେ ମୃତ୍ୟୁମୁଖରେ ପଡିବାକୁ ଲାଗିଲେ। ବସନ୍ତର ଆରମ୍ଭରେ ଦେଖାଗଲା ଯେ ଜାହାଜରେ ଆସିଥିବା ୧୦୨ ଜଣଙ୍କ ମଧ୍ୟରୁ ମାତ୍ର ୫୫ ଜଣ ଜୀବିତ। ହୁଏତ ଏହି ୫୫ ଜଣଙ୍କ ପକ୍ଷରେ ବଞ୍ଚିବା କଷ୍ଟକର ହୋଇ ପଡିଥାଆନ୍ତା, କିନ୍ତୁ ସ୍କ୍ୱାନ୍‌ଟୋ (Squanto) ନାମକ ଜଣେ ରେଡ୍ ଇଣ୍ଡିଆନ୍ ଏହି ଦଳଟିର ଦୂରବସ୍ଥା ଦେଖି ସାହାଯ୍ୟ କରିବା ପାଇଁ ଆଗେଇ ଆସିଲେ। ତାଙ୍କ ସହାୟତାରେ ଇଉରୋପୀୟ ଦଳଟି ନୂତନ ପଦ୍ଧତିରେ ଚାଷ କରିବା ଶିଖିଲେ ଏବଂ ସେହିବର୍ଷ ଖୁବ୍ ଭଲ ଫସଲ ଅମଳ ହୋଇଥିଲା। ତେଣୁ ଈଶ୍ୱରଙ୍କୁ ଧନ୍ୟବାଦ ଜଣାଇ ସେମାନେ ଥ୍ୟାଙ୍କ୍‌ସ ଗିଭିଙ୍ଗ ଉତ୍ସବ ପାଳନ କରିଥିଲେ।

ମତେ ଯାହା ଜାଣି ଆଶ୍ଚର୍ଯ୍ୟ ଲାଗିଲା, ତାହା ହେଉଛି ଏହି ଦିବସଟି

ସହିତ କୌଣସି ଧର୍ମ ସମ୍ପର୍କିତ ଉତ୍ସବ ଯୋଡ଼ା ନାହିଁ। ଏପରିକି ପ୍ରାଚୀନ ଆମେରିକାରେ ଏହି ଦିନଟି କେବଳ ଉପଭୋଗ କରିବାର ଦିନଟିଏ ରୂପେ ପାଳିତ ହେଉଥିଲା। ବୋଧହୁଏ ସେଇଥିପାଇଁ ଅନ୍ୟାନ୍ୟ ଉତ୍ସବ ଭଳି ନିୟମିତ ଭାବରେ ପ୍ରତ୍ୟେକ ବର୍ଷ ଏହି ଥ୍ୟାଙ୍କ୍ସ ଗିଭିଙ୍ଗ୍ ଦିବସ ପାଳନ ହେବାର ପ୍ରମାଣ ଇତିହାସରେ ଦେଖିବାକୁ ମିଳେ ନାହିଁ। ମଜାର କଥା ଯେ, ଆମେରିକାର ବିଦ୍ରୋହ ସମୟରେ ବିଜୟ ଉତ୍ସବ ପାଳନ କରିବା ପାଇଁ ଗୋଟିଏ ବର୍ଷରେ ଅନେକଗୁଡ଼ିଏ ଥ୍ୟାଙ୍କ୍ସ ଗିଭିଙ୍ଗ୍ ଉତ୍ସବ ପାଳିତ ହୋଇଥିଲା। ୧୭୭୮ ମସିହାରେ ଜର୍ଜ ୱାଶିଙ୍ଗଟନ୍ ଫ୍ରାନ୍ସ ସହିତ ସ୍ଥାପିତ ହୋଇଥିବା ସନ୍ଧି ପାଇଁ ଫ୍ରାନ୍ସକୁ ଧନ୍ୟବାଦ ଜଣେଇ ଥ୍ୟାଙ୍କସ୍ ଗିଭିଙ୍ଗ ଉତ୍ସବ ପାଳନ କରାଇଥିଲେ। ଏହାର କିଛି ବର୍ଷ ପରେ ୧୭୮୯ ମସିହାରେ ସେ ପୁନର୍ବାର ଏହି ଉତ୍ସବ ପାଳନ କରାଇବା କଥା ଉଠେଇଥିଲେ। ଏଥରକର ଉଦ୍ଦେଶ୍ୟ କିନ୍ତୁ ଭିନ୍ନ। ସଂବିଧାନ ଗୃହୀତ ହେବା ଉଦ୍ଦେଶ୍ୟରେ ସେହି ବର୍ଷ ଥ୍ୟାଙ୍କ୍ସ ଗିଭିଙ୍ଗ୍ ପାଳିତ ହୋଇଥିଲା।

.୧୮୧୫ ମସିହାରେ ରାଷ୍ଟ୍ରପତି ମ୍ୟାଡିସନ ଶାନ୍ତି ଉଦ୍ଦେଶ୍ୟରେ ଏକ ବିଶେଷ ଥ୍ୟାଙ୍କ୍ସ ଗିଭିଙ୍ଗ୍ ଦିବସ ପାଳନ କରିବା କଥା ଘୋଷଣା କରିଥିଲେ। ଏହିପରି ବିଭିନ୍ନ ତାରିଖରେ ବିଭିନ୍ନ ଉଦ୍ଦେଶ୍ୟରେ ଥ୍ୟାଙ୍କ୍ସ ଗିଭିଙ୍ଗ୍ ପାଳନ କରାଯିବାର ପ୍ରମାଣ ଇତିହାସରେ ଦେଖିବାକୁ ମିଳେ।

କିନ୍ତୁ କ୍ରମଶଃ ଆମେରିକାବାସୀ ମନେକଲେ ଯେ ଏହିଭଳି ଏକ ଗୁରୁତ୍ୱପୂର୍ଣ୍ଣ ଉତ୍ସବକୁ ଭିନ୍ନ ଭିନ୍ନ ତାରିଖରେ ପାଳନ କରିବା ଉଚିତ ହେଉନାହିଁ। ଶେଷରେ ରାଷ୍ଟ୍ରପତି ଲିଙ୍କନ୍ ଘୋଷଣା କଲେ ଯେ ନଭେମ୍ବରର ଚତୁର୍ଥ ଗୁରୁବାରଟିକୁ ଥ୍ୟାଙ୍କ୍ସ ଗିଭିଙ୍ଗ୍ ଦିବସ ରୂପେ ପାଳନ କରାଯିବ। ସେଇଦିନଠାରୁ ଆଜିଯାଏ ଏହା ନଭେମ୍ବରର ଚତୁର୍ଥ ଗୁରୁବାରରେ ପାଳିତ ହୋଇ ଆସୁଅଛି।

ତୁ ହୁଏତ ଭାବୁଥିବୁ ଏଇଭଳି ଗୋଟିଏ 'ବାର' କାହିଁକି ସ୍ଥିର କରାଗଲା, 'ତାରିଖ'ଟିଏ ତ ସ୍ଥିର କରାଯାଇ ପାରିଥାଆନ୍ତା। ଏହାର ଉତ୍ତର ବେଶ୍ ସରଳ। ଆମେରିକାନମାନେ ଛୁଟିଗୁଡ଼ିକୁ ଉପଭୋଗ କରିବା ପାଇଁ ଚାହାନ୍ତି। ଗୁରୁବାର ଦିନ ଥ୍ୟାଙ୍କ୍ସ ଗିଭିଙ୍ଗ୍ ପାଳନ କରାଗଲେ ମଧ୍ୟ ଶୁକ୍ରବାର ଦିନ ସ୍କୁଲ, କଲେଜ, ବ୍ୟବସାୟିକ ପ୍ରତିଷ୍ଠାନ ସବୁ ବନ୍ଦ ରହେ। ଆଉ ଶନିବାର, ରବିବାର ତ ଏମିତିରେ ଛୁଟି। ଫଳରେ ଚାରିଦିନର ଲମ୍ବା ଛୁଟି ମିଳିଯାଏ। ଗୋଟିଏ ନିର୍ଦ୍ଦିଷ୍ଟ ତାରିଖରେ

ଥ୍ୟାଙ୍କ୍‌ସ ଗିଭିଙ୍ଗ୍ ହୋଇଥିଲେ ହୁଏତ ଏଇଭଳି ଚାରିଦିନର ଛୁଟି ପାଇବା ସମ୍ଭବ ହୁଅନ୍ତା ନାହିଁ।

ନଭେମ୍ବର ୨୬ ଆଉ ବେଶୀ ଡେରି ନାହିଁ। 'ପମ୍ପକିନ୍ ପାଇ' ତ ଦୋକାନରେ କିଣିବାକୁ ମିଳିଯିବ। ରୋଷ୍ଟ ଟର୍କି କଥା କ'ଣ କରିବି ବୁଝିପାରୁ ନାହିଁ। ହୁଏତ ପିଲାଙ୍କୁ ଖୁସି କରେଇବା ପାଇଁ କେଉଁ ସାଙ୍ଗର ସାହାଯ୍ୟ ନେଇ ଶେଷରେ ରାନ୍ଧିବି। କିନ୍ତୁ ମିତୁ, ଥ୍ୟାଙ୍କ୍‌ସ ଗିଭିଙ୍ଗ୍ ପରେ କ'ଣ ପିଲାଙ୍କ ଉତ୍ତେଜନା କମିବ? କ୍ରିସ୍‌ମାସ, ନୂଆବର୍ଷ- ସେ ଯାଏଁ ତ ଏଇ ଉତ୍ସବର କୋଳାହଳ ବର୍ତ୍ତମାନ ଲାଗି ରହିବ। ଆମେ ଆମ ପିଲାଦିନେ ଓଡ଼ିଶାର ବାତାବରଣରେ ଯେପରି ଦଶହରା, କୁମାର ପୂର୍ଣ୍ଣମୀ, କାଳୀପୂଜା ଇତ୍ୟାଦି ପାଳନରେ ମଜ୍ଜିଯାଉଥିଲୁ, ଆମ ପିଲାଏ ସେଇମିତି କାଲିଫୋର୍ଣ୍ଣିଆର ଭିନ୍ନ ବାତାବରଣରେ ଭିନ୍ନ ଧରଣର ଉତ୍ସବ ପାଳନରେ ମାତି ଯାଇଛନ୍ତି। ଚିନ୍ତା କରି ଦେଖ ତ, ସତରେ କ'ଣ ଏଇ ଦୁଇଟି ଭିତରେ ଖୁବ୍ ଗୋଟାଏ ପାର୍ଥକ୍ୟ ରହିଛି? ଉତ୍ସବର ନାମଗୁଡ଼ିକ ଭିନ୍ନ, ପାଳନ କରିବାର ପ୍ରଥାମାନ ଭିନ୍ନ। କିନ୍ତୁ ପିଲାମାନଙ୍କର ମନର ଉତ୍ତେଜନା ଓ ଆନନ୍ଦ ତ ସେଇ ଏକ। ଧର୍ମ ଧର୍ମ ଭିତରେ ଯେଉଁ ଭେଦଭାବ- ଏସବୁ ତ ଆମେ ବଡ଼ମାନେ ହିଁ ସୃଷ୍ଟି କରିଛୁ। କିନ୍ତୁ ପିଲାମାନଙ୍କର ସରଳ ମନରେ ଉତ୍ସବର ଅର୍ଥ ହେଉଛି ଆନନ୍ଦ। ସମାଜରେ ଆନନ୍ଦ ଖେଳାଇବା ପାଇଁ କ'ଣ ଅଧିକାଂଶ ଉତ୍ସବର ସୃଷ୍ଟି ହୋଇ ନ ଥିଲା? ତେବେ କାହିଁକି ଆଜି ବିଭିନ୍ନ ଧର୍ମର ଲୋକମାନେ ଏକାଠି ହୋଇ ହୋଲି, ଇଦ୍ ବା କ୍ରିସ୍‌ମାସକୁ ମନଭରି ଉପଭୋଗ କରିପାରୁ ନାହାନ୍ତି?

ଆଜି ତେବେ ଏତିକି। ମୋ ଚିଠି ପାଇ ଚିଠି ଦେବୁ। ରହୁଛି।

ଇତି

ତୋର 'ନାନୀ'

କୁପରଟିନୋ
୫ ଜାନୁଆରୀ, ୧୯୯୨

ସ୍ନେହର ମିତୁ,

ନୂଆବର୍ଷର ଅଭିନନ୍ଦନ ନେବୁ। ତୁମମାନଙ୍କ ପାଇଁ ଏ ବର୍ଷଟି ଖୁବ୍ ସୁନ୍ଦର ହେଉ, ଠାକୁରଙ୍କ ପାଖରେ ମୋର ଏତିକି ପ୍ରାର୍ଥନା।

କ୍ରିସ୍‌ମାସ୍ ଓ ନୂଆବର୍ଷର ଚହଳ ପରେ ହଠାତ୍ କ୍ୟାଲିଫୋର୍ଣିଆ ଯେମିତି ଶାନ୍ତ ହୋଇଯାଇଛି। ହ୍ୟାଲୋଭିନ୍‌ଠାରୁ ଯେଉଁ ଉତ୍ସବର ବାତାବରଣଟି ଆରମ୍ଭ ହୋଇଥିଲା, ନୂଆବର୍ଷ ପରେ ସେଥିରେ ଭଟ୍ଟା ପଡିଛି।

ତୁ ଶୁଣିଲେ ହସିବୁ, କିନ୍ତୁ ଗତ କେତେଦିନ ଧରି ମୋର ଅସୀମା କଥା ବହୁତ ମନେପଡୁଛି। ତୁ ନିଶ୍ଚୟ ମୋ ସାଙ୍ଗ ଅସୀମାକୁ ଭୁଲିନାହୁଁ? ଆମର ଆମେରିକା ଆସିବା ଖବର ଶୁଣି ସେ ବୋଧହୁଏ ସବୁଠାରୁ ବେଶୀ ଖୁସି ହୋଇଥିଲା। ବର୍ଷେ ତଳେ ପିଲାଙ୍କର ବଡଦିନ ଛୁଟି ସମୟରେ ଅସୀମା ତା' ବଡଭାଇଙ୍କ ଘରକୁ ଯାଇଥିଲା ଯିଏ କି ଆମେରିକାର ହ୍ୟୁଷ୍ଟନ (Houston)ସହରରେ ରହନ୍ତି ଏବଂ ତାକୁ ଆମେରିକା ଏତେ ବେଶୀ ଭଲ ଲାଗି ଯାଇଥିଲା ଯେ ସେ ଫେରିବା ପରେ ଆମକୁ ବହୁତ ଦିନ ଧରି କେବଳ ''ଆମେରିକାର ଗପ'' ଶୁଣିବାକୁ ପଡିଥିଲା। ଗ୍ରାଣ୍ଡ କ୍ୟାନିଅନ୍ ବା ନାଏଗ୍ରାର ଗପ ନୁହଁ; ହାୱାଇ ବା ଆଲାସ୍କାର ବର୍ଣ୍ଣନା ମଧ୍ୟ ନୁହଁ। ଟାର୍‌ଗେଟ୍ (Target), ସିଅର୍‌ସ (Sears),

ଏମ୍ପୋରିଅମ୍ (Emporium), ଜେ. ସି. ପେନି (J. C. Penny), ମେସିସ୍ (Macys)ର ଗପ। ଏ ସବୁ କୌଣସି ଦର୍ଶନୀୟ ସ୍ଥାନର ନାମ ନୁହଁ। ଏ ସବୁ ହେଲା ଆମେରିକାର ଅଧିକାଂଶ ସହରରେ ଥିବା ପ୍ରସିଦ୍ଧ ଡିପାର୍ଟମେଣ୍ଟାଲ୍ ଷ୍ଟୋର୍‌ମାନଙ୍କର ନାମ। ଏଇ ଅସୀମାଟି ଟିକିଏ ଭିନ୍ନ ଧରଣର। ଦୋକାନ ବଜାର ପ୍ରତି ତା'ର ଭୀଷଣ ଦୁର୍ବଳତା। ଗୋଟିଏ ନୂଆ ଜାଗାକୁ ବୁଲିଗଲେ ସ୍ଥାନଟି ଦେଖିବା ଅପେକ୍ଷା ସେଠିକାର ଦୋକାନ ବଜାର ବୁଲିବା ପାଇଁ ତା'ର ବେଶୀ ଆଗ୍ରହ। ଆମର ଆମେରିକା ଆସିବା ଖବର ଶୁଣି ସେ ଏଇଥିପାଇଁ ଏତେ ଖୁସି ହୋଇଥିଲା ଯେ ଆମେ ଆମେରିକାର ଦୋକାନ ବଜାର ଦେଖି ପାରିବୁ ଏବଂ ତା' ମତରେ ଆମର ଆମେରିକା ଗହଣୀ ସମୟଟି ଅତି ଚମତ୍କାର, କାରଣ ଆମେ ଯେ 'କ୍ରିସ୍‌ମାସ୍ ସେଲ୍' ଦେଖି ପାରିବୁ।

ଅସୀମାର ବର୍ଣ୍ଣନା ବାରମ୍ବାର ଶୁଣି ଆମେରିକାର କ୍ରିସ୍‌ମାସ୍ ନେଇ ମୋ ମନରେ ବେଶ୍ କୌତୂହଳ ସୃଷ୍ଟି ହୋଇଥିଲା। କଲିକତାର ନିଉମାର୍କେଟ୍‌ରେ ହେଉଥିବା ଦଶହରା ପୂର୍ବର ଭିଡ ଏବଂ ଦିଲ୍ଲୀର କରୋଲ୍‌ବାଗ୍‌ରେ ଦେଖିଥିବା ଦୀପାବଳୀ ଆଗର ଚହଳ କଥା ମନେ ପକାଇ ମୁଁ ମନ ଭିତରେ ଆମେରିକାର କ୍ରିସ୍‌ମାସ୍ ସେଲ୍ ଉପରେ ଧାରଣାଟିଏ କରି ନେଇଥିଲି।

କିନ୍ତୁ ସେ ଧାରଣା କ୍ରିସ୍‌ମାସ୍ ସେଲ୍‌ର ସମ୍ପୂର୍ଣ୍ଣ ଚିତ୍ର ନୁହଁ। ଧଳା କାନ୍‌ଭାସ୍ ଉପରେ କେତୋଟି ଅଙ୍କାବଙ୍କା ଗାର ମାତ୍ର। କ୍ୟାଲିଫୋର୍ଣ୍ଣିଆର କ୍ରିସ୍‌ମାସ ବାତାବରଣ ଦେଖିବା ପରେ ମୁଁ ମନ ଭିତରେ ଆଙ୍କିଥିବା ଛବିଟିର ଅସଂପୂର୍ଣ୍ଣତା ବୁଝି ପାରିଲି।

ହ୍ୟାଲୋଓ୍ବିନ୍‌ର ବହୁ ପୂର୍ବରୁ ଯେମିତି ରାସ୍ତା କଡରେ କଖାରୁ ବିକ୍ରି ଆରମ୍ଭ ହୋଇ ଯାଇଥିଲା, ଠିକ୍ ସେଇମିତି କ୍ରିସ୍‌ମାସ ଆଗରୁ ରାସ୍ତା କଡରେ କ୍ରିସ୍‌ମାସ ଗଛ ବିକ୍ରି ଆରମ୍ଭ ହୋଇଗଲା। ବଡ, ଛୋଟ ବହୁ ରକମର କ୍ରିସ୍‌ମାସ ଗଛ। କେତେକ କ୍ରିସ୍‌ମାସ ଗଛ ଉପରେ ଧଳା ରଙ୍ଗ ସ୍ପ୍ରେ କରାଯାଇଥାଏ। ମନେ ହେଉଥାଏ ଯେମିତି ଗଛ ଉପରେ ବରଫ ପଡିଛି।

କେବଳ ଗଛ ବିକ୍ରି ନୁହଁ, କ୍ରିସ୍‌ମାସର ବହୁପୂର୍ବରୁ ଷ୍ଟୋରମାନଙ୍କରେ ବହୁତ ରକମର ଜିନିଷ ଆସିବା ଆରମ୍ଭ ହୋଇଯାଏ। କ୍ରିସ୍‌ମାସ ତ ହେଉଛି ଉପହାର ଦେବା ନେବାର ଉତ୍ସବ। ତେଣୁ ନିଜର ପରିବାର ତଥା ବନ୍ଧୁବାନ୍ଧବଙ୍କୁ ଉପହାର ଦେବା ପାଇଁ ଲୋକମାନେ ମହା ଉତ୍ସାହରେ ଦୋକାନ ବଜାର ଘୁରି ବୁଲନ୍ତି।

ଏଇ ଉପହାର ସବୁ କେବଳ ମଣିଷମାନଙ୍କ ପ୍ରତି ସୀମିତ ନୁହଁ, ନିଜ ନିଜର ପୋଷା କୁକୁର, ବିଲେଇମାନଙ୍କ ପାଇଁ ମଧ୍ୟ ଉପହାର କିଣାହୁଏ। ଆଉ ଦୋକାନମାନଙ୍କରେ ଯେଉଁ ଭିଡ ହୁଏ, ତା' ନ ଦେଖିଲେ ଜଣେ ବିଶ୍ୱାସ କରିପାରିବ ନାହିଁ। ଲୋକମାନଙ୍କର ଜିନିଷ କିଣିବା ନିଶା ସହିତ ତାଳ ରଖି ଦୋକାନରେ ମଧ୍ୟ ନୂଆ ନୂଆ ଜିନିଷ ଦେଖିବାକୁ ମିଳେ। ଖବରକାଗଜ, ଟେଲିଭିଜନରେ ତା'ର ବେଶ୍ ବିଜ୍ଞାପନ ମଧ୍ୟ ହୁଏ। ଏତେ ବଡ ବଡ ଦୋକାନ, ଅଥଚ ଲୋକ ଭିଡ ଓ ଜିନିଷ ଭିଡ କଟେଇ ଚାଲିବାକୁ ଅସୁବିଧା ହୁଏ। କ୍ରିସ୍‌ମାସ୍ ଯେତେ ପାଖେଇ ଆସେ, ବିଜ୍ଞାପନ ସେତେ ପରିମାଣରେ ବଢ଼ିବାକୁ ଲାଗେ; ଆଉ ସମ ପରିମାଣରେ ବଢ଼ିବାକୁ ଲାଗିଥାଏ ଲୋକମାନଙ୍କ ମଧ୍ୟରେ ଉତ୍ତେଜନା। କ୍ରିସ୍‌ମାସର ପୂର୍ବ କେଇଦିନ ସମସ୍ତ ଦେଶ ଯେମିତି ଉନ୍ମତ୍ତ ହୋଇଯାଏ। କାହା ପାଇଁ ହୁଏତ ଉପହାର ଏ ପର୍ଯ୍ୟନ୍ତ କିଣା ହୋଇପାରି ନାହିଁ। ବଜାର ଦୌଡିବାକୁ ହେବ। ତାହା ସହିତ କ୍ରିସ୍‌ମାସ ଗଛ ସଜା, ଘର ସଜା, ଭଲ ଭଲ ଜିନିଷ ରନ୍ଧା- ନିଃଶ୍ୱାସ ନେବା ପାଇଁ ଲୋକଙ୍କର ସମୟ ହୁଏ ନାହିଁ। ଏଇ ସମୟରେ ଦୋକାନମାନଙ୍କରେ ବିକ୍ରି ହୋଇ ପାରୁ ନ ଥିବା କେତେକ ଜିନିଷର ଦାମ୍ ମଧ୍ୟ କମେଇ ଦିଆଯାଏ। ଫଳରେ ପୁଣି ଲୋକ ଭିଡ, ଆହୁରି ବିକ୍ରି। ତୁ ହୁଏତ ଭାବୁଥିବୁ ହଠାତ୍ ଲୋକମାନଙ୍କ ହାତରେ ଏତେ ପଇସା ଆସେ କେମିତି ?

ମିତୁ, ଏ ଯେ "ପ୍ଲାଷ୍ଟିକ୍ ଅର୍ଥ"ର ସମାଜ। ହାତରେ ପଇସା ଅପର୍ଯ୍ୟାପ୍ତ ନ ଥିଲେ କ'ଣ ହେଲା, କ୍ରେଡିଟ୍ କାର୍ଡ ତ ରହିଛି! ଆଉ ଆମେରିକାର ଲୋକମାନଙ୍କ ପାଖରେ ଦୁଇ, ତିନୋଟି କ୍ରେଡିଟ୍ କାର୍ଡ ରହିବା ତ ଅତି ସାଧାରଣ କଥା। ଏଇ ସବୁ ପ୍ରଧାନ କ୍ରେଡିଟ୍ କାର୍ଡ ବ୍ୟତୀତ ବଡ ବଡ ଦୋକାନ ସବୁ ବିକ୍ରି ବଢେଇବା ଉଦ୍ଦେଶ୍ୟରେ ନିଜ ନିଜର କ୍ରେଡିଟ୍ କାର୍ଡର ବ୍ୟବସ୍ଥା ମଧ୍ୟ କରିଛନ୍ତି। ଏହି କାର୍ଡରେ ଜିନିଷ କିଣି ମାସକୁ ମାସ ଅତି ସାମାନ୍ୟ ସୁଧ ସହିତ କିସ୍ତିରେ ଜଣେ ଧାର୍ ସୁଝି ପାରିବ। କ୍ରିସ୍‌ମାସ ସମୟରେ ଏ ସବୁ କାର୍ଡର ବହୁଳ ବ୍ୟବହାର ଦେଖିବାକୁ ମିଳେ। ଲୋକଙ୍କୁ ଆକର୍ଷିତ କରିବା ପାଇଁ କେତେକ ଦୋକାନ ଏଭଳି ବ୍ୟବସ୍ଥା କରିଦିଅନ୍ତି ଯେ ଦୁଇ ତିନିମାସ ପାଇଁ ସୁଧ ବା କିସ୍ତି ଦେବାକୁ ପଡେ ନାହିଁ। ତେଣୁ ଭବିଷ୍ୟତ କଥା କିଏ ବା

ଚିନ୍ତା କରୁଛି ?

କିଛିବର୍ଷ ତଳେ ମାର୍କିନ୍ ସମାଜରେ କ୍ରେଡିଟ୍ କାର୍ଡର ବହୁଳ ବ୍ୟବହାର ନେଇ ଅର୍ଥନୀତିଜ୍ଞମାନେ ଉତ୍କଣ୍ଠା ପ୍ରକାଶ କରିଥିଲେ। ଜିନିଷ ବିକା କିଣା ଚାଲିଛି, କିନ୍ତୁ ଅର୍ଥ ହସ୍ତାନ୍ତର ହେଉନାହିଁ। ଯେତେବେଳେ ଏହି ଅର୍ଥ ପରିଶୋଧ କରିବାର ସମୟ ଆସୁଛି, ସେତେବେଳେ ହୁଏତ କାର୍ଡରେ ଆହୁରି ଅନେକ କିଛି କିଣା ସରିଲାଣି। ଏ ଏକ ଅଦ୍ଭୁତ ପରିସ୍ଥିତି ଏବଂ ଏହି ପରିସ୍ଥିତି ଦେଶର ଅର୍ଥନୀତିକୁ ପରୋକ୍ଷ ଭାବରେ ଆଘାତ ଦେଉଛି। ଏଥିନେଇ ବିଭିନ୍ନ ମହଲରେ ବହୁ ଆଶଙ୍କା ଦେଖା ଦେଇଥିଲେ ମଧ୍ୟ କ୍ରେଡିଟ୍ କାର୍ଡର ବ୍ୟବହାର କମିବା ଦୂରେ ଥାଉ, କେବଳ ବଢ଼ିବାରେ ହିଁ ଲାଗିଛି।

'କ୍ରେଡିଟ୍' ବା ଧାର୍‌ରେ ଜିନିଷ କିଣିଲେ ମଧ୍ୟ ଏଥିନେଇ କେହି ଅଯଥା ବ୍ୟସ୍ତ ବା ବିବ୍ରତ ହୁଅନ୍ତି ନାହିଁ। ପରେ ସୁଝିବାକୁ ଅନେକ ସମୟ ମିଳିବ, ବର୍ତ୍ତମାନ ଯେ ଉପଭୋଗର ସମୟ !

ଆମ ଦେଶରେ ସ୍କୁଲର ସରସ୍ୱତୀ ପୂଜା, ଗଣେଶ ପୂଜା ପାଳନରେ ଯେମିତି ସବୁ ଧର୍ମର ପିଲାମାନେ ଭାଗ ନିଅନ୍ତି, ଦୁର୍ଗାପୂଜା ବା ଦୀପାବଳୀର ବାଣଫୁଟାରେ ଯେମିତି ଅନ୍ୟ ଧର୍ମର ଲୋକମାନେ ଯୋଗ ଦିଅନ୍ତି, ଠିକ୍ ସେଇମିତି ଆମେରିକାରେ କେବଳ ଖ୍ରୀଷ୍ଟିଆନ୍ ନୁହଁ, ଅନ୍ୟାନ୍ୟ ଧର୍ମର ଲୋକମାନେ ମଧ୍ୟ କ୍ରିସ୍‌ମାସକୁ ଉପଭୋଗ କରନ୍ତି। ଆମ ଭାରତୀୟ ହିନ୍ଦୁ ବନ୍ଧୁମାନଙ୍କ ମଧ୍ୟରେ ମୁଁ ଏଥର ଦେଖିଲି ଯେ ପ୍ରାୟ ପ୍ରତି ଘରେ କ୍ରିସ୍‌ମାସ୍ ଗଛ କିଣାଯାଏ ଓ ଉପହାର ଦିଆନିଆ ହୁଏ। କ୍ରିସ୍‌ମାସର ବହୁ ପୂର୍ବରୁ ''କ୍ରିସ୍‌ମାସ ପାର୍ଟି''ମାନ ମଧ୍ୟ ଆରମ୍ଭ ହୋଇଯାଏ।

କ୍ରିସ୍‌ମାସ ଓ ନୂଆ ବର୍ଷ ଉଦ୍ଦେଶ୍ୟରେ ସ୍କୁଲ ପ୍ରାୟ ତିନି ସପ୍ତାହ ବନ୍ଦ ହୋଇଗଲା। ସେତିକିବେଳେ ସମସ୍ତ ସରକାରୀ ଓ ବେସରକାରୀ ଅନୁଷ୍ଠାନମାନଙ୍କରେ କ୍ରିସ୍‌ମାସର ପୂର୍ବ ସନ୍ଧ୍ୟାରୁ ନୂଆବର୍ଷ ପର୍ଯ୍ୟନ୍ତ କାମ ମଧ୍ୟ ବନ୍ଦ ହୋଇଯାଏ। ତେଣୁ ସାମ୍ନାରେ ବେଶ୍ ଲମ୍ବା ଛୁଟି। କେବଳ ଭୋଜିଭାତ ଓ ଉତ୍ସବରେ ଏହି ଅମୂଲ୍ୟ ଛୁଟିଟି ନ କଟେଇ କୌଣସି ଏକ ଦର୍ଶନୀୟ ସ୍ଥାନ ବୁଲିଯିବା କଥା ଆମେ ଚିନ୍ତା କଲୁ।

ତୁ ତ ଜାଣିଛୁ କେଉଁଠିକୁ ବୁଲିଯିବାକୁ ହେଲେ ମୁଁ ବହୁତ ପୂର୍ବରୁ ସେଥିପାଇଁ

ଯୋଜନା ଆରମ୍ଭ କରିଦିଏ। ଏଥରକ କୌଣସି ନିଷ୍ପତ୍ତି ନେବା ଆଗରୁ ମୁଁ ଥରେ ଆମେରିକାନ୍ ଅଟୋମୋବାଇଲ ଆସୋସିଏସନକୁ ଗଲି। ଆମେ ଏହାର ସଭ୍ୟ। ଭାରତରେ ମଧ୍ୟ ତୋ ଭାଇନା ଅଟୋମୋବାଇଲ ଆସୋସିଏସନର ସଭ୍ୟ ଥିଲେ। କିନ୍ତୁ ଏଠିକାର ଅଟୋମୋବାଇଲ ଆସୋସିଏସନ ଓ ଭାରତର ଅଟୋମୋବାଇଲ ଆସୋସିଏସନ ମଧ୍ୟରେ ବହୁତ ତଫାତ୍। ଗାଡି କିଣିବା ପାଇଁ ଲୋନ୍ ଦେବାଠାରୁ ଆରମ୍ଭ କରି ହୋଟେଲ ବୁକିଙ୍ଗ, ରାସ୍ତାରେ ସବୁ ରକମର ସାହାଯ୍ୟ କରିବା, ବିଭିନ୍ନ ଦର୍ଶନୀୟ ସ୍ଥାନ ଉପରେ ନିର୍ଦ୍ଦିଷ୍ଟ ''ଟୁର୍ ବହି'' ଓ ମ୍ୟାପ ଯୋଗାଇବା- ଏ ସବୁ ଏଠିକାର ଅଟୋମୋବାଇଲ ଆସୋସିଏସନ ବିନା ପଇସାରେ କରିଥାଏ। ମୁଁ ପ୍ରଥମେ କେତେଗୁଡିଏ 'ଟୁର୍' ବହି ଏଠାରୁ ନେଇ ଆସିଲି। ଏଥିରେ ଆମେରିକାର ପ୍ରତି ରାଜ୍ୟରେ ଥିବା ବିଭିନ୍ନ ଦର୍ଶନୀୟ ସ୍ଥାନର ତାଲିକା, ତାହାର ଇତିହାସ, ସ୍ଥାନର ଜଳବାୟୁ, ହୋଟେଲ ଓ ରେଷ୍ଟୋରାଁର ତାଲିକା- ଏ ସବୁ ବିସ୍ତୃତ ଭାବରେ ବର୍ଣ୍ଣନା କରା ଯାଇଥାଏ। କ୍ରିସ୍‌ମାସ ଛୁଟିର ବହୁ ଆଗରୁ ମୁଁ ମୋର ଗବେଷଣା ଆରମ୍ଭ କରିଦେଲି। ତେବେ ବଡ ଶତ୍ରୁ ହେଲା ''ଶୀତ''। ଆମେରିକାର ଉତ୍ତର ଭାଗରେ ଅଧିକାଂଶ ସ୍ଥାନରେ ଶୀତଦିନେ ବରଫ ପଡେ। ତେଣୁ କ୍ୟାଲିଫୋର୍ଣ୍ଣିଆ ବାହାରକୁ କେଉଁଠିକି ଯିବା କଥା ଆମେ ଭାବି ପାରିଲୁ ନାହିଁ। ତା'ଛଡା ଦୂର ଜାଗାକୁ ଯିବା ଅର୍ଥ ଚାରିଜଣଙ୍କର ପ୍ଲେନ୍ ଟିକେଟ ଓ ଶୀତ ସାଙ୍ଗରେ ଯୁଦ୍ଧ କରିବା ଭଳି ପୋଷାକ କିଣା। ମାତ୍ର କେତୋଟି ଦିନ ପାଇଁ ଏତେ ଗୁଡାଏ ଅର୍ଥ ଖର୍ଚ୍ଚ କରିବା ଆମ ପକ୍ଷରେ ଅସମ୍ଭବ। ଶେଷରେ ସ୍ଥିର ହେଲା ଦକ୍ଷିଣ କ୍ୟାଲିଫୋର୍ଣ୍ଣିଆରେ ଥିବା ବହୁ ପୁରୁଣା ସହର ''ସାନ୍ ଡିଏଗୋ'' ଯିବୁ। ସାନ୍ ଡିଏଗୋ (San Diego) ସହରଟିରେ ଦେଖିବା ପାଇଁ ବହୁତ କିଛି ରହିଛି। ପିଲା, ବଡ ଉଭୟଙ୍କ ପକ୍ଷରେ ସ୍ଥାନଟିକୁ ଉପଭୋଗ କରିବା ସମ୍ଭବ।

ସାନ୍ ଡିଏଗୋ କ୍ୟାଲିଫୋର୍ଣ୍ଣିଆରେ ସତ, କିନ୍ତୁ କୁପରଟିନୋରୁ ଖୁବ୍ ଗୋଟାଏ ପାଖ ନୁହଁ। ଗାଡିରେ ପ୍ରାୟ ଦଶଘଣ୍ଟା ଲାଗିଗଲା। ତୋ ଭାଇନା ଓ ମୁଁ ପାଳି କରି ଗାଡି ଚଳେଇଲେ ମଧ୍ୟ ହୋଟେଲରେ ପହଞ୍ଚିବା ବେଳକୁ ଆମେ ସମ୍ପୂର୍ଣ୍ଣ ରୂପେ ଥକି ଯାଇଥିଲୁ। କେମିତି ଯେ ରାତି କଟିଗଲା ଜଣା ପଡିଲା ନାହିଁ।

୨୬ ତାରିଖ ଦିନ ସକାଳୁ ଆମେ ବେଶ୍ ସତେଜ ହୋଇ ନିଦରୁ ଉଠିଲୁ। ସକାଳଟି ଥିଲା ମେଘୁଆ। ଶୀତଦିନେ ସାନ୍ ଡିଏଗୋରେ ବେଳେ ବେଳେ ବର୍ଷା ହୋଇଥାଏ। ଶେଷରେ କ'ଣ ଆମର ଏତେ ପରିଶ୍ରମ କରି ଆସିବା ମୂଲ୍ୟହୀନ ହୋଇଯିବ? କିନ୍ତୁ ଆମେ ପ୍ରସ୍ତୁତ ହୋଇ ଯେତେବେଳେ ହୋଟେଲରୁ ବାହାରିଲୁ, ସେତେବେଳେ ଆଉ ମେଘ କାହିଁ? ସୂର୍ଯ୍ୟଙ୍କର ସୁନେଲୀ କିରଣରେ ଚକ୍ ଚକ୍ କରୁଛି ପୃଥିବୀ।

ଆମର ମନ ଖୁସି ହୋଇଗଲା। କି ସୁନ୍ଦର ସହର! ଚଉଡା ରାସ୍ତା ଦେଇ ପିଲାଙ୍କ ବରାଦ ମୁତାବକ 'ମ୍ୟାକ୍‌ଡୋନାଲଡ' ରେଷ୍ଟୋରାଁକୁ ଜଳଖିଆ ଖାଇବାକୁ ଗଲାବେଳେ ମୁଁ ମନଭରି ସହରଟିକୁ ଦେଖି ନେଉଥାଏ।

କିଏ କହିବ ଏହା ହେଉଛି କ୍ୟାଲିଫୋର୍ଣ୍ଣିଆର ପ୍ରାଚୀନତମ ସହର? ସାନ୍ ଡିଏଗୋ ସହରବାସୀଙ୍କର ନିଜ ସହରକୁ ନେଇ ଏତେ ଗର୍ବ ଯେ ସେମାନେ ଏହାକୁ ଆମେରିକାର ଶ୍ରେଷ୍ଠ ସହର ବୋଲି କହିଥାଆନ୍ତି। ସେମାନଙ୍କର ଏଭଳି ଗର୍ବ କରିବାର କାରଣ ମୁଁ ବୁଝି ପାରୁଥାଏ। ଏ ସହରର ଜଳବାୟୁ ସୁନ୍ଦର। ପରିଷ୍କାର ପରିଚ୍ଛନ୍ନତାର ତ ତୁଳନା ହୁଏ ନାହିଁ। ଏ ସବୁ ବ୍ୟତୀତ ଏହା ଏକ ପ୍ରଧାନ ପର୍ଯ୍ୟଟକ ସ୍ଥଳୀ ଏବଂ କଳା ଓ ସଂସ୍କୃତିର ପୀଠ।

ଅଥଚ ଏକଦା ସାନ୍ ଡିଏଗୋ ଥିଲା ଅତ୍ୟନ୍ତ ଅପରିଷ୍କାର, ଅସୁନ୍ଦର ଓ ଅନାମଧେୟ ସ୍ଥାନଟିଏ। ଯେଉଁମାନେ ଏହାକୁ ସେତେବେଳେ ଦେଖିଥିଲେ, ସେମାନେ ତାହାକୁ 'ମୃତ ଗ୍ରାମ' (Dead Village) ବା 'ପୃଥିବୀର ଅନ୍ତିମ କୋଣ' (Last Corner of the Earth) ବୋଲି କହିଥିଲେ। ଏହା ଅବଶ୍ୟ ପ୍ରାୟ ୪୦୦ ବର୍ଷ ତଳର କଥା। ସ୍ଥାନଟି ଏହି ଚାରିଶହ ବର୍ଷ ମଧ୍ୟରେ 'ମୃତ ଗ୍ରାମ' ପର୍ଯ୍ୟାୟରୁ ଉଠି ଆସି ଆମେରିକାର ଅଷ୍ଟମ ବୃହତ୍ ସହରରେ ପରିଣତ ହୋଇ ପାରିଛି।

ସାନ୍ ଡିଏଗୋରେ ପାଦ ଦେଇଥିବା ପ୍ରଥମ ଇଉରୋପୀୟ ଦଳଟି ଇଂଲାଣ୍ଡରୁ ଆସି ନ ଥିଲେ, ସେମାନେ ଆସିଥିଲେ ସ୍ପେନ୍‌ରୁ। ମଧ୍ୟଯୁଗରେ ସ୍ପେନ୍‌ର ନୌବାହିନୀ ଖୁବ୍ ଶକ୍ତିଶାଳୀ ଥିଲା। ତେଣୁ ନୂଆ ନୂଆ ସ୍ଥାନର ଅନୁସନ୍ଧାନରେ ବହୁ ସ୍ପେନ୍‌ବାସୀ ଉତ୍ସାହର ସହିତ ଜାହାଜରେ ବାହାରି ପଡୁଥିଲେ। ଏଇଭଳି ଦଳଟିଏ ମେକ୍ସିକୋରେ ପାଦ ଦେବା ପରେ ମେକ୍ସିକୋରୁ ଉତ୍ତର ଦିଗକୁ ପ୍ରଶାନ୍ତ ମହାସାଗରରେ

ଯାତ୍ରା କରିଥିଲେ। ଇତିହାସରୁ ଜଣାପଡେ ଯେ ଏଇ ଦଳଟି ବର୍ତ୍ତମାନର ସାନ ଡିଏଗୋକୁ ୧୫୪୨ ମସିହାରେ ଆବିଷ୍କାର କରିଥିଲେ। ଦଳର ଦଳପତି ଥିଲେ ରଡ୍‌ରିଗେଜ୍ କ୍ୟାବ୍ରିଲୋ। କିନ୍ତୁ କ୍ୟାବ୍ରିଲୋ ଫେରିଯିବା ପରେ ପ୍ରାକୃତିକ ବନ୍ଦର ଥିବା ଏଇ ସ୍ଥାନଟି ପୁଣି ଥରେ ଅଜଣା ଅଶୁଣା ହୋଇ ରହିଗଲା।

୧୬୦୨ ମସିହାରେ ସ୍ପେନ୍‌ର ଆଉ ଗୋଟିଏ ଦଳ ପୁଣିଥରେ ଏଇ ସ୍ଥାନଟି ଆବିଷ୍କାର କଲେ। ଦଳଟିର ନେତା ଥିଲେ ସେବାଷ୍ଟିଆନ ଭିଜ୍‌କାଏନୋ। ଭିଜ୍‌କାଏନୋ ନୂତନ ସ୍ଥାନଟିର ନାମ ରଖିଥିଲେ 'ସାନ୍ ଡିଏଗୋ'। ବାସ୍ତବରେ ସାନ୍ ଡିଏଗୋ ହେଉଛି ସ୍ପେନ୍‌ର ଆଲାକାଲା ସହରର ଜଣେ ଧାର୍ମିକ ମହାପୁରୁଷଙ୍କର ନାମ। ମହାପୁରୁଷ ସାନ୍ ଡିଏଗୋ ନିଜର ଦୟା ଓ ଜନସେବା ଯୋଗୁଁ ସ୍ପେନ୍‌ବାସୀଙ୍କର ଅତି ପ୍ରିୟ ହୋଇ ପାରିଥିଲେ। ତାଙ୍କର ନାମକୁ ଅମର କରିବା ପାଇଁ ଭିଜ୍‌କାଏନୋ ସେଇ ନାମ ବାଛିଲେ ଏବଂ ଶେଷରେ "ସାନ୍ ଡିଏଗୋ" ନାମଟି ହିଁ ରହିଗଲା।

ସ୍ଥାନଟିର ନାମକରଣ ହୋଇଗଲେ ମଧ୍ୟ ଭିଜ୍‌କାଏନୋ ଫେରିଯିବା ପରେ ସ୍ପେନ ସରକାର ଏ ଜାଗା ନେଇ ନିସ୍ପୃହ ହୋଇଗଲେ। ଏତେ ଦୂରରୁ ନିଜ ପ୍ରାଧାନ୍ୟ ବଜାୟ ରଖିବା ସ୍ପେନ ପାଇଁ ସହଜ ନ ଥିଲା। ଏମିତିରେ ପ୍ରାୟ ୧୫୦ ବର୍ଷ କଟିଗଲା। ୧୬୬୦ ମସିହାରେ ଦେଖାଗଲା ଯେ ଇଂଲାଣ୍ଡ, ଫ୍ରାନ୍‌ସ ଓ ରୁଷିଆର ନୌଶକ୍ତି କ୍ରମାଗତ ଭାବରେ ବଢ଼ିବାରେ ଲାଗିଛି ଏବଂ ଯଦି ସ୍ପେନ୍ ସରକାର କ୍ୟାଲିଫୋର୍ଣ୍ଣିଆର ବିଭିନ୍ନ ସ୍ଥାନ ଉପରେ କର୍ତ୍ତୃତ୍ୱ ଜାରୀ ନ କରନ୍ତି, ତେବେ ସ୍ଥାନଗୁଡ଼ିକ ହାତଛଡ଼ା ହୋଇଯିବା ଅସମ୍ଭବ ନୁହଁ। ତେଣୁ ୧୭୬୯ରେ ସ୍ପେନ ସରକାର ଗୋଟିଏ ଦଳକୁ ସାନ୍ ଡିଏଗୋ ପଠାଇଲେ। ସେମାନଙ୍କୁ ଆଦେଶ ଦିଆ ଯାଇଥିଲା ଯେ ସେମାନେ ଏଠାରେ ଗୋଟିଏ ଦୁର୍ଗ ଓ ଗୀର୍ଜା ସ୍ଥାପନ କରିବେ।

ଗୀର୍ଜା ସ୍ଥାପନ କରିବା ପାଇଁ ଆସିଥିଲେ ଫାଦର୍ ଜୁନିପେରୋ ସେରା। ଫାଦର୍ ଜୁନିପେରୋଙ୍କ ଆଶୀର୍ବାଦରେ 'ସାନ୍ ଡିଏଗୋ'ର ବିଧିବଦ୍ଧ ସ୍ଥାପନା କରାଗଲା। ସେଦିନ ଥିଲା ୧୬ ଜୁଲାଇ, ୧୭୬୯। ଫାଦର ସେରା ଯେ କେବଳ ସ୍ଥାନଟିକୁ ଚର୍ଚ୍ଚର ଆଶୀର୍ବାଦ ଓ ସମର୍ଥନ ଦେଇଥିଲେ ତା' ନୁହଁ, ସ୍ଥାନଟିର ସର୍ବାଙ୍ଗୀନ ଉନ୍ନତିରେ ସେ ମନପ୍ରାଣ ଢାଳି ଦେଇଥିଲେ। ଫାଦର୍ ସେରାଙ୍କୁ ବାଦ୍ ଦେଲେ କେବଳ ସାନ୍ ଡିଏଗୋ କାହିଁକି, କ୍ୟାଲିଫୋର୍ଣ୍ଣିଆର

ଅଧିକାଂଶ ସ୍ଥାନର ଇତିହାସ ଅସମ୍ପୂର୍ଣ୍ଣ ରହିଯିବ। ସାନ୍ ଡିଏଗୋରୁ ସାନ୍ ଫ୍ରାନ୍‌ସିସ୍‌କୋ ପର୍ଯ୍ୟନ୍ତ ଯାତ୍ରା କରି ସେ ଅନେକ ମିଶନ ପ୍ରତିଷ୍ଠା କରିଥିଲେ ଏବଂ ସ୍ଥାନୀୟ ଅଧିବାସୀଙ୍କୁ ଖ୍ରୀଷ୍ଟଧର୍ମରେ ଅନୁପ୍ରାଣିତ କରାଇ ସେମାନଙ୍କ ମନରୁ ବହୁ କୁସଂସ୍କାର ତଥା ଅନ୍ଧବିଶ୍ୱାସ ଦୂର କରେଇ ଦେଇଥିଲେ।

ଫାଦର ସେରାଙ୍କ ତତ୍ତ୍ୱାବଧାନରେ ଧାର୍ମିକ ଚେତନା ବୃଦ୍ଧି ପାଇଥିଲେ ମଧ୍ୟ ଦୁର୍ଗଟିଏ ଭିତରୁ ସ୍ଥାନଟିର କୌଣସି ଉଲ୍ଲେଖଯୋଗ୍ୟ ଉନ୍ନତି କରିବା ସମ୍ଭବପର ହୋଇ ନଥିଲା। ୧୮୨୨ ମସିହାରେ ସ୍ପେନ୍ ଅଧୀନରୁ ମେକ୍‌ସିକୋ ମୁକ୍ତ ହୋଇଗଲା ଏବଂ ସାନ୍ ଡିଏଗୋ ମେକ୍‌ସିକୋର ଗୋଟିଏ ଅଂଶ ହୋଇଗଲା। କିନ୍ତୁ ଏଥିନେଇ ସହରଟିରେ କୌଣସି ବଡ ଧରଣର ପରିବର୍ତ୍ତନ ହେଲା ନାହିଁ। କାରଣ ବହୁ ବର୍ଷ ଧରି ସ୍ପେନ୍‌ର ଅଧୀନରେ ରହିଯିବା ପରେ ମେକ୍‌ସିକୋ ଉପରେ ସ୍ପେନ୍ ସଂସ୍କୃତିର ଛାପ ବେଶ୍ ଗଭୀର ଭାବରେ ପଡି ଯାଇଥିଲା।

ସେତେବେଳେ ଯୁକ୍ତରାଷ୍ଟ୍ର ଆମେରିକା କ୍ରମଶଃ ପଶ୍ଚିମରେ ଥିବା ସ୍ଥାନଗୁଡିକ ଅଧିକାର କରି ନେବାର ଚେଷ୍ଟାରେ ଥାଏ। ଜୁଲାଇ ୨୯, ୧୮୪୬ର ଶେଷରେ ଆମେରିକା ନିଜ ଚେଷ୍ଟାରେ ସଫଳ ହେଲା। ସେଇଦିନ ଆମେରିକାର ସୈନ୍ୟମାନେ ଅପରିଷ୍କାର ଓ ଅନୁନ୍ନତ ସାନ୍ ଡିଏଗୋକୁ ଅଧିକାର କରିନେଲେ। ଆମେରିକା ଅଧୀନକୁ ଆସିବାପରେ ସ୍ଥାନଟିରେ ବହୁ ପରିବର୍ତ୍ତନ ଦେଖାଗଲା। ନୂତନ ଉତ୍ସାହ ନେଇ ବିଭିନ୍ନ ସ୍ଥାନରୁ ଲୋକମାନେ ଏହି ନୂତନ ସ୍ଥାନରେ ପାଦ ଦେବା ଆରମ୍ଭ କଲେ। ଏ ସବୁ ସତ୍ତ୍ୱେ ଜଣାଯାଏ ଯେ ୧୮୬୦ରେ ସାନ୍ ଡିଏଗୋରେ ଧଳା ଲୋକଙ୍କ ସଂଖ୍ୟା ଥିଲା ମାତ୍ର ୭୩୧।

ଏଇ ଛୋଟ ସ୍ଥାନଟିର ରୂପରେଖା ଯିଏ ବଦଳେଇ ଦେବାରେ ସକ୍ଷମ ହେଲେ ଏବଂ ଏହାକୁ ଏକ ପ୍ରଧାନ ବନ୍ଦର ଓ ବ୍ୟବସାୟିକ ସହରରେ ପରିଣତ କରାଇ ପାରିଲେ, ସେ ହେଉଛନ୍ତି ଆଲୋନ୍‌ଜୋ ଇ. ହୋର୍‌ଟୋନ। ହୋରଟୋନ ଉଭୟ ଅର୍ଥ ଓ ଅଭିଜ୍ଞତା ନେଇ ୧୫ ଏପ୍ରିଲ୍, ୧୮୬୭ରେ ସାନ ଡିଏଗୋରେ ପାଦ ଦେଇଥିଲେ। ତାଙ୍କର ତତ୍ତ୍ୱାବଧାନରେ ସ୍ଥାନଟିର ବହୁବିଧ ଉନ୍ନତି ହେବାରେ ଲାଗିଲା ଏବଂ ଶେଷରେ ଏହା ଆଜିର ସାନ ଡିଏଗୋରେ ପରିଣତ ହୋଇପାରିଲା।

ହୋରଟୋନଙ୍କ ସମୟର ସାନ ଡିଏଗୋ ଏବେ ସାନ ଡିଏଗୋ ସହରର ଗୋଟିଏ କ୍ଷୁଦ୍ର ଅଂଶ ମାତ୍ର। ଏହାକୁ କୁହାଯାଏ ପୁରୁଣା ସହର (old city)।

ଆମେ ଜଳଖିଆ ଖାଇ ସାରି ଏଇ 'ପୁରୁଣା ସହର'ର ରାସ୍ତା ଦେଇ ଆଗେଇ ଗଲୁ। ଆମର ଲକ୍ଷ୍ୟସ୍ଥଳ ଥିଲା ମିଶନ ବେ (Mission Bay) ର ସି ଓ୍ୱାର୍ଲଡ (Sea World)।

ସାନ ଡିଏଗୋରେ ତ ଦେଖିବା ପାଇଁ ବହୁତ କିଛି ରହିଛି, କିନ୍ତୁ ଯାହା ଦେଖିବା ପାଇଁ ପୃଥିବୀର ବିଭିନ୍ନ ସ୍ଥାନରୁ ଲୋକମାନେ ଏଠିକୁ ଆସି ଥାଆନ୍ତି, ତାହା ହେଉଛି ଏଇ ସି ଓ୍ୱାର୍ଲଡ। ସାମୁଦ୍ରିକ ଜୀବନ ସହିତ ମଣିଷକୁ ପରିଚିତ କରାଇବା ଏହାର ପ୍ରଧାନ ଉଦ୍ଦେଶ୍ୟ। ଏଇଠି ରହିଛନ୍ତି ସିଲ୍, ସି ଲାଇଅନ, ଓ୍ୱାଲରସ୍, ପେଙ୍ଗୁଇନ୍, ତିମି, ଡଲଫିନ୍ ଓ ଆହୁରି ଅନେକ ରକମର ଜୀବଜନ୍ତୁ। ଏମାନଙ୍କୁ ପାଣି ଭରା ଷ୍ଟାଡିଅମ୍ ମଧ୍ୟରେ ରଖାଯାଇଛି। ଏହି ଷ୍ଟାଡିଅମ୍‌ମାନଙ୍କରେ ଜୀବଜନ୍ତୁଙ୍କର 'ଖେଳ' ଦେଖିବାକୁ ମିଳେ। 'ଖେଳ' ଶବ୍ଦଟି ଶୁଣି ସର୍କସର ଖେଳ କଥା ଭାବି ବସିବୁ ନାହିଁ। 'ସି ଓ୍ୱାର୍ଲଡ'ର ବିଶେଷତ୍ୱ ଏହି ଯେ ଏଠାରେ ଦର୍ଶକମାନଙ୍କୁ ଆନନ୍ଦ ଦେବା ପାଇଁ ଜନ୍ତୁମାନଙ୍କୁ ଯନ୍ତ୍ରଣା ଦିଆଯାଇ ନ ଥାଏ। ବରଂ ଶବ୍ଦ ମାଧ୍ୟମରେ ଜନ୍ତୁମାନଙ୍କ ସହିତ ଯୋଗାଯୋଗ ସୃଷ୍ଟି କରି ସେମାନଙ୍କର ପ୍ରାକୃତିକ ବ୍ୟବହାରକୁ ନିୟନ୍ତ୍ରଣ କରା ଯାଇଥାଏ। ଏହି ପ୍ରାକୃତିକ ବ୍ୟବହାର ଏତେ ମନୋମୁଗ୍‌ଧକର ଯେ ମନେହେବ କେହି ଯେମିତି ବର୍ଷ ବର୍ଷ ଧରି ଚେଷ୍ଟା କରି ଏଇ ସବୁ ଖେଳ ସେମାନଙ୍କୁ ଶିଖାଇଛି। ସୃଷ୍ଟିକର୍ତ୍ତାଙ୍କର ସୃଷ୍ଟି ବାସ୍ତବରେ ବଡ ବିଚିତ୍ର!

ଆମେ ସିଙ୍ଗାପୁରରେ ସିଲ ଓ ସି ଲାଇଅନଙ୍କ ଖେଳ ଦେଖିଥିଲୁ। ତେଣୁ ସେ ସବୁ ଦେଖିବା ଅପେକ୍ଷା ତିମି ଓ ଡଲଫିନର ଖେଳ ଦେଖିବା ପାଇଁ ଆମର ବେଶୀ ଆଗ୍ରହ ଥିଲା। ଟିକେଟ କାଟି ସି ଓ୍ୱାର୍ଲଡରେ ପଶିବା ବେଳେ ଜଣେ କର୍ମଚାରୀ ଆମକୁ ସେଦିନର ଖେଳଗୁଡିକର ସମୟ ସୂଚୀ ଓ ସ୍ଥାନଟିର ମ୍ୟାପ ଧରେଇ ଦେଲେ। ଏହି ସମୟ ସୂଚୀ ଦେଖି ଆମେ ପ୍ରଥମେ ନିର୍ଣ୍ଣୟ କରିନେଲୁ କେଉଁ କ୍ରମରେ ଖେଳ ଦେଖିବୁ। ଆମ ତାଲିକା ଅନୁସାରେ ପ୍ରଥମ ଥିଲା 'ଡଲଫିନ୍ ଶୋ' (Dolphin Show)।

ଡଲଫିନ୍ ଷ୍ଟାଡିଅମ୍ ନିକଟରେ ଆମେ ପହଞ୍ଚିଗଲୁ। ଖେଳ ଆରମ୍ଭ ହେବାକୁ ମାତ୍ର ୧୦ ମିନିଟ ବାକୀ। ତେଣୁ ଷ୍ଟାଡିଅମ୍‌ଟିରେ ଜାଗା ଆଦୌ ନାହିଁ। ଅଥଚ ଛଅଧାଡି ପ୍ରାୟ ଖାଲି। ଏହାର କି ରହସ୍ୟ? ନିକଟରୁ ଡଲଫିନ୍‌ମାନଙ୍କର ଖେଳ

ଭଲରେ ଦେଖିହେବ, କିନ୍ତୁ ସେହି ସ୍ଥାନ ସବୁ ଖାଲି ପଡିଛି। ପ୍ରଥମ ଧାଡି ନିକଟରେ ପହଞ୍ଚିଯିବା ପରେ ସିଟ ଖାଲି ରହିବାର ରହସ୍ୟ ଜଣା ପଡିଗଲା। ସେଇଠାରେ ବଡ ବଡ ଅକ୍ଷରରେ ନୋଟିସ ଲଗା ହୋଇଥିଲା "ସାବଧାନ! ପ୍ରଥମ ଛଅ ଧାଡିରେ ବସିଲେ ସମ୍ପୂର୍ଣ୍ଣ ରୂପେ ଓଦା ହୋଇଯିବାର ଭୟ ରହିଛି।"

ନିକଟରୁ ଡଲଫିନ୍ ଦେଖିବାର ଆଗ୍ରହ, ପୁଣି ଓଦା ହେବାର ଆନନ୍ଦ- ପିଲାଙ୍କର ଏକା ଜିଦ୍ ପ୍ରଥମ ଧାଡିରେ ବସିବେ। କିନ୍ତୁ ଶୀତଦିନରେ ଓଦା ଜୁବୁବୁବୁ ଲୁଗା ପିନ୍ଧି ବୁଲିବ କିଏ? ସେମାନଙ୍କୁ ବହୁତ ବୁଝେଇ ଶେଷରେ ଷଷ୍ଠ ଧାଡିରେ ବସିଲୁ।

ମିତୁ, ତୁ ବୋଧହୁଏ ଡଲଫିନ୍ କେବେହେଲେ ଦେଖି ନାହୁଁ। କିନ୍ତୁ ତା'ର ଚିତ୍ର ନିଶ୍ଚୟ ଦେଖିଥିବୁ। କୁହାଯାଏ ଯେ ଡଲଫିନ୍ ଏକମାତ୍ର ପ୍ରାଣୀ, ଯିଏ କି କିଛି ପାଇବାର ଆଶା ନ ରଖି ମଣିଷକୁ ଭଲ ପାଏ। ସ୍ଥଳଭୂମିରେ ରହୁଥିବା ବହୁ ଜନ୍ତୁ ମଣିଷଠାରୁ ଦୂରେଇ ରହନ୍ତି। ଆଉ କୁକୁର, ବିରେଇ, ଠେକୁଆ ଖାଦ୍ୟ ପାଇବା ଆଶାରେ ପୋଷା ମାନନ୍ତି। କିନ୍ତୁ ଡଲଫିନ୍‌ମାନଙ୍କର ମଣିଷ ନିକଟକୁ ଆସିବା ବା ସେମାନଙ୍କ ସହିତ ବନ୍ଧୁତ୍ୱ କରିବାର କୌଣସି କାରଣ ନ ଥିଲେ ମଧ୍ୟ ଯୁଗେ ଯୁଗେ ସେମାନେ ମଣିଷ ସହିତ ବନ୍ଧୁତ୍ୱ ସ୍ଥାପନ କରିଛନ୍ତି ଓ ଅନେକଙ୍କୁ ବହୁ ରକମର ସାହାଯ୍ୟ କରିଛନ୍ତି।

ତିମିମାଛ ପରି ଡଲଫିନ୍ ଏକ ସ୍ତନପାୟୀ ପ୍ରାଣୀ। ପ୍ରାଣୀ ବିଜ୍ଞାନ ଦୃଷ୍ଟିରୁ ଉଭୟ ତିମି ଓ ଡଲଫିନଙ୍କୁ ଏକା 'ବଂଶ'ରେ ଅନ୍ତର୍ଭୁକ୍ତ କରାଯାଏ। ଯେପରି ଶରୀର ଗଠନ, ଆଚାର ବ୍ୟବହାର ଇତ୍ୟାଦି ଦୃଷ୍ଟିରୁ ମାଙ୍କଡ ଓ ଗରିଲାଙ୍କୁ ସମଗୋତ୍ର ବୋଲି ଧରାଯାଏ, ସେଇଭଳି ତିମି ମାଛ ଓ ଡଲଫିନ ଏକା ବଂଶୀୟ।

ଡଲଫିନ୍‌କୁ ନେଇ କେଉଁ ପୁରୁଣା ଯୁଗରୁ ବହୁ କାହାଣୀ ରହି ଆସିଛି। କିନ୍ତୁ ବାସ୍ତବରେ ଡଲଫିନ୍ ପ୍ରତି ମଣିଷର ଆଗ୍ରହ ସୃଷ୍ଟି ହେଲା ପ୍ରାୟ ଶହେ, ଦେଢଶହ ବର୍ଷ ତଳେ। ନିଉଜିଲ୍ୟାଣ୍ଡର ସମୁଦ୍ରରେ ରହିଥିବା ଗୋଟିଏ ଡଲଫିନ୍ ଏଥିପାଇଁ ଦାୟୀ। ସେଠାକାର ଫରାସୀ ପାଶ୍ ଦେଇ ସେତେବେଳେ ଯାତ୍ରୀବାହୀ ଜାହାଜମାନ ଯାଉଥିଲା। କ୍ରମେ ଯାତ୍ରୀ ଓ ଜାହାଜର କର୍ମଚାରୀମାନେ ପାଣି ଭିତରେ ଗୋଟିଏ "ବଡ ଧଳା ମାଛ" ଦେଖିଥିବା କଥା କହିଲେ। ବହୁ ଲୋକ ଏହାକୁ ମନଗଢା କାହାଣୀ ରୂପେ ଉଡେଇ ଦେଲେ। କିନ୍ତୁ କ୍ରମେ ଜଣାଗଲା

ଯେ କଥାଟି ମିଛ ନୁହଁ। ପାଣି ଭିତରେ ବଡ ଧଳାମାଛଟିଏ ବାସ୍ତବରେ ରହିଛି ଏବଂ ଏହି ମାଛ କୌଣସି ରକମର ଆକ୍ରମଣ ନ କରି ଯାତ୍ରୀମାନଙ୍କ ସହିତ ବନ୍ଧୁତ୍ୱ ସ୍ଥାପନର ଭାବଭଙ୍ଗୀ ଦେଖାଉଛି। କ୍ରମଶଃ ଏହା ଯାତ୍ରୀମାନଙ୍କ ପାଇଁ ଏକ ପ୍ରଧାନ ଆକର୍ଷଣ ହୋଇଗଲା। ବିଂଶ ଶତାବ୍ଦୀର ଆରମ୍ଭରେ କିଏ ଜଣେ ଏହି ଡଲଫିନର ନାମ ରଖିଦେଲା ପେଲୋରସ୍ ଜ୍ୟାକ୍ (Pelorous Jack) ଏବଂ ସେହି ନାମ ରହିଗଲା।

ବହୁ ଘଟଣା ଭଳି ପେଲୋରସ ଜ୍ୟାକର କାହାଣୀ ହୁଏତ ସମୟ ସ୍ରୋତରେ ଭାସି ଯାଇ ଥାଆନ୍ତା। କିନ୍ତୁ ଏହା ମାଧ୍ୟମ ଦେଇ ପ୍ରାଣୀତତ୍ତ୍ୱବିତ୍‌ମାନେ ଆବିଷ୍କାର କଲେ ଯେ ଡଲଫିନକୁ ଭୟ କରିବାର କିଛି ନାହିଁ; ଏହା ଏକ ସ୍ନେହୀ ଓ ଉପକାରୀ ଜନ୍ତୁଟିଏ। ଏଇଭଳି ଏକ ସମୟରେ ଗୋଟିଏ ଘଟଣା ଘଟିଗଲା। ଥରେ ଜଣେ ଯାତ୍ରୀ ପେଲୋରସ୍ ଜ୍ୟାକ୍‌କୁ ଲକ୍ଷ୍ୟ କରି ଗୁଳି ଚଳେଇଲେ। ଭାଗ୍ୟବଶତଃ ଗୁଳିଟି ଲକ୍ଷ୍ୟଭ୍ରଷ୍ଟ ହୋଇଗଲା। କିନ୍ତୁ ଅଧିକାଂଶ ନାଗରିକ ସରକାରଙ୍କୁ ନିବେଦନ ଜଣାଇଲେ ଯେ ଏଇ ଜନ୍ତୁକୁ ଆଇନର ସୁରକ୍ଷା ଦିଆଯାଉ। ସେ ସମୟରେ ଏଇଭଳି ଏକ ଆଇନ ପ୍ରଣୟନ କରିବା ସହଜ କଥା ନ ଥିଲା; କିନ୍ତୁ ଶେଷରେ ୧୯୦୪ରେ ନିଉଜିଲ୍ୟାଣ୍ଡର ରାଜଧାନୀ ୱେଲିଙ୍ଗଟନରେ ଏଇ ଆଇନ ପାଶ୍ ହୋଇଗଲା ଏବଂ ପେଲୋରସ ଜ୍ୟାକର କାହାଣୀ ଅପାଶୋରା ରହିଗଲା।

ଡଲଫିନ୍ ଖେଳ ଆରମ୍ଭ ହେଲା। ଚାରୋଟି ଡଲ୍‌ଫିନ ଆକାଶକୁ ଡେଇଁ ପାଣି ଭିତରେ ପଡିବା, ଥୋଡି ଉପରକୁ କରି ସିଧା ହୋଇ ପାଣି ଭିତରେ 'ଚାଲିବା', ପିଠିରେ ଟ୍ରେନରକୁ ବସେଇ ବୁଲେଇବା- ଏଇଭଳି ୨୦ ମିନିଟ୍ କାଳ ବହୁତ ରକମର ଖେଳ ଦେଖାଇଲେ। ଚାରୋଟି ଡଲଫିନ୍ ମଧ୍ୟରୁ ଗୋଟିଏ ଶିଶୁ। ସେ ତା' ମା' ସାଙ୍ଗେ ସାଙ୍ଗେ ରହିଥାଏ ଏବଂ ମା'କୁ ଅନୁକରଣ କରୁଥାଏ। ଦର୍ଶକମାନଙ୍କୁ ଖେଳ ଦେଖାଇବା ବେଳେ ଶିଶୁ ଡଲ୍‌ଫିନଟି "ବାଧ୍ୟ ଶିଶୁ" ହୋଇଥିଲେ ମଧ୍ୟ ଟ୍ରେନର୍ ଜଣକ କହିଲେ ଯେ ବେଳେ ବେଳେ ସେ ମଣିଷ ଶିଶୁ ଭଳି ବା ବିଲେଇଛୁଆ, କୁକୁର ଛୁଆ ଭଳି ବଦମାସୀ କରିଥାଏ। ମଝିରେ ମଝିରେ ସେ ଏମିତି ଅଦ୍ଭୁତ ଖେଳ ସବୁ ଆବିଷ୍କାର କରେ ଯେ ତା' ମା' ବିରକ୍ତ ହୋଇଯାଏ ଏବଂ ମା' ଏହି ଖେଳ ବନ୍ଦ କରେଇଦେବାର

ଚେଷ୍ଟା କଲେ ଶିଶୁଟି ବେଶୀ ଖେଳିବାରେ ଲାଗେ। ସାଧାରଣତଃ ମା' ବିଶ୍ରାମ ନେଉଥିଲା ବେଳେ ତା'ର ଏଇ ବଦମାସୀ ଆରମ୍ଭ ହୁଏ। ହେଲେ ମା' ଡଲଫିନର ଧୈର୍ଯ୍ୟ ଦେଖିବା ଭଳି। ଶିଶୁଟି ବହୁ ରକମର ବଦମାସୀ କଲେ ମଧ୍ୟ ମା' ଖୁବ୍ ଧୈର୍ଯ୍ୟର ସହିତ ଶିଶୁକୁ ଶାନ୍ତ କରାଏ। ଆଦୌ କାମୁଡେ ନାହିଁ ବା ଲାଞ୍ଜରେ ମାଡ ଦିଏ ନାହିଁ।

ଡଲଫିନ୍ ଶୋ ଶେଷ ହେଲା। ମୁହଁ ଓ ହାତରୁ ପାଣିଛିଟା ପୋଛି ନେଇ ଆମେ ଚାଲିଲୁ ତିମି ମାଛର ଷ୍ଟାଡିଅମ୍ ଆଡେ। ଆମ ତାଲିକାରେ ଦୁଇ ନମ୍ବର ସ୍ଥାନରେ ଥିଲା ଶାମୁ ଶୋ (Shamu Show)। ଶାମୁ ହେଉଛି ଏକ ବିରାଟ ତିମିମାଛର ନାଁ। ଶାମୁ ବ୍ୟତୀତ ଏଇ ଖେଳରେ ଆହୁରି ଅନେକ ତିମି (Killer Whales) ରହିଥିଲେ ମଧ୍ୟ ଶାମୁ ଏତେ ବେଶୀ ଜନପ୍ରିୟ ହୋଇଗଲା ଯେ ଖେଳଟିର ନାମ ରହିଗଲା 'ଶାମୁ ଶୋ'।

ଡଲଫିନ୍ ଷ୍ଟାଡିଅମ୍ ଭଳି ତିମିମାଛର ଷ୍ଟାଡିଅମରେ ଯୋଗିଷ ପକେଇବାକୁ ଜାଗା ନାହିଁ। କିନ୍ତୁ ପୂର୍ବଭଳି ପ୍ରଥମ ୧୫ ଧାଡି ଖାଲି ଓ ସେଇଠି ପୂର୍ବଭଳି ନୋଟିସ। ଡଲଫିନ୍ ଷ୍ଟାଡିଅମରେ ଭଲ ଭାବରେ ଓଦା ନ ହୋଇ ପାରିଥିବାର ଅବଶୋଷ ପିଲାଙ୍କ ମନରେ ଥିଲା। ତେଣୁ ସେମାନେ ପୁଣି ଜିଦ କଲେ ସାମ୍ନା ଧାଡିରେ ବସିବା ପାଇଁ। କିନ୍ତୁ ୮ରୁ ୧୦ ଟନ୍ ଓଜନର ଜନ୍ତୁଟିଏ ପାଣି ଛିଟିକେଇଲେ ଆମର ଯେଉଁ ଅବସ୍ଥା ହେବ ସେ କଥା ଚିନ୍ତା କରି ଆମେ ପିଲାଙ୍କୁ ବାଧ୍ୟ କରେଇ ପଛଧାଡିକୁ ନେଲୁ।

ପୃଥିବୀର ୭୧ ଭାଗ ସମୁଦ୍ର। ଏଇ ସମୁଦ୍ରରେ ରହିଥିବା ବହୁ ଜୀବଜନ୍ତୁଙ୍କ ମଧ୍ୟରୁ ଯୁଗେ ଯୁଗେ ମଣିଷ ମନରେ ଯିଏ ଅଧିକ ବିସ୍ମୟ ଓ ଭୟ ସୃଷ୍ଟି କରିଛି, ସେ ହେଉଛି ଏଇ ତିମି ମାଛ। 'ତିମି' କହିଲେ ଆମ ମନ ଭିତରେ ଗୋଟିଏ ବିରାଟ ଜନ୍ତୁର ଛବିଟିଏ ଆଙ୍କି ହୋଇଯାଏ। କିନ୍ତୁ ସବୁ ତିମି ବଡ ନୁହନ୍ତି। ଏମାନଙ୍କ ମଧ୍ୟରେ ସବୁଠାରୁ ବଡ ହେଉଛି ନୀଳ ତିମି (Blue Whale)। ଚାରୋଟି ଲମ୍ବା ବସକୁ ଗୋଟିଏ ପରେ ଗୋଟିଏ ଠିଆ କରେଇ ଦେଲେ ଯେତିକି ଲମ୍ବା ହେବ, ନୀଳ ତିମିର ଲମ୍ବା ପ୍ରାୟ ସେତିକି। ଗୋଟିଏ ନୀଳ ତିମିର ଓଜନ ୮୦ରୁ ୧୨୦ ଟନ୍।

କିନ୍ତୁ ନୀଳ ତିମି ବ୍ୟତୀତ ବିଭିନ୍ନ ଆକାରର ଓ ବିଭିନ୍ନ ଓଜନର ତିମି

ମଧ୍ୟ ରହିଛନ୍ତି। ଶାମୁ ବା ଅନ୍ୟାନ୍ୟ ଖେଳ ଦେଖାଉଥିବା ତିମିକୁ କୁହାଯାଏ Killer Whale ବା ପ୍ରାଣୀତତ୍ତ୍ୱବିତ୍‌ମାନଙ୍କ ଭାଷାରେ Orcinus Orca। ଏହି ଭୟଙ୍କର ପ୍ରାଣୀଗୁଡିକ କି ସୁନ୍ଦର ଖେଳ ନ ଦେଖାଇଲେ ସେଦିନ! ଟ୍ରେନରକୁ ପିଠିରେ ବସେଇ ନେଇ ଖୁବ୍ ବେଗରେ ଷ୍ଟାଡିଅମ୍ ଚାରିପଟେ ଥରେ ଘୁରି ଶାମୁ ଯେତେବେଳେ ତାକୁ ଆକାଶକୁ ଫୋପାଡି ଦେଇ ବଲ୍‌ଟିଏ ଭଳି ଥୋଡିରେ ଧରିନେଲା, ସେତେବେଳେ ନିଃଶ୍ୱାସ ଯେମିତି ଅଟକି ଗଲା। କିନ୍ତୁ ଟ୍ରେନର୍ ଜଣକ ହସି ହସି ଶାମୁକୁ ଗେହ୍ଲା କରି ତା' ପାଟିରେ ମୁଠାଏ ମାଛ ପକେଇ ଦେଲେ। ଖେଳ ଶେଷ ହେବା ମାତ୍ରକେ ଦର୍ଶକମାନଙ୍କର ତାଳିରେ ଷ୍ଟାଡିଅମ୍ ଭରିଗଲା।

ଡଲ୍‌ଫିନ ଓ ତିମି ପରେ ସିଲ୍, ସି ଲାଇଅନ ଓ ୱାଲରସଙ୍କ ଖେଳ। ପୂର୍ବରୁ ସିଙ୍ଗାପୁର ଚିଡିଆଖାନାରେ ଆମେ ସିଲ୍ ଓ ସି ଲାଇଅନ ଦେଖିଥିଲୁ। କିନ୍ତୁ ୱାଲ୍‌ରସ ଆମେ ଏଇ ପ୍ରଥମ ଦେଖିଲୁ। ବିଶାଳକାୟ ସାମୁଦ୍ରିକ ଜୀବଟିଏ। ହାତୀ ଭଳି ଚେହେରା। ପାଣିରୁ ବାହାରି ଚଟାଣରେ ପେଟ ଘଷି ଘଷି ଯେତେବେଳ ଚାଲୁଥାଏ, ଦେଖିବାକୁ ଭାରି ମଜା ଲାଗୁଥାଏ। ମନେ ହେଉଥାଏ, ଗୁଡାଏ ଚର୍ବି ଯେମିତି ଦେହରେ ବସି ଯାଇଛି। ଅଥଚ ପାଣି ଭିତରେ ଅକ୍ଳେଶରେ ପହଁରି ଯାଉଥାଏ ଜନ୍ତୁଟି!

ତିମି ହେଉ, ଡଲଫିନ ହେଉ ବା ସି ଲାଇଅନ- ଏମାନଙ୍କର କାର୍ଯ୍ୟ କଳାପକୁ ଯେଉଁମାନେ ନିୟନ୍ତ୍ରିତ କରୁଥାଆନ୍ତି, ସେମାନଙ୍କ ବେକରେ ଝୁଲୁଥାଏ ଏକପ୍ରକାର ହୁଇସିଲ। ଶବ୍ଦଦ୍ୱାରା ଟ୍ରେନର୍‌ମାନେ ଜନ୍ତୁମାନଙ୍କ ସହିତ ଏକ ମାଧ୍ୟମ ସୃଷ୍ଟି କରନ୍ତି ଏବଂ ସେହି ଅନୁସାରେ ଜନ୍ତୁଟି ଆକାଶକୁ ଡିଏଁ ବା ଲାଞ୍ଜରେ ପାଣି ଉଛୁଳେଇ ଲୋକଙ୍କ ଉପରେ ପକାଏ ଅଥବା ଥୋଡି ଉପରକୁ କରି 'ଗୀତ' ଗାଏ।

ୱାଲରସ ଖେଳ ଶେଷ ହେବା ବେଳକୁ ଦିନ ବାରଟା। ଶୀତଦିନ ହେଲେ କ'ଣ ହେବ, ଖୋଲା ଷ୍ଟାଡିଅମରେ ଖରା ବେଶ୍ କାଟୁଥାଏ। ପିଲାମାନେ କିଛି ସମୟ ବସିବାକୁ ଚାହିଁଲେ। ସେମାନଙ୍କୁ ନେଇ ଆମେ ଗୋଟିଏ ରେଷ୍ଟୋରାଁରେ କିଛି ଖାଇନେଲୁ। ତା'ପରେ ଆମର ଧାରଣା ଥିଲା ସେମାନେ ପାର୍କରେ କୌଣସି ଗଛ ଛାଇରେ କିଛି ସମୟ ଚୁପ୍ ହୋଇ ବସିବେ। କିନ୍ତୁ ରେଷ୍ଟୋରାଁରୁ ବାହାରି ସେମାନଙ୍କର ଆଖିରେ ପଡିଲା କ୍ୟାପଟେନ କିଡସ୍ ୱାର୍ଲ୍ଡ (Captain Kid's

World)। ଆଉ ସେମାନଙ୍କୁ ଚୁପ୍ କରି ରଖେଇ ପାରୁଛି କିଏ ? ଆମ ହାତ ଛାଡି ଦୌଡି ଦୌଡି ସେମାନେ କାଠ ଫାଟକ ଭିତରେ ପଶିଗଲେ। କ୍ୟାପଟେନ୍ କିଡ୍ସ ଓ୍ୱାର୍ଲଡ ହେଉଛି ପିଲାମାନଙ୍କ ପାଇଁ ତିଆରି ମନୋରଞ୍ଜନ ପାର୍କଟିଏ। ଏହା ଅତି ଛୋଟ ପିଲାଙ୍କ ଉଦ୍ଦେଶ୍ୟରେ ଆରମ୍ଭ ହୋଇଥିଲା। ପିଲାଙ୍କୁ କାଖେଇ ବା ପ୍ରାମ୍‌ରେ ଠେଲି ଠେଲି ମା', ବାପାମାନେ ଯେତେବେଳେ କ୍ଳାନ୍ତ ହୋଇ ଯାଆନ୍ତି ଏବଂ ଷ୍ଟାଡିଅମରୁ ଷ୍ଟାଡିଅମ ବୁଲି କିଛି ବୁଝୁ ନ ଥିବା ଛୋଟ ପିଲାମାନେ ଯେତେବେଳେ ବିରକ୍ତ ହୋଇ ଯାଆନ୍ତି, ସେତେବେଳେ ସେମାନଙ୍କ ମନ ଭୁଲାଇବା ପାଇଁ ଏଇ ପାର୍କର କଳ୍ପନା କରାଯାଇଥିଲା। କିନ୍ତୁ ଦେଖାଗଲା ଯେ କେବଳ ଅତି ଛୋଟ ପିଲା ନୁହଁ, ସବୁ ବୟସର ପିଲା ଏଠାକାର ଖେଳଗୁଡିକ ଉପଭୋଗ କରୁଛନ୍ତି।

ପିଲାମାନେ ଉପରେ ଟଙ୍ଗା ହୋଇଥିବା ଜାଲରେ ମାଙ୍କଡ ଭଳି ଡେଇଁ, ଅନ୍ଧାରୁଆ ଟନେଲରେ ଉପରୁ ତଳକୁ ଖସି, କାଠ ଦୋଳିରେ ଖେଳି ଏତେ ଖୁସି ହେଉଥାଆନ୍ତି ଯେ ସେମାନଙ୍କୁ ସେଠାରୁ ନେଇ ଆସିବା ବେଳେ ମୋତେ ଟିକିଏ ଖରାପ ଲାଗିଲା। ହେଲେ ଦେଖିବାକୁ ଆହୁରି ଅନେକ କିଛି ବାକୀ।

ସି ଓ୍ୱାର୍ଲଡର ଠିକ୍ ମଝିରେ ରହିଛି ବିରାଟ ସ୍କାଏ ଟାଓ୍ୱାର୍ (Sky Tower)। କାଠ ତିଆରି ସ୍କାଏ ଟାଓ୍ୱାର ଭିତରକୁ ଆମେ ଟିକେଟ କାଟି ପଶିଲୁ। ଏହା ଭିତରେ ଥିବା ଏଲିଭେଟରଟି ୩୬୦ ଡିଗ୍ରୀ ବୁଲି ବୁଲି ଆମକୁ ସମ୍ପୂର୍ଣ୍ଣ ଉପରକୁ ନେଇଗଲା ଏବଂ ସେଇ ଉପରୁ ସାନ ଡିଏଗୋର ପ୍ରାୟ ଅଧିକାଂଶ ଜାଗା ପରିଷ୍କାର ଭାବରେ ଦେଖା ଯାଉଥାଏ। ଗୋଟିଏ ପଟେ ସମୁଦ୍ର, ଅନ୍ୟପଟେ ପାହାଡ। ସେଇଠି କିଛି ସମୟ ରହିବା ପରେ ପୁଣି ଏଲିଭେଟରଟି ତଳକୁ ଓହ୍ଲେଇବାକୁ ଲାଗିଲା।

ସ୍କାଏ ଟାଓ୍ୱାର୍‌ଠାରୁ ଅଳ୍ପ ଦୂରରେ ରହିଛି ଶିକ୍ଷଣୀୟ ସ୍ଥାନ (Places of Learning)। ଏଇଠି ବିଭିନ୍ନ ଘେର ଭିତରେ ପ୍ରାକୃତିକ ବାତାବରଣରେ ଭିନ୍ନ ଭିନ୍ନ ସାମୁଦ୍ରିକ ଜୀବଜନ୍ତୁଙ୍କୁ ରଖା ହୋଇଛି। ଉଦ୍ଦେଶ୍ୟ ହେଉଛି ଲୋକମାନେ ଅତି ନିକଟରୁ ସେମାନଙ୍କୁ ଦେଖିପାରିବେ, ଛୁଇଁ ପାରିବେ ଓ ଇଚ୍ଛା କଲେ ଧରି ମଧ୍ୟ ପାରିବେ। ଏଗୁଡିକ ମଧ୍ୟରୁ ପେଙ୍ଗୁଇନ ଆମ ସମସ୍ତଙ୍କୁ ଖୁବ୍ ଭଲ ଲାଗିଲା। କାଚ ଘର ଭିତରେ କୃତ୍ରିମ ଭାବରେ ବରଫାବୃତ ଅଞ୍ଚଳମାନ ତିଆରି

କରା ଯାଇଥାଏ ଏବଂ ସେଇଠି ଦଳ ଦଳ ପେଙ୍ଗୁଇନ ରଖା ହୋଇଥାଆନ୍ତି।

ପେଙ୍ଗୁଇନ ଘରଠାରୁ ଅଳ୍ପ ଦୂରରେ ଭାରି ଭିଡ ହୋଇଥାଏ। କିନ୍ତୁ ଉଚ୍ଚ ପାଚେରୀ ଦେଇ ଭିତରେ କ'ଣ ହେଉଥାଏ, ଜଣା ପଡୁ ନ ଥାଏ। ଆମେ କୌତୂହଳରେ ଫାଟକ ଦେଇ ଭିତରକୁ ଗଲୁ। ଭିତରେ କ'ଣ ଥିଲା ଜାଣିଛୁ? ଭିତରେ ଥିଲା ବରଫର ଛୋଟ ପାହାଡଟିଏ। ପାହାଡଟିର ଗୋଟିଏ କଡରେ ତିଆରି ହୋଇଥିବା କାଠ ସିଡ଼ି ଦେଇ ପିଲାମାନେ ଉପରକୁ ଯାଉ ଥାଆନ୍ତି ଓ ସେଇଠି ରଖା ହୋଇଥିବା ପ୍ଲାଷ୍ଟିକ୍‌ର ସ୍ଲେ (Sleigh) ଉପରେ ବସି ତଳକୁ ଖସି ଆସୁ ଥାଆନ୍ତି। କିନ୍ତୁ ସବୁ ପିଲାମାନଙ୍କର ତ ସ୍ଲେରେ ଖସିବା ଅଭ୍ୟାସ ନାହିଁ, ତେଣୁ ଅଧିକାଂଶ ଓଲଟି ଯାଉଥାଆନ୍ତି। ପୁଣି ଉଠି ଖସିବାର ଚେଷ୍ଟା କରୁଥାଆନ୍ତି। ପିଲାମାନଙ୍କର ମୁହଁରେ କି ହସ!

ସାନ ଡିଏଗୋରେ ବରଫ ପଡେ ନାହିଁ। ତୁ ନିଶ୍ଚୟ ଭାବୁଥିବୁ ବରଫର ପାହାଡଟିଏ ଆସିଲା କେଉଁଠୁ? ମିତୁ, ଏ ତ ସତ ବରଫ ପାହାଡ ନୁହଁ। ପିଲାମାନଙ୍କର ମନୋରଞ୍ଜନ ପାଇଁ କୃତ୍ରିମ ବରଫର ପାହାଡଟିଏ ତିଆରି କରାଯାଇଛି। ଏ ଦେଶରେ କ'ଣ ପ୍ରାଚୁର୍ଯ୍ୟର ଅଭାବ ଅଛି?

ପିଲାଙ୍କ ଖେଳ ଦେଖୁ ଦେଖୁ ମୁଁ ଭାବୁଥିଲି ପୃଥିବୀର ପ୍ରତ୍ୟେକ ଦେଶର, ପ୍ରତି କୋଣର ପିଲାଙ୍କର ପ୍ରକୃତି ସେଇ ଏକ। ବରଫରେ ଲଟର ପଟର ହୋଇ ଲୁଗାପଟା ଓଦା କରି କି ଖୁସି ହେଉ ନ ଥାଆନ୍ତି ସେମାନେ! ରୁମି, ଗିଟିଙ୍କୁ ଯେତେବେଳେ ଆମେ ଜବରଦସ୍ତି ସେଠୁ ବାହାର କରି ଆଣିଲୁ, ସେତେବେଳେ ଲୁଗାପଟା ସମେତ ଜୋତା, ମୋଜା ବି ଓଦା ସରସର। ଏଣେ ସି ୱାର୍ଲଡ ବନ୍ଦ ହେବା ସମୟ ମଧ୍ୟ ହୋଇ ଆସୁଥାଏ। ପିଲାଙ୍କୁ ଧରି ଆମେ ହୋଟେଲକୁ ଫେରି ଆସିଲୁ।

ସି ୱାର୍ଲଡ ବ୍ୟତୀତ ସାନ ଡିଏଗୋର ଅନ୍ୟ ଏକ ପ୍ରଧାନ ଆକର୍ଷଣ ହେଲା ଏଠିକାର ଚିଡ଼ିଆଖାନା। ଚିଡ଼ିଆଖାନା ତ ମୁଁ ଅନେକ ଦେଖିଛି, କିନ୍ତୁ ଏଇଟି ସେସବୁ ଅପେକ୍ଷା ଭିନ୍ନ। ଏଠାରେ ପଶୁମାନଙ୍କୁ ତାରଜାଲିର ପଞ୍ଜୁରୀ ଭିତରେ ବନ୍ଦୀ କରି ରଖା ଯାଇନାହିଁ। ବହୁ ସମୟ ଓ ଅର୍ଥ ଖର୍ଚ୍ଚ କରି ଏଇଠି ତିଆରି ହୋଇଛି ଜନ୍ତୁମାନଙ୍କର ବାସୋପଯୋଗୀ ବାତାବରଣ। ତେଣୁ ଏଠାରେ ମହାଆନନ୍ଦରେ ବୁଲୁଥାଆନ୍ତି ବିଭିନ୍ନ ଜୀବଜନ୍ତୁ।

୧୨୮ ଏକରର ବିରାଟ ଚିଡିଆଖାନା। ଏଇଠି ରହିଛନ୍ତି ୭୭୭ ପ୍ରକାରର ପ୍ରାୟ ୩,୨୦୦ଟି ଜନ୍ତୁ। ଚାଲି ଚାଲି ଚିଡିଆଖାନାଟି ଦେଖିବା ତ ଆଦୌ ସମ୍ଭବପର ନୁହଁ, ତେଣୁ ଏଠାରେ ବସ୍‌ର ବ୍ୟବସ୍ଥା ରହିଛି। ପ୍ରତ୍ୟେକ ବସ୍‌ରେ ଗାଇଡ୍ ରହିଛନ୍ତି। ବସ୍ ଚାଲୁଥିବା ସମୟରେ ସେ ଧାରାବିବରଣୀ ଦେଇ ଚାଲନ୍ତି। ଆମ ବସ୍‌ରେ ଯେଉଁ ଝିଅଟି ବିବରଣୀ ଦେଉଥିଲା, ତା'ର କହିବା ଭଙ୍ଗୀଟି ଭାରି ସୁନ୍ଦର। ସେ ଯେ କେବଳ ଜନ୍ତୁମାନଙ୍କୁ ଦେଖାଇ ଦେଉଥାଏ, ତା' ନୁହଁ। ସେମାନଙ୍କର ନାମ ଏବଂ ପ୍ରତ୍ୟେକଙ୍କର ଭିନ୍ନ ଭିନ୍ନ ପ୍ରକୃତି, ବ୍ୟବହାର, କିଏ କେଉଁଠାରୁ ଆସିଛି, କେବେ ଆସିଛି- ଏ ସବୁ କାହାଣୀ ଭଳି କହି ଚାଲୁଥାଏ। ଗୋଟିଏ ସ୍ଥାନରେ ତ ତା'ର ସ୍ୱର ଶୁଣି ଦୁଇଟି ଭାଲୁ ଚାଲି ଆସିଲେ ଏବଂ ଆମମାନଙ୍କୁ ଦେଖି ହାତ ହଲେଇବା ଆରମ୍ଭ କଲେ। ବସରେ ଥିବା ପିଲା, ବଡ ସମସ୍ତଙ୍କ ମୁହଁରେ ଆନନ୍ଦ ଦେଖିବା ଭଳି।

ମିତୁ, ସାଧାରଣତଃ ଚିଡିଆଖାନାର ଜନ୍ତୁମାନଙ୍କୁ ଦେଖିଲେ ମୋ ମନ ଖରାପ ହୋଇଯାଏ। ମୁକ୍ତ ଭାବରେ ଘୁରି ବୁଲିବା ଓ ତାର ଜାଲିଦିଆ ପଞ୍ଜୁରୀ ଭିତରେ ରହିବା କ'ଣ ଏକା କଥା? ମୋର ମଧ୍ୟ କାହିଁକି ମନେହୁଏ ଯେ, ଯେତେ ଯତ୍ନ କଲେ ମଧ୍ୟ ପଞ୍ଜୁରୀରେ ଥିବା ପଶୁଗୁଡିକଙ୍କର ମୁହଁରେ ଆନନ୍ଦର ଝଲକ ଦେଖିବାକୁ ମିଳେ ନାହିଁ।

ଅଥଚ ସାନ ଡିଏଗୋର ଚିଡିଆଖାନା କେତେ ଭିନ୍ନ!

ବସ୍ ଯାତ୍ରା ପରେ ଆମେ ଗଲୁ 'ସ୍କାଏ ଫାରି'ରେ। ତୁ ନିଶ୍ଚୟ ଭାବୁଥିବୁ ଏ ଶବ୍ଦଟିର ଅର୍ଥ କ'ଣ। 'ସ୍କାଏ' ଓ 'ସଫାରି'- ଦୁଇ ଶବ୍ଦକୁ ଏକାଠି କରି ଏହି ନୂତନ ଶବ୍ଦର ପ୍ରସ୍ତୁତି। ଅର୍ଥାତ୍ ଆକାଶରୁ ଜନ୍ତୁମାନଙ୍କୁ ଦେଖିବା। ମାଟିଠାରୁ ୧୭୦ ଫୁଟ ଉପରେ ରହିଛି ଆକାଶମାର୍ଗର ଟ୍ରାମ୍। ଏଠାରୁ କେବଳ ଯେ ଚିଡିଆଖାନାର ଅପରୂପ ଦୃଶ୍ୟ ଉପଭୋଗ କରିହୁଏ ତା' ନୁହଁ, ସାନ ଡିଏଗୋ ସହର ଓ ସମୁଦ୍ର ମଧ୍ୟ ମନେହୁଏ ଅନନ୍ୟ।

ସାନ ଡିଏଗୋ ଚିଡିଆଖାନାର ବିଶେଷତ୍ୱ ହେଲା ଏହା ଭିତରେ ରହିଛି ପିଲାଙ୍କର ଚିଡିଆଖାନାଟିଏ। ନାମଟି 'ପିଲାଙ୍କ ଚିଡିଆଖାନା' ହେଲେ କ'ଣ ହେବ, ପିଲା, ବଡ ଉଭୟେ ଉପଭୋଗ କରୁଥାଆନ୍ତି। କେଉଁଠି ହାତୀଛୁଆଟିଏ ଶୁଣ୍ଢ ବଢେଇ ଖାଇବାକୁ ମାଗୁଥାଏ ତ କେଉଁଠି ଠେକୁଆ, ହରିଣଛୁଆ ଆଉଁସା ପାଇବା

ପାଇଁ ଆମମାନଙ୍କର ନିକଟକୁ ଆସି ଯାଉଥାଆନ୍ତି । ସେମାନଙ୍କ ପିଠିରେ, ମୁଣ୍ଡରେ ହାତ ବୁଲେଇ ନେଇ ପିଲାମାନେ ଖୁସି ହୋଇଯାଉଥାଆନ୍ତି ।

ସାନ ଡିଏଗୋ ଆସି ଏଠିକାର ୱାଇଲଡ ଆନିମାଲ ପାର୍କ (Wild Animal Park) ନ ଦେଖି ଫେରିଯିବା କଥା କେହି ଚିନ୍ତା କରି ପାରେ ନାହିଁ । ସେଥିପାଇଁ ୨୮ ତାରିଖ ଦିନ ସକାଳୁ ଆମେ ସେଇଠିକୁ ଗଲୁ । ଏମିତିରେ ଦେଖିବାକୁ ଗଲେ ସାନ୍‌ପାସ୍‌କାଲ୍ ଉପତ୍ୟକାରେ ୧୮୦୦ ଏକର ଜମିରେ ଗଢା ଯାଇଥିବା ୱାଇଲଡ ଆନିମାଲ୍ ପାର୍କଟି ଚିଡିଆଖାନାର ଗୋଟିଏ ଅଂଶ । କିନ୍ତୁ ଏଠି ଦେଖିବା ପାଇଁ ବହୁତ କିଛି ରହିଛି । ସେଥିପାଇଁ ଆମେ ସମ୍ପୂର୍ଣ୍ଣ ଦିନଟିଏ ଏଥିପାଇଁ ରଖିଥିଲୁ ।

ଏଇଭଳି ଏକ ପାର୍କର ଉଦ୍ଦେଶ୍ୟ ହେଲା ପୃଥିବୀର ବିଭିନ୍ନ ଅଞ୍ଚଳର ଲୋପ ପାଇ ଯାଉଥିବା ପଶୁପକ୍ଷୀଙ୍କୁ ସଂରକ୍ଷଣ କରିବା । ଜଙ୍ଗଲର ପଶୁପକ୍ଷୀଙ୍କୁ ନ ମାରିବା ପାଇଁ ପ୍ରତ୍ୟେକ ଦେଶରେ ଆଇନ ପ୍ରଣୟନ ହୋଇଛି, କିନ୍ତୁ ଆଇନ ଭଙ୍ଗ କରୁଥିବା ଶିକାରୀମାନଙ୍କର ତ ଅଭାବ ନାହିଁ ! ଫଳରେ କେତେକ ପ୍ରାଣୀଙ୍କ ସଂଖ୍ୟା କମି କମି ପ୍ରାୟ ଲୋପ ପାଇଯିବା ଅବସ୍ଥାରେ ପହଞ୍ଚି ଗଲାଣି । ଏହି ପଶୁମାନଙ୍କୁ ଯତ୍ନରେ ରଖି ଏମାନଙ୍କର ସଂଖ୍ୟା ବୃଦ୍ଧି କରେଇବା ଏଠାକାର ପାର୍କର ପ୍ରଧାନ ଲକ୍ଷ୍ୟ । ସେଥିପାଇଁ ଏଠାରେ ଉତ୍ତର ଆଫ୍ରିକା, ପୂର୍ବ ଆଫ୍ରିକା, ଦକ୍ଷିଣ ଆଫ୍ରିକା, ଏସିଆ ଇତ୍ୟାଦି ଅଞ୍ଚଳ ଅନୁକରଣରେ କୃତ୍ରିମ ବାତାବରଣ ପ୍ରସ୍ତୁତ କରାଯାଇଛି । ଏଠାରେ ବାଘ, ସିଂହ, ହରିଣ, ଜେବ୍ରା, ଗରିଲା, ରାଇନୋସରସ୍‌ଠାରୁ ଆରମ୍ଭ କରି ବିଭିନ୍ନ ରକମର ପକ୍ଷୀ ମଧ୍ୟ ରହିଛନ୍ତି । କେବଳ କେତେକ ହିଂସ୍ର ପଶୁଙ୍କୁ ଅନ୍ୟାନ୍ୟ ଜନ୍ତୁମାନଙ୍କଠାରୁ ପୃଥକ କରାଯାଇ ରଖା ହୋଇଥାଏ । କିନ୍ତୁ ଅନ୍ୟମାନେ ସ୍ୱଚ୍ଛନ୍ଦରେ, ମୁକ୍ତ ଭାବରେ ଘୁରି ବୁଲୁ ଥାଆନ୍ତି ।

ଚିଡିଆଖାନାରେ ଯେପରି ବସ୍‌ର ବ୍ୟବସ୍ଥା ଥିଲା, ଠିକ୍ ସେଇମିତି ଆନିମଲ୍ ପାର୍କରେ ମୋନୋରେଲ୍‌ର ବ୍ୟବସ୍ଥା କରାଯାଇଥାଏ । ଏଥିରେ ମଧ୍ୟ ଜଣେ ଗାଇଡ ଥାଆନ୍ତି ଯିଏ କି ପଶୁମାନଙ୍କ ଜୀବନର ସୁନ୍ଦର ସୁନ୍ଦର କାହାଣୀମାନ ବର୍ଣ୍ଣନା କରୁଥାଆନ୍ତି ।

ମୋନୋରେଲ୍‌ରେ ଗଲାବେଳେ ଯେଉଁ ଦୃଶ୍ୟଟି ମୋତେ ଭାରି ଭଲ ଲାଗିଲା, ତା' ହେଉଛି ଗୋଟିଏ ଶିଶୁ ରାଇନୋସେରସ୍‌ର ବଦମାସୀ । ଶିଶୁ ରାଇନୋଟି ତା' ମା' ପଛେ ପଛେ ଚାଲୁଥାଏ । ହଠାତ୍ ପୁଣି ଡିଆଁଟାଏ ମାରି ଅନ୍ୟ

କୁଆଡେ ପଳଉ ଥାଏ। ବିଚାରୀ ମା' ନିଜର ବିରାଟ ଶରୀରକୁ ନେଇ ପୁଣି ଶିଶୁକୁ ଅଡେଇ ନିଜ ପାଖକୁ ଆଣୁଥାଏ। ଏମିତିରେ ହଠାତ୍ ଏଇ ଶିଶୁ ରାଇନୋଟି ଦୌଡି ଦୌଡି ଦୂରରେ ଚରୁଥିବା ଦଳେ ହରିଣଙ୍କ ପାଖରେ ପହଞ୍ଚିଗଲା ଏବଂ ସେମାନଙ୍କ ଭିତରେ ପଶିଯାଇ ସେମାନଙ୍କୁ ଠେଲିବାକୁ ଲାଗିଲା। ଅନ୍ୟ କାହାର ଶିଶୁଟିଏ ଆମ ଘରକୁ ଆସି ବଦମାସୀ କଲେ ଆମେ ଯେମିତି ସହିନେଉ, ଠିକ୍ ସେଇମିତି ହରିଣ ଦଳଟି ରାଇନୋ ଶିଶୁକୁ 'ସହି' ନେଉଥାଆନ୍ତି। ଶିଙ୍ଗ ଦେଖାଇ ଡରଉ ନ ଥାଆନ୍ତି କି ତାକୁ ଗୋଡେଇ ନିଜ ଦଳରୁ ବାହାରକୁ ବାହାର କରି ଦେଉ ନ ଥାଆନ୍ତି।

ମୋନୋରେଲରେ ବୁଲି ସାରିବା ପରେ ପରେ ଆମେ ଏଠାରେ ହେଉଥିବା ବିଭିନ୍ନ ଖେଳ ଦେଖିବାକୁ ଗଲୁ। ସି ୱାର୍ଲଡ ଭଳି ଏଠାକାର ଖେଳଗୁଡିକର ସମୟ ମଧ୍ୟ ୨୦ ମିନିଟ୍। କିନ୍ତୁ ଖେଳଗୁଡିକର ପ୍ରଧାନ ଚରିତ୍ର ହେଉଛନ୍ତି ବିଭିନ୍ନ ପ୍ରକାରର ଚଢେଇ, ହାତୀ ଏବଂ ଗରିଲା। ଏ ସବୁ ମଧ୍ୟରୁ ଗରିଲା ଖେଳ ଦେଖିବାକୁ ସବୁଠାରୁ ଅଧିକ ଭିଡ ହେଉଥାଏ।

ତୁ ତ ଜାଣିଛୁ, ଗରିଲାଙ୍କୁ ନେଇ ମଣିଷର ବହୁ ଯୁଗରୁ କୌତୂହଳ ରହି ଆସିଛି। ପ୍ରାୟ ଶହେ ବର୍ଷ ତଳେ ଚାର୍ଲସ ଡାରୱିନ ଓ ଥୋମାସ ହେନରୀ ହକ୍ସଲେ ସିଦ୍ଧ କରିଥିଲେ ଯେ ଗରିଲା ଓ ଓରାଙ୍ଗଉଟାନ ସହିତ ମଣିଷର ସର୍ବାଧିକ ସାଦୃଶ୍ୟ ରହିଛି। ପରବର୍ତ୍ତୀ ଯୁଗରେ ବୈଜ୍ଞାନିକମାନେ ଗବେଷଣା ଦ୍ୱାରା ଏହି ସିଦ୍ଧାନ୍ତରେ ପହଞ୍ଚିଥିଲେ ଯେ ଏସିଆର ଓରାଙ୍ଗଉଟାନ ଅପେକ୍ଷା ଆଫ୍ରିକାର ସିମ୍ପାଞ୍ଜି ଓ ଗରିଲାଙ୍କର ମଣିଷର ପୂର୍ବପୁରୁଷମାନଙ୍କ ସହିତ ଅଧିକ ସାମଞ୍ଜସ୍ୟ ଥିଲା।

ୱାଇଲଡ ଆନିମଲ ପାର୍କରେ ଗରିଲା ଖେଳ ଦେଖିବା ବେଳେ ମୁଁ ଏ କଥାର ସତ୍ୟତା ଅନେକ ପରିମାଣରେ ଅନୁଭବ କରି ପାରିଲି। ମଣିଷ ଭଳି ଚାଲିଚଳଣ, ବ୍ୟବହାର। ସେଇଥିପାଇଁ ବୋଧହୁଏ ଗରିଲାକୁ ନେଇ ମଣିଷର ଚିରଦିନ କୌତୂହଳ। ଏହି କୌତୂହଳର ବଶବର୍ତ୍ତୀ ହୋଇ ବହୁ ଲୋକ ମଧ୍ୟ ଗରିଲା ଶିକାର କରି ଯାଇଛନ୍ତି। ପାଞ୍ଚଥର ଗରିଲା ଶିକାର ଦଳରେ ଯାଇ ସାରିବା ପରେ ଜଣେ ଶିକାରୀ ଥରେ କହିଥିଲେ, "ଗରିଲା ମାରି ଲୋକମାନେ କି ଆନନ୍ଦ ପାଆନ୍ତି? ସେମାନଙ୍କ ଅଞ୍ଚଳକୁ ଚାଲିଗଲେ ସେମାନଙ୍କୁ ଖୋଜି ପାଇବା

ଆଦୌ କଷ୍ଟକର ନୁହଁ। ସେମାନଙ୍କ ନିକଟକୁ ଯିବା ଯେତିକି ସହଜ, ସେମାନଙ୍କୁ ମାରିବା ଆହୁରି ସହଜ।''

ଗରିଲା ଶିକାର ଫଳରେ ଗରିଲାମାନେ ପ୍ରାୟ ପୃଥିବୀରୁ ଲୋପପାଇ ଆସିଲେଣି। ତେଣୁ ବର୍ତ୍ତମାନ ଗରିଲା ସଂରକ୍ଷଣ କରିବା ଏବଂ ଅନୁକୂଳ ବାତାବରଣରେ ସେମାନଙ୍କର ସଂଖ୍ୟା ବୃଦ୍ଧି କରେଇବା ବିଭିନ୍ନ ଚିଡିଆଖାନାର ପ୍ରଧାନ ଲକ୍ଷ୍ୟ ହୋଇଛି।

ଗରିଲା ଖେଳ, ହାତୀ ଖେଳ ଓ ଇଗଲ ଖେଳ ଦେଖି ସାରି ଆମେ ଯେତେବେଳେ ହୋଟେଲକୁ ଫେରିଲୁ, ସେତେବେଳେ ବେଶ୍ ଡେରି ହୋଇ ଯାଇଥିଲା।

ତା' ପରଦିନ ସାନ ଡିଏଗୋ ଛାଡିବା କଥା। ପ୍ରାୟ ଖାଲି ପଡିଥିବା ରାସ୍ତାରେ ଗାଡି ଚଲେଇ ଫେରିବା ବେଳେ ମୁଁ ଚୁପ୍ ହୋଇଯାଇଥିଲି। ରହି ରହି କେବଳ ମନେ ପଡୁଥିଲା ବିଭିନ୍ନ ଜୀବଜନ୍ତୁଙ୍କର ମେଳରେ କଟେଇଥିବା ଗତ ତିନିଦିନର କଥା। ମଣିଷର ଜୀବଜନ୍ତୁଙ୍କୁ ନେଇ କେତେ ଭୟ! ଅଥଚ କି ସୁନ୍ଦର ସେମାନଙ୍କର ପୃଥିବୀ!! ସେଠି କୃତ୍ରିମତା ନାହିଁ, ଈର୍ଷା, ଦ୍ୱେଷ ମଧ୍ୟ ନାହିଁ। ବହୁତ ଦିନ ତଳେ ପଢିଥିବା କବି ୱାଲ୍ଟ ହ୍ୱିଟ୍‌ମ୍ୟାନଙ୍କର''Song of Myself'' କବିତାଟିର କେତେକାଂଶ ମୋର ବାରମ୍ବାର ମନେ ପଡୁଥିଲା।

କବିତାଟିର ମର୍ମ ଏହିପରି- ''ମୋର ମନେହୁଏ ମୁଁ ମଣିଷଙ୍କ ପୃଥିବୀରୁ ଚାଲିଯାଇ ପଶୁମାନଙ୍କ ସହିତ ରହି ପାରିବି, କାରଣ ସେମାନେ ଯେ ସବୁବେଳେ ଖୁସିରେ ଥାଆନ୍ତି। ସେମାନେ ପାରିପାର୍ଶ୍ୱିକ ବାତାବରଣ ନେଇ ଦୁଃଖ ବା କ୍ଷୋଭ ପ୍ରକାଶ କରନ୍ତି ନାହିଁ। କିମ୍ବା ରାତିରେ ଦୁଶ୍ଚିନ୍ତା ନେଇ ଅନିଦ୍ରା ରହନ୍ତି ନାହିଁ। ସେମାନେ କେବେହେଲେ ଅସନ୍ତୁଷ୍ଟ ହୁଅନ୍ତି ନାହିଁ ବା ପାର୍ଥିବ ଜିନିଷ ଆହରଣ କରିବା ପାଇଁ ଆଗ୍ରହୀ ହୁଅନ୍ତି ନାହିଁ। ସେମାନଙ୍କ ମଧ୍ୟରେ କେହି ବଡ, ସାନ ନାହିଁ। ସେମାନଙ୍କ ପୃଥିବୀରେ ସମସ୍ତେ ସମାନ ଏବଂ ସମସ୍ତେ ସନ୍ତୁଷ୍ଟ।''

ତୋର ନିଜର ମତାମତ ଦେଇ ଶୀଘ୍ର ଚିଠି ଦେବୁ। ତୋ ଉତ୍ତର ଅପେକ୍ଷାରେ ରହିଲି।

ଇତି

ତୋର 'ନାନୀ'

କୁପରଟିନୋ
୩ ମେ, ୧୯୯୨

ସ୍ନେହର ମିତୁ,

ତୋ ଚିଠି ପାଇବାର ପ୍ରାୟ ପନ୍ଦରଦିନ ହୋଇଗଲା । ଏମିତିରେ ତୋଠାରୁ ଚିଠି ମିଳିବା ପରଦିନ ହିଁ ମୁଁ କାଗଜ କଲମ ଧରି ବସିଯାଏ, କିନ୍ତୁ ଏଥର ତାହା କରି ପାରିଲି ନାହିଁ। ତୁ ଯେଉଁ ପ୍ରଶ୍ନଟି ପଚାରିଛୁ, ସେ ପ୍ରଶ୍ନର ଉତ୍ତର ନ ଦେଇ କେମିତି ବା ଚିଠି ଲେଖିଥାଆନ୍ତି ? ତୋ ପ୍ରଶ୍ନଟି ଛୋଟ, ହେଲେ ତା'ର ଉତ୍ତର ମତେ ଜଣା ନ ଥିଲା ଏବଂ ସେଇ ପ୍ରଶ୍ନର ଉତ୍ତର ଖୋଜୁ ଖୋଜୁ ଏତେ ଗୁଡାଏ ଦିନ ଚାଲିଗଲା ।

ତୋର ପ୍ରଶ୍ନ ଏକାଡେମୀ ପୁରସ୍କାର ବା 'ଅସ୍‌କାର୍'କୁ ନେଇ । ତୁ ଜାଣିବାକୁ ଚାହିଁଛୁ, ଏଇ ଅସ୍‌କାର୍ ଜଣକ କିଏ ?

ଆମେରିକାରେ ଚଳଚ୍ଚିତ୍ର ପାଇଁ ଦିଆ ଯାଉଥିବା ଏକାଡେମୀ ପୁରସ୍କାରକୁ ଯେ ଅସ୍‌କାର୍ କୁହାଯାଏ, ସେହି କଥାଟି ମୁଁ ଜାଣିଥିଲି । କିନ୍ତୁ ଅସ୍‌କାର୍ କିଏ, ସେ ବିଷୟରେ ମୋର କୌଣସି ଧାରଣା ନ ଥିଲା । ମୋର ତ ଆମେରିକାର ସିନେମା ଓ ହଲିଉଡର ତାରକାମାନଙ୍କ ସମ୍ପର୍କରେ ଜ୍ଞାନ ସୀମିତ, ତେଣୁ ଆନ୍ତର୍ଜାତିକ ଚଳଚ୍ଚିତ୍ରରେ ରୁଚି ରଖୁଥିବା କେତେଜଣ ବନ୍ଧୁଙ୍କୁ ଏ ବିଷୟରେ ପଚାରିଲି । ଆଶ୍ଚର୍ଯ୍ୟ କଥା, ସେମାନେ କେହି କହି ପାରିଲେ ନାହିଁ। ଅସ୍‌କାର୍ ତ ଅସ୍‌କାର୍ । ଏ

ନାମଟି କେଉଁଠୁ ଆସିଲା, କିଏ ବା ଦେଲା, ଏତେ କଥା ସେମାନେ କେବେ ହେଲେ ଚିନ୍ତା କରିନାହାନ୍ତି।

ଶେଷରେ ମତେ ଲାଇବ୍ରେରୀ ଯିବାକୁ ହେଲା। ଅସ୍କାର୍ ନେଇ ଲାଇବ୍ରେରୀରେ ମାତ୍ର କେତୋଟି ହାତଗଣନ୍ତା ବହି ଥିଲା, କିନ୍ତୁ ସେଇଥିରୁ ତୋ ପ୍ରଶ୍ନର ଉତ୍ତର ପାଇଗଲି।

ହଲିଉଡ୍‌ରେ ଯେତେବେଳେ ଚଳଚ୍ଚିତ୍ର ନିର୍ମାଣ ଖୁବ୍ ଜୋର୍‌ସୋର୍‌ରେ ଆରମ୍ଭ ହୋଇଗଲା, ସେତେବେଳେ ଏକ ସ୍ୱତନ୍ତ୍ର ଅନୁଷ୍ଠାନ ପ୍ରତିଷ୍ଠା କରିବାର ଆବଶ୍ୟକତା ସମସ୍ତେ ଅନୁଭବ କଲେ। ଫଳରେ ୧୯୨୭ ମସିହାରେ ଏକାଡେମୀ ଅଫ୍ ମୋସନ୍‌ପିକ୍‌ଚର୍ ଆର୍ଟସ୍ ଆଣ୍ଡ ସାଇନ୍‌ସେସ୍ ବା 'AMPAS' ପ୍ରତିଷ୍ଠିତ ହେଲା। ଯଦିଓ ଚଳଚ୍ଚିତ୍ର ଜଗତର ବିଭିନ୍ନ କ୍ଷେତ୍ରରେ ସର୍ବଶ୍ରେଷ୍ଠ ବିବେଚିତ ହେଉଥିବା ବ୍ୟକ୍ତିମାନଙ୍କୁ ପୁରସ୍କାର ଦେବା ଏକାଡେମୀର ଏକମାତ୍ର ଲକ୍ଷ୍ୟ ନଥିଲା ତଥାପି ଏହା ଏକ ବିଶେଷ ଅନୁଷ୍ଠାନରେ ପରିଣତ ହୋଇଗଲା। ୧୯୨୭ରେ ଏକାଡେମୀଟି ପ୍ରତିଷ୍ଠିତ ହେଲେ ମଧ୍ୟ ପ୍ରଥମଥର ପାଇଁ ୧୬ ମେ' ୧୯୨୯ରେ ଏକାଡେମୀ ପୁରସ୍କାର ଦିଆଯାଇଥିଲା।

ସ୍ଥିର ହୋଇଥିଲା ଯେ ପୁରସ୍କାର ରୂପେ ଗୋଟିଏ ପୁରୁଷର ପ୍ରତିମୂର୍ତ୍ତି ଦିଆଯିବ। ଏହି ପ୍ରତିମୂର୍ତ୍ତିଟି ଦୁଇ ହାତରେ ଖଣ୍ଡାଟିଏ ଧରି ଫିଲ୍ମ ରୋଲ୍ ଉପରେ ଠିଆ ହୋଇଥାଏ। ଖୁବ୍ ଗୋଟିଏ ବଡ ପ୍ରତିମୂର୍ତ୍ତି ନୁହଁ। ତଳୁ ଉପର ପର୍ଯ୍ୟନ୍ତ ମାପିଲେ ଏହାର ଉଚ୍ଚତା ହେବ ୧୩-୧/୨ ଇଞ୍ଚ। ପ୍ରତିମୂର୍ତ୍ତିଟିର ଭିତର ଅଂଶ ବ୍ରୋଞ୍ଜରେ ତିଆରି। କିନ୍ତୁ ଉପର ଅଂଶ ୧୪ କ୍ୟାରଟ୍ ସୁନାରେ ଛାଉଣୀ। ୧୯୨୮ ମସିହାରେ ସେଡରିକ୍ ଗିନେସ୍‌ଙ୍କ ଡିଜାଇନ୍ ନେଇ ଡଜ୍ ଟ୍ରଫି କମ୍ପାନୀ ପ୍ରଥମ ଥର ପାଇଁ ଏହି ପ୍ରତିମୂର୍ତ୍ତିଟି ନିର୍ମାଣ କରିଥିଲା ଏବଂ ଏତେ ବର୍ଷ ପରେ ମଧ୍ୟ ସେଥିରେ କୌଣସି ପରିବର୍ତ୍ତନ ଅଣାଯାଇନାହିଁ।

ପ୍ରଥମେ ଯେତେବେଳେ ପୁରସ୍କାର ପ୍ରଥାଟି ଆରମ୍ଭ ହେଲା, ସେତେବେଳେ ଏହାର କୌଣସି ନାମ ନ ଥିଲା। ଏହାକୁ କେବଳ କୁହାଯାଉଥିଲା 'ଏକାଡେମୀ ପୁରସ୍କାର'। ୧୯୩୧ ମସିହାରେ ଏକାଡେମୀରେ ଜଣେ ନୂତନ ଲାଇବ୍ରେରୀଆନ୍ ଯୋଗ ଦେଲେ। ଏକାଡେମୀରେ ଚାକିରୀ କରିବା ପୂର୍ବରୁ ପୁରସ୍କାର ସ୍ୱରୂପ ଦିଆଯାଉଥିବା ପ୍ରତିମୂର୍ତ୍ତିକୁ ସେ ଦେଖି ନ ଥିଲେ। ଚାକିରୀ କରିବାର କିଛିଦିନ

ପରେ ସେ ଯେତେବେଳେ ଏକାଡେମୀର ଜଣେ କର୍ମକର୍ତ୍ତାଙ୍କ ଟେବୁଲରେ ପ୍ରତିମୂର୍ତ୍ତିଟି ଦେଖିଲେ, ତାଙ୍କ ପାଟିରୁ ହଠାତ୍ ବାହାରି ଆସିଲା, "ଆରେ, ଏଇଟି ତ ଠିକ୍ ମୋ ଅଙ୍କଲ ଅସ୍କାର୍ ଭଳି ଦିଶୁଛି।" କିଏ ଜଣେ ଏହି ଘଟଣାଟିକୁ ପତ୍ରକାରମାନଙ୍କୁ ଜଣେଇ ଦେଲା ଏବଂ ସେଇ ବର୍ଷ କେତେକ ପତ୍ରପତ୍ରିକା ଏକାଡେମୀ ପୁରସ୍କାର ବିଷୟରେ ଲେଖିବାବେଳେ ଏହାକୁ ଥଟ୍ଟାରେ 'ଅଙ୍କଲ ଅସ୍କାର୍' ବୋଲି ଉଲ୍ଲେଖ କଲେ। କିନ୍ତୁ ଥଟ୍ଟା ମଜାରେ ବ୍ୟବହୃତ ହେଉ ହେଉ ସେହି ନାମଟି ରହିଗଲା ଏବଂ ଏକାଡେମୀ ପୁରସ୍କାରକୁ କୁହାଗଲା 'ଅସ୍କାର'।

ଏ ବର୍ଷ ମାର୍ଚ୍ଚ ମାସ ୩୦ ତାରିଖ ଦିନ, ୧୯୯୧ ମସିହାର ଅସ୍କାର୍ ପୁରସ୍କାର ଦିଆଯାଇ ସାରିଛି। ତୁ ତ ସମ୍ବାଦପତ୍ରରୁ ପୁରସ୍କାର ପାଇଥିବା ବିଭିନ୍ନ ବ୍ୟକ୍ତି ଓ ଚଳଚ୍ଚିତ୍ରର ନାମ ନିଶ୍ଚୟ ଜାଣିଥିବୁ। ତେବେ ଏ ବର୍ଷର ଅସକାର୍ ନେଇ ଗର୍ବ କଲା ଭଳି ଭାରତୀୟମାନଙ୍କ ପାଇଁ କାରଣଟିଏ ରହିଛି। ଏ ବର୍ଷ ଯେ ମହାନ୍ ନିର୍ଦ୍ଦେଶକ ସତ୍ୟଜିତ ରାୟଙ୍କୁ ଅସକାର୍ ଦିଆଯାଇଛି। ଏଇଟି ହେଉଛି "Lifetime Achievement Award"। କିନ୍ତୁ ସେତେବେଳେ ଶ୍ରୀ ସତ୍ୟଜିତ ରାୟ ଅସୁସ୍ଥ। ପୁରସ୍କାର ନେବା ପାଇଁ ସେ ହଲିଉଡ ଆସି ପାରି ନ ଥିଲେ।

ଉପଗ୍ରହ ଜରିଆରେ ଶ୍ରୀ ରାୟଙ୍କର ମନ୍ତବ୍ୟ ଓ ଛୋଟ ସାକ୍ଷାତକାରଟି ପୁରସ୍କାର ବିତରଣୀ ମଣ୍ଡପର ପରଦାରେ ଦେଖାଇ ଦିଆଗଲା। କଲିକତାର ଗୋଟିଏ ହସ୍ପିଟାଲ ବିଛଣାରେ ଶୋଇ ରହି ଶ୍ରୀ ରାୟ କହିଥିଲେ, "ମୁଁ ପିଲାଦିନେ ମାର୍କିନ ସିନେମା ଦେଖିବାକୁ ଭାରି ଭଲ ପାଉଥିଲି। ତେଣୁ ପରେ ମୁଁ ଯେଉଁ ସବୁ ଛବି ନିର୍ମାଣ କଲି, ସେଥିରେ ମାର୍କିନ ଛବିର ପ୍ରଭାବ ନିଶ୍ଚିତ ଭାବରେ ପଡିଛି। ପିଲାଦିନେ ମୁଁ ଥରେ ଡିନା ଡର୍ବିନଙ୍କୁ ଚିଠିଟିଏ ଲେଖିଥିଲି ଏବଂ ତାଙ୍କଠାରୁ ଉତ୍ତର ମଧ୍ୟ ପାଇଥିଲି। ଏହାପରେ ବେଶ୍ ଉତ୍ସାହିତ ହୋଇ ମୁଁ ସେତେବେଳକାର ପ୍ରସିଦ୍ଧ ଅଭିନେତ୍ରୀ ଜିଞ୍ଜର ରୋଜର୍ସଙ୍କୁ ଚିଠିଟିଏ ଲେଖିଲି। ତାଙ୍କଠାରୁ କିନ୍ତୁ କୌଣସି ଉତ୍ତର ପାଇଲି ନାହିଁ।" ସତ୍ୟଜିତ ରାୟଙ୍କ ବକ୍ତବ୍ୟ ପରେ ଯେତେବେଳେ ହଲ୍‌ଟି କରତାଳିରେ ଭରି ଉଠିଲା, ଜଣେ ଭାରତୀୟ ହିସାବରେ ମୁଁ କି ଯେ ଗର୍ବ ଅନୁଭବ କଲି, ଭାଷାରେ ଲେଖିବା ସମ୍ଭବ ନୁହଁ।

କିଛିଦିନ ପୂର୍ବରୁ ମୁଁ ଖବରକାଗଜରେ ପଢିଲି ଯେ ସତ୍ୟଜିତ ରାୟଙ୍କୁ 'ଭାରତ ରତ୍ନ' ଉପାଧି ଦିଆଯାଇଛି ଏବଂ ତାହାର କେଇଦିନ ପରେ ତାଙ୍କର

ମୃତ୍ୟୁ ଖବର ପାଇଲି। ଏହାଦ୍ୱାରା କେବଳ ଚଳଚ୍ଚିତ୍ର ଶିଳ୍ପର ନୁହଁ, ଦେଶର ଗୋଟିଏ ବିରାଟ କ୍ଷତି ହୋଇଗଲା।

ମିତୁ, ସେଦିନ ଅସ୍କାର୍ ଉତ୍ସବ ଦେଖି ସାରିବା ପରେ ଗୋଟିଏ ବିଷୟ ବହୁତ ଦିନ ଧରି ମୋ ମନକୁ ଉଦ୍‌ବେଳିତ କରିଥିଲା। ଏ ବର୍ଷ ପୁରସ୍କାର ପାଇଥିବା ବିଭିନ୍ନ ଚଳଚ୍ଚିତ୍ର ମଧ୍ୟରୁ, ''ଦି ବିଉଟି ଆଣ୍ଡ ଦି ବିଷ୍ଟ''କୁ ଛାଡିଦେଲେ ଅନ୍ୟ ସମସ୍ତ ପ୍ରଧାନ ଛବି ଯେପରିକି 'ଦି ସାଇଲେନସ ଅଫ୍ ଦି ଲ୍ୟାମ୍ବସ', 'ଟର୍ମିନେଟର ୨-ଜଜମେଣ୍ଟ ଡେ', 'ଥେଲମା ଓ ଲୁଇ', 'ସିଟି ସ୍ଲିକର୍‌ସ'-ଏସବୁ ହିଂସା ଉପରେ ପର୍ଯ୍ୟବସିତ। ଗୋଟିଏ ଦୃଷ୍ଟିରୁ ଦେଖିଲେ ଏହି ଛବିଗୁଡିକ ବର୍ତ୍ତମାନର ଆମେରିକାନ ସମାଜର ଏକ ପ୍ରତିଫଳନ। ସମାଜରେ ବାସ୍ତବରେ ଯାହା ଘଟୁଛି ସେଗୁଡିକୁ ଚିତ୍ରନାଟ୍ୟ ରୂପ ଦିଆଯାଇଛି କେବଳ। ଅନ୍ୟ ଦୃଷ୍ଟିରୁ ଯଦି ଦେଖାଯାଏ, ତେବେ ଏ ସବୁ ଛବି ସମାଜ ଉପରେ ବହୁତ କୁପ୍ରଭାବ ପକାଉଛି। ବିଶେଷ କରି ଛୋଟ ପିଲାଙ୍କ ନରମ ମନ କଥା ଭାବ ତ! ହୁଏତ ଅଧିକାଂଶ ସିନେମାକୁ 'R'ବା Restricted ପର୍ଯ୍ୟାୟ ଭୁକ୍ତ କରାଯାଇଛି। ଅର୍ଥାତ୍ ୧୦ଠାରୁ କମ୍ ବୟସର ପିଲାମାନେ ଏହି ସବୁ ସିନେମା ଦେଖି ପାରିବେ ନାହିଁ। କିନ୍ତୁ ବାସ୍ତବ କ୍ଷେତ୍ରରେ ସେଇଭଳି ହେଉଛି କି? ଟେଲିଭିଜନରେ ଏସବୁ ଛବିର ବିଜ୍ଞାପନ ଏତେ ବେଶୀ ଯେ ଉଭୟ ଯୌନତା ଓ ହିଂସାର ଝଲକ ଦେଖିବା ସମସ୍ତଙ୍କ ପକ୍ଷରେ ସମ୍ଭବ। ଆଉ ଭି.ସି.ଆର୍ ତ ଏଠି ଘରେ ଘରେ। ଭଡାରେ କ୍ୟାସେଟ୍ ଆଣି ଘରେ ବସି ଦେଖିବାରେ ବାଧା କାହିଁ?

ପୂର୍ବର ଏକ ଚିଠିରେ ମୁଁ ତତେ ଆମେରିକାନ ସମାଜରେ ହିଂସାତ୍ମକ ଘଟଣା କିଭଳି ଭାବରେ ବଢୁଛି ସେ ସମ୍ପର୍କରେ ଲେଖିଥିଲି। କିନ୍ତୁ ଜାଣିଛୁ, ବର୍ତ୍ତମାନ ଯେଉଁ ହିଂସା ଘଟଣା ସବୁ ଘଟୁଛି, ସେ ସବୁ ମଧ୍ୟରୁ ଅଧିକାଂଶ ମୂଳରେ ରହିଛନ୍ତି ଏ ସମାଜର ଶିଶୁ ବା ଯୁବକମାନେ। 'ଶିଶୁ' ଶୁଣି ଅବାକ୍ ହେବୁ ନାହିଁ। ପ୍ରତି ଦୁଇ ତିନି ଦିନରେ ଏଇ ଶିଶୁମାନଙ୍କ ଦ୍ୱାରା ହିଁ କିଛି ନା କିଛି ଭୟଙ୍କର ଘଟଣା ବା ଦୁର୍ଘଟଣା ଘଟି ଯାଉଛି। ଜାଣିଶୁଣି ହେଉ, ବା ଅଜାଣତରେ ହେଉ।

କିଛି ମାସ ତଳେ, ଖବରକାଗଜରେ ପଢିଥିଲି ଯେ ଦୁଇଜଣ ସାତ ଆଠ ବର୍ଷର ପୁଅ ନିଜ ଘରୁ ପିସ୍ତଲ ନେଇ ଆସି ଘର ବାରଣ୍ଡାରେ ସିନେମାର

ଅନୁକରଣରେ କିଛି ଗୋଟାଏ ଖେଳ ଖେଳୁଥିଲେ। ଜଣେ ହୋଇଥିଲା ନାୟକ ଓ ଅନ୍ୟଜଣେ ଖଳନାୟକ। ନାୟକ, ଖଳନାୟକଙ୍କ ଅନୁକରଣରେ ସେମାନେ ଅଭିନୟ କରୁଥିଲେ, କିନ୍ତୁ ସେମାନଙ୍କ ହାତରେ ଥିଲା ସତ ପିସ୍ତଲ। ଖେଳୁ ଖେଳୁ ଜଣେ ପିସ୍ତଲର ଟ୍ରିଗର ଟିପି ଦେଲା ଏବଂ ତା'ର ସାଙ୍ଗଟିର ମୁଣ୍ଡରେ ଗୁଳି ବାଜି ସେଇଠି ହିଁ ତା'ର ମୃତ୍ୟୁ ହୋଇଗଲା।

ଅନ୍ୟ ପିଲାଟିକୁ ପୋଲିସ୍ ନେଇଗଲା ସତ, କିନ୍ତୁ ପିଲାଟି କ'ଣ କିଛି ବୁଝି ପାରିଲା? ତା' ପରଦିନ ସକାଳୁ ଉଠି ସେ ପୋଲିସ୍ ଅଫିସର୍‌କୁ ପ୍ରଶ୍ନ କଲା ଯେ ସେଦିନ ତା'ର ଗୋଟିଏ ସାଙ୍ଗର ଜନ୍ମଦିନ ପାର୍ଟି। ସେଠିକୁ ସେ ଯାଇ ପାରିବ କି ନାହିଁ? ମୃତ୍ୟୁ, ଅପମୃତ୍ୟୁ- ଛୋଟ ପିଲାମାନେ କ'ଣ ବା ବୁଝନ୍ତି? ଏଇ ଘଟଣାଟି ସମ୍ପୂର୍ଣ୍ଣ ରୂପେ ଆକସ୍ମିକ। ତେବେ ଏଭଳି ଏକ ଦୁର୍ଘଟଣା ତ ଏଡାଇ ହୋଇ ପାରି ଥାଆନ୍ତା! କାହିଁକି ବଡମାନେ ବନ୍ଧୁକ ବା ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ର ଘରେ ରଖନ୍ତି? ଯଦି ବା ଆତ୍ମରକ୍ଷା ଉଦ୍ଦେଶ୍ୟରେ ଏ ସବୁ ରଖିବାକୁ ବାଧ୍ୟ, ତେବେ ଏ ସବୁକୁ ସାବଧାନରେ ରଖିବା ସେମାନଙ୍କର ଉଚିତ ନୁହଁ କି?

ତତେ ଆଉ ଗୋଟିଏ ଘଟଣା କଥା ଲେଖୁଛି। ଚାରି ବର୍ଷର ଗୁଲୁଗୁଲିଆ ପୁଅଟିଏ ତା' ମା' ସାଙ୍ଗରେ ଅଜା, ଆଈଙ୍କ ପାଖକୁ ବୁଲି ଆସିଥିଲା। ରାତିରେ ପୁଅଟି ମା' ପାଖରେ ନ ଶୋଇ ଅଜାଙ୍କ ପାଖରେ ଖଟରେ ଶୋଇଲା। ସକାଳୁ ପୁଅଟିର ନିଦ ଯେତେବେଳେ ଭାଙ୍ଗିଲା, ସେତେବେଳେ ଅଜା ବିଛଣାରୁ ଉଠି ସାରିଥିଲେ। ପିଲାଟିର ଆଖିରେ ପଡିଲା ଅଜାଙ୍କ ତକିଆ ତଳେ ରହିଥିବା ବନ୍ଧୁକ ଉପରେ। କୌତୁହଳ ବଶବର୍ତ୍ତୀ ହୋଇ ପିଲାଟି ଟ୍ରିଗର ଟିପିଦେଲା। କିନ୍ତୁ ସେ ଜାଣି ନ ଥିଲା ଯେ ବନ୍ଧୁକଟିରେ ଗୁଳି ଭର୍ତ୍ତି ଓ ବନ୍ଧୁକର ମୁହଁ ତା' ଆଡକୁ ରହିଛି। ଘଟଣା ସ୍ଥଳରେ ହିଁ ପିଲାଟିର ମୃତ୍ୟୁ ହୋଇଗଲା।

ଏହି ମର୍ମନ୍ତୁଦ ଘଟଣା ଘଟିବାର ମାତ୍ର ଅଳ୍ପ କେତେଦିନ ପୂର୍ବରୁ କ୍ୟାଲିଫୋର୍ଣ୍ଣିଆରେ ବିଲ୍‌ଟିଏ ପାଶ୍ ହୋଇ ଆଇନ ହୋଇଥିଲା। ଏହା ଅନୁସାରେ ଘରେ କୌଣସି ଆଗ୍ନେୟାସ୍ତ୍ର ରଖିଲେ ସେଥିପାଇଁ ସମ୍ପୂର୍ଣ୍ଣ ରୂପେ ଦାୟୀ ତା'ର ମାଲିକ। ସେ ସବୁ ନେଇ ଯଦି କୌଣସି ଅଘଟଣ ଘଟେ, ତେବେ ସେଥିପାଇଁ ଦଣ୍ଡ ମିଳିବ ବନ୍ଧୁକର ମାଲିକଙ୍କୁ। ଏହି ଆଇନ ଅନୁଯାୟୀ ପିଲାଟିର ଅଜାଙ୍କୁ ପୋଲିସ ଧରିନେଲେ।

କେଶ୍ ମଧ୍ୟ ଆରମ୍ଭ ହୋଇଗଲା। କିନ୍ତୁ ପଲାଟି କ'ଣ ଆଉ ତା' ମା' କୋଳକୁ ଫେରି ଆସିପାରିଲା ?

ତୁ କହିପାରୁ, ଦୁର୍ଘଟଣା ତ ଦୁର୍ଘଟଣା। ଏହା ଯେ କୌଣସି ସ୍ଥାନରେ ବା ଯେ କୌଣସି ପରିସ୍ଥିତିରେ ହୋଇପାରେ। ଆମ ଦେଶରେ କ'ଣ ଛୋଟ ପିଲାଙ୍କୁ ନେଇ କୌଣସି ଦୁର୍ଘଟଣା ଘଟୁନାହିଁ? ଘଟୁଛି ସତ; କିନ୍ତୁ ସେ ସବୁର ସଂଖ୍ୟା ବେଶ୍ କମ୍। ହେଲେ ଆମେରିକାରେ , ବିଶେଷ କରି ଆମେରିକାର କେତୋଟି ନିର୍ଦ୍ଦିଷ୍ଟ ଅଞ୍ଚଳରେ ଏଇ ଭଳି ଘଟଣା ପ୍ରାୟ ପ୍ରତିଦିନ ଘଟି ଯାଉଛି। ଯେମିତିକି କ୍ୟାଲିଫୋର୍ଣିଆର ଓକ୍‌ଲ୍ୟାଣ୍ଡ, ଲସ୍ ଆଞ୍ଜେଲେସ ବା ନିଉୟର୍କର ହାର୍‌ଲେମ, କୁଇନ୍‌ସ ବା ବ୍ରୁକ୍‌ଲିନ। ମୁଁ ପ୍ରଥମରୁ ଯେଉଁ ଦୁଇଟି ଘଟଣା କଥା ଲେଖିଛି ସେ ଦୁଇଟି ହୁଏତ ଥିଲା ଦୁର୍ଘଟଣା। କିନ୍ତୁ ଛୋଟ ଛୋଟ ବିଷୟ ନେଇ ଏହି ସବୁ ନିର୍ଦ୍ଦିଷ୍ଟ ଅଞ୍ଚଳର ସ୍କୁଲମାନଙ୍କରେ ବନ୍ଧୁକ କାଢ଼ି ଗୁଳି ଚଳେଇବା ଅତି ସାଧାରଣ ଘଟଣା।

ବ୍ରୁକ୍‌ଲିନର ଥୋମାସ ଜେଫରସନ ହାଇସ୍କୁଲର ଉଦାହରଣ ଦେଉଛି। ସ୍କୁଲର ପ୍ରଧାନ ପ୍ରବେଶ ଦ୍ଵାରରେ ଛପା ହୋଇଥିବା କାଗଜଟିଏ ଲଗା ହୋଇଛି। ସ୍କୁଲରେ କିଭଳି ବ୍ୟବହାର କରିବାକୁ ହେବ, କିଭଳି ପୋଷାକ ପିନ୍ଧିବାକୁ ହେବ ବା ଜୀବନରେ ଯେ ସତ୍ୟ ଓ ନ୍ୟାୟ ପଥରେ ଚାଲିବାକୁ ହେବ- ଏ ସବୁ ବିଷୟରେ ଏଥିରେ ଲେଖା ହୋଇନାହିଁ। ଏଇଟି ଗୋଟିଏ ନୋଟିସ। ଏଥିରେ ସ୍କୁଲର ଛାତ୍ରଛାତ୍ରୀମାନଙ୍କୁ ସାବଧାନ କରାଇ ଲେଖା ହୋଇଛି ଯେ, ସ୍କୁଲ ଭିତରକୁ କେହି ଯେମିତି କୌଣସି ରକମର ଅସ୍ତ୍ରଶସ୍ତ୍ର ନ ଆଣନ୍ତି। କେବଳ ସେତିକି ନୁହେଁ, ସ୍କୁଲ ଭିତରେ ମେଟାଲ ଡିଟେକ୍‌ଟର୍ ମଧ୍ୟ ରହିଛି। ଯଦି କୌଣସି ଛାତ୍ର ବା ଛାତ୍ରୀ ସ୍କୁଲକୁ ଛୁରୀ ବା ବନ୍ଧୁକ ଆଣେ, ତେବେ ଜଣା ପଡିଯିବ। ଏ ସବୁ କରିବାର କାରଣ ହେଉଛି, ଏହି ସ୍କୁଲରେ ଗତ କେତେବର୍ଷ ଭିତରେ ହିଂସାକାଣ୍ଡର ସଂଖ୍ୟା ଏତେ ବେଶୀ ବଢ଼ି ଯାଇଛି ଯେ ତାହା ନେଇ ସ୍କୁଲର ପ୍ରିନ୍‌ସିପାଲଙ୍କଠାରୁ ଆରମ୍ଭ କରି ସହରର ମେୟର୍ ପର୍ଯ୍ୟନ୍ତ ସମସ୍ତେ ବିବ୍ରତ। ବର୍ତ୍ତମାନ ସ୍କୁଲରେ ଏପରି ଏକ ପରିସ୍ଥିତି ଉପୁଜିଛି ଯେ ଜଣେ ପୋଲିସ ଅଫିସରଙ୍କୁ କେବଳ ଏହି ସ୍କୁଲରେ ଡ୍ୟୁଟି କରିବା ପାଇଁ ନିଯୁକ୍ତ କରାଯାଇଛି। ଏହି ପୋଲିସ ଅଫିସର୍ ଗ୍ଲେନ୍ କର୍କଲ୍ୟାଣ୍ଡ ପ୍ରାୟ ଦଶବର୍ଷ ତଳେ ଜେଫର୍‌ସନ ସ୍କୁଲରୁ ପାଶ୍

କରିଥିଲେ। ସେ କହନ୍ତି ଯେ ତାଙ୍କ ସମୟରେ ମଧ୍ୟ ଛାତ୍ରମାନଙ୍କ ମଧ୍ୟରେ ମନାନ୍ତର ହେଉଥିଲା। କିନ୍ତୁ ସେଭଳି କ୍ଷେତ୍ରରେ ସେମାନେ ଗାଳିଗୁଲଜ କରୁଥିଲେ ବା ଅତି ବେଶୀରେ ମାଡ ମରାମରି ହେଉଥିଲେ। କିନ୍ତୁ ଏବେ ତ କଥା କଥାରେ ବନ୍ଧୁକ ବାହାରି ଆସୁଛି।

'ନିଉଜ୍ ଉଇକ୍' ପତ୍ରିକା ତରଫରୁ ଜଣେ ପତ୍ରକାର ଏହି ସ୍କୁଲର କେତେକ ଛାତ୍ରଙ୍କ ସହିତ ସାକ୍ଷାତକାର କରିଥିଲେ। ଜଣେ ପନ୍ଦର ବର୍ଷର ଛାତ୍ର ସୋଲୋମୋନ କହିଥିଲା ଯେ ଯଦି ଜଣକ ପାଖରେ ଆବଶ୍ୟକ ପରିମାଣରେ ଅର୍ଥ ରହିଛି, ତେବେ ବନ୍ଧୁକ ପାଇବାରେ କୌଣସି ଅସୁବିଧା ନାହିଁ। ଛାତ୍ରଟିର କହିବା ଅନୁସାରେ କୁଆଡେ ସ୍କୁଲର ଶତକଡା ୯୦ ଭାଗ ପିଲାଙ୍କ ପାଖରେ କିଛି ନା କିଛି ଅସ୍ତ୍ର ରହିଛି। ସେ ପ୍ରଥମ ଯେତେବେଳେ ସ୍କୁଲକୁ ଆସିଥିଲା, ତା' ପାଖରେ ମଧ୍ୟ ଅସ୍ତ୍ରଟିଏ ଥିଲା। ଉଦ୍ଦେଶ୍ୟ ହେଉଛି ଆତ୍ମରକ୍ଷା।

ଏହି ସ୍କୁଲରେ ଥରେ ଅତି ସାମାନ୍ୟ କଳିରୁ ଦୁଇଜଣ ଛାତ୍ର ପରସ୍ପରକୁ ଲକ୍ଷ୍ୟ କରି ଗୁଳି ଚଳେଇ ଦେଲେ। ଜଣକର ଜୀବନ ତ ସେଇଠି ଶେଷ ହୋଇଗଲା, ଅନ୍ୟ ଜଣକ ଅତି ଗୁରୁତର ଅବସ୍ଥାରେ ଦୁଇଦିନ ହସ୍‌ପିଟାଲରେ ପଡିବା ପରେ ତା'ର ମଧ୍ୟ ମୃତ୍ୟୁ ହୋଇଗଲା।

ଏ ଘଟଣା ଘଟିବାର ପରଦିନ ଦୁଇଟି ସାଙ୍ଗ ଫୋନରେ କଥାବାର୍ତ୍ତା କରୁଥିଲେ। ଗୋଟିଏ ସାଙ୍ଗ ଅପର ପକ୍ଷରୁ 'କ୍ଲିକ୍' ଶବ୍ଦଟିଏ ଶୁଣିଲା। ସେ ପଚାରିଲା ଶବ୍ଦଟି କ'ଣ ? ତା'ର ବନ୍ଧୁଟି କହିଲା ଯେ ସେ ରସିଆନ ରୁଲେ (Russian Roulette) ଖେଳୁଛି। ଡରିବାର କିଛି ନାହିଁ।

'ରୁଲେ' କହିଲେ ସାଧାରଣତଃ ମନକୁ ଆସେ ଜୁଆ। ଏମିତିରେ ଦେଖିଲେ ରସିଆନ ରୁଲେ ମଧ୍ୟ ଏକ ରକମର ଜୁଆ। କିନ୍ତୁ ଜୀବନକୁ ନେଇ ଅତି ଭୟଙ୍କର ଜୁଆ। ବନ୍ଧୁକରେ ଗୁଳି ପାଇଁ ଉଦ୍ଦିଷ୍ଟ ଥିବା ସ୍ଥାନରେ ମାତ୍ର ଗୋଟିଏ ଗୁଳି ରଖି ବାକୀ ସ୍ଥାନଗୁଡ଼ିକୁ ଖାଲି ରଖାଯାଏ। ତା'ପରେ ଗୁଳିର ଚେମ୍ବରକୁ ଜୋର୍‌ରେ ବୁଲେଇ ଦିଆଯାଏ। ଫଳରେ କେଉଁଠି ଗୁଳି ଏବଂ କେଉଁ ସ୍ଥାନଟି ଖାଲି ତାହା ଜଣାପଡେ ନାହିଁ। ଏଥର ଖେଳୁଥିବା ବ୍ୟକ୍ତିକୁ ଅନୁମାନ କରିବାକୁ ହୁଏ- ପରବର୍ତ୍ତୀ ସ୍ଥାନରେ ଗୁଳି ଅଛି କି ନାହିଁ। କଥାଟିର ସତ୍ୟତା ପରଖ କରିବା ପାଇଁ ଶୂନ୍ୟକୁ ଲକ୍ଷ୍ୟ କରି ବନ୍ଧୁକ ଫୁଟାଯାଏ ନାହିଁ। ନିଜ ମୁଣ୍ଡକୁ

ଲକ୍ଷ୍ୟ ରଖି ବନ୍ଧୁକର ଟ୍ରିଗର ଚିପିବାକୁ ପଡେ। ଏହି ଜୁଆରେ ହାରିବାର ପରିଣାମ ତୁ ନିଶ୍ଚୟ ଭାବି ପାରୁଥିବୁ।

ମିତୁ, ଫୋନ୍‌ରେ କଥା କହିବାର ଅଳ୍ପ ସମୟ ପରେ ପିଲାଟିର ଅନୁମାନ ଭୁଲ୍ ହୋଇଗଲା। ରସିଆନ ରୁଲେରେ ସେ ହାରିଗଲା ଏବଂ ସବୁ ଶେଷ। ଆଉ ପିଲାଟିକୁ କେହି ଦେଖିବାକୁ ପାଇଲେ ନାହିଁ।

ଜେଫରସନ୍ ହାଇସ୍କୁଲରେ ଗତ ଗୋଟିଏ ବର୍ଷ ଭିତରେ ୫୬ଟି ଗୁଳି ମାରିବା ଘଟଣା ଘଟି ଯାଇଛି। ସ୍କୁଲର ପ୍ରିନ୍‌ସିପାଲ ହିଂସାତ୍ମକ ଘଟଣା ସ୍କୁଲରୁ କମାଇବା ପାଇଁ ବହୁତ ରକମର ଚେଷ୍ଟା କରୁଛନ୍ତି। ମଝିରେ ମଝିରେ ସ୍କୁଲର ଛାତ୍ରଛାତ୍ରୀମାନଙ୍କୁ 'ସର୍ଚ୍ଚ' କରିବାଠାରୁ ଆରମ୍ଭ କରି ସେମାନଙ୍କୁ ସତ୍‌ଶିକ୍ଷା ଦେବା ପର୍ଯ୍ୟନ୍ତ ସବୁ କିଛି ଚାଲିଛି। କିନ୍ତୁ ସ୍କୁଲରେ ଯେଉଁ ହିଂସାର ବାତାବରଣ ସୃଷ୍ଟି ହୋଇ ଯାଇଛି, ତାହା କ'ଣ କେବେହେଲେ ସମ୍ପୂର୍ଣ୍ଣ ରୂପେ ଲିଭିଯାଇ ପାରିବ? ଜେଫରସନ୍ ହାଇସ୍କୁଲର ଜଣେ ଶିକ୍ଷକ କହନ୍ତି, ''ଏହା ତ ଗ୍ରାଣ୍ଡ କ୍ୟାନିଅନ୍ ଭିତରେ ଇଟା ପକେଇବା ଭଳି କଥା।''

ବିନା କାରଣରେ ବା ସାମାନ୍ୟ କାରଣରୁ ଯେ ଏଭଳି ଘଟଣା ସବୁ ଘଟୁଛି, ଏଇଟା ହିଁ ସବୁଠାରୁ ଅଧିକ ଚିନ୍ତାର ବିଷୟ। ହଳେ ଜୋତା ପାଇଁ ଫିଲାଡେଲ୍‌ଫିଆର ଛାତ୍ରଟିଏ ଯେଉଁ ଅନ୍ୟଜଣେ ଛାତ୍ରକୁ ମାରିଦେଲା- ଏ ଘଟଣା ତୁ ନିଶ୍ଚୟ ଆଗରୁ ଖବରକାଗଜରେ ପଢିଥିବୁ। ଏଇଥିପାଇଁ ତାକୁ ମୃତ୍ୟୁଦଣ୍ଡ ଦିଆଯିବ ବୋଲି ଗତମାସରେ ଘୋଷଣା କରାଯାଇଛି। କୋର୍ଟର ନିଷ୍ପତ୍ତି ଶୁଣିବା ପରେ ମଧ୍ୟ ଛାତ୍ରଟିର କୌଣସି ଭାବାନ୍ତର ହେଲା ନାହିଁ। ବରଂ ମୃତ୍ୟୁବରଣ କରିଥିବା ପିଲାଟିର ପରିବାରକୁ ଛିଗୁଲେଇ ସେ କହିଥିଲା, ''ତୁମ ପୁଅ ତ ଆଉ ଫେରି ଆସିବ ନାହିଁ।'' ଏଭଳି ଘଟଣାର ମନସ୍ତାତ୍ତ୍ୱିକ ବିଶ୍ଳେଷଣ କରିବା ଉଚିତ ନୁହଁ କି?

ଆଜିକାଲି ଏସବୁ ହିଂସାକାଣ୍ଡ କେବଳ କେତୋଟି ନିର୍ଦ୍ଦିଷ୍ଟ ସହରରେ ସୀମିତ ହୋଇ ରହିନାହିଁ। ଏହା କ୍ରମଶଃ ଆମେରିକାର ଅନ୍ୟାନ୍ୟ ସ୍ଥାନକୁ ଧୀରେ ଧୀରେ ବ୍ୟାପିବାକୁ ଲାଗିଛି ଏବଂ ସ୍କୁଲମାନଙ୍କରେ ଘଟୁଥିବା ହିଂସାକାଣ୍ଡର ସଂଖ୍ୟା କେବଳ ବଢିବାରେ ହିଁ ଲାଗିଛି। ଟେକ୍‌ସାସ୍ ରାଜ୍ୟର ଛୋଟିଆ ସହରଟିଏ କ୍ରସ୍‌ବି। ଏଠିକାର ଗୋଟିଏ ହାଇସ୍କୁଲର କ୍ୟାଫେଟେରିଆରେ ସ୍କୁଲ ଫୁଟବଲ ଟିମ୍‌ର କ୍ୟାପଟେନ୍

ଆର୍ଥର୍ ଜ୍ୟାକ୍ ବସି କମଳା ରସ ପିଉଥିଲା। ହଠାତ୍ ତା' ପାଖରେ ଆସି ପହଞ୍ଚିଲା ପନ୍ଦର ବର୍ଷର ଝିଅ ଲାକିତା କ୍ୟାଡୋରି। "ତୁମେ ମତେ କୁକୁରୀ ବୋଲି କାହିଁକି ସେଦିନ କହିଥିଲ ?" ବାସ୍, କେବଳ ଏତିକି କହି କ୍ୟାଡୋରି ପିସ୍ତଲଟିଏ କାଢି ଜ୍ୟାକ୍‌କୁ ଗୁଳି କରିଦେଲା ! ହୁଏତ ଜ୍ୟାକ୍ କ୍ୟାଡୋରିକୁ ଅପମାନ କରି କେବେ କିଛି କହିଥିଲା। କିନ୍ତୁ କେବଳ ଏତିକି ଘଟଣାରେ ଯେ ଜଣେ ଜଣଙ୍କର ଜୀବନ ନେଇଯିବ, ଏ କଥା ଚିନ୍ତା କରି ହୁଏନାହିଁ। କିନ୍ତୁ କାହିଁକି ଓ କିଭଳି ଏପରି ଏକ ପରିସ୍ଥିତି ଉପୁଜିଛି ? ମା'ର କୋଳ ପରେ ପୃଥିବୀର ସବୁଠାରୁ ନିରାପଦ ସ୍ଥାନ ହେବା ଉଚିତ 'ସ୍କୁଲ'। ଅଥଚ ବର୍ତ୍ତମାନ ସ୍କୁଲ ହୋଇଛି ସବୁଠାରୁ ବିପଦଜନକ ସ୍ଥାନ। ମିତ୍ରୁ, ମୋର ମନେ ହୁଏ ଏଠିକାର ଦୁର୍ବଳ ପାରିବାରିକ ଜୀବନ ଏଭଳି ଘଟଣା ପାଇଁ ଅନେକାଂଶରେ ଦାୟୀ। ମା, ବାପା ନିଜ ନିଜ କାମରେ ବ୍ୟସ୍ତ। ପିଲାକୁ ସମୟ ଦେବା ଦୂରେ ଥାଉ, ସେ କ'ଣ କରୁଛି, ତାହା ଜାଣିବାର ଉପାୟ ନାହିଁ। ଆଉ ଅନେକ କ୍ଷେତ୍ରରେ ମା, ବାପା ପରସ୍ପରଠାରୁ ଦୂରେଇ ଯାଇ ଅନ୍ୟ କାହା ସହିତ ନୂଆ ଜୀବନ ଆରମ୍ଭ କରିଛନ୍ତି। ପିଲାମାନେ ହୁଏତ ଏହା ଗ୍ରହଣ କରିପାରୁ ନାହାନ୍ତି। ତେଣୁ ଭିନ୍ନ ଉପାୟରେ ନିଜର ବିରୋଧ ପ୍ରକାଶ କରୁଛନ୍ତି।

ଦୁର୍ବଳ ପାରିବାରିକ ଜୀବନ ବ୍ୟତୀତ 'ଡ୍ରଗ୍'ର ମଧ୍ୟ ଗୋଟିଏ ବଡ ଭୂମିକା ରହିଛି। ଡ୍ରଗ୍ ବ୍ୟବସାୟ କରୁଥିବା ଦଳମାନଙ୍କ ମଧ୍ୟରେ ହିଂସାକାଣ୍ଡ ତ ଅତି ସାଧାରଣ ଘଟଣା। ଏପରି ଘଟଣା ଘଟି ସାରିବା ପରେ ବ୍ୟବହୃତ ହୋଇଥିବା ବନ୍ଧୁକ ବା ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ରକୁ ଡ୍ରଗ୍ ବ୍ୟବସାୟୀମାନେ ପାଣି ଦରରେ ବିକ୍ରି କରିଦିଅନ୍ତି। ସେମାନଙ୍କର ଲକ୍ଷ୍ୟ ପୋଲିସ ନିକଟରୁ ପ୍ରମାଣ ଦୂରେଇ ଦେବା। ଆଉ ସ୍କୁଲ ଛାତ୍ରମାନଙ୍କୁ ଲୋଭ ଦେଖାଇ ଶସ୍ତାରେ ବନ୍ଧୁକ ବିକ୍ରି କରିବା କି ସହଜ ! ଏହାଦ୍ୱାରା ସମାଜର କେତେବଡ କ୍ଷତି ସେମାନେ କରୁଛନ୍ତି, ସେକଥା ଭାବିବାକୁ କ'ଣ ସେମାନଙ୍କର ସମୟ ଅଛି ? ଦେଖାଯାଉଛି ଯେ ହିଂସାତ୍ମକ ଘଟଣା ଘଟାଇବା ପାଇଁ କୌଣସି ଆଗ୍ରହ ନ ଥିଲେ ମଧ୍ୟ ବହୁ ଛାତ୍ରଛାତ୍ରୀ ନିଜ ପାଖରେ ବନ୍ଧୁକ ରଖୁଛନ୍ତି ଏବଂ ଛୋଟ ଛୋଟ ଘଟଣାରୁ ନିଜ ନିଜ ଭିତରେ ଗୁଳି ମରାମରି ହେଉଛନ୍ତି। ଜେଫରସନ୍ ହାଇସ୍କୁଲର ପ୍ରିନ୍‌ସିପାଲ ଏକ ସାକ୍ଷାତକାରରେ ଥରେ କହିଥିଲେ, "ନିଉୟର୍କର ଏହି ଅଞ୍ଚଳରେ ବହି ବା ପତ୍ରିକାଟିଏ

ପାଇବା ଅପେକ୍ଷା ବନ୍ଧୁକଟିଏ ପାଇବା ସୁବିଧାଜନକ। ପାଖରେ ବନ୍ଧୁକ ରଖିବା ଯେ ଏ ଅଞ୍ଚଳରେ ବେଶ୍ ଗର୍ବର ବିଷୟ।''

ପୋଲିସ୍ ତଦନ୍ତରୁ ଜଣାପଡିଛି ଯେ ଅଧିକାଂଶ ବନ୍ଧୁକ ଚୋରା। କିନ୍ତୁ ପିଲାମାନଙ୍କ ପାଖରେ ଏଭଳି କେତେକ ବନ୍ଧୁକ ରହିଛି ଯାହାକି ସେମାନେ ଟଙ୍କା ଦେଇ କିଣିଛନ୍ତି। ଗୋଟିଏ ଭଲ ବନ୍ଧୁକର ଦାମ ତ କିଛି କମ୍ ନୁହଁ; ସ୍କୁଲ ପିଲାମାନେ ଏତେ ଟଙ୍କା ଆଣୁଛନ୍ତି କେଉଁଠୁ ?

ମୁଁ ପୁଣି ଥରେ ଦୋଷ ଦେବି ମା, ବାପାମାନଙ୍କୁ। ଅଧିକାଂଶ ମା, ବାପା ପିଲାମାନଙ୍କୁ ସମୟ ଦେଇ ନ ପାରି ନିଜକୁ ଦୋଷୀ ମନେ କରନ୍ତି। ଆଉ ଯଦି ଡିଭୋର୍ସ ଦ୍ୱାରା ସ୍ୱାମୀ-ସ୍ତ୍ରୀ ଭିନ୍ନ ହୋଇଯାଇ ନିଜ ନିଜର ସ୍ୱତନ୍ତ୍ର ଜୀବନ ଆରମ୍ଭ କରିଥାଆନ୍ତି, ତେବେ ବିବେକର ତାଡନା ସେମାନଙ୍କୁ ଅଧିକ ଅସ୍ଥିର କରିଦିଏ। ନିଜ ମନକୁ ବୁଝେଇବାକୁ ଯାଇ ସେମାନେ ପୁଅଝିଅଙ୍କ ହାତରେ ଅପର୍ଯ୍ୟାପ୍ତ ଅର୍ଥ ଦେଇଥାଆନ୍ତି। କିନ୍ତୁ ପିଲାମାନେ କିଭଳି ଭାବରେ ସେଇ ଅର୍ଥ ଖର୍ଚ୍ଚ କରୁଛନ୍ତି, ତାହା ତଦାରଖ କରିବାକୁ ସେମାନଙ୍କର ସମୟ ବା ଆଗ୍ରହ ନାହିଁ। ଆଉ କେତେକ ସ୍କୁଲ ପିଲା ଘରୁ ପଇସା ନ ପାଇଲେ ମଧ୍ୟ ଡ୍ରଗ୍ ବ୍ୟବସାୟ କରି ବେଶ୍ ଅର୍ଥ ରୋଜଗାର କରି ନେଉଛନ୍ତି। କିନ୍ତୁ ସେମାନଙ୍କର ମା, ବାପାମାନେ ସବୁ ଦେଖି ମଧ୍ୟ କିଛି ଦେଖି ପାରନ୍ତି ନାହିଁ। ପୁଅ ୧୫୦ ଡଲାର୍‌ର ନୂଆ ଜୋତା ପିନ୍ଧିଲେ ବା ନୂଆ ମଟର ସାଇକେଲ ଚଢିଲେ ମା' ବାପାଙ୍କ ଆଖିରେ ପଡେନାହିଁ କେମିତି ? ସେମାନେ ପିଲାମାନଙ୍କୁ କିଛି ପଚାରନ୍ତି ନାହିଁ ବା ଶାସନ ମଧ୍ୟ କରନ୍ତି ନାହିଁ। ସେମାନଙ୍କର ଚେତା ଆସେ ଯେତେବେଳେ ଦଳ ଯୁଦ୍ଧରେ ସେମାନଙ୍କର ପୁଅ ବା ଝିଅ ଶୀକାର ହୋଇଯାଏ।

ତୁ ହୁଏତ ଭାବୁଥିବୁ ଯେ ଶିକ୍ଷକମାନେ କ'ଣ ଶ୍ରେଣୀରେ ଛାତ୍ରମାନଙ୍କୁ ସତ୍‌ଶିକ୍ଷା ଦେଉନାହାନ୍ତି ? କୁହାଯାଏ ଯେ ପିଲାମାନଙ୍କ ମନ ଉପରେ ଶିକ୍ଷକମାନଙ୍କ ପ୍ରଭାବ ସବୁଠାରୁ ଅଧିକ ପଡିଥାଏ। କିନ୍ତୁ ମିତୁ, ଶିକ୍ଷକମାନଙ୍କର ଯେ ହାତ ଗୋଡ ବନ୍ଧା। ସେମାନଙ୍କୁ ମଧ୍ୟ ସାବଧାନତା ଅବଲମ୍ବନ କରିବାକୁ ହୁଏ। ସେମାନେ ଯଦି ଅଜାଣତରେ କୌଣସି ଛାତ୍ରକୁ କିଛି କହିଦିଅନ୍ତି, ତା'ହେଲେ ସେମାନଙ୍କର ଜୀବନ ଚାଲିଯିବା ଅସମ୍ଭବ ନୁହଁ। ୧୯୯୦ର ଏକ ସର୍ଭେରୁ ଜଣାପଡିଛି ଯେ ଗୋଟିଏ ବର୍ଷ ଭିତରେ ଶତକଡା ୨୦ ଭାଗ ଶିକ୍ଷକଙ୍କୁ ମାରି ଦେବାର ଧମକ

ଦିଆଯାଇଥିଲା ।

ଏଇ ତ ସେଦିନ କଥା । କ୍ୟାଲିଫୋର୍ଣ୍ଣିଆର ଗୋଟିଏ ସ୍କୁଲରେ ଜଣେ ପୂର୍ବତନ ଛାତ୍ର ସ୍କୁଲର ଇତିହାସ ଶିକ୍ଷକଙ୍କ ଉପରେ ରାଗ ରଖି ସ୍କୁଲରେ ଆସି ପହଞ୍ଚିଲା । ଶିକ୍ଷକଙ୍କର ଦୋଷ ହେଉଛି ପିଲାଟି ଇତିହାସ ପରୀକ୍ଷାରେ ଅତି ଖରାପ କରିଥିବାରୁ ସେ ତାକୁ ଫେଲ କରେଇ ଦେଇଥିଲେ । ଏହି ପୂର୍ବତନ ଛାତ୍ରଟି ରାଗରେ ଶିକ୍ଷକଙ୍କୁ ଖରାପ କରି କିଛି କହି ନ ଥିଲା ବା ତାଙ୍କ ସହିତ ଯୁକ୍ତିତର୍କ ମଧ୍ୟ ଆରମ୍ଭ କରି ନ ଥିଲା, ବରଂ ସେ ପଢ଼ଉଥିବା ଶ୍ରେଣୀ ଭିତରେ ଜବରଦସ୍ତ ପଶିଯାଇ ଅନ୍ଧ ଭାବରେ ଗୁଳି ଚଳେଇବା ଆରମ୍ଭ କରିଦେଇଥିଲା । ପରେ ଅବଶ୍ୟ ତାକୁ ପୋଲିସ୍ ଗିରଫ କରିନେଇଥିଲେ । କିନ୍ତୁ ସେତେବେଳକୁ ଇତିହାସ ଶିକ୍ଷକଙ୍କ ସମେତ ଆଉ ଚାରିଜଣଙ୍କର ମୃତ୍ୟୁ ହୋଇଯାଇଥିଲା ।

ଆମେରିକାର ସ୍କୁଲମାନଙ୍କରେ ବା ସ୍କୁଲ ନିକଟରେ ପ୍ରତିବର୍ଷ ପ୍ରାୟ ୩୦ ଲକ୍ଷ' ହିଂସାତ୍ମକ ଘଟଣା ଘଟୁଛି । ଅର୍ଥାତ୍ ପ୍ରତି ୬ ସେକେଣ୍ଡକୁ ଗୋଟିଏ ଘଟଣା । କି ଭୟଙ୍କର ପରିସ୍ଥିତି ! ଏଥିପାଇଁ ଆମେରିକାର ପ୍ରାୟ ଶତକଡା ୨୫ ଭାଗ ସ୍କୁଲରେ ଆଜିକାଲି ମେଟାଲ ଡିଟେକ୍‌ଟର୍ ବ୍ୟବହାର କରାଯାଉଛି ।

ହିଂସାକାଣ୍ଡ କଥା ଲେଖୁ ଲେଖୁ ଗୋଟିଏ ବିଷୟ ନ ଲେଖି ରହି ପାରୁନାହିଁ । ରଡନି କିଙ୍ଗ ବିଷୟ । ରଡ୍‌ନି କିଙ୍ଗ କେଶ୍ ନେଇ ଏଇ ଗତ କେତେଦିନ ତଳେ ଆମେରିକାରେ ଘଟି ଯାଇଥିବା ଧ୍ୱଂସଲୀଳା କଥା ହିଁ କହୁଛି । ତୁ ନିଶ୍ଚୟ ଏ ବିଷୟରେ ଖବରକାଗଜରେ ପଢ଼ିଥିବୁ । ଟେଲିଭିଜନରେ ମଧ୍ୟ ଦେଖିଥିବୁ ।

ଲସ୍ ଆଞ୍ଜେଲେସ୍‌ର କଳା ଲୋକଟିଏ ଏଇ ରଡ୍‌ନି କିଙ୍ଗ । ମାର୍ଚ୍ଚମାସ ତିନି ତାରିଖ ରାତି ଡେରିରେ ସେ ରାସ୍ତାରେ ଗାଡି ନେଇ ଯାଉଥିଲା । ପୋଲିସର ତା' ଉପରେ ସନ୍ଦେହ ହେଲା ଏବଂ ପୋଲିସ ତାକୁ ଗାଡି ଅଟକେଇବା ପାଇଁ ସଙ୍କେତ ଦେଲେ । କିନ୍ତୁ ରଡ୍‌ନି କିଙ୍ଗ ଗାଡି ଅଟକେଇଲା ନାହିଁ । ଫଳରେ ପୋଲିସ ତାକୁ ଗୋଡେଇଲେ ଏବଂ ଶେଷରେ ଗାଡି ଭିତରୁ ରଡ୍‌ନି କିଙ୍ଗକୁ ଟାଣି ଆଣି ଆଖିବୁଜା ମାଡ ବସେଇବା ଆରମ୍ଭ କଲେ । ଏମିତି ଘଟଣା ତ ନୂଆ ନୁହଁ । ହୁଏତ ଏହାର ସାମାନ୍ୟ ପ୍ରତିବାଦ ପରଦିନ ଖବର କାଗଜରେ ପଢ଼ିବାକୁ ମିଳି ଥାଆନ୍ତା ଏବଂ ସେଇଠି ଘଟଣାଟି ଶେଷ ହୋଇଯାଇଥାଆନ୍ତା । କିନ୍ତୁ ନିକଟରେ ଥିବା ଗୋଟିଏ ଘର ଭିତରୁ ଜଣେ ଲୋକ ଝର୍କାଦେଇ ଏ

ଘଟଣାଟି ଦେଖିଲା ଏବଂ ନିଜର ଭିଡିଓ କ୍ୟାମେରାରେ ଘଟଣାର କିଛି ଅଂଶ ଭିଡିଓ ଟେପ୍ କରିନେଲା । ତା' ପରଦିନ ଯେତେବେଳେ ଭିଡିଓ ଟେପ୍‌ଟି ଟେଲିଭିଜନରେ ପ୍ରସାରିତ ହେଲା, ସମଗ୍ର ଦେଶରେ ଏହାର କି ଯେ ପ୍ରତିକ୍ରିୟା ହେଲା, ତୁ ଅନୁମାନ କରି ପାରୁଥିବୁ । ଭିଡିଓ ଟେପ୍‌ଟି ମାତ୍ର ୮୧ ସେକେଣ୍ଡର । କିନ୍ତୁ ଏହି ୮୧ ସେକେଣ୍ଡ ଭିତରେ ଚାରିଜଣ ପୋଲିସ୍ ଅଫିସର୍ ରଡ୍‌ନି କିଙ୍ଗ୍‌କୁ ୫୬ ଥର ନୃଶଂସ ଭାବରେ ବାଡିରେ ପିଟିଛନ୍ତି ବା ଜୋତାରେ ତା' ପେଟ, ଛାତି, ବେକରେ ଗୋଇଠା ମାରିଛନ୍ତି ।

ଏମିତିରେ ତ ଆମେରିକାରେ କଳା ଧଳା ଲୋକଙ୍କ ମଧ୍ୟରେ କିଛି କିଛି ତିକ୍ତତା ଓ ଶତ୍ରୁତା ରହିଛି । ତେଣୁ କଳା ଲୋକକୁ ଧଳା ପୋଲିସ୍‌ଙ୍କ ମାଡ ଓ ତା' ସହିତ 'ରଙ୍ଗ' ନେଇ ବିଭିନ୍ନ ଅଶ୍ରାବ୍ୟ ଗାଳି ଏଠିକାର କଳା ଲୋକମାନଙ୍କ ମନରେ ଅଶାନ୍ତି ସୃଷ୍ଟି କରିବା ସ୍ୱାଭାବିକ । କିନ୍ତୁ ଏ ଘଟଣା କେବଳ କଳା ନୁହଁ, ଅନ୍ୟ ବର୍ଣ୍ଣର ଲୋକମାନଙ୍କୁ ମଧ୍ୟ ସ୍ତବ୍ଧ କରି ଦେଇଥିଲା । ଯେତେବେଳେ ରଡ୍‌ନି କିଙ୍ଗ ପକ୍ଷରୁ ଚାରିଜଣ ପୋଲିସ୍ ଅଫିସର୍‌ଙ୍କ ବିରୁଦ୍ଧରେ ଅଦାଲତରେ ମକଦ୍ଦମା କରାଗଲା, ସେତେବେଳେ କେହି ଆଶ୍ଚର୍ଯ୍ୟ ହେଲେ ନାହିଁ । ଏହି ମକଦ୍ଦମାର ବିଚାର କରିବା ଭାର ଲସ୍ ଆଞ୍ଜେଲେସ ସୁପିରିଅର କୋର୍ଟର ବିଚାରପତି ଷ୍ଟାନଲେ ୱେଇସବର୍ଗଙ୍କୁ ଦିଆଗଲା । ରାଜ୍ୟର ବିଚାର ବିଭାଗ ମକଦ୍ଦମାର ଶୁଣାଣୀ ପାଇଁ ଜଜ୍ ୱେଇସବର୍ଗଙ୍କୁ ତିନୋଟି ସ୍ଥାନରୁ ଗୋଟିକୁ ବାଛିବା ପାଇଁ କହିଲେ । ପ୍ରଥମ ସ୍ଥାନଟି ହେଲା ଅରେଞ୍ଜ କାଉଣ୍ଟି । ଏଇଟି ଲସ୍ ଆଞ୍ଜେଲେସର ଦକ୍ଷିଣରେ । ଜଜ୍ ୱେଇସବର୍ଗ ଏହି ସ୍ଥାନଟିକୁ ନାକଚ କରିଦେଲେ । କାରଣ ଏଠିକାର କୋର୍ଟରେ ବହୁ ମକଦ୍ଦମାର ଭିଡ । ନୂଆ ମକଦ୍ଦମାର ବିଚାର ପାଇଁ ବହୁତ ଦିନ ଅପେକ୍ଷା କରିବାକୁ ପଡିବ । ଦ୍ୱିତୀୟ ସ୍ଥାନଟି ହେଲା ସାନ୍‌ଫ୍ରାନ୍‌ସିସ୍କୋ ଅଞ୍ଚଳର ଆଲାମେଡା କାଉଣ୍ଟି । ଏହା ଯେହେତୁ ଲସ୍ ଆଞ୍ଜେଲେସ୍‌ଠାରୁ ୩୮୭ ମାଇଲ ଦୂର, ବିଚାରପତି ଏହାକୁ ମଧ୍ୟ ନାକଚ କରିଦେଲେ । ବାକୀ ରହିଲା ତୃତୀୟ ସ୍ଥାନ- ଭେଞ୍ଚୁରା କାଉଣ୍ଟିର ସିମିଭ୍ୟାଲି । ଏହି ନିଷ୍ପତ୍ତିରେ ରଡ୍‌ନି କିଙ୍ଗଙ୍କ ଓକିଲମାନେ ଖୁବ୍ ଗୋଟିଏ ସନ୍ତୁଷ୍ଟ ହୋଇ ପାରିଲେ ନାହିଁ । କାରଣ ସିମି ଭ୍ୟାଲି ପ୍ରଧାନତଃ ଧଳା ଲୋକଙ୍କ ଅଞ୍ଚଳ । ଅନ୍ୟ ପକ୍ଷରେ ଅରେଞ୍ଜ କାଉଣ୍ଟିରେ ଶତକଡା ଦଶଭାଗ ଓ ଆଲାମେଡାରେ ଶତକଡା ପନ୍ଦର ଭାଗ କଳା ଲୋକ ରହିଛନ୍ତି । ଅସନ୍ତୁଷ୍ଟ ହେଲେ ମଧ୍ୟ ରଡ୍‌ନି

କିଙ୍ଗଙ୍କ ଓକିଲମାନେ ବିଚାରପତିଙ୍କ ନିଷ୍ପତ୍ତି ବିରୁଦ୍ଧରେ ମୁହଁ ଖୋଲି ପାରିଲେ ନାହିଁ। କାରଣ ଆମେରିକାର ଆଇନ ଅନୁସାରେ ଏ ବିଷୟରେ ବିଚାରପତିଙ୍କ ନିଷ୍ପତ୍ତି ହିଁ ଚୂଡ଼ାନ୍ତ। ତଥାପି କିଙ୍ଗଙ୍କ ଓକିଲମାନେ ହତୋତ୍ସାହ ହୋଇ ନଥିଲେ। ସେମାନଙ୍କର ଏକମାତ୍ର ଆଶ୍ୱାସନା ଏହି ଥିଲା ଯେ ଗତ ପାଞ୍ଚବର୍ଷ ମଧ୍ୟରେ ଭେଣ୍ଟୁରା କାଉଣ୍ଟିରେ ପୋଲିସ୍ ନୃଶଂସତା ନେଇ ହୋଇଥିବା ପାଞ୍ଚୋଟି ମକଦ୍ଦମାରୁ ତିନୋଟିରେ ପୋଲିସ୍ ବିରୁଦ୍ଧରେ ନିଷ୍ପତ୍ତି ନିଆ ଯାଇଥିଲା। ତା'ଛଡ଼ା ସେମାନଙ୍କ ନିକଟରେ ଥିଲା ଅବ୍ୟର୍ଥ ପ୍ରମାଣ- ଭିଡିଓ ଟେପ୍। ଜଣେ ସାକ୍ଷୀର ବୟାନକୁ ମିଛ ପ୍ରମାଣିତ କରାଯାଇ ପାରେ, କିନ୍ତୁ କ୍ୟାମେରାରେ ଉଠିଥିବା ଫଟୋକୁ କ'ଣ କେହି ଅସ୍ୱୀକାର କରି ପାରିବ ?

ମକଦ୍ଦମା ଆରମ୍ଭ ହେଲା। ଉଭୟ ପକ୍ଷର ବକ୍ତବ୍ୟ ଶୁଣିବାପରେ ଓ ବହୁଥର ଭିଡିଓ ଟେପ୍‌ଟିକୁ ଦେଖିବା ପରେ ଏକ ତାରିଖ ଅପରାହ୍ନରେ ଜୁରି ନିଜର ନିଷ୍ପତ୍ତି କୋର୍ଟକୁ ଜଣେଇଲେ- ରଡ୍‌ନି କିଙ୍ଗକୁ ମାରିଥିବା ଚାରିଜଣ ପୋଲିସ୍ ଦୋଷୀ ନୁହନ୍ତି। ଏ ରାୟ ଯେତେବେଳେ ଟେଲିଭିଜନ ଜରିଆରେ ଲୋକମାନଙ୍କ ନିକଟରେ ପହଞ୍ଚିଲା, ଚାରିଆଡ଼େ ଅବିଶ୍ୱାସର ଗୁଞ୍ଜନ ଖେଳିଗଲା। ବହୁ କାରଣରୁ ଏତେଦିନ ଧରି କଳା ଲୋକମାନଙ୍କ ମନ ଭିତରେ ଚାପିଚୁପି ହୋଇ ରହିଥିଲା ରାଗ ଓ ଅଶାନ୍ତି। ଦୁର୍ବଳ ପାରିବାରିକ ଜୀବନ ଓ ଧଳା କଳା ବୈଷମ୍ୟର ମୁକାବିଲା କରି କରି ସେମାନେ ହତାଶ ହୋଇ ପଡ଼ିଥିଲେ। ଏହାଛଡ଼ା ଆମେରିକାର ବସ୍ତୁବାଦୀ ସମାଜର ସିଡ଼ିରେ ସେମାନେ ବେଶୀ ଉପରକୁ ଉଠି ପାରି ନ ଥିଲେ। ଏଇ ସବୁ ଏକାଠି ହୋଇ ସେମାନଙ୍କ ଭିତରେ ଚାପ ଏତେ ବେଶୀ ବଢ଼ି ଯାଇଥିଲା ଯେ ସାମାନ୍ୟତମ ଘଟଣାରୁ ବିସ୍ଫୋରଣ ଘଟିବା ଅସମ୍ଭବ ନ ଥିଲା।

ଏବଂ ଠିକ୍ ତାହା ହିଁ ହୋଇଥିଲା।

ଅଳ୍ପ ସମୟ ମଧ୍ୟରେ ଲସ୍ ଆଞ୍ଜେଲେସ୍‌ର କଳା ଲୋକମାନେ ରାସ୍ତାଘାଟରେ ଏକତ୍ରିତ ହୋଇ ପ୍ରତିବାଦ କରିବାରେ ଲାଗିଲେ। କିନ୍ତୁ ସେତିକିରେ ଘଟଣାର ଶେଷ ହେଲା ନାହିଁ। ଖୁବ୍ ଶୀଘ୍ର ଏହି ଲୋକମାନଙ୍କ ଭିତରେ ମିଶିଗଲେ ସହରର ଅସାମାଜିକ ବ୍ୟକ୍ତିମାନେ ଏବଂ ସହରରେ ଦଙ୍ଗା ଆରମ୍ଭ ହୋଇଗଲା।

ହେଲିକପ୍‌ଟରରୁ ବିଭିନ୍ନ ଟେଲିଭିଜନ୍ ଚ୍ୟାନେଲ୍ ଏଇ ଧ୍ୱଂସଲୀଳାର ଯେଉଁ ଫଟୋ ଉଠେଇଛନ୍ତି, ତା' ତୁ ନିଶ୍ଚୟ ଦେଖିଥିବୁ। ସେ କି ଭୟଙ୍କର ଦୃଶ୍ୟ !

ସହରର ବିଭିନ୍ନ ସ୍ଥାନରେ ନିଆଁ ଲଗେଇ ଦିଆଯାଉଛି। ସାଧାରଣ ଲୋକମାନଙ୍କୁ ଧରି ଆଣି କେହି କେହି ବିନା କାରଣରେ ମାଡ ମାରି ରକ୍ତାକ୍ତ କରି ଦେଉଛନ୍ତି। ଟେଲିଭିଜନ କ୍ୟାମେରା ସାମ୍ନାରେ କେଇଜଣ ବ୍ୟକ୍ତି ଗୋଟିଏ ଟ୍ରକ୍‌କୁ ଅଟକାଇଦେଲେ ଏବଂ ଭିତରୁ ଡ୍ରାଇଭର୍‌କୁ ଟାଣି ଆଣି ପିଟି ପିଟି ଅର୍ଦ୍ଧମୃତ ଅବସ୍ଥାରେ ରାସ୍ତାରେ ପକେଇଦେଲେ। ବିଚରା ଡ୍ରାଇଭରଟି ଜାଣି ମଧ୍ୟ ନ ଥିଲା ଯେ ଲସ୍ ଆଞ୍ଜେଲେସ୍‌ରେ ଦଙ୍ଗା ଆରମ୍ଭ ହୋଇଯାଇଛି। କେବଳ ଏତିକି ନୁହଁ, ଅସାମାଜିକ ଲୋକମାନଙ୍କ ନେତୃତ୍ୱରେ ଲୋକମାନେ ଏକାଠି ହୋଇ ସହରର ବିଭିନ୍ନ ଦୋକାନର କାଚ କବାଟ, ଝରକା ଭାଙ୍ଗି ପକଉଥାଆନ୍ତି ଏବଂ ତା'ପରେ ଦଳ ଦଳ ଲୋକ ଭିତରେ ପଶି ଦୁଇ ହାତରେ ଜିନିଷ ଲୁଟ୍ କରି ଆଣୁ ଥାଆନ୍ତି। ଛୋଟ ଜୋତା ଜୁଆର ଡାଇପର୍ ପ୍ୟାକେଟ୍‌ଠାରୁ ଆରମ୍ଭ କରି ଦାମୀ ଟେଲିଭିଜନ୍, ଷ୍ଟେରିଓ ଇତ୍ୟାଦି। ମିତ୍ର, ସେ ଦୃଶ୍ୟ ଯିଏ ଦେଖିଥିବ, ସେ ନିଶ୍ଚୟ ମୋ ଭଳି ବିବ୍ରତ ହୋଇଥିବ। ପିଲାଛୁଆଠାରୁ ନେଇ ବୁଢାବୁଢୀ ପର୍ଯ୍ୟନ୍ତ ସମସ୍ତେ ଲୁଟତରାଜ କରିବାରେ ଲାଗି ପଡିଥାଆନ୍ତି। କେତେକ ସ୍ଥାନରେ ଗୋଟିଏ ଗୋଟିଏ ପରିବାରର ଲୋକ ଏକାଠି ହୋଇ ଦୋକାନରେ ପଶି ଜିନିଷ ଉଠେଇ ଆଣୁଥାଆନ୍ତି ଏବଂ ସେଗୁଡିକୁ ନିଜ ଗାଡିରେ ଲଦି ଦେଉଥାଆନ୍ତି। ଜିନିଷ ଧରି ଦୌଡି ଦୌଡି ଚାଲିଯିବା ବେଳେ ଛୋଟ ପିଲାଙ୍କ ମୁହଁରେ ଯେଉଁ ହସ ଖେଳିଯାଉଥାଏ, ତାହା ଦେଖି ମୋ ଛାତି କୋରି ହୋଇ ଯାଉଥାଏ। ମା, ବାପାମାନେ ପିଲାମାନଙ୍କୁ ସାଧାରଣତଃ ଭଲ କଥା ଶିଖାଇ ଥାଆନ୍ତି। ଅଥଚ ଏଇ ମା, ବାପାମାନେ ନିଜ ପିଲାଙ୍କୁ କି ଶିକ୍ଷା ଦେଉଛନ୍ତି? କ'ଣ ମଣିଷ ହେବେ ତାଙ୍କ ପିଲାମାନେ? ସେମାନଙ୍କୁ ଯେ ପିଲାଦିନରୁ ମା, ବାପାମାନେ ଚୋରୀ, ଲୁଟ୍‌ତରାଜ କରିବା ଶିଖାଉଛନ୍ତି। ଏସବୁ ଘଟଣାର ଏକ ଗଭୀର ଛାପ ଏଇ ପିଲାମାନଙ୍କ ମନ ଉପରେ ପଡିଯିବ ଏବଂ ବଡ ହୋଇ ସେମାନେ ହିଂସାକୁ ଜୀବନର ଏକ ସାଧାରଣ ଘଟଣା ରୂପେ ଗ୍ରହଣ କରିନେବେ। ପାଖରେ ବନ୍ଧୁକ, ଛୁରୀ ରଖିବେ ଏବଂ କ୍ରସ୍‌ବି ହାଇସ୍କୁଲର ଲାକିତା କ୍ୟାଡୋଗି ଭଳି ବା ଜେଫରସନ୍ ମେମୋରିଆଲ୍ ସ୍କୁଲର ଛାତ୍ରଛାତ୍ରୀମାନଙ୍କ ଭଳି ସେମାନେ କଥାକଥାରେ ସେସବୁର ବ୍ୟବହାର କରିବାକୁ ପଛେଇବେ ନାହିଁ।

ପୃଥିବୀର ସର୍ବଶ୍ରେଷ୍ଠ ରାଷ୍ଟ୍ରମାନଙ୍କ ମଧ୍ୟରେ ଅନ୍ୟତମ ଏଇ ଯୁକ୍ତରାଷ୍ଟ୍ର

ଆମେରିକା। ରୁଷିଆ ଖଣ୍ଡ ଖଣ୍ଡ ହୋଇଯିବା ପରେ ପୃଥିବୀର ଏକମାତ୍ର ମହାଶକ୍ତି। କିନ୍ତୁ ତା'ର ସମାଜ ବ୍ୟବସ୍ଥାରେ କାହିଁକି କଳଙ୍କି ଲାଗିଯାଉଛି? ଯଦି ସମାଜଟି ଏକ ମନ, ଏକ ପ୍ରାଣ ହୋଇ ଏହାର କୌଣସି ବିଧାନ ନ କରେ, ତେବେ ଅସୀମ ପ୍ରାଚୁର୍ଯ୍ୟ ଥିବା ସତ୍ତ୍ୱେ ଦେଶଟି ଯେ ବିକଳାଙ୍ଗ ହୋଇପଡ଼ିବ।

ଆଉ କିଛି ମାସ ପରେ ମୁଁ ମୋ ନିଜ ଦେଶକୁ ଫେରିଯିବି। ତୁ ହୁଏତ ଭାବୁଥିବୁ ମୁଁ କାହିଁକି ଗୋଟିଏ ବିଦେଶୀ ସମାଜ ନେଇ ଏତେ ବିବ୍ରତ। ମିତୁ, କେମିତି ମୁଁ ଏହାକୁ ଅନ୍ୟ ରାଷ୍ଟ୍ରର ସମସ୍ୟା କହି ଆଖି ବନ୍ଦ କରିଦେବି? ଯେଉଁମାନେ ଏଇ ବିଷମୟ ପରିସ୍ଥିତିରେ ଜଡେଇ ହୋଇ ଯାଉଛନ୍ତି, ସେମାନେ ହେଉଛନ୍ତି ଶିଶୁ, କିଶୋର ଓ ଯୁବକ। ସେମାନେ ଯେ ଆମ ପୃଥିବୀର ଭବିଷ୍ୟତ। ସେମାନଙ୍କର ବିକାଶର ଦାୟିତ୍ୱ କେବଳ ଗୋଟିଏ ନିର୍ଦ୍ଦିଷ୍ଟ ରାଷ୍ଟ୍ର ଉପରେ ଲଦି ଦେଇ କେମିତି ଆମେ ନିର୍ବିକାର ହୋଇଯିବା?

ତୁ ନିଶ୍ଚୟ ମୋ ସହିତ ଏକମତ ହେବୁ ବୋଲି ଆଶା କରୁଛି। ଚିଠି ଦେବୁ। ରହୁଛି।

ଇତି

ତୋର 'ନାନୀ'

କୁପରଟିନୋ
ମେ ୧୫, ୧୯୯୨

ସ୍ନେହର ମିତୁ,

ତୋ ଚିଠି ସାତ ତାରିଖ ଦିନ ପାଇଲି। ରଡ୍‌ନି କିଙ୍ଗ ଘଟଣା ନେଇ ମୋ ମନଭିତରେ ଯେଉଁ ଅଶାନ୍ତି ଗତ କେତେଦିନ ଧରି ରହିଥିଲା, ସେ ସବୁ ତୋର ସୁନ୍ଦର ଚିଠିଟି ପଢ଼ିବା ପରେ ଚାଲିଗଲା। ଯା ହେଉ, ତୋର କୁଲୁ, ମାନାଲୀ ବୁଲିବାର ଇଚ୍ଛା ଏତେଦିନକେ ପୂରଣ ହେଲା। କୁଲୁ, ମାନାଲୀର ବର୍ଣ୍ଣନା ପଢ଼ି ମୋର ସେଇଠିକୁ ଯାଇ ଥରେ ବୁଲିଆସିବାକୁ ବହୁତ ମନ। ହୁଏତ ପରେ କେବେ ସେ ସୁଯୋଗ ମିଳିବ।

ଆଠ ତାରିଖ ଭୋର୍‌ବେଳା ବିଛଣାରେ ଶୋଇ ଶୋଇ ମୁଁ କେବଳ ସେଇ କଥା ଭାବୁଥିଲି। ବିଛଣା ଛାଡ଼ିବାକୁ ଆଦୌ ମନ ହେଉ ନଥାଏ। କିନ୍ତୁ ପିଲାଙ୍କର ସ୍କୁଲ୍; ଉଠିବାକୁ ତ ହେବ। ତା' ପର ଦୁଇଦିନ ଶନିବାର, ରବିବାର। ଏଣେ କୌଣସି କାରଣରୁ ସୋମ, ମଙ୍ଗଳ, ବୁଧ ମଧ ସେମାନଙ୍କର ଛୁଟୀ। ପାଞ୍ଚଦିନ ଘର ଭିତରେ ପିଲାଙ୍କୁ ରଖିବା କଥା ଭାବିବାକ୍ଷଣି ମତେ ଯେମିତି ଆଉ ଟିକିଏ କ୍ଲାନ୍ତ ଲାଗି ଯାଉଥାଏ। ଏତିକିବେଳେ ତୋ ଭାଇନା କୌଣସି ଉପକ୍ରମଣିକା ନ କରି କହିଲେ, "କ'ଣ ? ଗ୍ରାଣ୍ଡ କ୍ୟାନିଅନ୍ ଯିବା ?"

ଗ୍ରାଣ୍ଡ କ୍ୟାନିଅନ୍! ଗ୍ରାଣ୍ଡ କ୍ୟାନିଅନ୍ ଦେଖିବା ପାଇଁ ମୋର କେତେ ଇଚ୍ଛା

ସେ କଥା ତ ତୁ ଜାଣିଛୁ। ଗତଥର ଭାରତ ଗଲାବେଳେ ଗ୍ରାଣ୍ଡ କ୍ୟାନିଅନ୍ ହୋଇ ଯିବାକଥା ମୁଁ ଭାବିଥିଲି। କିନ୍ତୁ ତାହା ସମ୍ଭବ ହୋଇ ନଥିଲା। ତା'ପରେ ଯେତେଥର ଗ୍ରାଣ୍ଡ କ୍ୟାନିଅନ୍ ଯିବାକଥା ଆମେ ଚିନ୍ତା କରିଛୁ, କୌଣସି ନା କୌଣସି କାରଣରୁ ତାହା ସମ୍ଭବ ହୋଇନାହିଁ। ଶୀତଦିନରେ ବଡଦିନ ଛୁଟୀ ବେଳକୁ ହୁଏତ ଆମେ ଯାଇ ପାରିଥାଆନ୍ତୁ। କିନ୍ତୁ ସେତେବେଳେ ଗ୍ରାଣ୍ଡ କ୍ୟାନିଅନ୍‌ରେ ବହୁତ ଥଣ୍ଡା। ଚାରିଆଡେ ବରଫ ଜମି କ୍ୟାନିଅନ୍‌ର ପ୍ରକୃତ ସୌନ୍ଦର୍ଯ୍ୟ ଉହ୍ୟ ରହିଯାଏ। ତେଣୁ ଯିବା ବନ୍ଦ ହୋଇଥିଲା। ତା'ଛଡା କିଛି ପାଖ ରାସ୍ତା ତ ନୁହେଁ। ଗାଡିରେ ଗଲେ ପନ୍ଦର ଷୋହଳ ଘଣ୍ଟା ଲାଗିଯିବ। ଆଉ ପ୍ଲେନ୍‌ରେ ଗଲେ ସେ ଗୋଟିଏ ବିରାଟ ଖର୍ଚ୍ଚ। ଏମିତି ସବୁଆଡୁ ହୋଇ ଗ୍ରାଣ୍ଡ କ୍ୟାନିଅନ୍ ଯିବା ଆଲୋଚନା ବନ୍ଦଥିଲା, ସେଦିନ ହଠାତ୍ ସକାଳୁ ଗ୍ରାଣ୍ଡ କ୍ୟାନିଅନ୍ କଥା ଶୁଣି ମୋତେ ଆଶ୍ଚର୍ଯ୍ୟ ଲାଗିବା ସ୍ୱାଭାବିକ୍।

ମୁଁ ଜାଣିବାକୁ ଚାହିଁଲି କେବେ ଯିବା କଥା ସେ ଭାବୁଛନ୍ତି। ତୋ ଭାଇନା କ'ଣ ଉତ୍ତର ଦେଲେ ଜାଣିଛୁ? ସେ କହିଲେ, "ଆଜି ପିଲାଏ ସ୍କୁଲ୍‌ରୁ ଫେରିଲେ ବାହାରିଯିବା।"

ଏ ଯେମିତି ଭୁବନେଶ୍ୱରରୁ କଟକ ବା ପୁରୀ ଯିବା ଭଳି କଥା! ୯୦୦ ମାଇଲ୍ ଅର୍ଥାତ୍ ପ୍ରାୟ ୧୩୦୦ କି.ମି ରାସ୍ତା। ପୂର୍ବରୁ କୌଣସି ଯୋଜନା ନ କରି କିଏ ଏମିତି ଯାଏ? ତୋ ଭାଇନା କହିଲେ, ସବୁଥର ତ ବହୁ ଯୋଜନା କରି ଆମେ ବୁଲିଯାଉ, ଏଥରକ ଏମିତି ବାହାରିଗଲେ କ୍ଷତି କ'ଣ? ପିଲାମାନେ ମଧ୍ୟ ଉତ୍ସାହିତ ହୋଇ ପଡିଲେ। ଲମ୍ବାରାସ୍ତା ପାଇଁ ସାଙ୍ଗରେ ଯେଉଁ ଯେଉଁ ବହି, ଖେଳନା ନେବା କଥା ସେସବୁ ସ୍କୁଲ୍ ଯିବା ଆଗରୁ ସଜାଡି ରଖି ଦେଇ ଗଲେ। ଆଉ ସେମାନଙ୍କୁ ସ୍କୁଲ୍ ପଠେଇ ମୁଁ ମଧ୍ୟ ଯିବାର ସବୁ ପ୍ରସ୍ତୁତି କରିନେଲି। ବହୁତଦିନ ତଳେ ଥରେ ଯେତେବେଳେ ଗ୍ରାଣ୍ଡ କ୍ୟାନିଅନ୍ ଯିବାକଥା ଆମେ ଭାବୁଥିଲୁ, ସେତେବେଳେ ଅଟୋମୋବାଇଲ୍ ଆସୋସିଏସନ୍‌ରୁ ମୁଁ ମ୍ୟାପ୍ ନେଇ ଆସିଥିଲି। ସେଇ ମ୍ୟାପ୍ ଏତେଦିନ ପରେ କାମରେ ଲାଗିଲା।

ପିଲାମାନେ ସ୍କୁଲରୁ ଫେରିବାର ଅଳ୍ପ ସମୟ ଭିତରେ ଆମେ ବାହାରି ପଡିଲୁ। ପନ୍ଦର ଷୋହଳ ଘଣ୍ଟା ରାସ୍ତା ଏକା ଥରକେ ଗାଡି ନେଇ ଚାଲିଯିବା ହୁଏତ ସମ୍ଭବ। କିନ୍ତୁ ସେଥିପାଇଁ ରାତି ଅନିଦ୍ରା ହେବାକୁ ପଡିବ। ବସି ବସି

ସମସ୍ତଙ୍କର ଅଣ୍ଟାପିଠି ଲାଗିଯିବ। ଆଉ ଅନିଦ୍ରା ଦୋଷ କଟାଇବାକୁ ଯାଇ ତା' ପର ଦିନଟି ଯିବ। ତେଣୁ ଆମେ ସ୍ଥିର କଲୁ ଯେ ରାତିରେ ବାଟରେ କୌଣସି ସ୍ଥାନରେ ରହିଯାଇ ପୁଣି ତା' ପରଦିନ ସକାଳୁ ବାହାରିଯିବୁ।

ରାତି ଦଶଟା ବେଳେ ଆମେ ଯେଉଁ ସ୍ଥାନରେ ପହଞ୍ଚିଲୁ ତା'ର ନାଁ 'ମୋହାବେ'। ମୋହାବେ ମରୁଭୂମି ଯେଉଁଠାରୁ ଆରମ୍ଭ ହୋଇଛି ସେଇଠି ଏକ ଛୋଟ ସହରଟି। ସହର ତ ଠିକ୍ ନୁହେଁ, ଆମ ଭଳି ଦୂର ଯାତ୍ରୀ ରହିବା ପାଇଁ ହୋଟେଲ୍, ମୋଟେଲ୍, ପେଟ୍ରୋଲ୍ ପମ୍ପ, ରେଷ୍ଟୋରାଁ, ଛୋଟ ଛୋଟ ଦୋକାନ- ଏଇ ସବୁ କେବଳ ରହିଛି।

ସେଇଠି ଗୋଟିଏ ପଚାଶ ବର୍ଷର ପୁରୁଣା ମୋଟେଲ୍‌ରେ ରାତିଟି କଟାଇ ସକାଳୁ ପୁଣି ବାହାରି ପଡ଼ିଲୁ। ଗ୍ରାଣ୍ଡ କ୍ୟାନିଅନ୍ କ୍ୟାଲିଫୋର୍ଣ୍ଣିଆର ପଡ଼ୋଶୀ ରାଜ୍ୟ ଆରିଜୋନାରେ। କ୍ୟାଲିଫୋର୍ଣ୍ଣିଆର ସୀମା ପାର ହୋଇ ଆରିଜୋନା ଯେଉଁଠାରୁ ଆରମ୍ଭ ହୋଇଛି, ସେଇଠୁ ଅଳ୍ପ ଦୂରରେ ରହିଛି ବିଶାଳ କଲୋରାଡୋ ନଦୀ। ତା' ପରେ ପାହାଡ ଓ ଘାଟୀ ପାର ହୋଇ ଆମେ ଯେତେବେଳେ 'ଉଇଲିଅମ୍‌ସ୍' ସହରରେ ପହଞ୍ଚିଲୁ, ସେତେବେଳେ ଦିନ ଦୁଇଟା। ଉଇଲିଅମ୍‌ସ୍‌ରୁ ''ଗ୍ରାଣ୍ଡ କ୍ୟାନିଅନ୍ ଭିଲେଜ୍'' ପ୍ରାୟ ୬୦ ମାଇଲ୍। କିନ୍ତୁ ସରୁ ପାହାଡିଆ ରାସ୍ତା, ସେଇଥିପାଇଁ ଦେଢ ଘଣ୍ଟା ଲାଗିଗଲା।

ଟିକେଟ୍ କାଟି ଗ୍ରାଣ୍ଡ କ୍ୟାନିଅନ୍ ଭିଲେଜ୍ ଭିତରେ ପଶିବା ପରେ ଆମ ଉତ୍ସାହ ଦେଖିବା ଭଳି। ସାତ ଘଣ୍ଟା କାଳ ଗାଡି ଭିତରେ ବସିବାର କ୍ଲାନ୍ତି ଆମକୁ ଆଦୌ ଛୁଇଁ ପାରୁ ନଥାଏ। ଆଖି ବୁଲି ଆସୁଥାଏ ଚାରିଆଡୁ। କେଉଁଠି ହୁଏତ ଗ୍ରାଣ୍ଡ କ୍ୟାନିଅନ୍‌ର ଝଲକ ଦିଶିଯିବ। କିଛି ବାଟ ଗଲା ପରେ ଦେଖିଲୁ ଯେ ରାସ୍ତାକଡରେ ବହୁତ ଗାଡି ରହିଛି। ଲୋକମାନେ ଗାଡିରୁ ଓହ୍ଲାଇ ବୁଲାବୁଲି କରୁଛନ୍ତି। ଆମେ ମଧ୍ୟ ସେଇଠି ଗାଡି ରଖି ଓହ୍ଲାଇ ପଡିଲୁ।

ରାସ୍ତାରୁ ପ୍ରାୟ ଦଶମିଟର ଚାଲିଯିବା ପରେ ମୁଁ ଯାହା ଦେଖିଲି, ତା'ର କି ବର୍ଣ୍ଣନା କରିବି? ସେ କି ଦୃଶ୍ୟ! ଆଖି ସାମ୍ନାରେ ବିଶାଳ ଗ୍ରାଣ୍ଡ କ୍ୟାନିଅନ୍‌ର ଗୋଟିଏ ଅଂଶ। ମାଟି କାଟି କେହି ଯେମିତି ଥାକ ଥାକ କରି ତିଆରି କରିଛି ସେଇଟିକୁ। ଆଉ ତା' ପରେ ତୁଳୀଧରି ବିଭିନ୍ନ ରଙ୍ଗରେ ରଙ୍ଗେଇ ଦେଇଛି ଯେମିତି। କେତେ ରକମର ରଙ୍ଗ- ବାଇଗଣୀ, ଲାଲ୍, ସୁନେଲୀ, ମାଟିଆ।

ମୁଁ ଆଗରୁ ଗ୍ରାଣ୍ଡ କ୍ୟାନିଅନ୍‌ର ରଙ୍ଗୀନ ଫଟୋ ଦେଖିଛି। ସେତେବେଳେ ମୁଁ ମନେ କରିଥିଲି ଯେ ଫଟୋରେ ଯେ କୌଣସି ଦୃଶ୍ୟର ସୌନ୍ଦର୍ଯ୍ୟ ବହୁଗୁଣ ବଢ଼େଇ ଦେବା ତ ସମ୍ଭବ; ତେଣୁ ଗ୍ରାଣ୍ଡ କ୍ୟାନିଅନ୍‌ର ସୁନ୍ଦର ଫଟୋ ପାଇଁ କୃତିତ୍ୱ ସଂପୂର୍ଣ୍ଣ ରୂପେ ଫଟୋଗ୍ରାଫରର। କିନ୍ତୁ ମିତୁ, ଯେଉଁଠି ସୃଷ୍ଟିକର୍ତ୍ତା ଦୁଇ ହାତ ଖୋଲା କରି ଅପାର୍ଥିବ ସୌନ୍ଦର୍ଯ୍ୟ ଢାଳି ଦେଇଛନ୍ତି, ସେଇଠି ଫଟୋଗ୍ରାଫରଟିଏ କି କୃତିତ୍ୱ ନେଇପାରିବ ?

ମୁଁ ସେଇଠି ପଥରଟିଏ ଉପରେ ବସିଗଲି। ମାଇଲ୍ ମାଇଲ୍ ଲମ୍ବିଥିବା ଗ୍ରାଣ୍ଡ କ୍ୟାନିଅନ୍ ଦେଖୁ ଦେଖୁ ମୋର ହଠାତ୍ ମନେ ହେଲା ପ୍ରକୃତିର ଏଭଳି ବିଶାଳତା ସମ୍ମୁଖରେ ମଣିଷ କି କ୍ଷୁଦ୍ର ! ମଣିଷର ନିଜ ହାତ ଉପରେ କେତେ ଭରସା, ନିଜକୁ ନେଇ କେତେ ଅହମିକା; ଅଥଚ ସେ କ'ଣ କେବେହେଲେ ଗ୍ରାଣ୍ଡ କ୍ୟାନିଅନଟିଏ ସୃଷ୍ଟି କରି ପାରିବ ? ଜାଣିଛୁ ମିତୁ, ଗ୍ରାଣ୍ଡ କ୍ୟାନିଅନ୍‌ଟି ୨୭୭ ମାଇଲ୍ ଲମ୍ବା, ୧ ମାଇଲ୍ ଗଭୀର ଏବଂ ଏହାର ଓସାର ହେଉଛି ୧୮ ମାଇଲ୍। ତୁ ନିଶ୍ଚୟ ଭାବୁଥିବୁ କିଭଳି ସୃଷ୍ଟି ହେଲା ଏଇଟି। ଭୂତତ୍ତ୍ୱବିଦ୍‌ମାନେ ବହୁ ପରୀକ୍ଷା କରି ଗ୍ରାଣ୍ଡ କ୍ୟାନିଅନ ସୃଷ୍ଟି ସଂପର୍କରେ ଅନେକ ତଥ୍ୟ ସଂଗ୍ରହ କରି ପାରିଛନ୍ତି। ପୃଥିବୀ ଯେତେବେଳେ ପ୍ରଥମ ସୃଷ୍ଟି ହେଲା, ଜଣାଯାଏ ଯେ ସେତେବେଳେ ଏହି ଅଞ୍ଚଳରେ ଏକ ବିରାଟ ପର୍ବତ ଶ୍ରେଣୀ ଥିଲା। ସମୟ କ୍ରମେ ଏହା କ୍ଷୟ ହୋଇ ସଂପୂର୍ଣ୍ଣ ରୂପେ ସମତଳ ହୋଇଗଲା। ପରେ ଏହା ଅଧିକରୁ ଅଧିକ କ୍ଷୟ ହୋଇ ପ୍ରାଚୀନ ସମୁଦ୍ର ତଳେ ବୁଡ଼ିଗଲା।

ଏଣେ ସମୁଦ୍ର ଭିତରେ ମାଟି ଜମିବାକୁ ଲାଗିଲା। ଏହି ମାଟି ଜମି ଜମି ପୁଣି ସମୁଦ୍ର ଉପରକୁ ଉଠିଲା। କିନ୍ତୁ ଏହାର ଉଚ୍ଚତା ବେଶୀ ନ ଥିଲା। କାଳକ୍ରମେ ବହୁ ରକମର ପରିବର୍ତ୍ତନ ଆସି ପୃଥିବୀର ଉପର ଭାଗ ଖଣ୍ଡ ଖଣ୍ଡ ହୋଇଗଲା ଓ ପୁଣି ଥରେ ଏହି ସ୍ଥାନରେ ସୃଷ୍ଟି ହୋଇଗଲା ଏକ ପର୍ବତ ଶ୍ରେଣୀ। ଲକ୍ଷ ଲକ୍ଷ ବର୍ଷ କଟିଗଲା ଏବଂ ପୂର୍ବଭଳି କ୍ଷୟ ହୋଇ ହୋଇ ପର୍ବତ ଶ୍ରେଣୀଟି ସମତଳ ଭୂମିରେ ପରିବର୍ତ୍ତିତ ହୋଇଗଲା। ଏହି ସମତଳ ଭୂମିଟି କିଭଳି ବର୍ତ୍ତମାନର ଗ୍ରାଣ୍ଡ କ୍ୟାନିଅନ୍‌ରେ ପରିଣତ ହେଲା ତାହା ବୁଝେଇବା ଆଗରୁ ମୁଁ ତତେ ଛୋଟ ଉଦାହରଣଟିଏ ଦେଉଛି। ଯେତେବେଳେ ବର୍ଷା ହୁଏ ବର୍ଷା ପାଣିରେ ରାସ୍ତା କଡରେ ଥିବା ମାଟି ଧୋଇ ହୋଇଯାଏ ଏବଂ ପାଣିର

ଯେଉଁ ସରୁ ଧାରଟି ବହି ଚାଲେ ତାହା ଛୋଟ ଛୋଟ ଗୋଡି ପଥର ମଧ୍ଧ ନେଇଯାଏ। ଏହିସବୁ ଗୋଡି ପଥର ମାଟି ସହିତ ଘଷି ହୋଇ କ୍ରମଶଃ ସେଠାରେ ଖାଲ ସୃଷ୍ଟି କରନ୍ତି। ଏହି କ୍ଷୟ ହେବା ପଦ୍ଧତିରେ ଗ୍ରାଣ୍ଡ କ୍ୟାନିଅନ୍‌ର ବିରାଟ ଗର୍ତ୍ତ ସୃଷ୍ଟି ହୋଇଛି। ଏ ଅଞ୍ଚଳ ଯେତେବେଳେ ଉପତ୍ୟକାଟିଏ ଥିଲା, ସେତେବେଳେ ଏହାର ଶୀର୍ଷରୁ ପାଣିର ସରୁ ଧାରଟିଏ ବହି ଆସିଥିଲା। ଏହା ପ୍ରାୟ ୧୨ ନିୟୁତ ବର୍ଷ ପୂର୍ବର କଥା। ସମୟ କ୍ରମେ ଏହି ସରୁ ଧାରଟି କଲୋରାଡୋ ନଦୀରେ ପରିଣତ ହେଲା ଏବଂ ସମୁଦ୍ରରେ ଯାଇ ମିଶିଗଲା। ଖରସ୍ରୋତା କଲୋରାଡୋ ଉପତ୍ୟକାରୁ ବାଲି, ପଥର, ଗୋଡି ଭସେଇ ନେଇଗଲା ଏବଂ ଉପତ୍ୟକାରେ ଗର୍ତ୍ତ ସୃଷ୍ଟି ହୋଇଗଲା। ଠିକ୍ ଯେମିତି ବର୍ଷା ପାଣି ମାଟିରେ ଖାଲ ସୃଷ୍ଟି କରେ। କ୍ରମେ କଲୋରାଡୋର ବହୁ ଉପନଦୀ ସୃଷ୍ଟି ହେଲା ଏବଂ ସେମାନେ ଉପତ୍ୟକାକୁ କ୍ଷୟ କରିବାରେ ଲାଗିଲେ। ଲକ୍ଷ ଲକ୍ଷ ବର୍ଷ ଧରି ଏଇଭଳି କ୍ଷୟ ହେବା ଚାଲିବାପରେ ଯେଉଁ ଗର୍ତ୍ତ ସୃଷ୍ଟି ହେଲା, ସେହି ହେଉଛି ବର୍ତ୍ତମାନର ଗ୍ରାଣ୍ଡ କ୍ୟାନିଅନ୍। ଏକ ଲକ୍ଷ ବର୍ଷ ପରେ ଯଦି କେହି ଆସି ଗ୍ରାଣ୍ଡ କ୍ୟାନିଅନ୍‌ର ଗଭୀରତା ମାପେ, ତେବେ ଦେଖିବ ଯେ ବର୍ତ୍ତମାନର ଗଭୀରତା ଅପେକ୍ଷା ସେତେବେଳକାର ଗଭୀରତା ଅଧିକ ହେବ।

ଗ୍ରାଣ୍ଡ କ୍ୟାନିଅନ୍‌ର ଅବସ୍ଥିତି ସଂପର୍କରେ ନୂତନ ପୃଥିବୀର ଲୋକମାନେ ବହୁତ ଦିନ ଧରି କିଛି ଜାଣି ନ ଥିଲେ। କିନ୍ତୁ ଭୂତତ୍ତ୍ୱବିତ୍‌ମାନେ ଜାଣିପାରିଛନ୍ତି ଯେ ଏହିଠାରେ ପ୍ରାଗୈତିହାସିକ ମଣିଷ ଏକଦା ରହୁଥିଲା। ଗ୍ରାଣ୍ଡ କ୍ୟାନିଅନ୍‌ର ଶୃଙ୍ଖଳା ଗୁମ୍ଫା ଭିତରୁ ମିଳିଥିବା ବିଭିନ୍ନ ପଦାର୍ଥକୁ ପରୀକ୍ଷା କରି ଜଣାପଡିଛି ଯେ ସେସବୁ ହେଉଛି ୨୮୦୦୦ ବର୍ଷ ପୂର୍ବ ମଣିଷର ହାତଗଢା ଜିନିଷ। କିନ୍ତୁ ଏହି ମଣିଷମାନଙ୍କର ଅବସ୍ଥିତି ବ୍ୟତୀତ ଆଉ ଅଧିକ କିଛି ଜଣା ନାହିଁ।

ଐତିହାସିକମାନେ ଯେଉଁମାନଙ୍କ ବିଷୟରେ ବିଭିନ୍ନ ତଥ୍ୟ ସଂଗ୍ରହ କରିବାରେ ସକ୍ଷମ ହୋଇଛନ୍ତି ସେମାନେ ଗ୍ରାଣ୍ଡ କ୍ୟାନିଅନ୍ ଅଞ୍ଚଳରେ ପ୍ରାୟ ୨୦୦୦ ବର୍ଷ ପୂର୍ବେ ରହୁଥିଲେ। ସେମାନଙ୍କୁ ଇତିହାସର ପରିଭାଷାରେ କୁହାଯାଏ "Basket Makers", କାରଣ ସେମାନେ ଅତି ସୁନ୍ଦର ଟାଙ୍ଗୁଡି ତିଆରି କରିବାର ଶୈଳୀ ଜାଣିଥିଲେ। ୧୪୦୦ ବର୍ଷ ପୂର୍ବେ ଗ୍ରାଣ୍ଡ କ୍ୟାନିଅନ୍‌ର ଦକ୍ଷିଣ ଭାଗରେ ଟାଙ୍ଗୁଡି ତିଆରି କରୁଥିବା ମଣିଷମାନଙ୍କ ଭଳି ଦଳଟିଏ ରହିବାର ସୂଚନା ମିଳେ। ଏମାନଙ୍କୁ

କୁହାଯାଉଥିଲା କୋହୋନିନା । କୋହୋନିନାଙ୍କର ପ୍ରାୟ ୨୦୦ ବର୍ଷ ପରେ ଯେଉଁମାନଙ୍କୁ ଗ୍ରାଣ୍ଡ କ୍ୟାନିଅନ୍‌ରେ ଦେଖିବାକୁ ମିଳିଥିଲା ସେମାନେ ହେଲେ ପୁଏବ୍ଲୋ ଇଣ୍ଡିଆନ୍ (Pueblo Indians) । ପୁଏବ୍ଲୋ ହେଉଛି ଏକ ସ୍ପାନିଶ୍ ଶବ୍ଦ। ଏହାର ଅର୍ଥ 'ଗ୍ରାମ'। ଏହି ଦଳଟି ବିଚ୍ଛିନ୍ନ ଭାବରେ ନ ରହି ଗୋଟିଏ ସ୍ଥାନରେ ଏକାଠି ହୋଇ ରହୁଥିଲେ। ପୁଏବ୍ଲୋ ଇଣ୍ଡିଆନ୍‌ମାନଙ୍କ ପରେ ୧୪୦୦ ମସିହାରେ ହାଭାସୁପାଇ ଇଣ୍ଡିଆନ୍‌ମାନେ (Havasupai Indians) ଏହି ଅଞ୍ଚଳକୁ ଆସିଥିଲେ। ଏବେ ମଧ ହାଭାସୁ କ୍ୟାନିଅନ୍‌ରେ ଏଇ ହାଭାସୁପାଇ ଇଣ୍ଡିଆନ୍‌ମାନେ ରହିଛନ୍ତି।

ଆଗରୁ ତ ଲେଖିଛି ଗ୍ରାଣ୍ଡ କ୍ୟାନିଅନ୍‌ର ଅବସ୍ଥିତି ସଂପର୍କରେ ପୃଥିବୀର ଅନ୍ୟ ପ୍ରାନ୍ତର ଲୋକମାନେ ବହୁତ ଦିନ ଧରି କିଛି ଜାଣି ନ ଥିଲେ । ଇଉରୋପୀୟମାନେ ପ୍ରଥମଥର ପାଇଁ ଗ୍ରାଣ୍ଡ କ୍ୟାନିଅନ୍ ଦେଖିଥିଲେ ୧୫୪୦ ମସିହାରେ। ସେହିବର୍ଷ ଗାଲାସିଆର ସ୍ପାନିଶ୍ ଗଭର୍ଣ୍ଣର ଫ୍ରାନ୍‌ସିସ୍‌କୋ କୋରୋନାଡୋ ମେକ୍‌ସିକୋରୁ ବାହାରି ଉତ୍ତର ଦିଗକୁ ଅଗ୍ରସର ହୋଇଥିଲେ। ତାଙ୍କର ଲକ୍ଷ୍ୟ ଥିଲା "ସିବୋଲାର ସାତୋଟି ସହର"। ଉଡା ଖବରରୁ ସେ ଶୁଣିଥିଲେ ଯେ ଏହି ରେଡ୍ ଇଣ୍ଡିଆନ୍ ରାଜ୍ୟରେ ବହୁତ ସୁନା ରହିଛି। ସହରଟିରେ ପହଞ୍ଚି କିନ୍ତୁ କୋରୋନାଡୋ ଓ ତାଙ୍କ ଦଳକୁ ହତାଶ ହେବାକୁ ପଡିଥିଲା। ସୁନା ସେମାନେ ପାଇଲେ ନାହିଁ। ସୁନା ସିନା ପାଇଲେ ନାହିଁ, କିନ୍ତୁ ନିଉ ମେକସିକୋ ଓ ଆରିଜୋନା ଆବିଷ୍କାର କରିବାରେ ସେମାନେ ସକ୍ଷମ ହୋଇଥିଲେ। ଏମାନଙ୍କ ମଧ୍ୟରୁ ଗୋଟିଏ ଦଳ ଜନ୍ ପେଡ୍ରୋଙ୍କର ନେତୃତ୍ୱରେ ନିକଟରେ ଥିବା ହୋପି ଇଣ୍ଡିଆନ୍‌ମାନଙ୍କ ଗ୍ରାମରେ ପହଞ୍ଚି ଗଲେ। ସେଇଠି ସେମାନେ ଗୋଟିଏ 'ବିରାଟ ନଦୀ ଓ ବିଶାଳ ଗର୍ତ୍ତ"ର କାହାଣୀ ଶୁଣିବାକୁ ପାଇଲେ। ସେମାନେ ଫେରିଆସି ଏହି କାହାଣୀ କୋରୋନାଡୋଙ୍କୁ ଶୁଣାଇଲେ। ଗଳ୍ପର ସତ୍ୟତା ପରଖ କରିବା ପାଇଁ କୋରୋନାଡୋ କ୍ୟାପ୍‌ଟେନ୍ ଗାର୍‌ସିଆ ଲୋପେଜ୍ ଓ ୧୨ ଜଣ ସୈନିକଙ୍କୁ ପଠାଇଲେ। ବହୁ କଷ୍ଟ କରି କୋଡିଏ ଦିନ ଯାତ୍ରା କରିବା ପରେ ସେମାନେ ଗ୍ରାଣ୍ଡ କ୍ୟାନିଅନର ଦକ୍ଷିଣ ଧାରରେ ପହଞ୍ଚି ପାରିଥିଲେ।

ଏହାପରେ ଗ୍ରାଣ୍ଡ କ୍ୟାନିଅନ୍ ସଂପର୍କରେ ୧୭୭୬ ପର୍ଯ୍ୟନ୍ତ କିଛି ଶୁଣିବାକୁ ମିଳିନଥିଲା। ସେହି ବର୍ଷ ଦୁଇଜଣ ମିଶନାରୀ- ଫାଦର୍ ଗାରସେସ୍ ଓ ଫାଦର ଏସ୍‌କାଲାଣ୍ଟେ ଉତ୍ତର ଆରିଜୋନା ଓ ହାଭାସୁପାଇ ଇଣ୍ଡିଆନ୍‌ଙ୍କ ଅଞ୍ଚଳ ବୁଲି

ଦେଖିଥିଲେ। ଫାଦର ଗାରସେସ୍ ଗୋଟିଏ ଡାଇରୀରେ ନିଜ ଯାତ୍ରାର ବିସ୍ତୃତ ବର୍ଣ୍ଣନା ମଧ୍ୟ କରିଥିଲେ। ଅନେକଙ୍କ ମତରେ ଫାଦର୍ ଗାରସିଆ ହିଁ ନଦୀଟିର ନାମ "କଲୋରାଡୋ" ରଖିଥିଲେ। ସ୍ପାନିଶ୍ ଭାଷାରେ 'କଲୋରାଡୋ'ମାନେ ଲାଲ୍।

ଏହାର ପରବର୍ତ୍ତୀ ଅଶୀବର୍ଷ ରେଡ୍ ଇଣ୍ଡିଆନ୍‌ମାନଙ୍କ ବ୍ୟତୀତ ଆଉ କେହି ଗ୍ରାଣ୍ଡ କ୍ୟାନିଅନ୍ ଯାଇଥିବାର ପ୍ରମାଣ ମିଳେ ନାହିଁ। ୧୮୫୭ ମସିହାରେ ଆମେରିକାର ଯୁଦ୍ଧ ବିଭାଗ ଗ୍ରାଣ୍ଡ କ୍ୟାନିଅନ୍ ସଂପର୍କରେ ଅଧିକ ତଥ୍ୟ ଜାଣିବା ପାଇଁ ଲେଫ୍‌ଟନାଣ୍ଟ ଜୋସେଫ୍ ଆଇଭସ୍‌ଙ୍କ ନେତୃତ୍ୱରେ ଗୋଟିଏ ଦଳକୁ ପଠେଇଥିଲା। ଆଇଭସ୍‌ଙ୍କ ଯାତ୍ରା ଆଦୌ ସୁଖକର ନ ଥିଲା। ବହୁ ଚେଷ୍ଟା ପରେ ସେ ଯଦିଓ କଲୋରାଡୋ ନଦୀ ନିକଟରେ ପହଞ୍ଚି ପାରିଥିଲେ, ଗ୍ରାଣ୍ଡ କ୍ୟାନିଅନ୍‌ଠାରେ ପହଞ୍ଚିବା ସମ୍ଭବ ହୋଇ ନ ଥିଲା। ହତୋତ୍ସାହ ହୋଇ ସେ ଫେରିଆସିବା ପରେ ଯେଉଁ ରିପୋର୍ଟ ଯୁଦ୍ଧ ବିଭାଗକୁ ଦେଇଥିଲେ ତାହା ସଂପୂର୍ଣ୍ଣ ରୂପେ ନିରାଶାବାଣୀରେ ଭରା। ସେ ମତ ଦେଇଥିଲେ, "ଆମ ଦଳ ହେଉଛି ପ୍ରଥମ ଧଳା ଲୋକଙ୍କ ଦଳ ଯିଏ କି ଏହି ଅଞ୍ଚଳରେ ପହଞ୍ଚିଲା ଏବଂ ମୁଁ ଭାବୁଛି ଏଇଟି ମଧ୍ୟ ଶେଷ ଦଳ। ଏହି ଅଞ୍ଚଳରେ ପାଦ ଦେବାର କୌଣସି ମୂଲ୍ୟ ନାହିଁ। ମୁଁ ନିଶ୍ଚିତ ଯେ ଆଉ କେହି କେବେହେଲେ କଲୋରାଡୋ ନଦୀକୁ ଦେଖିବେ ନାହିଁ।"

ଲେଫଟନାଣ୍ଟ ଆଇଭସ୍‌ଙ୍କ କଥା କିନ୍ତୁ ସତ ହୋଇ ନ ଥିଲା। ଯେଉଁ ଅଞ୍ଚଳକୁ ସେ କଠିନ, ସଭ୍ୟ ମନୁଷ୍ୟର ପଦଚାରଣା ପାଇଁ ଅନୁପଯୁକ୍ତ କହିଥିଲେ ସେହି ଅଞ୍ଚଳକୁ ତନ୍ନ ତନ୍ନ କରି ପରଖି ଦେଖିଥିଲେ ଗୋଟିଏ ହାତ ନଥିବା ଜଣେ ସ୍କୁଲ ଶିକ୍ଷକ। ସେ ମେଜର୍ ଜନ୍ ପାଓ୍ୱେଲ୍। ପାଓ୍ୱେଲ ମଧ୍ୟ ଥିଲେ ଜଣେ ଭୂତତ୍ତ୍ୱବିତ୍। କଲୋରାଡୋ ନଦୀ ଓ ଗ୍ରାଣ୍ଡ କ୍ୟାନିଅନ୍ ସଂପର୍କରେ ଅଧିକ ଜାଣିବା ପାଇଁ ତାଙ୍କର ଦୁର୍ବାର ଇଚ୍ଛା ଥିଲା। ତେଣୁ ଯୁଦ୍ଧରେ ଗୋଟିଏ ହାତ ହରେଇଥିବା ପରେ ମଧ୍ୟ ସେ ଏହି ଅଞ୍ଚଳ ଭଲ ଭାବରେ ବୁଲି ଦେଖିଥିଲେ। ମେଜର୍ ପାଓ୍ୱେଲ୍‌ଙ୍କ ଡାଇରୀ ଏକ ଅମୂଲ୍ୟ ରତ୍ନ। ଏଥିରେ ସେ ନିଜ ଯାତ୍ରାର ପ୍ରତ୍ୟେକ ବିଷୟ ଲିପିବଦ୍ଧ କରି ଯାଇଛନ୍ତି। ଅତୀବ ମନୋମୁଗ୍ଧକର ଓ ରୋମାଞ୍ଚକର ତାଙ୍କର ବର୍ଣ୍ଣନା। ତାଙ୍କର ସାବଲୀଳ ବର୍ଣ୍ଣନାରୁ ହିଁ ପୃଥିବୀବାସୀ ପ୍ରଥମ ଥର ପାଇଁ ବିଶାଳ ଗ୍ରାଣ୍ଡ କ୍ୟାନିଅନ୍ ସଂପର୍କରେ ଜାଣିପାରିଥିଲେ।

ସାହସୀ ପାଓ୍ୱେଲ୍ କେବଳ ଥରେ ନୁହେଁ, ବହୁବାର ଗ୍ରାଣ୍ଡ କ୍ୟାନିଅନ୍‌କୁ ବୁଲି ଦେଖିଥିଲେ। ତାଙ୍କ ପରେ ମଧ୍ୟ ଅନେକ ଲୋକ ଆସିଥିଲେ। କିଏ କଲୋରାଡୋ ନଦୀରେ ଯାତ୍ରା କରିବାର ରୋମାଞ୍ଚ ପାଇଁ ଆସିଥିଲା ତ କିଏ ଆସିଥିଲା ନିଜର ଜ୍ଞାନ ବୃଦ୍ଧି କରିବାକୁ। ଆଉ କିଏ ବା ଏହି ନୂତନ ସ୍ଥାନର ଫଟୋ ଉଠାଇ ବାହାବା ନେବାକୁ ଆସିଥିଲା।

କିନ୍ତୁ ଏମାନଙ୍କ ମଧ୍ୟରୁ କେହି ଗ୍ରାଣ୍ଡ କ୍ୟାନିଅନ୍‌କୁ ଲୋକମାନଙ୍କ ନିକଟକୁ ଆଣି ପାରି ନଥିଲେ। ଭବିଷ୍ୟତରେ ଏହା ଯେ ଏକ ପର୍ଯ୍ୟଟକ ସ୍ଥଳୀ ହୋଇପାରିବ ତାହାର ସୂଚନା ମଧ୍ୟ ଦେଇ ନଥିଲେ। କିନ୍ତୁ ୧୮୮୦ ମସିହାରେ ଏଭଳି ଜଣେ ବ୍ୟକ୍ତି ଗ୍ରାଣ୍ଡ କ୍ୟାନିଅନ୍‌ରେ ପାଦ ଦେଲେ ଯିଏ କି ସ୍ଥାନଟିକୁ ଜନପ୍ରିୟ କରେଇବା ପାଇଁ ବଦ୍ଧପରିକର ହୋଇଥିଲେ। ସେ ହେଉଛନ୍ତି କ୍ୟାପ୍‌ଟେନ୍ ଜନ୍ ହ୍ୟାନ୍‌ସ। ସେ ୧୮୮୩ ମସିହାରେ ଗ୍ରାଣ୍ଡ କ୍ୟାନିଅନ୍ ଠାରେ ପହଞ୍ଚିଥିଲେ ଏବଂ ୧୯୧୯ରେ ତାଙ୍କ ମୃତ୍ୟୁ ହେବା ପର୍ଯ୍ୟନ୍ତ ସେଇଠାରେ ହିଁ ରହିଯାଇଥିଲେ। ବର୍ତ୍ତମାନ ଯେଉଁଠି ଗ୍ରାଣ୍ଡ କ୍ୟାନିଅନ୍ ନ୍ୟାସ୍‌ନାଲ୍ ପାର୍କର ଅଫିସ୍ ହୋଇଛି ତାହାଠାରୁ ପ୍ରାୟ ପନ୍ଦର ମାଇଲ୍ ଦୂରରେ ସେ ନିଜ ପାଇଁ କାଠ କ୍ୟାବିନ୍‌ଟିଏ ଗଢି ନେଇଥିଲେ। କେବଳ ସେତିକି ନୁହଁ, ଆଖପାଖ ଅଞ୍ଚଳର ଖବରକାଗଜରେ ଗ୍ରାଣ୍ଡ କ୍ୟାନିଅନ୍ ବୁଲି ଦେଖିବା ପାଇଁ ଲୋକମାନଙ୍କୁ ନିମନ୍ତ୍ରଣ ଜଣାଇ ବିଜ୍ଞାପନ ଦେବା ମଧ୍ୟ ଆରମ୍ଭ କରିଥିଲେ। ତାଙ୍କ ବିଜ୍ଞାପନରେ ଆକର୍ଷିତ ହୋଇ କେତେଜଣ ବ୍ୟକ୍ତି ଆସିଲେ। ହ୍ୟାନ୍‌ସ ସେମାନଙ୍କର ଏତେ ବଢିଆ ଚର୍ଚ୍ଚା କରିଥିଲେ ଯେ ସେମାନେ ଫେରିଯାଇ ସ୍ଥାନଟିର ବହୁତ ପ୍ରଶଂସା କରିଲେ। ଏହିପରି ମୁଖେ ମୁଖେ କଥା ବ୍ୟାପିବାକୁ ଲାଗିଲା ଏବଂ ଗ୍ରାଣ୍ଡ କ୍ୟାନିଅନ୍‌କୁ ବହୁତ ଲୋକ ଆସିବା ଆରମ୍ଭ କଲେ। ଏହି ପର୍ଯ୍ୟଟକମାନଙ୍କୁ ହ୍ୟାନ୍‌ସ ନିଜ କାଠ କ୍ୟାବିନ୍ ପାଖରେ ତମ୍ବୁ ପକାଇ ରଖାଉଥିଲେ ଏବଂ ନିଜେ ଗ୍ରାଣ୍ଡ କ୍ୟାନିଅନ୍ ବୁଲେଇ ଦେଖାଉଥିଲେ। ତାଙ୍କର ଆତିଥେୟତା ଓ ପ୍ରସିଦ୍ଧି ଚାରିଆଡେ ଖେଳିଗଲା ଏବଂ କ୍ରମେ ଅଧିକରୁ ଅଧିକ ଲୋକ ଏଠାକୁ ଆସିବାକୁ ଲାଗିଲେ। ଫଳରେ ହ୍ୟାନ୍‌ସ୍ ବାଧ୍ୟ ହୋଇ ରୋଷେଇ ଘର ଓ ଖାଇବା ଘର ଉଦ୍ଦେଶ୍ୟରେ ଆଉ ଗୋଟିଏ କାଠ କ୍ୟାବିନ୍ ଗଢିଥିଲେ।

କ୍ରମେ ଗ୍ରାଣ୍ଡ କ୍ୟାନିଅନ୍ କେବଳ ଯୁକ୍ତରାଷ୍ଟ୍ର ଆମେରିକାର କାହିଁକି, ପୃଥିବୀର ଏକ ପ୍ରଧାନ ପର୍ଯ୍ୟଟକସ୍ଥଳୀ ହୋଇଗଲା ଏବଂ ଏହାର ଆଖପାଖରେ ବହୁ ହୋଟେଲ୍

ଗଢ଼ି ଉଠିଲା । ୧୮୯୨ରେ ଯେଉଁ ପ୍ରଥମ ହୋଟେଲ୍ ଏଠାରେ ମୁଣ୍ଡ ଟେକିଥିଲା ତାହାର ନାମ ହେଉଛି ଗ୍ରାଣ୍ଡ ଭିଉ ହୋଟେଲ । ତା'ପରେ ୧୯୦୪ରେ ଏଲ୍‌ଟୋଭର୍ । ୧୯୨୧ରେ ଫ୍ୟାନ୍‌ଟମ୍ ରାଞ୍ଚ, ୧୯୨୮ରେ ଗ୍ରାଣ୍ଡ କ୍ୟାନିଅନ୍ ଲଜ୍ ଏବଂ ୧୯୪୩ରେ ବ୍ରାଇଟ୍ ଆଞ୍ଜେଲ୍ ଲଜ୍ ତିଆରି ହେଲା । ହୋଟେଲ ଗଢ଼ି ଉଠିବା ପରେ ପରେ ଛୋଟ ଛୋଟ ଦୋକାନ ଆରମ୍ଭ ହୋଇଗଲା । ୧୯୦୩ରେ କୋଲ୍‌ବ୍ ବ୍ରଦରସ୍ ଷ୍ଟୁଡିଓ, ୧୯୦୫ରେ ବାଜିଙ୍ଗ ବ୍ରଦର୍‌ସ ଷ୍ଟୋର, ୧୯୦୪ରେ ଫ୍ରେଡ୍ ହାରଭେ ଇତ୍ୟାଦି ଦୋକାନ ଦେଖାଗଲା । ସାଣ୍ଟାଫେ ରେଲୱେ ମଧ୍ୟ ୧୯୦୧ ମସିହାରେ ଗ୍ରାଣ୍ଡ କ୍ୟାନିଅନ୍‌ର ଦକ୍ଷିଣଧାର ପର୍ଯ୍ୟନ୍ତ ରେଲଲାଇନ୍ ନେଇଗଲା ।

ମିତୁ ଜାଣିଛୁ, ଏବେ ମଧ୍ୟ ରହିଛି ଏଲ୍‌ଟୋଭର୍ ହୋଟେଲ୍, ବ୍ରାଇଟ୍ ଆଞ୍ଜେଲ ଲଜ୍ । ଏହି ହୋଟେଲ୍‌ଗୁଡ଼ିକର ଐତିହାସିକ ମୂଲ୍ୟକୁ ଅବହେଳା କରି ହୁଏ ନାହିଁ । ସେଥିପାଇଁ ହୋଟେଲ୍‌ର ଆଭ୍ୟନ୍ତରକୁ ସଂପୂର୍ଣ୍ଣ ରୂପେ ପରିବର୍ତ୍ତିତ କରି ସେଗୁଡ଼ିକ ଆଧୁନିକ କରାଯାଇଥିଲେ ମଧ୍ୟ ହୋଟେଲ୍‌ର ବାହାର ଅଂଶକୁ ବଦଳା ଯାଇନାହିଁ । ସେସବୁ ଏବେ ମଧ୍ୟ ରଖା ହୋଇଛି ପୁରୁଣା ଭଳି । ସେଇଭଳି ଫ୍ରେଡ୍ ହାରଭେ ଦୋକାନ ବାହାରୁ ମନେ ହେବ ବହୁତ ପୁରୁଣା, କିନ୍ତୁ ଭିତର ଖୁବ୍ ସୁନ୍ଦର । ନାନାଦି ଜିନିଷରେ ଭରା । ୧୯୦୪ ମସିହାରେ ଏଠାରେ ଥିଲା ମାତ୍ର ଗୋଟିଏ ଫ୍ରେଡ୍ ହାରଭେ ଦୋକାନ । କିନ୍ତୁ ବର୍ତ୍ତମାନ ଗ୍ରାଣ୍ଡ କ୍ୟାନିଅନ୍ ଭିଲେଜ୍ ମଧ୍ୟରେ ଫ୍ରେଡ୍ ହାରଭେ କଂପାନୀ ପରିଚାଳିତ ବହୁ ଦୋକାନ ଦେଖିବାକୁ ମିଳେ । ଏସବୁ ବ୍ୟତୀତ ଏବେ ମଧ୍ୟ ରହିଛି ସାଣ୍ଟାଫେ ରେଲୱେ ପରିଚାଳିତ ରେଳ ଲାଇନ୍ । ବହୁ ପର୍ଯ୍ୟଟକ ଏବେ ମଧ୍ୟ ଉଇଲିଅମ୍‌ସ ସହରରୁ ଗ୍ରାଣ୍ଡ କ୍ୟାନିଅନ୍ ପର୍ଯ୍ୟନ୍ତ ଏହି ପ୍ରାଚୀନ ଟ୍ରେନ୍‌ରେ ଯାତ୍ରା କରିବାକୁ ଇଚ୍ଛା କରନ୍ତି ।

୧୯୦୩ ମସିହାରେ ଆମେରିକାର ରାଷ୍ଟ୍ରପତି ଥିଓଡର ରୁଜଭେଲଟ୍ ଗ୍ରାଣ୍ଡ କ୍ୟାନିଅନ୍ ପ୍ରଥମ ଥର ପାଇଁ ଆସିଥିଲେ ଏବଂ ଏହା ଦେଖିବା ପରେ ସେ କହିଥିଲେ, "ଏଭଳି କିଛି କରନାହିଁ ଯେଉଁଥିରେ କି ଏହି ବିଶାଳ ଅଞ୍ଚଳର ସୌନ୍ଦର୍ଯ୍ୟହାନୀ ହୋଇଯିବ । ଏହାକୁ ତୁମ ପିଲା, ପିଲାଙ୍କ ପିଲା ଓ ଅନ୍ୟମାନଙ୍କ ପାଇଁ ସାଇତି ରଖ ।" ରୁଜ୍‌ଭେଲ୍‌ଟଙ୍କ ଉପଦେଶ ଆମେରିକା ମାନିଛି । ଗ୍ରାଣ୍ଡ କ୍ୟାନିଅନ୍‌କୁ 'ନ୍ୟାସନାଲ୍ ପାର୍କ' ରୂପେ ଘୋଷଣା କରିବା ପରେ ଏଠାରେ ଏଭଳି କିଛି କରାଯାଇନାହିଁ, ଯେଉଁଥିରେ କି ସ୍ଥାନଟିର ସୌନ୍ଦର୍ଯ୍ୟହାନୀ ଘଟିବ ।

ଏହି ଅଞ୍ଚଳରେ ଯେଉଁ ସବୁ ହୋଟେଲ୍ ରହିଛି ସେଗୁଡିକ ଗ୍ରାଣ୍ଡ କ୍ୟାନିଅନ୍ ଭିଲେଜ୍ ଅଫିସ୍ ଦ୍ୱାରା ପରିଚାଳିତ। ଏହି ହୋଟେଲ୍‌ଗୁଡିକ ଅନେକଟା କ୍ୟାପ୍‌ଟେନ୍ ହ୍ୟାନ୍‌ସଙ୍କ କାଠ କ୍ୟାବିନ୍ ଅନୁକରଣରେ ତିଆରି। ଅବଶ୍ୟ ଭିଲେଜ୍ ବାହାରକୁ ବାହାରିଗଲେ ବହୁ ମୋଟେଲ୍, ରେଷ୍ଟୋରାଁ ଦେଖିବାକୁ ମିଳେ। ଏଗୁଡିକ ଭିଲେଜ୍ ଭିତରର ହୋଟେଲ୍ ତୁଳନାରେ ଶସ୍ତା। ତେଣୁ ଜଣେ ଯଦି ବଜେଟ୍‌ରେ ଚଳିବାକୁ ଚାହେଁ, ତା' ପାଇଁ କୌଣସି ଅସୁବିଧା ନାହିଁ।

ଗ୍ରାଣ୍ଡ କ୍ୟାନିଅନ୍‌ର ବିଶାଳତା ସଂପୂର୍ଣ୍ଣ ରୂପେ ଉପଭୋଗ କରିବା ପାଇଁ ଚାହିଁଲେ ଜଣକୁ ଉଭୟ ଉତ୍ତର ଓ ଦକ୍ଷିଣ ଧାରକୁ ଯିବାକୁ ପଡିବ। ଦୁଇ ଧାର ମଧ୍ୟରେ ବହୁ ପାର୍ଥକ୍ୟ। ଜଳବାୟୁଠାରୁ ଆରମ୍ଭ କରି ପ୍ରାକୃତିକ ସୌନ୍ଦର୍ଯ୍ୟ ପର୍ଯ୍ୟନ୍ତ ସବୁଥିରେ ତଫାତ୍। ସେଇଥିପାଇଁ ବୋଧହୁଏ କେହି କେହି ଗ୍ରାଣ୍ଡ କ୍ୟାନିଅନ୍‌କୁ 'ଟୁ-ଇନ୍-ଓ୍ୱାନ୍ ନ୍ୟାସନାଲ ପାର୍କ' କହିଥାଆନ୍ତି। କିନ୍ତୁ ମିତ୍ର, ବହୁତ ଇଚ୍ଛା ଥିଲେ ମଧ୍ୟ ଆମେ ଗ୍ରାଣ୍ଡ କ୍ୟାନିଅନ୍‌ର ଉତ୍ତର ଧାରକୁ ଯାଇ ପାରିଲୁ ନାହିଁ। ଶୀତ ଦିନେ ବରଫ ଜମି ଏଭଳି ପରିସ୍ଥିତି ସୃଷ୍ଟି ହୁଏ ଯେ ଉତ୍ତର ଧାରକୁ ଯିବାର ରାସ୍ତା ବନ୍ଦ କରିଦିଆଯାଏ। ଶୀତଦିନ ଶେଷ ହୋଇଯାଇଥିଲେ ମଧ୍ୟ ସେ ପର୍ଯ୍ୟନ୍ତ ବରଫ ଜମି ରହିଥିଲା। ତେଣୁ ଯଦିଓ ମେ ମାସ ପ୍ରଥମ ସପ୍ତାହରେ ରାସ୍ତା ଖୋଲିବା କଥା, ତାହା ଆଉ ଖୋଲି ନ ଥିଲା।

ଗ୍ରାଣ୍ଡ କ୍ୟାନିଅନ୍‌ର ଦକ୍ଷିଣ ଧାର ଏକ ସମତଳ, ପାଇନ୍ ଜଙ୍ଗଲର ଉପତ୍ୟକାରେ ଅବସ୍ଥିତ। ଏହାର ଉଚ୍ଚତା ପ୍ରାୟ ସମୁଦ୍ରପତ୍ତନଠାରୁ ଛଅ ହଜାରରୁ ସାତ ହଜାର ଫୁଟ୍। ସାଧାରଣତଃ ଅଧିକାଂଶ ପର୍ଯ୍ୟଟକ ଏହି ଦକ୍ଷିଣ ଧାରକୁ ହିଁ ଆସିଥାଆନ୍ତି। ଆମେ ଯେଉଁ ସ୍ଥାନରୁ ଗ୍ରାଣ୍ଡ କ୍ୟାନିଅନ୍‌କୁ ପ୍ରଥମେ ଦେଖିଲୁ, ତାହା ମଧ୍ୟ ହେଉଛି ଦକ୍ଷିଣ ଧାର। କିନ୍ତୁ କେବଳ ସେହି ଗୋଟିଏ ଅଂଶ ଦେଖିଦେଲେ ତ ଗ୍ରାଣ୍ଡ କ୍ୟାନିଅନ୍ ଦେଖାହେଲା ବୋଲି କହି ହେବ ନାହିଁ। ତେଣୁ ଆମେ ଗ୍ରାଣ୍ଡ କ୍ୟାନିଅନ୍ ଭିଲେଜ୍ ମଧ୍ୟରେ ଆଉ କିଛି ବାଟ ଚାଲିଯାଇ ଏଲ୍‌ଟୋଭର୍ ହୋଟେଲ୍ ନିକଟରେ ଗାଡି ରଖିଦେଲୁ ଏବଂ ସେଇଠାରୁ ପଶ୍ଚିମକୁ ଯାଇଥିବା ରାସ୍ତାରେ ଗ୍ରାଣ୍ଡ କ୍ୟାନିଅନ୍‌ର ଦକ୍ଷିଣ ଧାର କଡେ କଡେ ଆମେ ଚାଲିବା ଆରମ୍ଭ କଲୁ। ଏଲ୍‌ଟୋଭର୍ ହୋଟେଲ୍‌ରୁ ବାହାରି କଚିନା ଲଜ୍, ଥଣ୍ଡରବାର୍ଡ ଲଜ୍ ଓ ବ୍ରାଇଟ୍ ଆଞ୍ଜେଲ ଲଜ୍ ପାର୍ ହୋଇ ଆମେ ଯେଉଁ ସ୍ଥାନରେ ପହଞ୍ଚିଲୁ ତାହାକୁ କୁହାଯାଏ ବ୍ରାଇଟ୍ ଆଞ୍ଜେଲ ଟ୍ରେଲ୍।

ଟ୍ରେଲ୍ ଅର୍ଥାତ୍ ଉପରୁ ଗ୍ରାଣ୍ଡ କ୍ୟାନିଅନ୍‌ର ତଳ ପର୍ଯ୍ୟନ୍ତ ଯିବା ପାଇଁ ରାସ୍ତା । ଗ୍ରାଣ୍ଡ କ୍ୟାନିଅନ୍‌ରେ ଏକଦା ଏଭଳି ବହୁ ଟ୍ରେଲ୍ ଥିଲା । କିନ୍ତୁ ଏବେ ମାତ୍ର ହାତ ଗଣତା କେତୋଟି ରହିଛି । ଅନ୍ୟାନ୍ୟ ପାହାଡ଼ିଆ ରାସ୍ତା ଭଳି ବ୍ରାଇଟ୍ ଆଞ୍ଜେଲ୍ ଟ୍ରେଲ୍ ଜନ୍ତୁମାନଙ୍କର ଯିବା ଆସିବା ରାସ୍ତା ରୂପେ ଆରମ୍ଭ ହୋଇଥିଲା । ଏହାପରେ ହାଭସୁପାଇ ଇଣ୍ଡିଆନ୍‌ମାନେ ଏହାକୁ ବ୍ୟବହାର କଲେ ଏବଂ ତାଙ୍କ ପରେ ଅନ୍ୟାନ୍ୟ ପର୍ଯ୍ୟଟକ, ସର୍ଭେୟର, ପ୍ରସ୍‌ପେକ୍ଟର ଇତ୍ୟାଦି । କ୍ୟାପଟେନ୍ ଜନ୍ ହ୍ୟାନ୍‌ସ ଅଧିକାଂଶ ସମୟରେ ପର୍ଯ୍ୟଟକମାନଙ୍କୁ ଟ୍ରେଲ୍‌ରେ ନେଇ ଯାଉଥିଲେ ।

ତେବେ ତାଙ୍କ ସମୟରେ ଟ୍ରେଲ୍‌ର ପଥ ଯେଉଁ ଭଳି ଅବସ୍ଥାରେ ଥିଲା, ଏବେ ସେହି ଅବସ୍ଥାରେ ନାହିଁ । ଗ୍ରାଣ୍ଡ କ୍ୟାନିଅନ୍ ଭିଲେଜ୍ ପରିଚାଳନା କମିଟି ବହୁ ଅର୍ଥ ଖର୍ଚ୍ଚ କରି, ଇଞ୍ଜିନିଅର୍‌ମାନଙ୍କୁ ନିଯୁକ୍ତ କରି ଓ ଆଧୁନିକ ଟ୍ରେଲ୍ ତିଆରି ଯନ୍ତ୍ରପାତି ବ୍ୟବହାର କରି ଟ୍ରେଲ୍‌ର ରୂପରେଖା ବଦଳେଇ ଦେଇଛନ୍ତି । ପୂର୍ବାପେକ୍ଷା ଏହି ରାସ୍ତା ହୋଇଛି ଚଉଡ଼ା ଏବଂ ଏହା ସମାନ ଭାବରେ ତଳକୁ ଓହ୍ଲେଇଛି । ମଝିରେ ମଝିରେ ବସିବା ପାଇଁ, ପାଣି ପିଇବା ପାଇଁ ଜାଗା ରହିଛି । ତା'ଛଡ଼ା ସୁବିଧା ଅସୁବିଧାରେ ରହିଛି ଫୋନ୍ । ତଥାପି ଟ୍ରେଲ୍‌ରେ ଯିବା ବେଶ୍ କଷ୍ଟକର । ଗୋଟିଏ ଦିନରେ ତଳକୁ ଯାଇ ପୁଣି ଉପରକୁ ଆସିବା ପାଇଁ କେବଳ ସାହସ ଯଥେଷ୍ଟ ନୁହଁ, ଏଥିପାଇଁ ଦରକାର ଅଭିଜ୍ଞତା ଓ ପର୍ଯ୍ୟାପ୍ତ ଶକ୍ତି । ଅନେକ ଅନଭିଜ୍ଞ ବ୍ୟକ୍ତି ଟ୍ରେଲ୍‌ରେ ଯାଇ ବହୁ କଷ୍ଟ ପାଆନ୍ତି, କାରଣ ସେମାନେ କେବଳ ଉପରୁ ତଳକୁ ଓହ୍ଲେଇବା କଥା ମନେକରି ଟ୍ରେଲ୍‌ରେ ଆଗେଇ ଯାଆନ୍ତି । ତଳୁ ଉପରକୁ ଉଠିବା କି ଯେ କଷ୍ଟକର ତାହା ଚିନ୍ତା କରନ୍ତି ନାହିଁ ।

ବ୍ରାଇଟ୍ ଆଞ୍ଜେଲ୍ ଟ୍ରେଲ୍ ବେଶ୍ ଆଧୁନିକ ଟ୍ରେଲ୍, କିନ୍ତୁ ପାହାଡ଼ିଆ ରାସ୍ତା ଚଢ଼ିବା ଓ ଓହ୍ଲେଇବା ପାଇଁ ଯେଉଁ ଶୈଳୀ ଆବଶ୍ୟକ ତା'ର ସଂପୂର୍ଣ୍ଣ ଅଭାବ ଆମ ନିକଟରେ । ବ୍ରାଇଟ୍ ଆଞ୍ଜେଲ୍ ଟ୍ରେଲ୍‌ଟିର ଲମ୍ବା ଆଠ ମାଇଲ୍ । ଅର୍ଥାତ୍ ଏହି ରାସ୍ତାରେ ଆଠ ମାଇଲ୍ ଚାଲିଲେ ଜଣେ ଗ୍ରାଣ୍ଡ କ୍ୟାନିଅନ୍ ଭିତରେ ବହି ଯାଉଥିବା ଖରସ୍ରୋତା କଲୋରାଡୋ ନଦୀ ନିକଟରେ ପହଞ୍ଚିଯାଇ ପାରିବ । ସୁନ୍ଦର ଚଉଡ଼ା ରାସ୍ତାରେ ଗୋଟିଏ ମାଇଲ୍ ଚାଲିବାର ଅଭ୍ୟାସ ଆମର ନାହିଁ, ପାହାଡ଼ିଆ ସରୁ ରାସ୍ତାରେ ଆଠ ମାଇଲ୍ ଓହ୍ଲେଇ ପୁଣି ଆଠ ମାଇଲ୍ ଚଢ଼ିବାକଥା ଆମେ ଚିନ୍ତା ମଧ୍ୟ କରି ପାରିଲୁ ନାହିଁ । ପୁଣି ସାଙ୍ଗରେ ପିଲା ଦୁଇ ଜଣ । ଯଦିଓ

ସଂଧ୍ୟା ହେବାକୁ ବେଶୀ ଡେରି ନ ଥାଏ, କେତେ ଜଣ ଲୋକ ତଳକୁ ଓହ୍ଲାଉ ଥାଆନ୍ତି। ସେମାନଙ୍କ ଦେଖାଦେଖି ଆମେ ଟିକିଏ ଉତ୍ସାହିତ ହୋଇ ଟ୍ରେଲ୍‌ରେ ଓହ୍ଲେଇଲୁ। ଆମ ଚାରିଜଣଙ୍କର ପାଦରେ ଥିଲା ଚାଲିବା ଜୋତା। ଅଥଚ ମିତୁ, ଆମେ ଯେତେ ସାବଧାନରେ ପାଦ ପକେଇଲେ ମଧ୍ୟ ଦୁଇ ଚାରିପାଦ ଯିବାପରେ ଗୋଡ ଖସୁଥାଏ। ଆଠ ମାଇଲ୍ ତ ଦୂରର କଥା, ପ୍ରାୟ ଆଠ ଦଶ ମିଟର ଯିବା ପରେ ଆମେ ପୁଣି ଉପରକୁ ଫେରି ଆସିଲୁ।

ଏତେ ଗୁଡାଏ ରାସ୍ତା ଗାଡି ଚଳେଇ ଆସିବାର କ୍ଲାନ୍ତି ଆମକୁ ଘେରି ଆସୁଥାଏ। କିନ୍ତୁ ଗ୍ରାଣ୍ଡ କ୍ୟାନିଅନ୍‌କୁ ଆସି ସୂର୍ଯ୍ୟାସ୍ତ ନ ଦେଖି ଫେରିଯିବୁ କେମିତି ? ସୂର୍ଯ୍ୟଙ୍କ ଅବସ୍ଥିତିରୁ ଜଣା ପଡୁଥାଏ ଯେ ସୂର୍ଯ୍ୟାସ୍ତ ହେବା ପାଇଁ କିଛି ସମୟ ଡେରି ଅଛି। ଆମେ ତ ହୋଟେଲ୍ ବୁକିଙ୍ଗ ନ କରି ଘରୁ ବାହାରିଥିଲୁ। ତେଣୁ ସୂର୍ଯ୍ୟାସ୍ତ ପୂର୍ବରୁ ରହିବାର ବ୍ୟବସ୍ଥା କରି ଦେବାକୁ ସ୍ଥିର କଲୁ। ମୋର ପରଦିନ ସକାଳୁ ସୂର୍ଯ୍ୟୋଦୟ ଦେଖିବାର ବହୁତ ଇଚ୍ଛା ଥିଲା। ତେଣୁ ଆମେ ଗ୍ରାଣ୍ଡ କ୍ୟାନିଅନ୍ ଭିଲେଜ୍ ଭିତରର ଗୋଟିଏ ହୋଟେଲ୍‌ରେ ରହିବା କଥା ଠିକ୍ କଲୁ। ଏମିତିରେ ହଠାତ୍ କରି ଏସବୁ ହୋଟେଲ୍‌ରେ ରୁମ୍ ମିଳିବା କଷ୍ଟକର। କିନ୍ତୁ ଭାଗ୍ୟବଶତଃ ଗୋଟିଏ ହୋଟେଲ୍‌ରେ ରୁମ୍ ମିଳିଗଲା; ତେବେ ରୁମ୍‌ଭଡା ବେଶ୍ ଅଧିକ ଦେବାକୁ ହେଲା। ଆଉ ଗ୍ରାଣ୍ଡ କ୍ୟାନିଅନ୍ ଧାରରେ ଥିବା ହୋଟେଲ୍‌ମାନଙ୍କରେ ଜାଗା ମିଳିଲା ନାହିଁ। ସେ ଯାହେଉ, ଭିଲେଜ୍ ଭିତରେ ରୁମ୍ ଯେ ମିଳିଲା, ସେତିକିରେ ଆମେ ଖୁସି। ମ୍ୟାସ୍‌ୱିକ୍ ଲଜ୍ ଏଲ୍‌ଟୋଭର ହୋଟେଲ୍ ଭଳି ବହୁ ପୁରୁଣା ନ ହେଲେ ମଧ୍ୟ ସଂପୂର୍ଣ୍ଣ ରୂପେ ନୂଆ ନୁହଁ। ମ୍ୟାସ୍‌ୱିକ୍ ଲଜ୍‌ରେ ମିଳିଥିବା କୋଠରୀରେ ଆମେ ଜିନିଷପତ୍ର ରଖିଦେଇ ବାହାରିଗଲୁ।

ଲଜ୍‌ର ରିସେପ୍‌ସନିଷ୍ଟ ଆମକୁ କହିଲେ ସୂର୍ଯ୍ୟାସ୍ତ ଯେ କୌଣସି ସ୍ଥାନରୁ ଉପଭୋଗ କରି ହେବ। କିନ୍ତୁ ହୋପି ପଏଣ୍ଟରେ ସୂର୍ଯ୍ୟାସ୍ତ ଦେଖିବାର ଆନନ୍ଦ ଆହୁରି ବେଶୀ। ଆମେ ହୋପି ପଏଣ୍ଟକୁ ଚାଲିଗଲୁ। ଗ୍ରାଣ୍ଡ କ୍ୟାନିଅନ୍‌ର ଉଭୟ ଧାରରେ ଏଇଭଳି କେତୋଟି ସ୍ଥାନ ରହିଛି ଯେଉଁଠାରୁ କି ଗ୍ରାଣ୍ଡ କ୍ୟାନିଅନ୍‌ର ସୌନ୍ଦର୍ଯ୍ୟକୁ ପ୍ରକୃତରେ ଉପଭୋଗ କରିହୁଏ। ହୋପି ପଏଣ୍ଟ ସେଇଭଳି ଗୋଟିଏ ସ୍ଥାନ। ଏଇ ସ୍ଥାନଟି ଅର୍ଦ୍ଧବୃତ୍ତ ଭଳି ଗ୍ରାଣ୍ଡ କ୍ୟାନିଅନ୍ ଭିତରକୁ ପଶି ଆସିଛି। ତେଣୁ ଏଠାରୁ ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ଉଭୟ ଉପଭୋଗ କରିହୁଏ।

ଆମେ ହୋପି ପଏଣ୍ଟରେ ଯେତେବେଳେ ପହଞ୍ଚିଲୁ, ସେତେବେଳେ ସୂର୍ଯ୍ୟାସ୍ତ ଆଉ ଡେରି ନାହିଁ। ସେଥିପାଇଁ ବେଶ୍ ଲୋକଭିଡ। ଆମ ଭଳି ପର୍ଯ୍ୟଟକମାନଙ୍କଠାରୁ ଆରମ୍ଭ କରି ବ୍ୟବସାୟିକ ଫଟୋଗ୍ରାଫର ପର୍ଯ୍ୟନ୍ତ ସମସ୍ତେ ସୂର୍ଯ୍ୟାସ୍ତ ଦେଖିବା ପାଇଁ ଅପେକ୍ଷା କରି ରହିଥାଆନ୍ତି। ସୂର୍ଯ୍ୟ ଧୀରେ ଧୀରେ ତଳକୁ ଓହ୍ଲେଇ ଆସିଲେ। ମାତ୍ର କେତୋଟି ମୁହୂର୍ତ୍ତ ଏବଂ ତା'ପରେ ସୂର୍ଯ୍ୟ ଗ୍ରାଣ୍ଡ କ୍ୟାନିଅନ୍‌ର ପଶ୍ଚିମ ଧାରରେ ଥିବା ବିରାଟ ପଥରଗୁଡ଼ିକ ପଛରେ ଲୁଚିଗଲେ। କିନ୍ତୁ ମିତ୍ର, ସେଇ କେତୋଟି ମୁହୂର୍ତ୍ତ କି ସୁନ୍ଦର। ଜଣେ ନ ଦେଖିଲେ ବିଶ୍ୱାସ କରିପାରିବ ନାହିଁ। ଏମିତିରେ ତ ସୂର୍ଯ୍ୟାସ୍ତ ସବୁବେଳେ ସୁନ୍ଦର। କିନ୍ତୁ ଯେତେବେଳେ ଅସ୍ତଗାମୀ ସୂର୍ଯ୍ୟଙ୍କର କିରଣ ଗ୍ରାଣ୍ଡ କ୍ୟାନିଅନ୍‌ର ପଥର ଉପରେ ପ୍ରତିଫଳିତ ହେଲା, ମନେ ହେଲା ସଂପୂର୍ଣ୍ଣ ଅଞ୍ଚଳଟିରେ କିଏ ଯେମିତି ଲାଲ, କମଳା ରଙ୍ଗର ଅବିର ବିଞ୍ଚି ଦେଇ ଆସିଛି।

ଏତେ ରଙ୍ଗ! ଗ୍ରାଣ୍ଡ କ୍ୟାନିଅନ୍‌ରେ ଗୋଟିଏ ଦିନ ସଂପୂର୍ଣ୍ଣ ଭାବରେ କଟେଇଲେ ଜଣେ ଦେଖିପାରିବ ଯେ ଦିନଟିଏ ଭିତରେ ଗ୍ରାଣ୍ଡ କ୍ୟାନିଅନ୍‌ର ରୂପ କେମିତି ବାରମ୍ବାର ବଦଳି ଯାଏ। ସୂର୍ଯ୍ୟାସ୍ତ ତ ଦେଖିଲି। ତା' ପରଦିନ ଭୋର୍‌ରୁ ସୂର୍ଯ୍ୟୋଦୟ। ସେତେବେଳେ ଗ୍ରାଣ୍ଡ କ୍ୟାନିଅନ୍‌ର ରୂପ ଭିନ୍ନ। ସୂର୍ଯ୍ୟଙ୍କର ଅବସ୍ଥିତି ଅନୁଯାୟୀ ଗ୍ରାଣ୍ଡ କ୍ୟାନିଅନ୍‌ର ରଙ୍ଗରେ ମଧ୍ୟ ପରିବର୍ତ୍ତନ ଆସେ।

ଗ୍ରାଣ୍ଡ କ୍ୟାନିଅନ୍‌କୁ ଆଉ ଟିକିଏ ଭଲ ଭାବରେ ଦେଖିବା ପାଇଁ ଓ ବୁଝିବା ପାଇଁ ବହୁରକମର ବସ୍ ଟୁର୍‌ର ବ୍ୟବସ୍ଥା ଅଛି। ନିଜ ଗାଡ଼ିରେ ଯଦି କିଏ ଗ୍ରାଣ୍ଡ କ୍ୟାନିଅନ୍‌କୁ ଯାଏ, ତେବେ ଏଭଳି ଟୁର୍ ନେବା ଦରକାର ହୁଏ ନାହିଁ। କିନ୍ତୁ କେବଳ ଗ୍ରାଣ୍ଡ କ୍ୟାନିଅନ୍ ଦେଖି ଯଦି କିଏ ସନ୍ତୁଷ୍ଟ ନ ହୁଏ, ସେ ଯଦି ଗ୍ରାଣ୍ଡ କ୍ୟାନିଅନ୍ ବିଷୟରେ ଆହୁରି ଅଧିକ ଜାଣିବାକୁ ଚାହେଁ, ତେବେ ତା' ପକ୍ଷରେ ଏଇଭଳି ଗାଇଡେଡ୍ ଟୁର୍ ନେବା ଭଲ। ଆମେ ବୋଧହୁଏ ସେହି ଦଳଭୁକ୍ତ। ଜଳଖିଆ ଖାଇ ସାରିବା ପରେ ଆମେ ସ୍ଥିର କଲୁ ଯେ ଗୋଟିଏ ବସ୍ ଟୁର୍‌ରେ ଯିବୁ। ଦଶଟା ବେଳେ ହୋଟେଲ୍‌ରୁ ଯାଉଥିବା ଗୋଟିଏ ଅଢେଇ ଘଣ୍ଟିଆ ବସ୍ ଟୁର୍‌ରେ ଆମେ ବାହରି ଗଲୁ।

ହୋଟେଲ୍‌ରୁ ବାହରିବା ପରେ ଆମେ ଯେଉଁ ସ୍ଥାନରେ ପ୍ରଥମେ ପହଞ୍ଚିଲୁ, ସେଇଟି ହେଉଛି ୟାଭାପାଇ ପଏଣ୍ଟ। ଆରିଜୋନାର ୟାଭାପାଇ ଇଣ୍ଡିଆନ୍‌ମାନଙ୍କ

ନାମରେ ଏହି ସ୍ଥାନଟିକୁ ନାମିତ କରାଯାଇଛି। ଏହିଠାରୁ କଲୋରାଡୋ ନଦୀ ମଧ୍ୟ ଦେଖାଯାଏ। କିନ୍ତୁ ନଦୀର ସ୍ରୋତ ଓ ବିଶାଳତା ଅନୁମାନ କରି ହୁଏ ନାହିଁ। ୟାଭାପାଇ ପଏଣ୍ଟରେ ରହିଛି ୟାଭାପାଇ ମିଉଜିଅମ୍। ଖୁବ୍ ଗୋଟିଏ ବଡ ମିଉଜିଅମ୍ ନ ହେଲେ ମଧ୍ୟ ଏଠାରେ କ୍ୟାନିଅନ୍‌ର ବହୁ ପ୍ରାଚୀନ କାହାଣୀ ସାଇତା ହୋଇ ରହିଛି।

ୟାଭାପାଇଠାରୁ ପ୍ରାୟ ଦେଢ ମାଇଲ୍ ଦୂରରେ ୟାକି ପଏଣ୍ଟ। ଏଇଠାରେ ଗ୍ରାଣ୍ଡ କ୍ୟାନିଅନ୍‌ର ବିଭିନ୍ନ ସ୍ତର ପରିଷ୍କାର ଦେଖାଯାଏ। ୟାକି ପଏଣ୍ଟରେ ଠିଆ ହେଲେ ଗ୍ରାଣ୍ଡ କ୍ୟାନିଅନ୍‌ର ଯେଉଁ ଅଂଶଟି ଆଗ ଆଖିରେ ପଡେ ସେଇଟି ହେଲା ବୁଦ୍ଧ ମନ୍ଦିର। ବୁଦ୍ଧ ମନ୍ଦିରର ଡାହାଣ ପାଖରେ ରହିଛି ମନୁ ମନ୍ଦିର ଏବଂ ସାମ୍ନାରେ ବାଁ ପଟେ ରହିଛି ଆଇସିସ୍ ମନ୍ଦିର। 'ମନ୍ଦିର' ଏବଂ 'ବୁଦ୍ଧ', 'ମନୁ', 'ଆଇସିସ୍'- ଏଭଳି ନାମ ଶୁଣି ତୁ ନିଶ୍ଚୟ ମୋ ଭଳି ଆଶ୍ଚର୍ଯ୍ୟ ହେଉଥିବୁ। ମୁଁ ଆଶ୍ଚର୍ଯ୍ୟରେ ଆମ ଗାଇଡ୍‌ଙ୍କୁ ମଧ୍ୟ ଏ ବିଷୟରେ ପ୍ରଶ୍ନ କରିଥିଲି। ଗାଇଡ୍ କହିଲେ ଯେ ବହୁତ ବର୍ଷ ତଳେ ଜଣେ ପର୍ଯ୍ୟଟକ ଗ୍ରାଣ୍ଡ କ୍ୟାନିଅନ୍‌ର ଏହି ପ୍ରସ୍ତର ଶ୍ରେଣୀ ଦେଖି ମତ ଦେଇଥିଲେ ଯେ ଏଗୁଡିକ ପ୍ରାଚ୍ୟର ମନ୍ଦିର ଭଳି ଦେଖା ଯାଉଛି। ତେଣୁ ସେ ବିଭିନ୍ନ ପ୍ରସ୍ତର ଶ୍ରେଣୀର ନାମ ରଖିଥିଲେ ବୁଦ୍ଧ ମନ୍ଦିର, ବିଷ୍ଣୁ ମନ୍ଦିର, ଶିବ ମନ୍ଦିର, ବ୍ରହ୍ମା ମନ୍ଦିର ଏବଂ ଆଇସିସ୍ ଓ ଓସିରିସ୍ ମନ୍ଦିର। ଏକଦା ଏଗୁଡିକ ଠିକ୍ ମନ୍ଦିର ଭଳି ଦେଖା ଯାଉଥିଲେ ମଧ୍ୟ ବର୍ତ୍ତମାନ ଅଧିକାଂଶର ଶୀର୍ଷ କ୍ଷୟ ହୋଇଯାଇଛି। ମନୁ ଓ ଆଇସିସ୍ ମନ୍ଦିରର ଉପରେ ଥିବା ଚୂନପଥରର ସ୍ତରଟି ସଂପୂର୍ଣ୍ଣ ରୂପେ କ୍ଷୟ ହୋଇ ଯାଇଛି। କିନ୍ତୁ ବୁଦ୍ଧ ମନ୍ଦିର, ଜୋରଷ୍ଟର, ବ୍ରହ୍ମା ଓ ଦେବ ମନ୍ଦିର ଉପରେ ଚୂନପଥର ସ୍ତର ଏବେ ମଧ୍ୟ ରହିଛି। ବିଷ୍ଣୁ ମନ୍ଦିରଟି ହେଉଛି ଲମ୍ବା ପଥର ଥିବା ସ୍ଥାନଟିଏ। ଅନ୍ୟ ପକ୍ଷରେ ଶିବ ମନ୍ଦିରର ଶୀର୍ଷ ସମତଳ।

ଗ୍ରାଣ୍ଡ କ୍ୟାନିଅନ୍‌ର ବିଭିନ୍ନ ପଏଣ୍ଟରେ ରହି ରହି ଦିନ ସାଢେ ଏଗାରଟା ବେଳକୁ ଏଭଳି ଗୋଟିଏ ସ୍ଥାନରେ ପହଞ୍ଚିଲୁ ଯେଉଁଠାରୁ କି କଲୋରାଡୋ ନଦୀ ଦେଖାଯାଉଥାଏ ଅନନ୍ୟ। କଲୋରାଡୋର 'Rapids' ସଂପର୍କରେ ମୁଁ ଆଗରୁ ଶୁଣିଥିଲି। ଏବେ ସ୍ୱଚକ୍ଷୁରେ ଦେଖି ବିଶ୍ୱାସ ହେଲା ନାହିଁ। ନଦୀର ସ୍ରୋତରେ ଏତେ ଜୋର! କେମିତି ଲୋକମାନେ ସାଧାରଣ ଡଙ୍ଗା ବା ରାଫ୍ଟ୍ ନେଇ

କଲୋରାଡୋ ନଦୀରେ ଯାଆନ୍ତି ।

ଆମର ବସ୍‌ଯାତ୍ରା ଶେଷ ହେଲା ହର୍ମିଟ୍‌ରେଷ୍ଟ ପଏଣ୍ଟରେ । ୧୯୧୨ ମସିହାରେ ଫ୍ରେଡ୍ ହାରଭେ କଂପାନୀ ଗ୍ରାଣ୍ଡ କ୍ୟାନିଅନ୍ ଭିଲେଜ୍‌ରୁ ଏହି ହର୍ମିଟ୍ ରେଷ୍ଟ ପର୍ଯ୍ୟନ୍ତ ଆଠ ମାଇଲ୍ ଲମ୍ବା ରାସ୍ତା ତିଆରି କରିଥିଲେ ଏବଂ ଏଇଠାରେ ନିର୍ମାଣ କରିଥିଲେ ଦୋକାନଟିଏ । ସେ ଦୋକାନ ଏବେ ମଧ୍ୟ ରହିଛି । ପୂର୍ବ ଭଳି ଏଠାରେ କେକ୍, ବିସ୍କୁଟ୍, ଚାହା, କଫି ମିଳିଲେ ମଧ୍ୟ ପ୍ରଧାନ ହୋଇଛି କାର୍ଡ, ପୋଷ୍ଟର, ରୂପା ଗହଣା, ଇଣ୍ଡିଆନ୍‌ମାନଙ୍କ ହାତ ତିଆରି ବିଭିନ୍ନ ଜିନିଷ । ଗ୍ରାଣ୍ଡ କ୍ୟାନିଅନ୍‌କୁ ମନେ ରଖିବା ପାଇଁ ପର୍ଯ୍ୟଟକଟିଏ ଯାହା ସବୁ ନେଇ ଯିବାକୁ ଚାହେଁ, ପ୍ରଧାନତଃ ସେଇ ସବୁ । ଆମେ କେତୋଟି ପୋଷ୍ଟକାର୍ଡ ଓ ପିଲାଙ୍କ ପାଇଁ ରେଡ୍ ଇଣ୍ଡିଆନ୍‌ମାନଙ୍କ ହାତ ତିଆରି ଦୁଇଟି ଖେଳନା କିଣି ଫେରି ଆସିଲୁ ।

ବସ୍ ଆମକୁ ଯେତେବେଳେ ହୋଟେଲ୍ ନିକଟରେ ଛାଡି ଦେଲା ସେତେବେଳେ ସାଢେ ବାରଟା । ହୋଟେଲ୍‌ରେ ଖାଇ ନେଇ ଜିନିଷପତ୍ର ବାନ୍ଧିନେଲୁ । ସେଇଦିନ ବାହାରିବା କଥା । କିନ୍ତୁ ଗ୍ରାଣ୍ଡ କ୍ୟାନିଅନ୍ ଛାଡି ଚାଲିଯିବାକୁ ମୋର ଆଦୌ ମନ ହେଉ ନଥାଏ । ଜିନିଷପତ୍ର ଗାଡିରେ ରଖି ପୁଣି ଆମେ ଦକ୍ଷିଣ ଧାରର କଡେ କଡେ କିଛି ସମୟ ବୁଲିଲୁ ଏବଂ ଅପରାହ୍ନ ଚାରିଟାରେ ଗ୍ରାଣ୍ଡ କ୍ୟାନିଅନ୍ ଭିଲେଜ୍‌ରୁ ବାହାରି ଆସିଲୁ ।

ଗ୍ରାଣ୍ଡ କ୍ୟାନିଅନ୍ ଭିଲେଜ୍‌ରୁ ବାହାରି ଉଇଲିଅମ୍‌ସକୁ ଯାଉଥିବା ସରୁ ରାସ୍ତାରେ ଯାଉ ଯାଉ ହଠାତ୍ ମୋ ମନକୁ ଆସିଲା ଯେ ଆଉ ବୋଧହୁଏ ମୋର ଆମେରିକା ରହଣୀ ଭିତରେ ଗ୍ରାଣ୍ଡ କ୍ୟାନିଅନ୍ ଆସିବା ସମ୍ଭବ ହେବ ନାହିଁ । ନା, ସେଥିନେଇ ମୋ ମନରେ କୌଣସି ଗ୍ଲାନି ନ ଥିଲା । ଆଖି ପୂରେଇ ଦେଖିଲି, ପ୍ରାଣ ଭରି ଉପଭୋଗ କଲି; ଆଉ ପୁଣି କି ଦୁଃଖ ? ଏକଥା ସତ ଯେ ମୁଁ ବେଶୀ ସମୟ ଗ୍ରାଣ୍ଡ କ୍ୟାନିଅନ୍‌ରେ କଟେଇ ପାରିଲି ନାହିଁ । କିନ୍ତୁ ଯେତିକି ସମୟ କଟେଇଛି, ସେଇତକ ଯେ ଅମୂଲ୍ୟ ଏବଂ ସେଇ ଅମୂଲ୍ୟ ସ୍ମୃତି ଟିକକ ବହୁତ ଦିନ ଧରି ମୋତେ ଆନନ୍ଦ ଦେବ ।

ମୋ ଚିଠି ପାଇ ଶୀଘ୍ର ଉତ୍ତର ଦେବୁ । ତୋ ଉତ୍ତର ଅପେକ୍ଷାରେ ରହିଲି ।

ଇତି

ତୋର 'ନାନୀ'

ଆଟ୍‌ଲାଣ୍ଟା
୧ ଜୁଲାଇ, ୧୯୯୨

ସ୍ନେହର ମିତୁ,

ଐତିହାସିକ ସହର ଆଟ୍‌ଲାଣ୍ଟାର ଏଆର୍‌ପୋର୍ଟରେ ବସି ତୋତେ ଏ ଚିଠି ଲେଖୁଛି। ପ୍ରାୟ ଅଧଘଣ୍ଟା ପୂର୍ବରୁ ଆମେ ବଫେଲୋ ଏଆର୍‌ପୋର୍ଟରୁ ଆସି ଏଇଠାରେ ପହଞ୍ଚିଛୁ। ଏବେ ପ୍ରାୟ ଦୁଇଟା ବାଜିବ। ସନ୍ଧ୍ୟା ପାଞ୍ଚଟା ପଇଁତିରିଶରେ ଆମର ଲଣ୍ଡନ୍ ଫ୍ଲାଇଟ୍। ଏଇ କେତୋଟି ଘଣ୍ଟା ସମୟ ଏତେ କମ୍ ଯେ ଆଟ୍‌ଲାଣ୍ଟା ସହର ଭିତରକୁ ଯାଇ ଟିକିଏ ବୁଲି ହେବ ନାହିଁ। ଅନ୍ୟ ଯାତ୍ରୀମାନଙ୍କର କାର୍ଯ୍ୟକଳାପ ଲକ୍ଷ୍ୟ କରି କିଛି ସମୟ ହୁଏତ କଟି ଯାଇଥାଆନ୍ତା। କିନ୍ତୁ କେହି କୁଆଡେ ନାହିଁ। ସଂପୂର୍ଣ୍ଣ ଭାବରେ ଖାଲି ପଡିଛି ଟର୍ମିନାଲ୍‌ର ଏଇ ଗେଟ୍‌ଟି। ପିଲାମାନେ କାଚ ଝରକା ପାଖରେ ବସି ଖେଳୁଛନ୍ତି। ଆଉ ତୋ ଭାଇନା ସାମ୍ନା ଚୌକୀରେ ଗୋଡ ଲମ୍ବେଇ ବସି ଢୁଳଉଛନ୍ତି। ଏଥରକ ମୁଁ ସାଙ୍ଗରେ ବହିଟିଏ ଆଣିବାକୁ ଭୁଲିଯାଇଛି। ସେଇଥିପାଇଁ ଭାବିଲି, ବସି ବସି ବୋର୍ ହେବା ଅପେକ୍ଷା ତୋତେ ଚିଠିଟିଏ ଲେଖେ। ଖୁବ୍ ସୁନ୍ଦର ସମୟ କଟିଯିବ।

ମୁଁ ଏହା ପୂର୍ବରୁ ଯେଉଁ ଚିଠିଟି ତୋ ପାଖକୁ ଲେଖିଥିଲି, ସେଥିରେ ଆମର ଭାରତ ଯିବା କଥା ଲେଖିବାକୁ ଭୁଲି ଯାଇଥିଲି। ସେତେବେଳେ ତ ଯିବା କଥା ସଂପୂର୍ଣ୍ଣ ଭାବରେ ନିଶ୍ଚିତ ନ ଥିଲା, ତେଣୁ ବୋଧହୁଏ ମୋ

ମନକୁ ଆସିନାହିଁ। ମେ ମାସ ଶେଷ ସପ୍ତାହରେ ହିଁ ମୁଁ ଜାଣିଲି ଯେ ଗୋଟିଏ ମାସ ପାଇଁ ଆମର ଭାରତ ଯିବା ନିଶ୍ଚିତ।

ପିଲାମାନଙ୍କର ସ୍କୁଲ୍ ଜୁନ୍‌ମାସ ତୃତୀୟ ସପ୍ତାହରୁ ଛୁଟୀ। ସେହି ଅନୁସାରେ ଆମେ ସ୍ଥିର କଲୁ ଯେ ଜୁନ୍‌ମାସର ଶେଷ ସପ୍ତାହରେ କୁପରଟିନୋ ଛାଡ଼ିବୁ। ବହୁତ ଆଗରୁ ତ ଆମର ଠିକ୍ ହୋଇ ରହିଥିଲା ଯେ ଏଥର ଭାରତ ଫେରିବା ବେଳେ ଆମେରିକାରେ କେବଳ ନାଏଗ୍ରା ଜଳପ୍ରପାତ ଦେଖି ଲଣ୍ଡନ୍ ଚାଲିଯିବୁ। ଲଣ୍ଡନ୍‌ରେ କିଛି ଦିନ ରହି ଭାରତ ଫେରିବୁ। ସେହି ଅନୁସାରେ ରିଜର୍ଭେସନ୍ ହୋଇଗଲା। ଜୁନ୍ ୨୯ ତାରିଖ ରାତି ଏଗାରଟା ବେଳେ ଆମେ ସାନ୍‌ଫ୍ରାନ୍‌ସିସ୍‌କୋ ଏଆର୍‌ପୋର୍ଟରୁ ବାହାରିଲୁ।

ବାଟରେ ଆଟ୍‌ଲାଣ୍ଟାଠାରେ ପ୍ଲେନ୍ ବଦଳେଇ ବଫେଲୋରେ ପହଞ୍ଚିବା ବେଳକୁ ପର ଦିନ ବାରଟା। ବଫେଲୋରୁ 'ନାଏଗ୍ରା ଫଲ୍‌ସ' ସହରଟି ବେଶୀ ଦୂର ନୁହଁ। ଗାଡ଼ିରେ ଗଲେ ପ୍ରାୟ ଅଧଘଣ୍ଟା ସମୟ ଲାଗେ।

ଏହି ରାସ୍ତାଟି ଭାରି ସୁନ୍ଦର। ଏଥିରେ ଗଲା ବେଳେ ଦ୍ୱୀପଟିଏ ଦେଇ ଯିବାକୁ ହୁଏ। ତା'ର ନାଁ ଗ୍ରାଣ୍ଡ ଆଇଲ୍ୟାଣ୍ଡ। ନାଏଗ୍ରା ନଦୀର ମଝିରେ ଏଇ ଦ୍ୱୀପ। ଦୁଇଟି ପୋଲ ଉପର ଦେଇ ଗ୍ରାଣ୍ଡ ଆଇଲ୍ୟାଣ୍ଡ ପାର ହୋଇ ଆମେ ଯେତେବେଳେ ନାଏଗ୍ରା ଫଲ୍‌ସ୍ ସହରରେ ପହଞ୍ଚିଲୁ, ସେତେବେଳେ ଆନନ୍ଦରେ ମୋ ମନ ଭରି ଉଠୁଥାଏ। ନାଏଗ୍ରା ନଦୀ କୂଳେ କୂଳେ ଆମ ଗାଡ଼ି ଚାଲିଥାଏ। ବହୁତ ଦୂରରୁ ଧଳାଧୂଆଁ ଉଠିବା ଭଳି ଦିଶୁଥାଏ। ଏ କ'ଣ କୌଣସି କାରଖାନାର ଧୂଆଁ ? ଏଠି ପୁଣି କି କାରଖାନା ? ଧୂଆଁ ନେଇ ଆଉ ମୁଣ୍ଡ ନ ଖେଳାଇ ମୁଁ ନାଏଗ୍ରା ନଦୀର ସୌନ୍ଦର୍ଯ୍ୟ ଉପଭୋଗ କରିବାରେ ମନ ଦେଲି। ନଦୀର ସ୍ରୋତ କ୍ରମଶଃ କେବଳ ବଢ଼ି ଚାଲିଥାଏ। ଏମିତି ଆମେ ଗୋଟିଏ ସ୍ଥାନରେ ପହଞ୍ଚିଲୁ ଯେଉଁଠିକି ନଦୀର ସ୍ରୋତ ଏତେ ବେଶୀ ଯେ ପାଣିରେ ଢେଉ ଉଠି ଫେଣ ସୃଷ୍ଟି ହୋଇଯାଉଥାଏ। ଏହାକୁ କହନ୍ତି 'Rapids'। ମୁଁ ଜାଣିଲି ନାଏଗ୍ରା ଜଳପ୍ରପାତ ଆଉ ଦୂର ନାହିଁ। କିନ୍ତୁ ଗାଡ଼ିରେ ଆଉ ଅଧିକା ବାଟ ଯିବାର ଉପାୟ ନ ଥିଲା। ବହୁତ ଲୋକ ସେଇଠି ଆଖପାଖରେ ଗାଡ଼ି ରଖି ଚାଲି ଚାଲି ଯାଉଥାଆନ୍ତି। ସେମାନଙ୍କୁ ଦେଖି ମୋର ଇଚ୍ଛା ହେଉଥାଏ ଗାଡ଼ିରୁ ଓହ୍ଲେଇ ଦଉଡ଼ି ଦଉଡ଼ି ଜଳପ୍ରପାତ ନିକଟରେ ପହଞ୍ଚିଯିବାକୁ। କିନ୍ତୁ ନିଜ ମନକୁ ନିୟନ୍ତ୍ରଣ

କଲି। ମୁଁ ଯଦି ଏଇଭଳି ପିଲାଳିଆ କାମ କରେ, ତେବେ ପିଲାଙ୍କୁ କ'ଣ ଶାସନ କରିବି ?

ଗତ ରାତିଠାରୁ ସେପର୍ଯ୍ୟନ୍ତ ଆମର ଯାତ୍ରା ଚାଲିଛି। କୌଣସି ମତେ ବାଟରେ ଦାନ୍ତଟା ଘଷି ନେଇଛୁ ସିନା, କିନ୍ତୁ ଗାଧୁଆ ତ ହୋଇ ପାରିନାହିଁ। ଦେହରେ ଗତକାଲିର ବାସୀ ପୋଷାକ। ଆଉ ସାଙ୍ଗରେ ଭାରତ ଯିବାର ଜିନିଷପତ୍ର। ତେଣୁ ପ୍ରଥମେ ହୋଟେଲ୍‌କୁ ଗଲୁ। ହୋଟେଲ୍‌ରେ ଜିନିଷପତ୍ର ରଖି ଆମେ ଖୁବ୍ ଶୀଘ୍ର ପ୍ରସ୍ତୁତ ହୋଇଗଲୁ। ଏଥର ଗାଡି ନେବାର କୌଣସି ଆବଶ୍ୟକତା ହେଲା ନାହିଁ। ହୋଟେଲ୍‌ଠାରୁ ଜଳପ୍ରପାତ ବେଶ୍ ପାଖ।

ଝିପି ଝିପି ବର୍ଷା ହୋଇ ଛାଡିଯାଇଥାଏ। ଚାଲି ଚାଲି ଯିବାକୁ ଭାରି ଭଲ ଲାଗୁଥାଏ। ଆମ ହୋଟେଲ୍‌ରୁ ଦୁଇଟା ବ୍ଲକ୍ ଛାଡି ଯେଉଁ ରାସ୍ତାଟି ଡାହାଣ ଆଡକୁ ବୁଲି ଯାଇଥିଲା, ସେଇଠି ପହଞ୍ଚିବା ପରେ ଜଳପ୍ରପାତକୁ ରାସ୍ତା ଖୋଜିବା ପାଇଁ ଅସୁବିଧା ହେଲା ନାହିଁ। ବହୁତ ଲୋକ ଆମ ଭଳି ଚାଲି ଥାଆନ୍ତି। ମାତ୍ର କେଇ ମିନିଟ୍ ରାସ୍ତା। ତା'ପରେ ଆମ ସାମ୍ନାରେ ବିଶାଳ ନାଏଗ୍ରା ଜଳପ୍ରପାତ। ଗାଡିରେ ଆସିବାବେଳେ ମୁଁ ଯେଉଁ ଧୂଆଁ ଦେଖିଥିଲି, ତାହା କୌଣସି କାରଖାନାର ଧୂଆଁ ନୁହେଁ। ଜଳପ୍ରପାତରେ ଯେଉଁ ପ୍ରବଳ ବେଗରେ ଉପରୁ ତଳକୁ ପାଣି ପଡୁଥାଏ, ତା'ର ଛିଟା ହିଁ ଧୂଆଁର ଭ୍ରମ ସୃଷ୍ଟି କରୁଥାଏ। ମୋର କହିବାକୁ ଯେମିତି କିଛି ନ ଥିଲା। ଚୁପ୍ ହୋଇ ମୁଁ କେବଳ ଦେଖୁଥାଏ। ନାଏଗ୍ରା ନଦୀରେ ପ୍ରବଳ ବେଗରେ ପାଣି ମାଡି ଆସୁଥାଏ ଏବଂ ଗର୍ଜନ କରି ଜଳପ୍ରପାତର ଉପରୁ ତଳେ ଥିବା ପଥରଗୁଡିକ ଉପରେ ପଡି ପୁଣି ବହି ଯାଉଥାଏ।

ତୁଳନାତ୍ମକ ଭାବରେ ଦେଖିଲେ ନାଏଗ୍ରା ଜଳପ୍ରପାତର ବୟସ ବେଶୀ ନୁହଁ। ପୃଥିବୀ ସୃଷ୍ଟି ହେବାରେ ଯେଉଁଠି କୋଟି କୋଟି ବର୍ଷ କଟି ଯାଇଛି, ସେହି ଅନୁପାତରେ ୧୨,୦୦୦ ବର୍ଷଟା ଏମିତି କ'ଣ ? ଭୂତତ୍ତ୍ୱବିତ୍‌ମାନଙ୍କ ମତରେ ସୃଷ୍ଟି ସମୟରେ ପୃଥିବୀ ଏକ ଅଗ୍ନିପିଣ୍ଡୁଳା ଥିଲା। ପରବର୍ତ୍ତୀ ସମୟରେ ଏହା ଶୀତଳ ହେବା ଆରମ୍ଭ କଲା। କିନ୍ତୁ ଏହି ଶୀତଳ ହେବା ପଦ୍ଧତିରେ ପୃଥିବୀକୁ ଘେରି ଯେଉଁ ବାଷ୍ପ ରହିଥିଲା, ସେସବୁ ମଧ୍ୟ ଜମିଗଲା। ଲକ୍ଷ ଲକ୍ଷ ବର୍ଷ ଧରି ପୃଥିବୀର ବିଭିନ୍ନ ଅଂଶରେ ଏହି ବରଫ ଜମି କରି ରହିଲା। କ୍ରମଶଃ ସୂର୍ଯ୍ୟଙ୍କର ପ୍ରଖର କିରଣରେ ଏହି ବରଫ ତରଳିବା ଆରମ୍ଭ କଲା। ସେଇଥିରୁ

ସୃଷ୍ଟି ହେଲା ବିଭିନ୍ନ ସମୁଦ୍ର ଓ ପୃଥିବୀର ଅନ୍ୟାନ୍ୟ ଜଳଭାଗ। ଏଇଭଳି ଏକ ବିଶାଳ ବରଫ ଚଦର ତରଳି ସେଇଥିରୁ ହ୍ରଦଟିଏ ସୃଷ୍ଟି ହେଲା। ଏହା ହେଉଛି ଲେକ୍ ଏରି। ଏହା ୫୦,୦୦୦ ବର୍ଷ ତଳର ଘଟଣା। ଲେକ୍ ଏରି ସୃଷ୍ଟି ହେବାର ୩୮,୦୦୦ ବର୍ଷ ପରେ ହଠାତ୍ ବିଭିନ୍ନ କାରଣରୁ ହ୍ରଦରେ ଜଳର ପରିମାଣ ବହୁତ ବେଶୀ ବଢ଼ିଗଲା ଏବଂ କୂଳ ଲଂଘି ପାଣି ବହିଯିବାକୁ ଲାଗିଲା। ଏଇଟି ହେଉଛି ନାଏଗ୍ରା ନଦୀ। ନାଏଗ୍ରା ନଦୀ ନିମ୍ନ ପତନରେ ଥିବା ଓଣ୍ଟାରିଓ ହ୍ରଦ ଆଡ଼କୁ ବହି ଚାଲିଲା। ଓଣ୍ଟାରିଓ ହ୍ରଦର ପତନ ଏରି ହ୍ରଦଠାରୁ ପ୍ରାୟ ୩୨୫ ଫୁଟ୍ କମ୍। ତେଣୁ ପଥରେ ହିଁ ସୃଷ୍ଟି ହେଲା ନାଏଗ୍ରା ଜଳପ୍ରପାତ।

ବର୍ତ୍ତମାନ ନାଏଗ୍ରା ଜଳପ୍ରପାତ ଯେଉଁଠାରେ ରହିଛି, ସେଠାରୁ ପ୍ରାୟ ୭ ମାଇଲ୍ ଦୂରରେ ଲୁଇଷ୍ଟନ୍ ସହରରେ ପ୍ରଥମ ନାଏଗ୍ରା ଜଳପ୍ରପାତର ସୃଷ୍ଟି ହୋଇଥିଲା। କିନ୍ତୁ କ୍ଷୟ ହେବା ପଦ୍ଧତିରେ ଏହା ବର୍ତ୍ତମାନ ପ୍ରାୟ ୩୭ ମାଇଲ୍ ଲମ୍ବା ନାଏଗ୍ରା ନଦୀର ମଝିକୁ ଘୁଞ୍ଚି ଆସିଛି। ଆଉ ଏଇ କ୍ଷୟ ପ୍ରକ୍ରିୟା ଏବେ ମଧ ଚାଲୁ ରହିଛି। ପ୍ରତ୍ୟେକ ବର୍ଷ ୧ ରୁ ୩ ଇଞ୍ଚ କ୍ଷୟ ହେଉଛି। ତୁ ତ ଜାଣିଛୁ ନିଶ୍ଚୟ, ନାଏଗ୍ରା ନଦୀ ଉଭୟ କାନାଡା ଓ ଆମେରିକା ଦ୍ୱାରା ବିଭାଜିତ। ତେଣୁ ଉଭୟ କାନାଡା ଓ ଆମେରିକାରେ ଜଳପ୍ରପାତ ରହିଛି। କାନାଡାର ସୀମା ମଧରେ ଥିବା ଜଳପ୍ରପାତ (ଯାହାକୁ ମଧ ଅଶ୍ୱକ୍ଷୁରା ଜଳପ୍ରପାତ କୁହାଯାଏ)ର ଉଚ୍ଚତା ୧୭୬ ଫୁଟ୍ ଏବଂ ଓସାର ୨,୨୦୦ ଫୁଟ୍। ଆମେରିକାରେ ଥିବା ଜଳପ୍ରପାତର ଉଚ୍ଚତା ଯଦିଓ ୧୮୪ ଫୁଟ୍, ଏହାର ଓସାର ୧,୦୭୫ ଫୁଟ୍। ସେଇଥିପାଇଁ ଅନେକେ କହନ୍ତି ଯେ କାନାଡାରେ ଥିବା ଜଳପ୍ରପାତଟି ଅଧିକ ସୁନ୍ଦର।

ନାଏଗ୍ରା ଜଳପ୍ରପାତରେ ପ୍ରତି ସେକେଣ୍ଡରେ ଦେଢ଼ ନିୟୁତ ଗ୍ୟାଲନ୍ ପାଣି ଉପରୁ ତଳକୁ ପଡ଼େ। କିନ୍ତୁ ଅଧୁନା ନାଏଗ୍ରା ନଦୀର ସମସ୍ତ ପ୍ରବାହକୁ ଜଳପ୍ରପାତ ପର୍ଯ୍ୟନ୍ତ ଆସିବାକୁ ନ ଦେଇ ବିଦ୍ୟୁତଶକ୍ତି ସୃଷ୍ଟି କରିବା ପାଇଁ ଅଟକେଇ ଦିଆଯାଏ। ଏହା ଅବଶ୍ୟ କରାଯାଇଥାଏ ରାତିରେ, ନହେଲେ ଯେ ନାଏଗ୍ରା ଜଳପ୍ରପାତର ସୌନ୍ଦର୍ଯ୍ୟ ବ୍ୟାହତ ହେବ! ପର୍ଯ୍ୟଟକମାନେ ଯେଉଁ ସମୟରେ ଅଧିକ ସଂଖ୍ୟାରେ ନାଏଗ୍ରା ଆସନ୍ତି, ସେହି ସମୟରେ ନଦୀ ଜଳକୁ ବେଶୀ ପରିମାଣରେ ଅଟକାଯାଏ ନାହିଁ। ସେତେବେଳେ ପ୍ରତି ସେକେଣ୍ଡରେ ୭୦୦,୦୦୦ ଗ୍ୟାଲନ୍ ପାଣି ଜଳପ୍ରପାତରେ ବହି ଆସେ।

ଜଳପ୍ରପାତର ଆଖପାଖ ଅଞ୍ଚଳରେ ବହୁ ପରୀକ୍ଷା କରି ଐତିହାସିକମାନେ ଜାଣି ପାରିଛନ୍ତି ଯେ ଏଇଠାରେ ଯେଉଁମାନେ ପ୍ରଥମେ ପାଦ ଦେଇଥିଲେ, ସେମାନେ ହେଉଛନ୍ତି ଆମେରିକାର ଆଦିମ ଅଧିବାସୀ-ସେନେକା ଇଣ୍ଡିଆନ୍। ସେମାନେ ପ୍ରାୟ ୨୦୦୦ ବର୍ଷ ତଳେ ଏହି ଅଞ୍ଚଳକୁ ଆସିଥିଲେ। ଏହି ସେନେକା ଇଣ୍ଡିଆନ୍‌ମାନେ ଉଭୟ ନଦୀ ଓ ଜଳପ୍ରପାତର ନାମ ଦେଇଥିଲେ ନାଏଗ୍ରା (Niagara)। ସେମାନଙ୍କ ଭାଷାରେ ଏହି ଶବ୍ଦଟିର ଅର୍ଥ "ବିରାଟ ବେକ"। ଏଇଭଳି ନାମ ବାସ୍ତବରେ ଯଥାର୍ଥ। କାରଣ ତୁ ଯଦି ଆମେରିକାର ମାନଚିତ୍ର ଦେଖୁ, ତେବେ ଜାଣିପାରିବୁ ଯେ ସ୍ଥଳଭାଗ ଭିତରକୁ ସମୁଦ୍ର ପଶି ଆସି ମିନେସୋଟା, ଇଲିନଏସ୍, ଉଇସ୍‌କନ୍‌ସିନ୍‌ରୁ ବାହାରି ଲାବ୍ରାଡର ଓ ଗାସ୍‌ପେ ଉପଦ୍ୱୀପ ହୋଇ ସେଣ୍ଟ ଲରେନ୍‌ସ୍ ନଦୀ ପର୍ଯ୍ୟନ୍ତ ପ୍ରାୟ ୨୦୦୦ ମାଇଲ୍ ଧରି ବହି ଯାଇଛି। ଏହାକୁ ଯଦି ଗୋଟିଏ ମଣିଷର ଆକାର ଦିଆଯାଏ, ତେବେ ନାଏଗ୍ରା ନଦୀଟି ଠିକ୍ ତା'ର ବେକ ଭଳି।

ବୋଧହୁଏ ପ୍ରଥମ ଇଉରୋପୀୟ ଯିଏ ନାଏଗ୍ରା ଜଳପ୍ରପାତ ଦେଖିଥିଲେ ସେ ହେଉଛନ୍ତି ଜଣେ ଫରାସୀ ମିସ୍‌ନାରୀ-ଫାଦର୍ ଲୁଇ ହେନେପିନ୍। ଫାଦର୍ ହେନେପିନ୍ ଖ୍ରୀଷ୍ଟଧର୍ମର ପ୍ରଚାର ପାଇଁ ୧୬୭୮ ମସିହାରେ ନାଏଗ୍ରା ଅଞ୍ଚଳକୁ ଆସିଥିଲେ ଏବଂ ବିଶାଳ ନାଏଗ୍ରା ଜଳପ୍ରପାତ ଦେଖିବା ପରେ ସେଇଠାରେ ହିଁ ଆଣ୍ଠୁମାଡି ବସି ଈଶ୍ୱରଙ୍କୁ ପ୍ରାର୍ଥନା କରିଥିଲେ। ସେ ମତ ଦେଇଥିଲେ ଯେ ସମଗ୍ର ପୃଥିବୀ କାହିଁକି, ବିଶ୍ୱବ୍ରହ୍ମାଣ୍ଡରେ ଖୋଜି ଆସିଲେ ମଧ୍ୟ ଏଇଭଳି ଚମତ୍କାର ଦୃଶ୍ୟ ଦେଖିବାକୁ ମିଳିବ ନାହିଁ।

ଫାଦର୍ ହେନେପିନ୍‌ଙ୍କ ଠାରୁ ନାଏଗ୍ରା ଜଳପ୍ରପାତର ଅବସ୍ଥିତି ସଂପର୍କରେ ଜାଣିବା ପରେ ଫରାସୀ ସରକାର ମାତ୍ର କେଇ ବର୍ଷ ମଧ୍ୟରେ ସେହି ଅଞ୍ଚଳକୁ ଅଧିକାର କରିନେଲେ ଏବଂ ଅନେକଗୁଡିଏ ଦୁର୍ଗ ଆଖପାଖରେ ଗଢିବାକୁ ଲାଗିଲେ। ଅବଶ୍ୟ ଅଧିକାଂଶ ଦୁର୍ଗ ଆଜି ଆଉ ନାହିଁ। କିନ୍ତୁ ୧୭୨୬ ମସିହା ପରେ ସେମାନେ ଯେଉଁ ସବୁ ଦୁର୍ଗ ଗଢିଥିଲେ, ସେଗୁଡିକ ଥିଲା ବେଶ୍ ଶକ୍ତ। ସେଇଥିପାଇଁ ବୋଧହୁଏ ଆଜି ପର୍ଯ୍ୟନ୍ତ ସେସବୁ ମୁଣ୍ଡ ଟେକି ରହିଛନ୍ତି। ଏହି ସବୁ ଦୁର୍ଗ ମଧ୍ୟରୁ ସବୁଠାରୁ ବେଶୀ ଜଣାଶୁଣା ହେଉଛି ନାଏଗ୍ରା ଦୁର୍ଗ। କାରଣ ଗଢା ହେବାର ୯୦ ବର୍ଷ ମଧ୍ୟରେ ସେହିଠାରେ ତିନୋଟି ବିରାଟ ଯୁଦ୍ଧ ହୋଇଯାଇଥିଲା।

ଏହି ତିନୋଟି ଯୁଦ୍ଧ ମଧ୍ୟରୁ ଶେଷ ଯୁଦ୍ଧ ହେଉଛି ୧୮୧୨ର ଯୁଦ୍ଧ। ଆମେରିକା ଓ କାନାଡା ମଧ୍ୟରେ ଏହି ଯୁଦ୍ଧ ଥିଲା ଭୀଷଣ ଭୟଙ୍କର। ଏଥିରେ ଉଭୟ ପକ୍ଷର ବହୁ କ୍ଷତି ହୋଇଥିଲା ଏବଂ କେହି ବିଜୟ ହାସଲ କରି ପାରି ନ ଥିଲେ। ଶେଷରେ ୧୮୧୪ ମସିହାରେ କ୍ରିସ୍‌ମାସର ପୂର୍ବ ସନ୍ଧ୍ୟାରେ ଶାନ୍ତି ସନ୍ଧି ସ୍ୱାକ୍ଷରିତ ହୋଇଥିଲା। ଏହି ସନ୍ଧି ଅନୁସାରେ ନାଏଗ୍ରା ନଦୀର ମଝିକୁ ଦୁଇ ରାଷ୍ଟ୍ରର ସୀମା ରୂପେ ଗ୍ରହଣ କରାଗଲା।

ଉକ୍ତ ଯୁଦ୍ଧ ପରେ ଯେତେବେଳେ ଏହି ଅଞ୍ଚଳରେ ଶାନ୍ତି ଫେରିଆସିଲା, ସେତେବେଳେ ପର୍ଯ୍ୟଟକମାନେ ଆସିବା ଆରମ୍ଭ କଲେ। ଉନବିଂଶ ଶତାବ୍ଦୀର ଆରମ୍ଭ। ରାସ୍ତାଘାଟ ସେଭଳି ଉନ୍ନତ ନୁହଁ। ତେଣୁ ପର୍ଯ୍ୟଟକଙ୍କ ସଂଖ୍ୟା ସୀମିତ ଥିଲା। ୧୮୨୫ ମସିହାରେ ଏରି କେନାଲ ନିର୍ମାଣ ପରେ ଓ ୧୮୪୦ରେ ରେଳଲାଇନ୍ ସ୍ଥାପନ ପରେ ପର୍ଯ୍ୟଟକଙ୍କ ସଂଖ୍ୟା କ୍ରମଶଃ ବଢ଼ିବାକୁ ଲାଗିଲା। ତାହା ସାଙ୍ଗରେ ତାଳ ଦେଇ ଗଢ଼ି ଉଠିଲା ହୋଟେଲ୍ ଓ ଦୋକାନ ବଜାର। କିନ୍ତୁ ପର୍ଯ୍ୟଟକମାନଙ୍କର ତୁଳନାରେ ହୋଟେଲ୍‌ର ସଂଖ୍ୟା ଥିଲା ଅଧିକ। ଏଥିପାଇଁ ହୋଟେଲ୍ ମାଲିକମାନେ ଅଧିକ ପରିମାଣରେ ପର୍ଯ୍ୟଟକଙ୍କୁ ନାଏଗ୍ରା ଜଳପ୍ରପାତ ପ୍ରତି ଆକର୍ଷିତ କରିବା ପାଇଁ ବହୁ ରକମର ଯୋଜନା ଆରମ୍ଭ କଲେ। ନିତ୍ୟ ନୂତନ ଆଚମ୍ବିତ ଘଟଣା ଘଟାଇବା ଏହି ହୋଟେଲ୍ ମାଲିକମାନଙ୍କର ପ୍ରଧାନ ଲକ୍ଷ୍ୟ ଥିଲା। ପ୍ରଥମ ଯେଉଁ ଦୁଇଜଣ ଏଇଭଳି "ଘଟଣା" ସୃଷ୍ଟି କରିଥିଲେ ସେମାନେ ହେଉଛନ୍ତି କାନାଡାର ଦୁଇଜଣ ହୋଟେଲ ମାଲିକ ଉଇଲିଅମ୍ ଫୋର୍‌ସିଥ୍ ଓ ଜନ୍ ବ୍ରାଉନ୍।

ଏହି ଦୁଇଜଣ ଉଭୟ କାନାଡା ଓ ନିଉୟର୍କରେ ବିଜ୍ଞାପିତ କରାଇଲେ ଯେ ୧୮୨୭ ମସିହାର ସେପ୍ଟେମ୍ବର ୮ ତାରିଖ ଦିନ ୬ଟା ବେଳେ "ମିଚିଗାନ୍" ନାମକ ନୌକାଟିଏ ନାଏଗ୍ରା ନଦୀର ସ୍ରୋତରେ ଭାସି ଯାଇ ଜଳପ୍ରପାତରେ ତଳକୁ ବହି ଆସିବ ଏବଂ ଏହି ନୌକାରେ ଥିବେ ବିଭିନ୍ନ ହିଂସ୍ରଜନ୍ତୁ। ବିଜ୍ଞାପନଟି ଲୋକମାନଙ୍କୁ ବେଶ୍ ଆକର୍ଷିତ କରିଥିଲା। ହିଂସ୍ରଜନ୍ତୁଙ୍କର ଜଳପ୍ରପାତ ପାର ହେବା ଘଟଣା ଦେଖିବା ପାଇଁ ବହୁତ ଲୋକ ନାଏଗ୍ରାଠାରେ ଏକତ୍ରିତ ହୋଇଥିଲେ। ନିର୍ଦ୍ଧାରିତ ସମୟରେ "ମିଚିଗାନ୍" ନୌକାଟି ଭାସି ଆସିଲା। କିନ୍ତୁ ଏଥିରେ ବହୁ ସଂଖ୍ୟାରେ ହିଂସ୍ରଜନ୍ତୁ ନ ଥିଲେ। ହୋଟେଲ୍ ମାଲିକମାନେ ଅନେକ ଚେଷ୍ଟା

ପରେ ଯେଉଁ ଜନ୍ତୁମାନଙ୍କୁ ପାଇ ପାରିଥିଲେ ସେମାନେ ହେଉଛନ୍ତି ଦୁଇଟା ଭାଲୁ ଓ ଗୋଟିଏ ବଣୁଆ ମଇଁଷି। ଏହା ବ୍ୟତୀତ ଥିଲେ ଦୁଇଟି ମୂଷା, ଗୋଟିଏ କୁକର ଓ ଗୋଟିଏ ବତକ। ନୌକାଟି ଯେତେବେଳେ ଦିଗହରା ହୋଇ ଭାସି ଚାଲିଥିଲା, ସେତେବେଳେ ହଠାତ୍ ଭାଲୁ ଦୁଇଟି ପାଣି ଭିତରକୁ ଡେଇଁ ପଡି ପହଁରି କୂଳରେ ପହଞ୍ଚିଯାଇଥିଲେ। କିନ୍ତୁ ନୌକାଟି ଜଳପ୍ରପାତରେ ଖସି ପଡିବା ପରେ ଅନ୍ୟାନ୍ୟ ପଶୁମାନଙ୍କର ସଲୀଳ ସମାଧି ଘଟିଥିଲା।

ଜଳପ୍ରପାତରେ 'ମିଚିଗାନ୍' ନୌକା ଖସିବା ଦୃଶ୍ୟ ଦେଖିବା ପାଇଁ ଯେଉଁ ସବୁ ପର୍ଯ୍ୟଟକ ଆସିଥିଲେ ସେମାନଙ୍କ ମଧ୍ୟରେ ଥିଲେ ସାମ୍ ପ୍ୟାର୍। ଖ୍ୟାତି ଅର୍ଜନ କରିବା ପାଇଁ ସାମ୍ ଜୀବନକୁ ବାଜି ଲଗେଇଦେବା ପାଇଁ ପ୍ରସ୍ତୁତ ଥିଲେ। ନୌକା ଖସିବା ଦୃଶ୍ୟ ଦେଖି ତାଙ୍କ ମନକୁ ଏକ ନୂତନ ଉପାୟ ଆସିଥିଲା। ସ୍ଥାନୀୟ ହୋଟେଲ୍ ମାଲିକଙ୍କ ସାହାଯ୍ୟରେ ଆମେରିକା ପଟ ନାଏଗ୍ରା ଜଳପ୍ରପାତର ଠିକ୍ ତଳେ ସେ ଏକ ମଞ୍ଚ ନିର୍ମାଣ କଲେ। ତା'ପରେ ସେ ପ୍ରଚାର କରାଇଲେ ଯେ ଏକ ନିର୍ଦ୍ଧାରିତ ସମୟରେ ସେ ମଞ୍ଚରୁ ପାଣି ଭିତରକୁ ଡେଇଁବେ। ସାମ୍ ନିଜ କଥା ରଖି କ୍ରମାଗତ ଭାବରେ ଏହି ଖେଳ ଦେଖାଇଥିଲେ। ବହୁତଥର ଏହି ଖେଳ ପ୍ରଦର୍ଶନ କରିଥିଲେ ମଧ୍ୟ ସେ ନାଏଗ୍ରାଠାରେ କେବେହେଲେ ଆଘାତ ପାଇ ନ ଥିଲେ। ଅଥଚ ଜେନେସି ଜଳପ୍ରପାତ ତଳେ ଏହି ଖେଳ ଦେଖାଉଥିବା ସମୟରେ ତାଙ୍କର ମୃତ୍ୟୁ ଘଟିଥିଲା।

ନାଏଗ୍ରା ଜଳପ୍ରପାତରେ ବିଭିନ୍ନ ସମୟରେ ବହୁ ଲୋକ ବହୁତ ରକମର ଖେଳ ଦେଖାଇଥିଲେ। ଏମାନଙ୍କ ମଧ୍ୟରୁ ଯିଏ ସବୁଠାରୁ ବେଶୀ ଜଣାଶୁଣା ହୋଇଥିଲେ ସେ ହେଉଛନ୍ତି ଜାଁ ଫ୍ରାଁ ବ୍ଲାଣ୍ଡେଲେ। ବ୍ଲାଣ୍ଡେଲେ ଛୋଟବେଳେ ଅଧିକାଂଶ ପିଲାଙ୍କ ଭଳି ଘରର ବାଡ ଉପରେ ଚାଲିବା ଆରମ୍ଭ କରିଥିଲେ। ତା'ପରେ ଦିନେ ସେ ଲୁଗା ଶୁଖାଇବା ତାର ଉପରେ ଚାଲିବାକୁ ଚେଷ୍ଟା କରି ସଫଳ ହୋଇଥିଲେ। ଏହାପରେ ଆରମ୍ଭ ହେଲା ତାଙ୍କର ଦଉଡି ଉପରେ ଚାଲିବା ଜୀବନ। ୧୮୫୦ ମସିହାରେ ସେ ସର୍କସରେ ଯୋଗ ଦେବା ପରେ ଫ୍ରାନ୍ସରେ ବେଶ୍ ଜଣାଶୁଣା ହୋଇଯାଇଥିଲେ। କିନ୍ତୁ ବ୍ଲାଣ୍ଡେଲେ ସେତିକିରେ ସନ୍ତୁଷ୍ଟ ହୋଇ ପାରି ନଥିଲେ। ସେ ଚାହିଁଥିଲେ ପୃଥିବୀବାସୀ ତାଙ୍କ ବିଷୟରେ ଜାଣନ୍ତୁ। ଏଇଥିପାଇଁ ସେ ସ୍ଥିର କଲେ ଯେ ସେ ତାର ଉପରେ ଚାଲି ନାଏଗ୍ରା ଜଳପ୍ରପାତ ପାର

ହେବେ। ସେହି ଅନୁସାରେ ୧୮୫୯ ମସିହା ଜୁନ୍‌ମାସ ୩୦ ତାରିଖରେ ଗ୍ରାଭେଲେ ହାତରେ ୩୮ ଫୁଟ୍ ଲମ୍ବାର ବାଉଁଶଟିଏ ଧରି ନାଏଗ୍ରା ଉପରେ ତାରରେ ଚାଲିବା ଆରମ୍ଭ କଲେ। ଅଧାବାଟ ଯିବା ପରେ ସେ ଅଟକି ଗଲେ। ଆଉ ଠିକ୍ ସେତିକିବେଳେ ତଳେ ନାଏଗ୍ରା ନଦୀରେ ''ମେଡ୍ ଅଫ ଦି ମିଷ୍ଟ'' ନୌକାଟିଏ ଆସି ପହଞ୍ଚିଗଲା। ଗ୍ରାଭେଲେ ପକେଟରୁ ଦୌଡିଟିଏ କାଢି ନୌକା ପର୍ଯ୍ୟନ୍ତ ଲମ୍ୱେଇ ଦେଲେ। ନୌକାର କ୍ୟାପ୍ଟେନ୍ ଦଉଡିରେ ଗୋଟିଏ ବୋତଲ ରୁଟ୍ ବିଅର୍ ବାନ୍ଧିଦେଲେ। ଗ୍ରାଭେଲେ ଦଉଡି ଟାଣି ନେଇ ସେଇଠି ତାର ଉପରେ ଠିଆ ହୋଇ ରୁଟ୍ ବିଅର୍ ପିଇଲେ ଏବଂ ପୁଣି ଖାଲି ବୋତଲଟି ନୌକାର କ୍ୟାପ୍ଟେନଙ୍କୁ ଫେରାଇଦେଲେ। ଏସବୁ ଖେଳ ଦେଖାଇ ସମସ୍ତ ରାସ୍ତାଟି ଅତିକ୍ରମ କରିବାକୁ ତାଙ୍କୁ ଲାଗିଥିଲା ମାତ୍ର ଅଠର ମିନିଟ୍। କିନ୍ତୁ ଅନ୍ୟ ପାଖରୁ ଫେରିବା ବେଳେ ସେ ମଝିରେ ଅଟକି କୌଣସି ଖେଳ ଦେଖାଇ ନ ଥିଲେ। ଏବଂ ସେଇଥର ସମସ୍ତ ରାସ୍ତା ଅତିକ୍ରମ କରିବାକୁ ତାଙ୍କୁ ଲାଗିଥିଲା ମାତ୍ର ସାତ ମିନିଟ୍।

ଗ୍ରାଭେଲେଙ୍କ ଖେଳ ବହୁତଦିନ ଧରି ଚାଲିଥିଲା। ପ୍ରତ୍ୟେକ ଥରର ଖେଳ ପୂର୍ବାପେକ୍ଷା ଭିନ୍ନ ଏବଂ ଅଧିକ ଚାଞ୍ଚଲ୍ୟକର। କହିବା ବାହୁଲ୍ୟ, ସେହିବର୍ଷ ନାଏଗ୍ରା ଫଲସ୍‌ରେ ଯେଉଁଭଳି ଲୋକଭିଡ ହୋଇଥିଲା, ତାହା ଥିଲା ନାଏଗ୍ରା ଇତିହାସରେ ଅନନ୍ୟ।

ଗ୍ରାଭେଲେଙ୍କ ପରେ ବହୁତ ଲୋକ ଅର୍ଥ ଓ ସମ୍ମାନ ଆଶାରେ ନାଏଗ୍ରା ଆସିଛନ୍ତି। ବହୁତ ରକମର ଖେଳ ମଧ ଦେଖାଇଛନ୍ତି। ସେମାନଙ୍କ ମଧ୍ୟରୁ କେତେକ ହୁଏତ ସଫଳ ହୋଇଥିଲେ। କିନ୍ତୁ ଅଧିକାଂଶ ହିଁ ମୃତ୍ୟୁମୁଖରେ ପଡିଥିଲେ। ଯେଉଁ କେତେଜଣ ନାଏଗ୍ରା ଜଳପ୍ରପାତର ଉପରୁ ତଳକୁ ଖସିବାରେ ସକ୍ଷମ ହୋଇଥିଲେ ସେମାନଙ୍କ ମଧ୍ୟରୁ ଜଣଙ୍କ କଥା ନ ଲେଖି ମୁଁ ରହି ପାରୁନାହିଁ।

ସେ ହେଉଛନ୍ତି ଶ୍ରୀମତୀ ଆନା ଏଡ୍‌ସନ୍ ଟେଲର୍। ୪୩ ବର୍ଷ ବୟସ୍କା ସ୍କୁଲ୍ ଶିକ୍ଷୟିତ୍ରୀ ଶ୍ରୀମତୀ ଟେଲର୍ ନିଜର ଦାରିଦ୍ର୍ୟ ଦୂର କରିବା ପାଇଁ ଏକ ଅଭିନବ ପନ୍ଥା ସ୍ଥିର କଲେ। ସେ ଠିକ୍ କଲେ ଯେ ସେ ଗୋଟିଏ କାଠ ପିମ୍ପା ଭିତରେ ପଶି ଜଳପ୍ରପାତରେ ତଳକୁ ଖସି ଆସିବେ। ଜଣେ କମାରର ସାହାଯ୍ୟରେ ସେ ନିଜେ ଏହି କାଠ ପିମ୍ପାଟି ତିଆରି କରିଥିଲେ। ଏହା ଭିତରେ

ଲୁହା ଛତ ଦିଆ ହୋଇଥିଲା। ନିର୍ଦ୍ଧାରିତ ଦିନ ଜଳପ୍ରପାତଠାରୁ ୧ ମାଇଲ୍ ଦୂରରୁ ସେ ତାଙ୍କର ଯାତ୍ରା ଆରମ୍ଭ କଲେ। ଶ୍ରୀମତୀ ଟେଲର୍ ପିମ୍ପା ଭିତରେ ପଶିବା ପରେ ଅନ୍ୟମାନେ ଢାଙ୍କୁଣୀକୁ ଭଲ ଭାବରେ ବନ୍ଦ କରିଦେଲେ ଯେପରିକି ପାଣି ପଶି ନ ପାରେ ଏବଂ ଭିତରେ ଆବଶ୍ୟକରୁ ଅଧିକ ଅମ୍ଳଜାନ ଭରି କରିଦେଲେ। କାଠ ପିମ୍ପାଟି ଭାସି ଭାସି ଶେଷରେ ଅଶ୍ୱକ୍ଷୁରା ଜଳପ୍ରପାତର ଉପରୁ ତଳକୁ ଖସି ପଡ଼ିଲା। (ଏଇଠି କହୁଛି, କେହି କେବେହେଲେ ଜାଣିଶୁଣି ଆମେରିକାରେ ଥିବା ଜଳପ୍ରପାତ ଉପରୁ ଖସିବା କଥା ଚିନ୍ତା କରି ନାହାନ୍ତି। କାରଣ ତଳେ ରହିଛି ବଡ ବଡ ପଥର ଖଣ୍ଡ। ଏତେ ବେଗରେ ଆସି ପଥର ଉପରେ କଚି ହେବାର ପରିଣାମ କି ଯେ ଭୟଙ୍କର ତୁ ଚିନ୍ତା କରି ପାରୁଥିବୁ।) ମିତୁ, ଆଶ୍ଚର୍ଯ୍ୟର କଥା, ପିମ୍ପାଟି ଭାଙ୍ଗିଲା ନାହିଁ। ସେଇମିତି ଭାସି ଭାସି କାନାଡା ପଟ କୂଳରେ ଯାଇ ଲାଗିଲା। ଯାତ୍ରା ଆରମ୍ଭର ୧୭ ମିନିଟ୍ ପରେ ପିମ୍ପାର ଢାଙ୍କୁଣୀ ଖୋଲାଗଲା। ଶ୍ରୀମତୀ ଟେଲର୍ ପିମ୍ପାରୁ ବାହାରି ଦେଖଣାହାରୀଙ୍କ ଆଡକୁ ଚାହିଁ ଥରେ ହାତ ହଲେଇ ଦେଲେ, ମାତ୍ର ପର ମୁହୂର୍ତ୍ତରେ ହିଁ ସେଇଠାରେ ଚେତା ହରାଇ ପଡ଼ିଗଲେ। ଏହି ଅଭିଯାନ ପରେ ଶ୍ରୀମତୀ ଟେଲର୍‌ଙ୍କୁ ବେଶ୍ ପରିମାଣରେ ଅର୍ଥ ମିଳିଥିଲା। କିନ୍ତୁ ଭାଗ୍ୟଦେବୀ ତାଙ୍କ ପ୍ରତି ବିମୁଖ ଥିଲେ। କିଛି ଦିନ ପରେ କାଠ ପିମ୍ପାଟି ସମେତ ତାଙ୍କର ସମସ୍ତ ଅର୍ଥ ଚୋରି ହୋଇଗଲା ଏବଂ କୋଡିଏ ବର୍ଷ ପରେ ଦାରିଦ୍ର୍ୟ ଓ ଦୁଃଖରେ ଶ୍ରୀମତୀ ଟେଲର୍ ମୃତ୍ୟୁବରଣ କରିଥିଲେ।

୧୯୪୦ ପର୍ଯ୍ୟନ୍ତ ନାଏଗ୍ରା ଜଳପ୍ରପାତରେ ଜୀବନକୁ ବାଜି ରଖି ବହୁତ ରକମର ଖେଳ ଚାଲିଥିଲା। କିନ୍ତୁ ସେହିବର୍ଷ ସରକାର ଏଇଭଳି ଖେଳ ପ୍ରଦର୍ଶନ କରିବାକୁ ଆଇନତଃ ନିଷିଦ୍ଧ କରିଦେଲେ। ସରକାର ରଦ୍ଦ କରିଦେଲେ ମଧ୍ୟ ୧୯୬୦ରେ ଜଣେ କୌଣସି ଜିନିଷର ସାହାଯ୍ୟ ନ ନେଇ ଜଳପ୍ରପାତ ଉପରୁ ତଳକୁ ଖସିଥିଲା ଏବଂ ସବୁଠାରୁ ଆଶ୍ଚର୍ଯ୍ୟର କଥା ସାମାନ୍ୟ କେତୋଟି ଖଣ୍ଡିଆ ଖାବରାକୁ ଛାଡିଦେଲେ ତା'ର ଆଉ ଅଧିକ କିଛି ହୋଇ ନଥିଲା। ସେ ପୁଣି ସାତ ବର୍ଷର ପିଲାଟିଏ।

ତୁ ନିଶ୍ଚୟ ଚିନ୍ତାରେ ପଡ଼ିଯିବୁଣି। ବାସ୍ତବରେ ଘଟଣାଟି କେହି ଜାଣିଶୁଣି ଘଟାଇ ନଥିଲା। ଏହା ଥିଲା ସଂପୂର୍ଣ୍ଣ ଆକସ୍ମିକ। ୧୯୬୦ ମସିହା ଜୁଲାଇ

୯ ତାରିଖ ଦିନ ରୋଜର୍ ଓ ତା'ର ସତରବର୍ଷର ଭଉଣୀ ଡିନ୍ ପରିବାରର ଜଣେ ବନ୍ଧୁ ଜିମ୍ ହନିକଟ୍‌ଙ୍କ ସହିତ ନାଏଗ୍ରା ନଦୀରେ ନୌକାରେ ବୁଲୁଥିଲେ। ମଝି ନଦୀରେ ନୌକାର ଇଞ୍ଜିନ ଖରାପ ହୋଇଗଲା। ହନିକଟ୍ ଡଙ୍ଗାକୁ କୂଳକୁ ନେବା ପାଇଁ ବହୁତ ଚେଷ୍ଟା କଲେ। କିନ୍ତୁ ସବୁ ଚେଷ୍ଟା ବିଫଳ ହେଲା। ନୌକାଟି ସ୍ରୋତରେ ଟାଣି ହୋଇ ଗୋଟିଏ ପଥରରେ ବାଜି ଭାଙ୍ଗିଗଲା। ଭାଗ୍ୟବଶତଃ ଭାଇ ଭଉଣୀ ଦୁଇଜଣ ଲାଇଫ୍ ଜ୍ୟାକେଟ୍ ପିନ୍ଧିଥିଲେ। ଡିନ୍ ଆଶ୍ଚର୍ଯ୍ୟ ଭାବରେ କୂଳଆଡକୁ ଭାସିଗଲା ଏବଂ କେତେଜଣ ଦେଖଣାହାରୀ ତାକୁ ପାଣିରୁ ଟାଣିଆଣିଲେ। ରୋଜର୍ ଓ ଜିମ୍ ସ୍ରୋତରେ ଭାସି ଯାଇ ଜଳପ୍ରପାତରେ ତଳକୁ ଖସି ପଡ଼ିଲେ। ଜିମ୍‌ଙ୍କର ସେଇଠାରେ ମୃତ୍ୟୁ ହୋଇଗଲା। କିନ୍ତୁ ରୋଜର୍ ଆଶ୍ଚର୍ଯ୍ୟ ଭାବରେ ବଞ୍ଚିଗଲା। ତାକୁ ନଦୀରେ ଭାସୁଥିବାର ଦେଖି 'ମେଡ୍ ଅଫ୍ ଦି ମିଷ୍ଟ' ନୌକାର କର୍ମଚାରୀମାନେ ତାକୁ ଉଦ୍ଧାର କରି ଆଣିଲେ।

ମୁଁ ଏଇ ଚିଠିରେ ପୂର୍ବରୁ ଥରେ "ମେଡ୍ ଅଫ ଦି ମିଷ୍ଟ" ନୌକାର ନାମ ଉଲ୍ଲେଖ କରିଥିଲି। ଏବେ ପୁଣି ଥରେ ଲେଖୁଛି। ତୁ ନିଶ୍ଚୟ ଭାବୁଥିବୁ କ'ଣ ଏଇ ନୌକା ? ଊନବିଂଶ ଶତାବ୍ଦୀର ଆରମ୍ଭରେ ଯେତେବେଳେ ନାଏଗ୍ରାକୁ ପର୍ଯ୍ୟଟକ ଆସିବା ଆରମ୍ଭ ହେଲା, ସେତେବେଳେ ନିକଟରୁ ଜଳପ୍ରପାତକୁ ଦେଖିବାର କୌଣସି ଉପାୟ ନଥିଲା। ଏହି ଅଭାବ ଦୂର କରିବା ପାଇଁ ୧୮୪୬ରେ ଏକ ଷ୍ଟିମ୍ ବୋଟ୍ ନିର୍ମାଣ କରାଯାଇଥିଲା। ଏହାର ନାମ ରଖାଯାଇଥିଲା- "Maid of the Mist"। ଏହି ନୌକାଟି ଜଳପ୍ରପାତର ଖୁବ୍ ନିକଟକୁ ପର୍ଯ୍ୟଟକମାନଙ୍କୁ ନେଇ ଯାଉଥିଲା। ଆଜି ଆଉ ସେହି ପ୍ରାଚୀନ 'ମେଡ୍ ଅଫ୍ ଦି ମିଷ୍ଟ' ନୌକାଟି ନାହିଁ। କିନ୍ତୁ ତା'ର ସ୍ଥାନ ନେଇଛି ବହୁତ ଗୁଡ଼ିଏ ଷ୍ଟିମର୍। ଆଉ ଏବେ ମଧ୍ୟ ସେସବୁର ନାମ ରଖାଯାଇଛି- "ମେଡ୍ ଅଫ୍ ଦି ମିଷ୍ଟ"।

"ମେଡ୍ ଅଫ୍ ଦି ମିଷ୍ଟ" ନୌକା ଯେପରି ୧୫୦ ବର୍ଷର ସ୍ମୃତିକୁ ସାଇତି କରି ରଖିଛି, ଠିକ୍ ସେଇଭଳି ଆଧୁନିକ ଆମେରିକା ନାଏଗ୍ରାର ଏକ ବହୁ ପ୍ରାଚୀନ ବିଶ୍ୱାସକୁ ଶ୍ରଦ୍ଧାର ସହିତ ଧରି ରଖିଛି। ସେନେକା ଇଣ୍ଡିଆନ୍‌ମାନଙ୍କର ଏକ ବିଶ୍ୱାସ ଥିଲା ଯେ ନାଏଗ୍ରା ଜଳପ୍ରପାତ ନିକଟରେ ମଧୁଚନ୍ଦ୍ରିକା ଯାପନ କଲେ ସ୍ୱାମୀ ସ୍ତ୍ରୀଙ୍କର ପ୍ରେମ ଜଳପ୍ରପାତ ଭଳି ଯୁଗ ଯୁଗ ଧରି ରହିବ। ଯେତେବେଳେ ନାଏଗ୍ରାକୁ ପର୍ଯ୍ୟଟକମାନଙ୍କର ଆସିବା ଆରମ୍ଭ ହେଲା, ସେତେବେଳେ

ହୋଟେଲ୍ ମାଲିକମାନେ ନିଜ ନିଜର ହୋଟେଲ ବ୍ୟବସାୟ ବଢ଼ାଇବା ପାଇଁ ଏହି ଅନ୍ଧବିଶ୍ୱାସର ଅଧିକ ବିଜ୍ଞାପନ କରାଇଲେ। ସେତେବେଳେ ପ୍ରତି ହୋଟେଲ୍‌ରେ ମଧୁଚନ୍ଦ୍ରିକା ଯାପନ ପାଇଁ ଆସୁଥିବା ଦମ୍ପତିମାନଙ୍କ ନିମନ୍ତେ ବିଶେଷ କୋଠରୀମାନ ରଖାଯାଉଥିଲା ଏବଂ ହୋଟେଲ୍ କର୍ମଚାରୀମାନଙ୍କୁ ନିର୍ଦ୍ଦେଶ ଥିଲା ଯେ କେହି ଯେମିତି ହୋଟେଲ୍‌ର ଅତିଥିମାନଙ୍କ ଉପରେ ଖାଇବା, ରହିବା ନେଇ କୌଣସି ନିୟମ ଚାଲୁ ନ କରନ୍ତି। କିଛିଟା ଅନ୍ଧବିଶ୍ୱାସ, ପୁଣି କିଛି ସ୍ଥାନଟିର ଅପରୂପ ସୌନ୍ଦର୍ଯ୍ୟ ଯୁଗ ଯୁଗ ଧରି ନବ ବିବାହିତ ଦମ୍ପତିଙ୍କୁ ଟାଣି ଆଣିଛି ନାଏଗ୍ରାକୁ। ସେଇଥିପାଇଁ ହୁଏତ ଅସ୍‌କାର ଓ୍ୱାଇଲ୍ଡ ଲେଖିଥିଲେ, "ପ୍ରତ୍ୟେକ ମାର୍କିନ୍ ବଧୂକୁ ନାଏଗ୍ରା ଜଳପ୍ରପାତକୁ ନିଆଯାଇଥାଏ।"

ମଧୁଚନ୍ଦ୍ରିକା ପାଳନ ପାଇଁ ହୁଏତ ବହୁ ଦମ୍ପତି ଏଠାକୁ ଆସୁଥିବେ, କିନ୍ତୁ ପର୍ଯ୍ୟଟକମାନଙ୍କୁ ଦେଖି ମୋର ମନେ ହେଲା ଅଧିକାଂଶ ଲୋକ ପରିବାର ନେଇ ଏହି ସ୍ଥାନକୁ ଆସିବାକୁ ପସନ୍ଦ କରନ୍ତି। ଆମେ ଯେଉଁଠାରେ ଠିଆ ହୋଇ ଜଳପ୍ରପାତକୁ ଦେଖୁଥିଲୁ, ସେଇଠି ଆମ ନିକଟରେ ଠିଆ ହୋଇଥାଏ ଛୋଟ ପୁଅଟିଏ। ଏମିତିରେ ଆମେରିକାର ପିଲାମାନେ ଅଜଣା ଅଶୁଣା ଲୋକଙ୍କ ସହିତ କଥା କହନ୍ତି ନାହିଁ; କିନ୍ତୁ ବୋଧହୁଏ ମୋ ସାଙ୍ଗରେ ଦୁଇଟି ବେଶୀ କଥା କହୁଥିବା ପିଲାଙ୍କୁ ଦେଖି ପୁଅଟି ମତେ 'ଭୟଙ୍କର' ଲୋକ ବୋଲି ଭାବି ପାରିଲା ନାହିଁ। ମନକୁ ମନ କହି ଉଠିଲା, "ମୁଁ ଦ୍ୱିତୀୟ ଥର ପାଇଁ ନାଏଗ୍ରାକୁ ଆସିଛି।" ମୁଁ ଉତ୍ତର ଦେଲି, "ନାଏଗ୍ରା ଜଳପ୍ରପାତ ଭାରି ଭଲ ଲାଗିଛି ନିଶ୍ଚୟ।" ପୁଅଟି ହସି କରି କହିଲା, "ମୁଁ କ'ଣ ଜଳପ୍ରପାତ ଦେଖିବାକୁ ଆସିଛି ? 'ମେଡ୍ ଅଫ ଦି ମିଷ୍ଟ' ଷ୍ଟିମର୍‌ରେ ଜଳପ୍ରପାତ ନିକଟକୁ ଯାଇ ଓଦା ହେବାରେ ଯେଉଁ ମଜା, ସେଇଥିପାଇଁ ମା, ବାପାଙ୍କ ସାଙ୍ଗରେ ଜିଦ୍ କରି ଆସିଛି।"

ପିଲାଟି ଚାଲିଗଲା ପରେ ରୁମି, ରିଟି ଜିଦ୍ ଆରମ୍ଭ କରିଦେଲେ, "ଶୀଘ୍ର ଚାଲ। 'ମେଡ୍ ଅଫ୍ ଦି ମିଷ୍ଟ' ଷ୍ଟିମର୍ ଚାଲିଯିବ। ଆମେ ଯାଇ ପାରିବା ନାହିଁ।" ଏ ତ ଆଉ ୧୮୪୬ ମସିହା ନୁହଁ। ଏବେ କେବଳ ଗୋଟିଏ ନୌକା ନୁହଁ। ଅସଂଖ୍ୟ ଷ୍ଟିମର୍ ଚାଲିଛି। ସନ୍ଧ୍ୟାଯାଏ ପ୍ରତି ପନ୍ଦର ମିନିଟ୍‌କୁ ଗୋଟିଏ ଲେଖାଏଁ ଷ୍ଟିମର୍ ଛାଡିବ। କିନ୍ତୁ ମୋ କଥା ଶୁଣିବାକୁ ସେମାନେ

ପ୍ରସ୍ତୁତ ନୁହନ୍ତି। ସେମାନଙ୍କର ତ ଜିଦ୍ ଲାଗିଛି। ମୋର ଅବଶ୍ୟ ପରେ ସନ୍ଦେହ ହୋଇଥିଲା ଯେ ସେଇ ପିଲାଟି ଭଳି ଜଳପ୍ରପାତକୁ ନିକଟରୁ ଦେଖିବା ଅପେକ୍ଷା ଓଦା ହେବାର ମଜା ନେବା ପାଇଁ ସେମାନେ ଏମିତି ଜିଦ୍ କରିଥିଲେ।

ଯାହେଉ, ଟିକେଟ୍ କାଟି ଆମେ ଲାଇନ୍‌ରେ ଠିଆ ହୋଇଗଲୁ। ମାତ୍ର ଅଳ୍ପ କେଇ ମିନିଟ୍ ମଧ୍ୟରେ 'ମେଡ ଅଫ୍ ଦି ମିଷ୍ଟ' ଷ୍ଟିମର୍ ପହଞ୍ଚିଗଲା। ଷ୍ଟିମର୍‌ରେ ପାଦ ଦେବା ବେଳେ ଟିକେଟ୍ ପରଖ କରୁଥିବା ବ୍ୟକ୍ତିଙ୍କ ନିକଟରେ ଠିଆ ହୋଇଥିବା ଝିଅଟି ଆମ ହାତକୁ ଗୋଟିଏ ଗୋଟିଏ ନୀଳ ବର୍ଷାତି ବଢ଼େଇ ଦେଲା। ଆମେ ଦେଖିଲୁ ଆମ ଆଗରୁ ଷ୍ଟିମର୍‌ରେ ପଶିଥିବା ସବୁଲୋକ ବର୍ଷାତି ପିନ୍ଧି ସାରିଛନ୍ତି। ପିଲା ଦୁଇଜଣଙ୍କ ମୁହଁ ଦେଖିବା କଥା। 'ରେନ୍‌କୋଟ୍ ପିନ୍ଧିଲେ ଆଉ କି ମଜା!' 'ମୁଁ ରେନ୍‌କୋଟ୍ ପିନ୍ଧିବି, କିନ୍ତୁ ଟୋପି ପିନ୍ଧିବି ନାହିଁ,' 'ନହେଲେ ସାମ୍ନା ବୋତାମ ଖୋଲାଥାଉ'- ଏଭଳି କେତେ କଥା ମତେ ଶୁଣିବାକୁ ହେଲା। ମୁଁ କିଛି ନ କହି ସେମାନଙ୍କର ବେକଠାରୁ ଗୋଡ ପର୍ଯ୍ୟନ୍ତ ସବୁ ବୋତାମ ଲଗେଇ ଦେଲି ଏବଂ ମୁଣ୍ଡରେ ଟୋପି ବାନ୍ଧିଦେଲି। ପିଲାମାନେ ମୁହଁ ଫୁଲେଇ ଠିଆ ହୋଇଥାଆନ୍ତି। ମୁଁ ଦେଖି ନ ଦେଖିବା ଭଳି ରହିଲି। ଓଦା ହୋଇ ଥଣ୍ଡା, ଜର ହେଲେ କଷ୍ଟ ପାଇବ କିଏ ?

ଶେଷରେ ଷ୍ଟିମର୍ ଛାଡ଼ିଲା। ଧୀରେ ଧୀରେ ବେଗ ବଢ଼ିବାକୁ ଲାଗିଲା। ଆମେ କିଛି ବୁଝିବା ପୂର୍ବରୁ ଷ୍ଟିମର୍‌ଟି ପହଞ୍ଚିଗଲା ଆମେରିକା ପଟେ ଥିବା ଜଳପ୍ରପାତ ନିକଟରେ। ମୁଁ ଉପରୁ ଜଳପ୍ରପାତ ଦେଖିଥିଲି, ଅଥଚ ତଳୁ ତାହାର ସୌନ୍ଦର୍ଯ୍ୟ ସଂପୂର୍ଣ୍ଣ ଭିନ୍ନ। ଉପରୁ ଜଳପ୍ରପାତର ଉଚ୍ଚତା ଠିକ୍ ଅନୁମାନ କରି ହେଉ ନ ଥିଲା। କିନ୍ତୁ ତଳୁ ଜଳପ୍ରପାତକୁ ଦେଖିଲେ ଜଣେ ଅବାକ୍ ନ ହୋଇ ରହି ପାରିବ ନାହିଁ। ପ୍ରବଳ ବେଗରେ ଯେ ୧୮୪ ଫୁଟ୍ ଉପରୁ ପାଣି ଅଜାଡ଼ି ହୋଇ ପଡୁଛି। ଆମେ ଜଳପ୍ରପାତର ଖୁବ୍ ନିକଟରେ ନ ଥିଲେ ମଧ୍ୟ ପାଣି ଛିଟାରେ ଆମର ହାତ, ମୁହଁ ଏକ୍‌ଦମ୍ ଓଦା ହୋଇଗଲା। ପାଣିର ପ୍ରଥମ ଛିଟା ଯେତେବେଳେ ପିଲାଙ୍କ ମୁହଁରେ ପଡ଼ିଲା, ସେମାନେ ସବୁ କିଛି ଭୁଲିଗଲେ। ସେମାନେ ଭୁଲିଗଲେ ଯେ ସେମାନେ ଅଳ୍ପ ସମୟ ଆଗରୁ ମୁହଁ ଫୁଲେଇ ଥିଲେ, ମୋ ଉପରେ ଅଭିମାନ କରିଥିଲେ। କେବଳ ସେମାନେ କାହିଁକି, ଷ୍ଟିମର୍‌ରେ ଥିବା ପିଲା, ବଡ ସମସ୍ତେ ଆନନ୍ଦରେ ଚିତ୍କାର କରି ଉଠୁଥାଆନ୍ତି। ଆଖି ଖୋଲା

ରଖିବା ସମ୍ଭବ ହେଉ ନଥାଏ । ଏଣେ ପ୍ରାଣ ଭରି ଦେଖି ନେବାର ଇଚ୍ଛା । ମାତ୍ର ଅଳ୍ପ ସମୟ ପରେ ଷ୍ଟିମରଟି ଆମେରିକା ପଟ ଜଳପ୍ରପାତ ଘେରରୁ ବାହାରି ଆସିଲା । କିଛି ବାଟ ଗଲା ପରେ ଦୂରରୁ ମୁଁ ଦେଖିଲି କାନାଡା ପଟ ଜଳପ୍ରପାତ । ଅଶ୍ୱକ୍ଷୁରା ଜଳପ୍ରପାତ । ମିତ୍ର, ସେ କି ଅପୂର୍ବ ଦୃଶ୍ୟ ! ମୁଁ ଆଗରୁ ଶୁଣିଥିଲି ଯେ କାନାଡା ପଟ ନାଏଗ୍ରା ଜଳପ୍ରପାତଟି ଆମେରିକା ପଟ ଅପେକ୍ଷା ଅଧିକ ସୁନ୍ଦର । କିନ୍ତୁ ଏଇଭଳି କିଛିର ଅବସ୍ଥିତି ସଂପର୍କରେ ମୁଁ ଯେ ଆଦୌ କଳ୍ପନା କରି ପାରି ନଥିଲି । ବିଭିନ୍ନ ବହି ବା ପତ୍ରିକାରେ ଦେଖିଥିବା ଚିତ୍ର ସହିତ ଏହାର ଆଦୌ ତୁଳନା ହୁଏ ନାହିଁ । ଆମ ଷ୍ଟିମରଟି ଅଶ୍ୱକ୍ଷୁରା ଜଳପ୍ରପାତର ଗୋଟିଏ କଡରୁ ଯାତ୍ରା ଆରମ୍ଭ କରି ଯେତେବେଳେ ଠିକ୍ ମଝିରେ ପହଞ୍ଚିଲା, ସେତେବେଳେ ମୋର ନିଶ୍ୱାସ ଯେମିତି ଅଟକିଗଲା । ମିତ୍ର, ମୋ ଦିଗ୍‌ବଳୟରେ କେବଳ ଧଳା ରଙ୍ଗର ଜଳର ପରଦାଟିଏ ! ସମୟ ଯେମିତି ସେଇଠାରେ ହିଁ ଅଟକିଗଲା । କିଛି ସମୟପରେ ଷ୍ଟିମରଟି ବୁଲିଯାଇ ପୁଣି ଫେରି ଆସିଲା ଆମେ ଯେଉଁଠାରୁ ଯାତ୍ରା ଆରମ୍ଭ କରିଥିଲୁ ସେଇଠିକୁ । ଯାତ୍ରା ଶେଷ ହେଲା, କିନ୍ତୁ ମୋ ମନ ପଡି ରହିଲା ଜଳପ୍ରପାତ ନିକଟରେ ।

ସନ୍ଧ୍ୟା ହେବାକୁ ଆହୁରି ଅନେକ ଡେରି ଥାଏ । ଆମେ ସ୍ଥିର କଲୁ 'ଗୋଟ୍ ଆଇଲ୍ୟାଣ୍ଡ'କୁ ଯିବୁ । ହୋଟେଲ୍‌ରୁ ଗାଡି ନେଇ ଆସି ବାହାରିପଡିଲୁ । ନାଏଗ୍ରା ନଦୀରେ ଥିବା ଏହି ଦ୍ୱୀପଟି ସଂପର୍କରେ ମୁଁ ଆଗରୁ ବହୁତ ଶୁଣିଥିଲି । ଏହି ଦ୍ୱୀପ ଉଭୟ କାନାଡା ପଟ ଓ ଆମେରିକା ପଟ ଜଳପ୍ରପାତର ମଝିରେ ରହିଛି । ତେଣୁ ଉଭୟ ଜଳପ୍ରପାତର ସୌନ୍ଦର୍ଯ୍ୟ ଏହିଠାରୁ ଉପଭୋଗ କରି ହୁଏ । ତା'ଛଡା ଦ୍ୱୀପଟିର ଐତିହାସିକ ମୂଲ୍ୟ ମଧ୍ୟ ରହିଛି । ଆମେରିକା ସ୍ୱାଧୀନତା ଆନ୍ଦୋଳନର ଜେନେରାଲ୍ ଲାଫିଏତ୍ ଏହି ଗୋଟ୍ ଆଇଲ୍ୟାଣ୍ଡ ଦେଖି ଏଭଳି ଅଭିଭୂତ ହୋଇ ଯାଇଥିଲେ ଯେ ଦ୍ୱୀପଟି କିଣି ନେବାପାଇଁ ଚାହିଁଥିଲେ । ସେତେବେଳେ ଦ୍ୱୀପଟିର ମୂଲ୍ୟ ଥିଲା ଏକ ହଜାର ଡଲାର୍ । ଲାଫିଏତ୍‌ଙ୍କ ନିକଟରେ ସେତିକି ଅର୍ଥ ନ ଥିଲା, ତେଣୁ ତାଙ୍କୁ ନିରାଶ ହେବାକୁ ପଡିଥିଲା ।

ଲାଫିଏତ୍ କିଣିବାକୁ ଚାହିଁଥିବା ଏହି ଗୋଟ୍ ଆଇଲ୍ୟାଣ୍ଡକୁ ଯଦି ଜଣେ ଭଲ ଭାବରେ ଦେଖିବାକୁ ଚାହେଁ, ତେବେ ତାକୁ ଚାଲି ଚାଲି ବୁଲିବାକୁ ପଡିବ । ଆମେ ତେଣୁ ଗୋଟିଏ ସ୍ଥାନରେ ଗାଡି ଅଟକେଇ ନଦୀ କୂଳେ କୂଳେ ଚାଲିଲୁ ।

ଏମିତି ଯାଉ ଯାଉ ଆମେ ଗୋଟିଏ ସ୍ଥାନରେ ପହଞ୍ଚିଲୁ ଯେଉଁଠିକି ଲେଖା ହୋଇଥିଲା, ''କେଭ୍ ଅଫ୍ ଦି ୱିଣ୍ଡସ୍ ଟ୍ରିପ୍''। ମୁଁ ସାଙ୍ଗେ ସାଙ୍ଗେ ବାହାରି ପଡ଼ିଲି। 'କେଭ୍' ଶବ୍ଦଟି ଶୁଣି ପିଲାମାନେ ମଧ୍ୟ ଉତ୍ସାହିତ ହୋଇ ପଡ଼ିଲେ। ଗୁମ୍ଫା ଭିତରେ ଯେ ପଶିବାକୁ ହେବ! ଟିକେଟ୍ କାଟି ଆମେ ଅନ୍ୟମାନଙ୍କ ସହିତ ଚାଲିଲୁ। ତଳକୁ ତଳ ସିଡ଼ି ଲମ୍ବିଯାଇଛି। ପଥର କଟା ହୋଇ ତିଆରି ହୋଇଥିବା ସିଡ଼ିରେ କିଛି ବାଟ ଯିବା ପରେ ଆମେ ଏଭଳି ଗୋଟିଏ ସ୍ଥାନରେ ପହଞ୍ଚିଲୁ ଯେଉଁଠାରୁ କି ଜଳପ୍ରପାତଟି ମାତ୍ର ୨୫ ଫୁଟ୍ ଦୂର। ମନେ ହେଉଥାଏ ହାତ ବଢ଼େଇ ଦେଲେ ଛୁଇଁ ପାରିବା। କିନ୍ତୁ ଜଳପ୍ରପାତର ଅଧିକ ନିକଟକୁ ଯାଇ ହେଲା ନାହିଁ। ସେହିଠାରେ ଲୁହା ଛଡ଼ ଦେଇ ରାସ୍ତା ବନ୍ଦ କରିଦିଆଯାଇଛି ଏବଂ 'ବିପଦ' ଚିହ୍ନ ଲଗା ହୋଇଛି। ଏ ସବୁକୁ ଅସ୍ୱୀକାର କରି କିଏ ବା ଯିବ ?

'କେଭ୍ ଅଫ୍ ଦି ୱିଣ୍ଡସ୍' ଯାତ୍ରାରୁ ଫେରିବା ବେଳକୁ ଅନ୍ଧାର ହୋଇ ଆସୁଥାଏ। ଆମେ ଗୋଟ୍ ଆଇଲ୍ୟାଣ୍ଡରୁ ଫେରି ଆସିଲୁ। କିନ୍ତୁ ହୋଟେଲ୍‌କୁ ଏତେ ଶୀଘ୍ର ଫେରିବ କିଏ ? ପିଲାମାନେ ଦୋକାନ ବଜାର ବୁଲିବାକୁ ଚାହିଁଲେ। ଏମିତିରେ ତ ଅଧିକାଂଶ ଦୋକାନ ବନ୍ଦ ହୋଇ ଯାଇଥିଲା, କିନ୍ତୁ ଛୋଟ ଛୋଟ ଉପହାର, ପୋଷ୍ଟ କାର୍ଡ, ଖେଳଣା ଇତ୍ୟାଦି ବିକ୍ରି ହେଉଥିବା ଦୋକାନମାନ ଖୋଲା ଥିଲା। ସେଇଭଳି ଗୋଟିଏ ଦୋକାନରେ ବୁଲୁଥିବା ବେଳେ ଜଣେ ବୟସ୍କ ଭଦ୍ରଲୋକ ଆମ ସାଙ୍ଗରେ ନାଏଗ୍ରା ବିଷୟରେ ବହୁ କଥା ଗପିବାକୁ ଆରମ୍ଭ କଲେ। ଏମିତି ଗପୁ ଗପୁ ସେ ଜାଣିବାକୁ ଚାହିଁଲେ ଯେ ଆମେ ରାତିରେ ନାଏଗ୍ରା ଜଳପ୍ରପାତ ଦେଖିଛୁ କି ନାହିଁ। ଆମେ ମନା କଲୁ। ଭଦ୍ରଲୋକ ଟିକିଏ ଗମ୍ଭୀର ହୋଇ କହିଲେ, ''ଯାଅ। ଯାଇ କରି ଥରେ ଦେଖି ଆସ କେମିତି ମଣିଷ ପ୍ରକୃତିକୁ ବିକୃତ କରିଦେବାରେ ସକ୍ଷମ ହୋଇଛି।''

ତାଙ୍କ କଥା ଠିକ୍ ବୁଝି ହେଲା ନାହିଁ। କିନ୍ତୁ ଆମେ ତାଙ୍କ କହିବା ଅନୁସାରେ ଜଳପ୍ରପାତ ଆଡ଼କୁ ଚାଲିଲୁ। ମୁଁ ଭାବିଥିଲି ରାତି ହୋଇଯିବା ପରେ ଭିଡ଼ କମିଯାଇଥିବ। କିନ୍ତୁ ସେତେବେଳେ ଯେ ଦିନ ଭଳି ଭିଡ଼! ଦଳ ଦଳ ଲୋକ ଚାରିଆଡ଼େ। ଆଉ ମିତ୍ର, କାହିଁ ସେ ଦିନ ବେଳର ସ୍ୱଚ୍ଛ, ଗମ୍ଭୀର ପ୍ରପାତ ? ତା' ଉପରେ ଲେଜର୍ କିରଣ ଦ୍ୱାରା ପ୍ରତିଫଳିତ କରାଯାଉଛି ବିଭିନ୍ନ ରଙ୍ଗର

ଆଲୁଅ। ଲାଲ୍, ହଳଦିଆ, ନୀଳ, ବାଇଗଣୀ ଆଲୁଅ ପାଣି ଉପରେ ପଡି ଦୃଷ୍ଟିକଟୁ ଯେ ହେଉଛି ସେ କଥା କହିବା ଠିକ୍ ହେବ ନାହିଁ। କିନ୍ତୁ ଯେଉଁ ଜିନିଷର ପ୍ରାକୃତିକ ସୌନ୍ଦର୍ଯ୍ୟ ଅତୁଳନୀୟ, ସେଇଠି କୃତ୍ରିମତା ଭରିବାର ଯଥାର୍ଥତା କ'ଣ, ତାହା ମୁଁ ବୁଝି ପାରିଲି ନାହିଁ। ବଗିଚାରୁ ସଜଫୁଟା ଗୋଲାପ ତୋଳି ନେଇ ସେଥି ସହ କିଛି ପ୍ଲାଷ୍ଟିକ୍ ଫୁଲ ମିଶାଇ ତୋଡାଟିଏ କରିବା ଭଳି କଥାଟି। ମୁଁ ଏତେବେଳେ ଦୋକାନରେ ଦେଖା ହୋଇଥିବା ଭଦ୍ରଲୋକଙ୍କର କଥାର ଅର୍ଥ ବୁଝିପାରିଲି। ଧଳା ରଙ୍ଗର ଗୋଟିଏ ସ୍ୱତନ୍ତ୍ର ସୌନ୍ଦର୍ଯ୍ୟ ଅଛି। ତା' ଉପରେ ବିଭିନ୍ନ ରଙ୍ଗର ଆଲୁଅ ପକାଇ କଳୁଷିତ କରିବା କଥା କେମିତି କିଏ ଚିନ୍ତା କଲା ?

ଆଜି ସକାଳେ ଏଆରପୋର୍ଟ ଆସିବା ଆଗରୁ ମୁଁ ଆଉଥରେ ଜଳପ୍ରପାତ ନିକଟକୁ ଯିବାର ଲୋଭ ସମ୍ଭାଳି ପାରିଲି ନାହିଁ। ରାତି ଓ ସକାଳ ଭିତରେ କେତେ ପାର୍ଥକ୍ୟ ! ଜଳପ୍ରପାତଟି ଯେମିତି ସୁନ୍ଦରୀ ଝିଅଟିଏ। ରାତିରେ ତାକୁ ଆଉ ଟିକିଏ ଅଧିକ ସୁନ୍ଦର କରିବା ପାଇଁ କିଏ ଯେମିତି ତା' ମୁହଁରେ ପରସ୍ତ ପରସ୍ତ ରଙ୍ଗ ବୋଳି ଦେଇଥିଲା ଯାହା କି ତା'ର ଲାଳିତ୍ୟକୁ ଲୁଚେଇ ଦେଇଥିଲା। ଆଉ ସକାଳୁ ମୁହଁକୁ ଧୋଇ ପରିଷ୍କାର କରି ଦେବା ପରେ ଯେମିତି ଝିଅଟି ଉଜ୍ଜଳି ଯାଉଛି ତା'ର ସୌନ୍ଦର୍ଯ୍ୟରେ। ମୋ ମନ ପ୍ରଶାନ୍ତିରେ ଭରିଗଲା।

ମିତୁ, ଏକଥା ସତ ଯେ 'ନାଏଗ୍ରା ଫଲ୍ସ'ରେ ଆମେ ବେଶୀ ସମୟ କଟାଇ ପାରିଲୁ ନାହିଁ। କିନ୍ତୁ ଯେତିକି ସମୟ ଆମ ହାତରେ ଥିଲା, ତା'ର ପ୍ରତ୍ୟେକଟି ମୁହୂର୍ତ୍ତ ଆମେ ଉପଭୋଗ କରିଛୁ। ପିଲାଦିନରୁ ନାଏଗ୍ରା ଜଳପ୍ରପାତ ଦେଖିବାର ମୋର ଯେଉଁ ଇଚ୍ଛା, ତାହା ଏତେଦିନକେ ପୂରଣ ହେଲା। ତେଣୁ ବେଶୀ ଦିନ ସେଇଠି କଟାଇ ପାରିଲି ନାହିଁ ବୋଲି ମୋର କୌଣସି ଅବଶୋଷ ନାହିଁ।

ଆଜି ତେବେ ଏତିକି। ପରେ ପୁଣି ଲଣ୍ଡନରୁ ତତେ ଚିଠି ଲେଖିବି। ରହୁଛି।

ଇତି

ତୋର 'ନାନୀ'

ଲଣ୍ଡନ

୪ ଜୁଲାଇ, ୧୯୯୨

ସ୍ନେହର ମିତୁ,

ବାହାରେ ବର୍ଷା ଚାଲିଛି। ଆଜି ସକାଳେ ଯେତେବେଳେ ମୋ ନିଦ ଭାଙ୍ଗିଲା, ସେତେବେଳେ ସୂର୍ଯ୍ୟଙ୍କର ସୁନେଲି କିରଣରେ ଭରିଯାଇଥିଲା କୋଠରୀଟି। କିଏ କ'ଣ ଭାବିଥିଲା ହଠାତ୍ ଏମିତି ଆକାଶରେ କଳା ମେଘ ଘୋଡେଇ ହୋଇଯାଇ ବର୍ଷା ଆରମ୍ଭ ହୋଇଯିବ! ଲଣ୍ଡନରେ ଏଇମିତି ହୁଏ। ଆଗରୁ କୌଣସି ସୂଚନା ନ ଦେଇ ବର୍ଷା ଆରମ୍ଭ ହୋଇଯାଏ। ଲଣ୍ଡନବାସୀ ଏଥିସହିତ ଅଭ୍ୟସ୍ତ। କିନ୍ତୁ ମୁଁ ତ ଏଇ ପ୍ରଥମଥର ଲଣ୍ଡନ ଆସିଲି, ସେଇଥିପାଇଁ ପହଞ୍ଚୁ ପହଞ୍ଚୁ ଗୋଟିଏ ଲଜ୍ଜାକର ଘଟଣା ପ୍ରାୟ ଘଟେଇବା ଉପରେ ଥିଲି।

ଘଟଣାଟି ଘଟିଲା ଏଇମିତି। ଆମେ ଦୁଇ ତାରିଖଦିନ ସକାଳେ ଯେତେବେଳେ ଲଣ୍ଡନର ଗ୍ୟାଟଓ୍ଵିକ୍ ଏଆର୍‌ପୋର୍ଟରେ ଓହ୍ଲେଇଲୁ, ସୁନ୍ଦର ଖରା ବିଛେଇ ହୋଇଯାଇଥିଲା ଚାରିଆଡେ। ଜିନିଷପତ୍ର ନେଇ କ୍ଲାନ୍ତ ହୋଇ ହୋଟେଲ୍‌ରେ ଆମେ ଯେତେବେଳେ ପହଞ୍ଚିଲୁ ସେତେବେଳେ ସକାଳ ସାଢେ ନଅ। ରାତି ଅନିଦ୍ରା, ପୁଣି ଜେଟ୍ ଲ୍ୟାଗ୍। ଆଖି ବନ୍ଦ ହୋଇ ଆସୁଥାଏ। କିନ୍ତୁ ଏଣେ ଗରମ। ହୋଟେଲ୍ ରୁମ୍‌ରେ ପଙ୍ଖା ନାହିଁ। ଏଆର୍‌କଣ୍ଡିସନର୍ ତ ଥିବା କଥା, କିନ୍ତୁ ତା' ମଧ୍ୟ ନାହିଁ। କେବଳ ହିଟର୍ ହିଁ ଅଛି। ଭଡା ତ କିଛି କମ୍ ନୁହଁ, ପୁଣି ଏ କି ଅବ୍ୟବସ୍ଥା! ମୁଁ

ଗିସେପ୍‌ସନ୍‌କୁ ଫୋନ୍ କଲି। ଗିସେପସ୍‌ନିଷ୍ଟ କହିଲେ ଯେ ଏ ହୋଟେଲ୍‌ରେ କୌଣସି ରୁମ୍‌ରେ ଏଆରକଣ୍ଡିସନଗ୍‌ର ବ୍ୟବସ୍ଥା ନାହିଁ। ସେତେବେଳେ ଯୁକ୍ତି କରିବା ଭଳି ଅବସ୍ଥା ମୋର ନ ଥିଲା। ମୁଁ ସ୍ଥିର କଲି ଯେ ନିଦରୁ ଉଠି ଏହାର ଗୋଟିଏ ବ୍ୟବସ୍ଥା କରିବି। ଦରକାର ହେଲେ ଆମେ ଏ ହୋଟେଲ୍ ଛାଡି ଅନ୍ୟ ଗୋଟିଏ ହୋଟେଲ୍‌କୁ ଚାଲିଯିବୁ। ଲଣ୍ଡନ ସହରରେ କ'ଣ ହୋଟେଲ୍‌ର ଅଭାବ ? ସାତଦିନ ପାଇଁ ହୋଟେଲ୍‌ର ଭଡା ଆମେ ଆମେରିକାରେ ହିଁ ଅଗ୍ରୀମ ଦେଇ ଦେଇଥିଲୁ। ତେଣୁ ଅନ୍ୟ ହୋଟେଲ୍‌କୁ ଯିବା ପୂର୍ବରୁ ସେ ଭଡା ତ ଆଗ ଆଦାୟ କରିବାକୁ ହେବ।

ଆମମାନଙ୍କର ନିଦ ଭାଙ୍ଗିଲା ଦିନ ଦୁଇଟା ବେଳେ। କିନ୍ତୁ ମିତୁ, ଖରା କାହିଁ ? ଝିପି ଝିପି ବର୍ଷା ଚାଲିଥାଏ। ବେଶ୍ ଥଣ୍ଡା ମଧ୍ୟ ପଡି ଆସିଥାଏ। ମୁଁ ପରେ ଜାଣିଲି ଯେ ଏଇଟା ହିଁ ଏ ସମୟର ନିତିଦିନିଆ ପାଗ। ଏଠି ଗରମ ପଡିବାଟା ହିଁ ଗୋଟିଏ ଆଶ୍ଚର୍ଯ୍ୟକର ଘଟଣା, ତେଣୁ ଖରା ଉଠିଲେ ଲୋକମାନେ ଦଳଦଳ ହୋଇ ପାର୍କ ବା ଖୋଲା ଜାଗାରେ ଖରାକୁ ଉପଭୋଗ କରନ୍ତି। ମୁଁ ହାଲୁକା ସୁଏଟର୍ ପିନ୍ଧି ପ୍ରସ୍ତୁତ ହେବା ବେଳେ ଭାବିଲି ଯେ ଯଦି ସକାଳେ ଗିସେପ୍‌ସନିଷ୍ଟଙ୍କ ସାଙ୍ଗରେ ଯୁକ୍ତିତର୍କ କରିଥାଆନ୍ତି ଓ ଏଆରକଣ୍ଡିସନଗ୍‌ର ଅଭାବକୁ ନେଇ ହୋଟେଲ୍ ବଦଳାଇବା ପର୍ଯ୍ୟନ୍ତ କଥା ନେଇଥାଆନ୍ତି, ତେବେ କି ହାସ୍ୟକର ପରିସ୍ଥିତି ସୃଷ୍ଟି ନ କରିଥାଆନ୍ତି !

ନିଦରୁ ଉଠି ଆମକୁ ବହୁତ ସତେଜ ଲାଗୁଥାଏ। ଆମେ ପ୍ରସ୍ତୁତ ହୋଇ ରେନ୍‌କୋଟ୍ ଓ ଛତା ଧରି ବାହାରି ପଡିଲୁ। ତୁ ଯଦି କେବେ ଲଣ୍ଡନ ଆସୁ, ତେବେ ସାଙ୍ଗରେ ନିଶ୍ଚୟ ରେନ୍‌କୋଟ୍ ଓ ଛତା ନେଇକରି ଆସିବୁ। ଏଠି ବିନା ସୂଚନାରେ ଯେଉଁଭଳି ଭାବରେ ବର୍ଷା ଆରମ୍ଭ ହୁଏ, ସେସବୁ ପାଖରେ ନ ଥିଲେ ଓଦା ହେବା ହିଁ ସାର ହେବ। ଆଉ ଗୋଟିଏ କଥା ଏଇଠି ଲେଖୁଛି। ଲଣ୍ଡନରେ ଟ୍ୟାକ୍‌ସି ଭଡା ବହୁତ ବେଶୀ। ସେଥିପାଇଁ ବସ୍ ବା ମାଟିତଳ ଟ୍ରେନ୍ (ଯାହାକୁ ମଧ୍ୟ ଅଣ୍ଡର ଗ୍ରାଉଣ୍ଡ ବା ମେଟ୍ରୋ କହନ୍ତି)ରେ ଅଧିକାଂଶ ଲୋକ ଯିବା ଆସିବା କରନ୍ତି। ଏଥିପାଇଁ ସବୁଠାରୁ ଭଲ ଉପାୟ ହେଲା ସାତଦିନିଆ ପାଶ୍ ବା ଟ୍ରାଭେଲ୍ କାର୍ଡ କରିନେବା। ଏଥିରେ ଖର୍ଚ୍ଚ ହୁଏ ବହୁତ କମ୍। ବାରମ୍ବାର ଟିକେଟ୍ କାଟିବାର ଝାମେଲା ନାହିଁ ଏବଂ ବସ୍ ଓ

ଟ୍ରେନ୍ ଭଳୟରେ ଜଣେ ମନଇଚ୍ଛା ବୁଲି ପାରିବ।

ଆମେ ପ୍ରଥମରୁ ଟ୍ରାଭେଲ୍ କାର୍ଡ କରି ନେଇଥିଲୁ। ଟ୍ରାଭେଲ୍‌କାର୍ଡ ନେଇ ଆମେ ଅଣ୍ଡରଗ୍ରାଉଣ୍ଡ ଷ୍ଟେସନ୍‌ରେ ପହଞ୍ଚିଗଲୁ। ଆମର ଲକ୍ଷ୍ୟ ପିକାଡିଲି ସର୍କସ। ପିକାଡିଲି ସର୍କସରୁ ଲଣ୍ଡନ ସହର ବୁଲି ଦେଖିବା ପାଇଁ ଗୋଟିଏ ବିଶେଷ ବସ୍‌ର ବ୍ୟବସ୍ଥା ରହିଛି। ଲଣ୍ଡନ ଟ୍ରାନ୍‌ସପୋର୍ଟ ଥଥରିଟି ଆମ ଭଳି ପ୍ରଥମଥର ପାଇଁ ଲଣ୍ଡନ ଆସିଥିବା ପର୍ଯ୍ୟଟକମାନଙ୍କର ସୁବିଧା ନିମନ୍ତେ ଏହି ବସ୍ ବ୍ୟବସ୍ଥା କରିଛନ୍ତି। ବସ୍‌ଟି ସହରର ସମସ୍ତ ପର୍ଯ୍ୟଟନସ୍ଥଳୀକୁ ନେଇଯାଏ। କିନ୍ତୁ ବସ୍‌ରୁ ଓହ୍ଲେଇ ଜଣେ ବୁଲି ଦେଖିପାରିବ ନାହିଁ। ଏଭଳି ବ୍ୟବସ୍ଥାର ଉଦ୍ଦେଶ୍ୟ ହେଲା ସହର ସଂପର୍କରେ ପର୍ଯ୍ୟଟକର ଗୋଟିଏ ପ୍ରାଥମିକ ଧାରଣା ଜନ୍ମିବା। ପ୍ରଥମେ ଥରେ ସ୍ଥାନଗୁଡ଼ିକୁ ଦେଖି ନେଲା ପରେ ସେ ନିଜର ରୁଚି ଅନୁସାରେ କେଉଁ ସ୍ଥାନକୁ ଯିବ ବା ନ ଯିବ, ସ୍ଥିର କରିପାରିବ।

ଆମେ ବସ୍‌ର ଉପର ମହଲାକୁ ଚାଲିଗଲୁ। ଏହିସବୁ ବସ୍‌ର ଉପର ମହଲାରେ ସିଟ୍ ଅଛି, କିନ୍ତୁ ଛାତ ନାହିଁ। ଫଳରେ ବାହାରର ଦୃଶ୍ୟ ସହଜରେ ଦେଖି ହୁଏ। ସେତେବେଳକୁ ବର୍ଷା ଛାଡ଼ି ଯାଇଥାଏ। ଆମେ ବସ୍‌ରେ ବସିବାର ଅଳ୍ପ ସମୟ ପରେ ବସ୍ ଛାଡ଼ିଲା।

ପିକାଡିଲି ସର୍କସର ଚକମକିଆ ରାସ୍ତା ଦେଇ ବସ୍ ପ୍ରଥମେ ପହଞ୍ଚିଲା ଟ୍ରାଫାଲ୍‌ଗର ସ୍କ୍ୱାୟାର୍‌ରେ। ଟ୍ରାଫାଲ୍‌ଗର୍ ସ୍କ୍ୱାୟାରର ଫୁଆରା, ମାଳ ମାଳ ପାରା ଓ ସ୍ତମ୍ଭ ଉପରେ ରହିଥିବା ଲର୍ଡ ନେଲ୍‌ସନ୍‌ଙ୍କର ମୂର୍ତ୍ତି ଦେଖି ମୋର ଇତିହାସ ମନେପଡ଼ିଗଲା। ଲର୍ଡ ନେଲ୍‌ସନ, ନେପୋଲିଅନ୍ ବୋନାପାର୍ଟ ଓ ଟ୍ରାଫାଲଗର୍ ଯୁଦ୍ଧ କଥା ତୁ ଇଉରୋପୀୟ ଇତିହାସରେ ନିଶ୍ଚୟ ପଢ଼ିଥିବୁ। ସମ୍ରାଟ୍ ନେପୋଲିଅନ୍‌ଙ୍କ ରାଜତ୍ୱ ସମୟରେ ଫ୍ରାନ୍‌ସର ଆଧିପତ୍ୟ ବହୁତ ବେଶୀ ବଢ଼ିଯାଇଥିଲା। ଏହି ସମୟରେ ଫ୍ରାନ୍‌ସ ଦ୍ୱାରା ଇଂଲାଣ୍ଡ ବାରମ୍ବାର ପରାଜିତ ହୋଇଥିଲା। ଫରାସୀ ସମ୍ରାଟ୍‌ଙ୍କ ବିରୁଦ୍ଧରେ ଯୁଦ୍ଧ କରି ସଫଳ ହେବା ପାଇଁ ଇଂଲାଣ୍ଡ ନିକଟରେ ରାସ୍ତା ଥିଲା ଗୋଟିଏ- ନୌଯୁଦ୍ଧ। ସେତେବେଳେ ଇଂଲାଣ୍ଡର ନୌସେନା ଥିଲା ଭୀଷଣ ଶକ୍ତିଶାଳୀ। ଶେଷରେ ଲର୍ଡ ନେଲ୍‌ସନ୍‌ଙ୍କ ନେତୃତ୍ୱରେ ଇଂଲାଣ୍ଡର ନୌସେନା ୧୮୦୫ ମସିହାରେ ଟ୍ରାଫାଲ୍‌ଗର୍ ଯୁଦ୍ଧରେ ନେପୋଲିଅନ୍‌ଙ୍କୁ ହରାଇ ଦେବାରେ ସକ୍ଷମ ହୋଇଥିଲା।

ଏହି ଘଟଣାକୁ ଅବିସ୍ମରଣୀୟ କରିବା ପାଇଁ ପ୍ରସିଦ୍ଧ ଆର୍କିଟେକ୍ଟ୍ ଜନ୍ ନାଶ୍‌ଙ୍କ ସହାୟତାରେ ୧୮୨୯ ମସିହାରେ ଟ୍ରାଫାଲ୍‌ଗର୍ ସ୍କ୍ୱାୟାର ଗଠନ କରାଯାଇଥିଲା। ସେତେବେଳେ ଏହି ସ୍ଥାନଟି ଥିଲା ରାଜାଙ୍କ ଘୋଡାଶାଳର ଗୋଟିଏ ଅଂଶ। ଘୋଡାଶାଳକୁ ସେ ସ୍ଥାନରୁ ଉଠେଇ ନିଆଯାଇ ସେହି ସ୍ଥାନରେ ନିର୍ମାଣ କରାଗଲା ଟ୍ରାଫାଲ୍‌ଗର୍ ଯୁଦ୍ଧର ସ୍ମୃତି ସ୍ଥଳ। ଏବଂ ୧୮୫ ଫୁଟ ଉଚ୍ଚ ସ୍ତମ୍ଭ ଉପରେ ସ୍ଥାପନ କରାଗଲା ଲର୍ଡ ନେଲ୍‌ସନ୍‌ଙ୍କର ମୂର୍ତ୍ତି।

ଟ୍ରାଫାଲ୍‌ଗର୍ ସ୍କ୍ୱାୟାରର ଉତ୍ତର ପୂର୍ବ କଣରେ ରହିଛି ''ସେଣ୍ଟ ମାର୍ଟିନ୍ ଇନ୍ ଦି ଫିଲ୍‌ଡ୍‌ସ'' ଚର୍ଚ୍ଚ। ଖ୍ରୀଷ୍ଟିଆନ୍ ଧର୍ମର ପ୍ରଚାର ଓ ପ୍ରସାର ଦିଗରେ ଏହି ଚର୍ଚ୍ଚର ବହୁ ଅବଦାନ ରହିଛି। କିନ୍ତୁ ମୋତେ ଜାଣି ଖୁସି ଲାଗିଲା ଯେ ବର୍ତ୍ତମାନର ପୃଥିବୀ ପ୍ରସିଦ୍ଧ ଅର୍କେଷ୍ଟ୍ରା- 'ଏକାଡେମୀ ଅଫ୍ ସେଣ୍ଟ ମାର୍ଟିନ୍ ଇନ୍ ଦି ଫିଲ୍‌ଡସ'- ଏହିଠାରୁ ହିଁ ଆରମ୍ଭ ହୋଇଥିଲା। ମୋଜାର୍ଟଙ୍କ ଜୀବନ ନେଇ ପ୍ରଯୋଜିତ ହୋଇଥିବା ଚଳଚ୍ଚିତ୍ର ''ଆମାଡିଅସ୍''ରେ ଏହି ଅର୍କେଷ୍ଟ୍ରା ଦଳଟି ସଙ୍ଗୀତ ପ୍ରଦାନ କରିଥିଲେ ଏବଂ ସେଥିପାଇଁ ଅସ୍କାର ମଧ୍ୟ ପାଇଥିଲେ। ଏବେ ମଧ୍ୟ ସଙ୍ଗୀତର ସ୍ମୃତିକୁ ଚର୍ଚ୍ଚରେ ସଂଜୀବିତ କରି ରଖାଯାଇଛି। ଅଧିକାଂଶ ଦିନ ଏହିଠାରେ ସଙ୍ଗୀତର ଆସର ବସିଥାଏ।

ଚର୍ଚ୍ଚ ସାମ୍ନା ରାସ୍ତା ଦେଇ ନ୍ୟାସନାଲ୍ ଗ୍ୟାଲେରୀ ଅଫ୍ ଆର୍ଟ ପାର ହୋଇ ଆମ ବସ୍ ଆଗେଇ ଚାଲିଲା। ବସ୍‌ରେ ଧାରା ବିବରଣୀ ଚାଲିଥାଏ। ସେଇଥିରୁ ମୁଁ ଜାଣିଲି ଯେ ଆଉ ଅଳ୍ପ ସମୟ ପରେ ଆମେ 'ୱେଷ୍ଟମିନ୍‌ଷ୍ଟର୍ ଆବେ' ଓ ପାର୍ଲିଆମେଣ୍ଟ ଗୃହ ନିକଟରେ ପହଞ୍ଚିବୁ। ପୃଥିବୀ ପ୍ରସିଦ୍ଧ ବିଗ୍‌ବେନ୍ ଦେଖିବା ପାଇଁ ମୁଁ ସେତେବେଳେ ଉତ୍କଣ୍ଠିତ ହୋଇ ଅପେକ୍ଷା କରିଥାଏ।

ବ୍ରିଟିଶ୍ ଇତିହାସରେ 'ୱେଷ୍ଟମିନ୍‌ଷ୍ଟର ଆବେ'ର ଏକ ବିଶେଷ ସ୍ଥାନ ରହିଛି। ଏହା ହେଉଛି ବ୍ରିଟିଶ ରାଜପରିବାରର ଉଭୟ ସମାଧି ଏବଂ ଅଭିଷେକ ସ୍ଥଳୀ। ଏହାର ନାମ କିଭଳି 'ୱେଷ୍ଟମିନ୍‌ଷ୍ଟର ଆବେ' ହେଲା, ସେ ସଂପର୍କରେ ଇତିହାସରୁ ଯଥେଷ୍ଟ ତଥ୍ୟ ମିଳି ନାହିଁ। କିନ୍ତୁ ଜଣାପଡେ ଯେ ୭୩୦ ଖ୍ରୀ. ଓ ୭୪୦ ଖ୍ରୀ. ମଧ୍ୟରେ ଏହି ସ୍ଥାନରେ ଛୋଟ ଚର୍ଚ୍ଚଟିଏ ଥିଲା। ସେଣ୍ଟ ପିଟର୍‌ଙ୍କ ଉଦ୍ଦେଶ୍ୟରେ ନିର୍ମିତ ଚର୍ଚ୍ଚଟିକୁ କୁହାଯାଉଥିଲା ବେନେଡିକ୍ଟାନ୍ ଆବେ। ଯେହେତୁ ଏହି ଚର୍ଚ୍ଚଟି ଲଣ୍ଡନ ସହରର ପଶ୍ଚିମରେ ଥିଲା ଏହାକୁ ମଧ୍ୟ ଅନେକେ 'ୱେଷ୍ଟର୍ଣ୍ଣ ମୋନାଷ୍ଟରି'

କହୁଥିଲେ। ସେଇଥିରୁ ବୋଧହୁଏ "ୱେଷ୍ଟମିନ୍‌ଷ୍ଟର ଆବେ" ନାମଟି ଆସିଛି। ୧୨୪୫ ମସିହାରେ ତୃତୀୟ ହେନେରୀ ଛୋଟ ଚର୍ଚ୍ଚଟିର ପୁନଃନିର୍ମାଣ କରାଇ ଥିଲେ ଏବଂ ଆମେ ବର୍ତ୍ତମାନ ଯେଉଁଭଳି ରୂପରେ ଦେଖୁଛୁ, ସେହି ରୂପ ଦେଇଥିଲେ।

'ୱେଷ୍ଟମିନ୍‌ଷ୍ଟର ଆବେ'ର ପ୍ରାୟ ଠିକ୍ ବିପରୀତରେ ରହିଛି ପାର୍ଲିଆମେଣ୍ଟ ଗୃହ ବା ୱେଷ୍ଟମିନ୍‌ଷ୍ଟର ପ୍ରାସାଦ। ଏହା ବାସ୍ତବରେ ପ୍ରାସାଦ ରୂପେ ହିଁ ଏକାଦଶ ଶତାବ୍ଦୀରେ ଗଢା ହୋଇଥିଲା। ସେତେବେଳେ ଏହା ଥିଲା ଇଂଲାଣ୍ଡ ରାଜପରିବାରଙ୍କର ଲଣ୍ଡନ ପ୍ରାସାଦ। ସମ୍ରାଟ୍ ଅଷ୍ଟମ ହେନେରୀ ହ୍ୱାଇଟ୍ ହଲ୍ ଅଧିକାର କରି ନେବା ପରେ ରାଜ ପରିବାର ୱେଷ୍ଟମିନ୍‌ଷ୍ଟର ପ୍ରାସାଦରୁ ନୂତନ ପ୍ରାସାଦକୁ ଚାଲିଗଲେ ଏବଂ ୱେଷ୍ଟମିନ୍‌ଷ୍ଟର ପ୍ରାସାଦ ପାର୍ଲିଆମେଣ୍ଟ ଗୃହରେ ପରିଣତ ହୋଇଗଲା। ଏହି ପାର୍ଲିଆମେଣ୍ଟ ଗୃହର ତିନୋଟି ଟାୱାର୍ ରହିଛି। ଏଥି ମଧ୍ୟରୁ ସବୁଠାରୁ ବେଶୀ ଜଣାଶୁଣା ହେଉଛି ୩୩୬ ଫୁଟ୍ ଉଚ୍ଚ ଭିକ୍ଟୋରିଆ ଟାୱାର୍ ବା ଯାହାକୁ କୁହାଯାଏ 'କ୍ଲକ୍ ଟାୱାର୍'। ଏହିଠାରେ ରହିଛି ବିଗ୍‌ବେନ୍ ଓ ବିଶାଳ ଘଣ୍ଟାଟି। ମିତୁ, ଅନେକଙ୍କର ଧାରଣା ଯେ ଏହି ଘଣ୍ଟାଟିର ନାମ 'ବିଗ୍‌ବେନ୍'। କିନ୍ତୁ ତାହା ଠିକ୍ ନୁହଁ। ବିଗ୍‌ବେନ୍ ହେଉଛି ଗୋଟିଏ ୧୩.୫ ଟନ୍ ଓଜନର ବେଲ୍ ବା ଘଣ୍ଟିର ନାମ। କ୍ଲକ୍ ଟାୱାର୍‌ରେ ଥିବା ଘଣ୍ଟାଟିର ମିନିଟ୍ କଣ୍ଟା '୬' ବା '୧୨' ନିକଟରେ ପହଞ୍ଚିଲେ ଘଣ୍ଟିଟି ସୁନ୍ଦର ଶବ୍ଦ କରି ବାଜିଉଠେ। ଅର୍ଥାତ୍ ପ୍ରତି ଅଧଘଣ୍ଟାକୁ ଥରେ ବିଗ୍‌ବେନ୍ ବାଜିଥାଏ। କ୍ଲକ୍ ଟାୱାର୍‌ର ଚାରି ଦିଗରେ ୨୩ ବର୍ଗ ଫୁଟ୍ ଡାଏଲ୍‌ର ଘଣ୍ଟା ରହିଛି। ଏହା ଉପରେ ଲେଖା ହୋଇଥିବା ସଂଖ୍ୟା ଗୁଡିକର ଉଚ୍ଚତା ୨ ଫୁଟ୍ ଏବଂ ମିନିଟ୍ କଣ୍ଟା ୧୪ ଫୁଟ୍ ଲମ୍ବା। ଏଇଥିରୁ ତୁ ଘଣ୍ଟାର ବିଶାଳତା ଅନୁମାନ କରି ପାରୁଥିବୁ।

ଆମ ବସ୍ ଯେତେବେଳେ କ୍ଲକ୍ ଟାୱାର୍ ସାମ୍ନା ଦେଇ ଚାଲିଗଲା, ସେତେବେଳେ ମିନିଟ୍ କଣ୍ଟା ଥିଲା '୪' ଉପରେ। 'ବିଗ୍‌ବେନ୍'ର ଶବ୍ଦ ନ ଶୁଣିବାର ଅବଶୋଷ ରହିଗଲା। ମୁଁ ସେତେବେଳେ ହିଁ ସ୍ଥିର କରିନେଲି ଯେ ପରେ ଆସି ନିଶ୍ଚୟ ଅଧିକ ସମୟ ଏଇଠାରେ କଟାଇବି। ତୁ କହ, ଯେଉଁ 'ବିଗ୍‌ବେନ୍' ସଂପର୍କରେ ଏତେ ବେଶୀ ପଢିଛି, ତାହାର ଶବ୍ଦ ନ ଶୁଣି ଫେରିଯିବି କେମିତି ?

ଏହାପରେ ଆମ ବସ୍ ଥେମ୍‌ସ୍ ନଦୀ କୂଳେ କୂଳେ ଚାଲିଲା। ଥେମ୍‌ସ୍ ନଦୀ ଉପରେ ଅସଂଖ୍ୟ ପୋଲ ରହିଛି। ଏଇଭଳି ଗୋଟିଏ ପୋଲ ଉପରେ

ଗଲାବେଳେ ବସ୍‌ର ଧାରାବିବରଣୀରୁ ଜାଣିଲି ଯେ ଦୂରରେ ଦିଶୁଥିବା ପୋଲଟି ହେଉଛି 'ଲଣ୍ଡନ ବ୍ରିଜ୍'। ପିଲାଦିନେ ଶିଖିଥିବା ନର୍ସରୀ ରାଇମ୍ ମୋର ମନେପଡିଗଲା, "London Bridge is falling down..." କିନ୍ତୁ ବର୍ତ୍ତମାନ ଯାହାକୁ ଲଣ୍ଡନ ବ୍ରିଜ୍ କୁହାଯାଉଛି ବା ଯେଉଁ ପୋଲକୁ ଆମେ ଦେଖିଲୁ ସେଇଟି ନର୍ସରୀ ରାଇମ୍‌ର ଲଣ୍ଡନ ବ୍ରିଜ୍ ନୁହଁ। ପଦ୍ୟଟି ଯେଉଁ ପୋଲକୁ ଉଦ୍ଦେଶ୍ୟ କରି ରଚିତ ହୋଇଥିଲା ସେଇଟି ହେଉଛି କାଠପୋଲଟିଏ ଏବଂ ତାହା ନିର୍ମିତ ହୋଇଥିଲା ପ୍ରଥମ ଶତାବ୍ଦୀରେ। ପୋଲଟି ଭାଙ୍ଗି ଆସିବାବେଳେ ତା' ସ୍ଥାନ ନେଉଥିଲା ଆଉ ଗୋଟିଏ କାଠ ପୋଲ। ଏଇଭଳି ସେହି ସ୍ଥାନରେ କେତେଥର ଯେ କାଠପୋଲ ନିର୍ମିତ ହୋଇଛି ତାହା କେହି ଜାଣନ୍ତି ନାହିଁ। ୧୧୬୭ ଖ୍ରୀ.ରେ କାଠ ପୋଲଟିକୁ ଉଠେଇ ଦେଇ ଦ୍ୱିତୀୟ ହେନେରୀ ପଥରରେ ପୋଲଟିଏ ନିର୍ମାଣ କରେଇ ଥିଲେ। ଏହି ପୋଲକୁ ଆହୁରି ସୁନ୍ଦର କରି ଗଢିବାର ଯୋଜନା ୧୮୨୫ ମସିହାରେ ଜନ୍ ରେନି ଦେଇଥିଲେ ଏବଂ ତାଙ୍କ ଯୋଜନା ଅନୁସାରେ ତାଙ୍କର ଦୁଇପୁଅ ଜର୍ଜ ଓ ଜନ୍ ପୋଲଟିକୁ ଗଢିଥିଲେ। କିନ୍ତୁ ୧୯୬୮ ମସିହାରେ ଏହାକୁ ୧,୦୨୫,୦୦୦ ପାଉଣ୍ଡ ମୂଲ୍ୟରେ ଆମେରିକାକୁ ବିକ୍ରି କରିଦିଆଗଲା। ପୋଲ ବିକ୍ରି କି ମଜାର ଘଟଣା କହ ତ? ତୁ ନିଶ୍ଚୟ ଭାବୁଥିବୁ ପୋଲଟି ଆମେରିକାକୁ ଗଲା କେମିତି? ମୁଁ କେଉଁଠି ପଢିଥିଲି ଯେ ପୋଲଟିକୁ ୧୦,୦୦୦ ଖଣ୍ଡ ଗ୍ରାନାଇଟ୍‌ରେ ଭାଗ କରି ଜାହାଜରେ ଆମେରିକାକୁ ପଠାଯାଇଥିଲା। ବର୍ତ୍ତମାନ ଏହି 'ଲଣ୍ଡନ ବ୍ରିଜ୍' ରହିଛି ଆମେରିକାର ଆରିଜୋନା ରାଜ୍ୟର ଲେକ୍ ହାଭାସୁ ସିଟିରେ। ଏହିଠାରେ ଥିବା କୃତ୍ରିମ ହ୍ରଦ ଉପରେ ବ୍ରିଜ୍‌ଟିର ପୁନଃନିର୍ମାଣ କରାଯାଇଛି।

ଏବେ ଥେମ୍‌ସ୍ ନଦୀ ଉପରେ ଯେଉଁ ଲଣ୍ଡନ ବ୍ରିଜ୍ ରହିଚି ତାକୁ ହାରୋଲ୍‌ଡ୍ ନକ୍‌ସ ୧୯୬୮ ମସିହାରେ ନିର୍ମାଣ କରିବା ଆରମ୍ଭ କରି ୧୯୭୩ ମସିହାରେ ଶେଷ କରିଥିଲେ। ଦେଖିବାକୁ ଗଲେ, ଏଇଟି ବେଶ୍ ନୂଆ।

ଆମ ବସ୍ ଲଣ୍ଡନ ବ୍ରିଜ୍ ଉପର ଦେଇ ଗଲାବେଳେ ପରବର୍ତ୍ତୀ ପୋଲଟିକୁ ଦେଖିଦେଇ ମୋର ଯେମିତି ନିଶ୍ୱାସ ଅଟକି ଗଲା। ମିତୁ, ସେଇଟି ଯେ ପ୍ରସିଦ୍ଧ ଟାୱାର୍ ବ୍ରିଜ୍! ଲଣ୍ଡନ ସହର କହିଲେ ଆଗ ଆମ ମନକୁ ଆସେ ବିଗ୍‌ବେନ୍ ଓ ଟାୱାର୍ ବ୍ରିଜ୍। ପୃଥିବୀର ସବୁଠାରୁ ଅଧିକ ଜଣାଶୁଣା ପୋଲ ବୋଧହୁଏ ଏଇଟି। ୮୦୦ ଫୁଟ୍ ଲମ୍ବା ପୋଲଟିକୁ ସାର୍ ହୋରେସ୍ ଜୋନ୍‌ସ ଏବଂ ସାର୍

ଜନ୍ ଉଲ୍ଫ ବ୍ୟାରି ଡିଜାଇନ୍ କରିଥିଲେ ଏବଂ ଏହା ନିର୍ମିତ ହୋଇଥିଲା ୧୮୮୬ରେ। ତୁ ଶୁଣିଲେ ଆଶ୍ଚର୍ଯ୍ୟ ହେବୁ ଯେ କେବଳ ପୋଲଟିକୁ ନିର୍ମାଣ କରିବା ପାଇଁ ସେ ଯୁଗରେ ୮୦୦,୦୦୦ ପାଉଣ୍ଡ ଖର୍ଚ୍ଚ ହୋଇଥିଲା। ପୋଲଟି ପାଣିଠାରୁ ୨୯.୫ ଫୁଟ୍ ଉପରେ ରହିଛି। ଥେମ୍ସ୍ ନଦୀ ଉପର ଦେଇ ବଡ ବଡ ଜାହାଜ ଗଲାବେଳେ ଏହି ପୋଲଟି ମଝିରୁ ଦୁଇଖଣ୍ଡ ହୋଇ ୯୦ ସେକେଣ୍ଡ ମଧ୍ୟରେ ଉପରକୁ ଉଠିଯାଏ। ପୋଲର ଦୁଇ କଡରେ ଥିବା ଟାୱାର୍‌କୁ ଦୁଇଟି "ଫୁଟବ୍ରିଜ୍" ଦ୍ୱାରା ଯୋଡା ହୋଇଛି। ଫୁଟ୍ ବ୍ରିଜ୍ ଅର୍ଥାତ୍ କେବଳ ପଦଯାତ୍ରୀଙ୍କ ପାଇଁ ଉଦ୍ଦିଷ୍ଟ ପୋଲ। ଏଇଠାରୁ ଲଣ୍ଡନ ସହର ଓ ଥେମ୍ସ୍ ନଦୀର ଦୃଶ୍ୟ ଉପଭୋଗ କରିହୁଏ। କିନ୍ତୁ ବିଂଶ ଶତାବ୍ଦୀର ଆରମ୍ଭରେ ଦେଖାଗଲା ଯେ ଏହି ଫୁଟବ୍ରିଜ୍ ଦୁଇଟି ହିଁ ହୋଇଛି ଅଧିକାଂଶ ଅସାମାଜିକ ଘଟଣାର ପୀଠସ୍ଥଳୀ। ଏହିଠାରେ ଚୋରି ଡକାୟତିଠାରୁ ଆରମ୍ଭ କରି ବେଶ୍ୟାବୃତ୍ତି ପର୍ଯ୍ୟନ୍ତ ସବୁ ଚାଲିଥିଲା। ସେଇଥିପାଇଁ ୧୯୦୯ରେ ଜନସାଧାରଣଙ୍କ ପାଇଁ ଏହି ଫୁଟ୍ ବ୍ରିଜ୍‌ର ବ୍ୟବହାର ବନ୍ଦ କରି ଦିଆଗଲା। ୧୯୮୨ ମସିହାରେ ଏହାକୁ ପୁଣି ଥରେ ଖୋଲାଯାଇଛି।

ଟାୱାର୍ ବ୍ରିଜ୍ ଦେଇ ଆମ ବସ୍ ପହଞ୍ଚିଲା ଲଣ୍ଡନ ଟାୱାର୍ ନିକଟରେ। କେତେ ଯୁଗର କେତେ କାହାଣୀ ସାଇତା ହୋଇ ରହିଛି ଏହି ଟାୱାର୍ ଅଫ୍ ଲଣ୍ଡନ୍‌ର ପ୍ରତିଟି ପଥର ତଳେ। କେତେ ଲୋକଙ୍କର ଦୀର୍ଘନିଶ୍ୱାସ, ହାହାକାର ମିଶିଯାଇଛି ଏହାର ପବନରେ। ଅଥଚ ଏହାର ପ୍ରାଚୀନତମ ଅଂଶ (ଯାହାକୁ କୁହାଯାଏ ହ୍ୱାଇଟ୍ ଟାୱାର)୧୦୭୮ ଖ୍ରୀ.ରେ ନିର୍ମାଣ କରାଇବାବେଳେ ବିଜେତା ଉଇଲିଅମ୍ (William, the Conqueror) ଗୋଟିଏ କ୍ଷୁଦ୍ର ପ୍ରାସାଦର ପରିକଳ୍ପନା ହିଁ କରିଥିଲେ। ଏହାକୁ ତୃତୀୟ ହେନେରୀ ବିଶାଳକାୟ ଦୁର୍ଗରେ ପରିଣତ କରିଥିଲେ। ତା'ପରେ ପ୍ରଥମ ଏଡୱାର୍ଡ ଏହା ଚାରିପଟେ ବିରାଟ ପ୍ରାଚୀର ଓ ଖାଡି ନିର୍ମାଣ କରାଇଥିଲେ। ଏସବୁ ସତ୍ତ୍ୱେ ଲଣ୍ଡନ ଟାୱାର୍ କେବେହେଲେ ଗୋଟିଏ ଦୁର୍ଗ ରୂପେ ବ୍ୟବହୃତ ହୋଇ ପାରି ନ ଥିଲା। ବରଂ ଏହାର କଳଙ୍କମୟ ଇତିହାସରୁ ଜଣାପଡେ ଯେ ଏହା କେବଳ ଥିଲା ରାଜ-ବନ୍ଦୀଗୃହ। ପ୍ରଥମ ଏଡୱାର୍ଡଙ୍କ ସମୟରେ ସ୍କଟ୍‌ଲ୍ୟାଣ୍ଡର ରାଜା ଦ୍ୱିତୀୟ ଡେଭିଡଙ୍କୁ ଓ ତୃତୀୟ ଏଡ୍‌ୱାର୍ଡଙ୍କ ସମୟରେ ଫ୍ରାନ୍ସର ରାଜା ଜନ୍‌ଙ୍କୁ ଏହିଠାରେ ବନ୍ଦୀ କରି ରଖାଯାଇଥିଲା। ପଞ୍ଚଦଶ ଶତାବ୍ଦୀରେ ଟାୱାର ଅଫ୍ ଲଣ୍ଡନ ରାଜପରିବାରର ବହୁ ସଦସ୍ୟଙ୍କ ରକ୍ତରେ ରଂଜିତ ହୋଇ

ଯାଉଥିଲା। ଏମାନଙ୍କ ମଧ୍ୟରେ ଥିଲେ ଷଷ୍ଠ ହେନେରୀ, କ୍ଲାରେନ୍‌ସର ଡ୍ୟୁକ୍, ପଞ୍ଚମ ଏଡ୍‌ୱାର୍ଡ ଓ ତାଙ୍କର ସାନଭାଇ। ରାଜା ଅଷ୍ଟମ ହେନେରୀ ଯାହାଙ୍କର ରଙ୍ଗୀନ ଜୀବନର କାହାଣୀ ସେକ୍ସପିଅରଙ୍କ ଠାରୁ ଆରମ୍ଭ କରି ବହୁ ଲେଖକ ଲିପିବଦ୍ଧ କରି ଯାଇଛନ୍ତି, ଏହିଠାରେ ହିଁ କ୍ୟାଥେରିନ୍ ଅଫ୍ ଆରାଗନ୍ ଓ ପରେ ଆନି ବୋଲେନ୍‌ଙ୍କୁ ବିବାହ କରିଥିଲେ। ଏବଂ ଏହିଠାରେ ହିଁ ସେ ଆନି ବୋଲେନ୍‌ଙ୍କ ବିରୁଦ୍ଧରେ ମିଛ ମକଦ୍ଦମା ଅଣାଇ ତାଙ୍କର ଶିରଚ୍ଛେଦ କରାଇ ଥିଲେ। ବିଂଶ ଶତାବ୍ଦୀରେ ମଧ୍ୟ ଏହିଠାରେ ବହୁ ପ୍ରସିଦ୍ଧ ଲୋକଙ୍କୁ ବନ୍ଦୀ ଏବଂ ସେମାନଙ୍କ ମଧ୍ୟରୁ କେତେକଙ୍କୁ ହତ୍ୟା କରାଯାଇଛି। ଦୁଇ ବିଶ୍ୱଯୁଦ୍ଧ ସମୟରେ କେତେ ଗୁପ୍ତଚର ଯେ ଏହିଠାରେ ଜୀବନର ଶେଷ ମୁହୂର୍ତ୍ତ କଟାଇଛନ୍ତି, ତାହାର ହିସାବ କିଏ ରଖିଛି ?

ଏହି ଲଣ୍ଡନ ଟାୱାର ଭିତରେ, ଧଳା ଟାୱାରର ପଶ୍ଚିମରେ ରହିଛି କ୍ରାଉନ୍ ଜୁଏଲ୍‌ସ ବା ରାଜ ପରିବାରର ଅଳଙ୍କାର। ଇଂଲାଣ୍ଡର ଆଧିପତ୍ୟ ଯେତେବେଳେ ପୃଥିବୀର ବିଭିନ୍ନ ଅଂଶରେ ବିସ୍ତାରିତ ହୋଇଥିଲା, ସେତେବେଳେ ସେସବୁ ସ୍ଥାନରୁ ଅଣାଯାଇଥିଲା ବହୁ ମୂଲ୍ୟବାନ ଅଳଙ୍କାର। ଏସବୁକୁ ମଧ୍ୟ ଏହିଠାରେ ରଖାଯାଇଛି। ସେସବୁ ମଧ୍ୟରେ ରହିଛି ବିଖ୍ୟାତ କୋହିନୁର ହୀରା, ଯାହାକୁ କି ବ୍ରିଟିଶ୍ ଇଷ୍ଟ ଇଣ୍ଡିଆ କଂପାନୀ ଭାରତରୁ ନେଇଯାଇ ୧୮୫୦ ମସିହାରେ ରାଣୀ ଭିକ୍ଟୋରିଆଙ୍କୁ ଉପହାର ଦେଇଥିଲା।

ଟାୱାର୍ ଅଫ୍ ଲଣ୍ଡନରୁ ବାହାରି ଫ୍ଲିଟ୍‌ଷ୍ଟ୍ରିଟ୍ (ଯେଉଁଠି କି ଲଣ୍ଡନର ଅଧିକାଂଶ ଅଫିସ୍ ରହିଛି) ଦେଇ ଆମ ବସ୍ ପହଞ୍ଚିଲା ସେଣ୍ଟ ପଲ୍‌ଙ୍କ କ୍ୟାଥେଡ୍ରାଲ୍ (St. Paul's Cathedral) ନିକଟରେ। କେତେ ଜଣାଶୁଣା ଏଇ କ୍ୟାଥେଡ୍ରାଲ୍‌ଟି ଆଖି ସାମ୍ନାରେ ଦେଖି ମୁଁ ବିଭୋର ହୋଇ ଉଠୁଥାଏ। ଜାଣିଛୁ ମିତୁ, ବର୍ତ୍ତମାନ ଯେଉଁଠାରେ ସେଣ୍ଟ ପଲ୍‌ଙ୍କ କ୍ୟାଥେଡ୍ରାଲ୍ ରହିଛି, ସେଇଠାରେ ବହୁ ବର୍ଷ ଆଗରୁ ଚର୍ଚ୍ଚଟିଏ ଥିଲା ଏବଂ ଏହି ଚର୍ଚ୍ଚରେ ଥରେ ନୁହେଁ, ଦୁଇଥର ମଧ୍ୟ ନୁହଁ, ତିନିଥର ନିଆଁ ଲାଗି ତିନିଥର ଯାକ ଏହା ସଂପୂର୍ଣ୍ଣ ରୂପେ ପାଉଁଶ ହୋଇ ଯାଇଥିଲା। ପ୍ରଥମ ଥର ୯୬୧ ଖ୍ରୀ.ରେ, ଦ୍ୱିତୀୟ ଥର ୧୦୮୭ ଖ୍ରୀ.ରେ ଓ ତୃତୀୟଥର ୧୧୩୫ ଖ୍ରୀ.ରେ ଚର୍ଚ୍ଚଟି ପୋଡିଯିବା ପରେ ଦ୍ୱାଦଶ ଶତାବ୍ଦୀରେ ଏହାର ନିର୍ମାଣ କାର୍ଯ୍ୟ ଆରମ୍ଭ ହେଲା। କିନ୍ତୁ ମଧ୍ୟଯୁଗରେ କ୍ୟାଥେଡ୍ରାଲ୍‌ଟିର ବହୁ ଅପବ୍ୟବହାର

କରାଯାଉଥିବାର ସୂଚନା ମିଳେ। ସେତେବେଳେ ଧର୍ମ ଚର୍ଚ୍ଚା ଅପେକ୍ଷା ରାଜନୀତି ସଭା ଓ ଧର୍ମ ବିରୋଧୀ ଆଲୋଚନାମାନ ଏହି କ୍ୟାଥେଡ୍ରାଲ୍‌ରେ ହିଁ ସ୍ଥାନ ନେଉଥିଲା। କେବଳ ସେତିକି ନୁହଁ, କ୍ୟାଥେଡ୍ରାଲ୍‌ର ପରିସୀମା ଭିତରେ ବହୁ ଦୋକାନ ବଜାର ଆରମ୍ଭ ହୋଇ ସ୍ଥାନଟିର ବିଶୃଙ୍ଖଳତା ଓ ସୌନ୍ଦର୍ଯ୍ୟ ନଷ୍ଟ ହୋଇଯାଇ ଥିଲା। ଦ୍ୱିତୀୟ ଚାର୍ଲସ୍ ଯେତେବେଳେ ଇଂଲାଣ୍ଡର ରାଜସିଂହାସନରେ ବସିଲେ, ସେତେବେଳେ ସେ କ୍ୟାଥେଡ୍ରାଲ୍‌ଟିର ପୂର୍ବ ଗୌରବ ଫେରାଇ ଆଣିବା ପାଇଁ ସ୍ଥିର କଲେ। ଏହି ଦାୟିତ୍ୱ ଦିଆଗଲା ଖ୍ରୀଷ୍ଟୋଫର୍ ରେନ୍‌ଙ୍କୁ। କିନ୍ତୁ ରେନ୍‌ଙ୍କର କାର୍ଯ୍ୟ ଆରମ୍ଭ ହେବାର ଅଳ୍ପ କିଛି ମାସ ପରେ ବିଶାଳ ଲଣ୍ଡନ ଅଗ୍ନିକାଣ୍ଡ (The Great London Fire) ଘଟିଗଲା ଏବଂ ଚତୁର୍ଥଥର ପାଇଁ ଚର୍ଚ୍ଚଟି ପୋଡି ଧ୍ୱଂସ ହୋଇଗଲା।

ହତୋତ୍ସାହ ନ ହୋଇ ୧୬୭୫ ଖ୍ରୀ.ରେ ଖ୍ରୀଷ୍ଟୋଫର ରେନ୍ ପୁଣିଥରେ କ୍ୟାଥେଡ୍ରାଲ୍ ନିର୍ମାଣ କାର୍ଯ୍ୟ ଆରମ୍ଭ କଲେ ଏବଂ ୧୭୧୦ ମସିହାରେ ୭୮ ବର୍ଷ ବୟସରେ ସେ ଏହି ନିର୍ମାଣ କାର୍ଯ୍ୟ ଶେଷ କଲେ। କ୍ୟାଥେଡ୍ରାଲ୍ ନିର୍ମାଣ କରିବା ପାଇଁ ଏତେଗୁଡ଼ିଏ ବର୍ଷ ନେଉଥିବାରୁ ରେନ୍‌ଙ୍କୁ ବହୁ ସମାଲୋଚନାର ଶୀକାର ହେବାକୁ ପଡିଥିଲା ଏବଂ ଉଭୟ ମାନସିକ ଓ ଆର୍ଥିକ ଯନ୍ତ୍ରଣା ଭୋଗ କରିବାକୁ ହୋଇଥିଲା। କ୍ୟାଥେଡ୍ରାଲ୍‌ର ଗଠନ କାଳ ମଧ୍ୟରେ ତାଙ୍କର ଦରମା ମଧ୍ୟ କମେଇ ଦିଆଯାଇଥିଲା। କିନ୍ତୁ ଏସବୁ ରେନ୍‌ଙ୍କୁ ତାଙ୍କର ଲକ୍ଷ୍ୟପଥରୁ ବିଚଳିତ କରି ପାରି ନ ଥିଲା। ସେ ଏଭଳି ଏକ କ୍ୟାଥେଡ୍ରାଲ୍ ଗଢିବାକୁ ଚାହିଁଥିଲେ ଯାହାକି ପୃଥିବୀର ଶ୍ରେଷ୍ଠ କ୍ୟାଥେଡ୍ରାଲ ମଧ୍ୟରେ ଅନ୍ୟତମ ହେବ। ସେଣ୍ଟ ପଲ୍‌ର ସୁନେଲୀ କ୍ରସ୍ ଓ ଗମ୍ବୁଜ ଦେଖିବା ପରେ ମୋର ମନେହେଲା ଖ୍ରୀଷ୍ଟୋଫର୍ ରେନ୍‌ଙ୍କର ସ୍ୱପ୍ନ ବାସ୍ତବିକ ସଫଳ ହୋଇଛି।

ଥେମ୍‌ସ୍ ନଦୀ କୂଳ ଦେଇ ବସ୍ ଫେରି ଆସିଲା ପିକାଡିଲି ସର୍କସକୁ। ଆମେ ଯେଉଁ ସ୍ଥାନରୁ ଯାତ୍ରା ଆରମ୍ଭ କରିଥିଲୁ, ଠିକ୍ ସେଇଠିକୁ। ସେତେବେଳେ ସନ୍ଧ୍ୟା ହେବାକୁ ଅନେକ ଡେରି। ଏଠି ଯେ ସାଢେ ନଅଟା, ଦଶଟା ବେଳକୁ ଅନ୍ଧାର ହୁଏ। ପିକାଡିଲିର ଷ୍ଟାଚ୍ୟୁ ଅଫ୍ ଇରସ୍ (Statue of Eros)ଦେଇ ଆମେ ଟ୍ରାଫାଲ୍‌ଗର ସ୍କୋୟାର୍ ନିକଟକୁ ଚାଲି ଆସିଲୁ ଆଉ ଟିକିଏ ନିକଟରୁ ଏଇ ପ୍ରସିଦ୍ଧ ସ୍ଥାନଟିକୁ ଦେଖିବା ପାଇଁ।

କିଛି ସମୟ ସେଇଠାରେ କଟାଇ ମେଟ୍ରୋରେ ଫେରିଆସିବା ବେଳେ ମୋର କାହିଁକି ମନେ ହେଲା ଯେ ଲଣ୍ଡନ ଏବେ ଯେମିତି କ୍ଷୟ ହୋଇଯାଉଛି। ଏକଦା ବ୍ରିଟିଶ ପତାକା ପୃଥିବୀର ଅଧିକାଂଶ ଅଞ୍ଚଳରେ ଗର୍ବର ସହିତ ଉଡୁଥିଲା। ବ୍ରିଟିଶ୍ ସାମ୍ରାଜ୍ୟର ରାଜଧାନୀ ଲଣ୍ଡନ ନିୟନ୍ତ୍ରଣ କରୁଥିଲା ବହୁ ଦେଶର ଭାଗ୍ୟ ଓ ଭବିଷ୍ୟତ। କାହିଁ ସେ ଲଣ୍ଡନ? ମିତୁ, ଲଣ୍ଡନ ସହରର ପ୍ରତି ପଥର ଦେହରେ ଇତିହାସ ଲିପିବଦ୍ଧ ହୋଇ ରହିଛି, ମାଟିର ପ୍ରତି ବର୍ଗକ୍ଷେତ୍ରରେ ସାଇତା ହୋଇ ରହିଛି ଅସଂଖ୍ୟ କାହାଣୀ। କିନ୍ତୁ ସହରଟିର ପୂର୍ବ ଗୌରବ ଆଉ ନାହିଁ। ଆମେରିକାର ବିଭିନ୍ନ ପର୍ଯ୍ୟଟକସ୍ଥଳୀକୁ ଯେପରି ସୁନ୍ଦର ଓ ଆକର୍ଷଣୀୟ କରି ରଖାଯାଇଛି, ତା'ର ଘୋର ଅଭାବ ରହିଛି ଲଣ୍ଡନ ସହରର ବହୁ ପ୍ରାଚୀନ ଓ ଅଧିକ ଗୌରବମୟ ସ୍ଥାନମାନଙ୍କରେ। ତତେ କେତୋଟି ଉଦାହରଣ ଦେଉଛି। ଯେମିତି ପିକାଡିଲିର ଇରସ୍ଙ୍କ ମୂର୍ତ୍ତି। ୧୮୯୩ରେ ଯେତେବେଳେ ମୂର୍ତ୍ତିଟି ପିକାଡିଲି ସର୍କସରେ ସ୍ଥାନ ପାଇଲା, ସେତେବେଳେ ଏହା ଖୁବ୍ ଜନପ୍ରିୟ ହୋଇଥିଲା। ମୁଁ କେତେ ବହିରେ ଆଲ୍‌ଫ୍ରେଡ୍ ଗିଲ୍‌ବର୍ଟଙ୍କ ହାତତିଆରି 'ଇରସ୍' ସଂପର୍କରେ ପଢ଼ିଛି। ହେଲେ ସେହି ଇରସ୍‌ର ଏବେ କି ଅବସ୍ଥା! ତଳେ ଖେଳେଇ ହୋଇ ପଡିଥିବା ଆବର୍ଜନା ଓ ସେଇଠି ଘେରି ବସିଥିବା ହିପ୍‌ପୀ ଦଳଙ୍କ ଆଚରଣ ଇରସ୍ ମୂର୍ତ୍ତିର ସୌନ୍ଦର୍ଯ୍ୟକୁ ମ୍ଳାନ କରି ଦେଇଛି ଯେମିତି। ସେଇଭଳି ଟ୍ରାଫଲ୍‌ଗର୍ ସ୍କ୍ୱାୟାରରେ ଯେମିତି ଭାବରେ ଛିଣ୍ଡା କାଗଜ, ଆଇସ୍‌କ୍ରିମ୍ କପ୍, କୋଲ୍‌ଡ ଡ୍ରିଙ୍କର ଟିଣ ପଡିଥିଲା, ସେସବୁକୁ ଦେଖିଲେ କାହା ମନ ଖରାପ ନ ହେବ?

ଲଣ୍ଡନ ସହରର ଦୂରବସ୍ଥାର ଆଉ ଗୋଟିଏ ପ୍ରମାଣ ମିଳିଲା ସେଠିକାର ଚିଡିଆଖାନାରୁ। ଚିଡିଆଖାନା ପ୍ରତି ପିଲାମାନଙ୍କର କି ଯେ ଆକର୍ଷଣ, ସେ କଥା ତ ତୁ ଜାଣୁ ନିଶ୍ଚୟ। ତା'ଛଡା ସେମାନେ କୌଣସି ଗୋଟିଏ ବହିରେ ପଢିଥିଲେ ଯେ ଲଣ୍ଡନ୍ ଚିଡିଆଖାନାରେ ପ୍ରାୟ ଦେଖିବାକୁ ମିଳୁ ନ ଥିବା ବହୁ ଜୀବଜନ୍ତୁ ରହିଛନ୍ତି। ତେଣୁ ପରଦିନ ସକାଳୁ ଉଠି ସେମାନେ ଚିଡିଆଖାନା ଯିବା ପାଇଁ ଜିଦ୍ କଲେ। ସେମାନଙ୍କର ଇଚ୍ଛା ଭାଙ୍ଗି ନ ପାରି ଆମେ ଚିଡିଆଖାନା ବାହାରିଲୁ। କିନ୍ତୁ ରାସ୍ତା ତ ଜଣା ନ ଥିଲା। ତେଣୁ ଯିବା ପୂର୍ବରୁ ରିସେପ୍‌ସନିଷ୍ଟଙ୍କଠାରୁ କେଉଁ ମେଟ୍ରୋ ବା ବସ୍ ଧରିବାକୁ ହେବ, ସେକଥା ବୁଝି ନେଲୁ। ଆମକୁ ରାସ୍ତା ବତେଇ ସାରି ରିସେପ୍‌ସନିଷ୍ଟ ଜଣକ କହିଲେ, "ଆପଣମାନେ ଖୁବ୍

ଭଲ ସମୟରେ ଲଣ୍ଡନ ଆସିଛନ୍ତି। ଆଉ ଦୁଇମାସ ପରେ ଆସିଥିଲେ ଚିଡ଼ିଆଖାନା ଦେଖି ପାରି ନଥାଆନ୍ତେ।" ତାଙ୍କଠାରୁ ଜାଣିଲୁ ଯେ ଚିଡ଼ିଆଖାନାର ଖର୍ଚ୍ଚ ସରକାର ସମ୍ଭାଳି ପାରୁ ନାହାନ୍ତି। ତେଣୁ ଆସନ୍ତା ସେପ୍ଟେମ୍ବର ମାସ ବେଳକୁ ଚିଡ଼ିଆଖାନା ବନ୍ଦ ହୋଇ ଯିବାର ଗୋଟିଏ ସମ୍ଭାବନା ରହିଛି।

ସରକାରଙ୍କର ଏହି ନିଷ୍ପତ୍ତି ନେଇ ଅବଶ୍ୟ ବହୁ ତର୍କ, ବିତର୍କ ଚାଲିଛି। ଚିଡ଼ିଆଖାନାର କର୍ମକର୍ତ୍ତା ଚିଡ଼ିଆଖାନାକୁ ଧରି ରଖିବାପାଇଁ ସବୁପ୍ରକାରର ଚେଷ୍ଟା କରୁଛନ୍ତି। ସେମାନଙ୍କର ଚେଷ୍ଟା ଯଦି ସଫଳ ନ ହୁଏ, ତେବେ ଚିଡ଼ିଆଖାନାର ଜୀବଜନ୍ତୁମାନଙ୍କୁ ଲଣ୍ଡନ ବାହାରର କୌଣସି ଚିଡ଼ିଆଖାନାକୁ ଯିବା ପାଇଁ ପଡ଼ିବ।

ଲଣ୍ଡନ ଚିଡ଼ିଆଖାନାଟି ରହିଛି ରିଜେଣ୍ଟ ପାର୍କ ଅଞ୍ଚଳରେ। ଏଠିକାର ଅନ୍ୟାନ୍ୟ ବିଶାଳପାର୍କ ଭଳି ରିଜେଣ୍ଟ ପାର୍କ ରାଜା ଅଷ୍ଟମ ହେନେରୀଙ୍କ ବିଳାସୀ ଜୀବନର ଏକ ଶ୍ରେଷ୍ଠ ଉଦାହରଣ। ରାଜାଙ୍କର ଶୀକାର ନିଶାକୁ ସାକାର ରୂପ ଦେବା ପାଇଁ ୪୭୨ ଏକର ଜମି ଉପରେ ପାର୍କଟି ଗଠିତ ହୋଇଥିଲା। ଉନବିଂଶ ଶତାବ୍ଦୀ ଆରମ୍ଭରେ ଏହି ପାର୍କରେ ବହୁ ପରିବର୍ତ୍ତନ ଅଣାଗଲା। ଖ୍ରୀଷ୍ଟୋଫର୍ ରେନ୍‌ଙ୍କୁ ବାଦ୍ ଦେଇ ଯେମିତି ସେଣ୍ଟ ପଲ୍‌ଙ୍କ କ୍ୟାଥେଡ୍ରାଲ ବିଷୟରେ ଚିନ୍ତା କରି ହୁଏ ନାହିଁ, ସେଇଭଳି ଜନ୍ ନାଶ୍‌ଙ୍କ ନାମ ଉଲ୍ଲେଖ ନ କଲେ ରିଜେଣ୍ଟ ପାର୍କର ଇତିହାସ ସଂପୂର୍ଣ୍ଣ ହେବ ନାହିଁ। ଶୀକାର ପାଇଁ ଉଦ୍ଦିଷ୍ଟ ଅଞ୍ଚଳକୁ ଗୋଟିଏ ସୁନ୍ଦର ପାର୍କରେ ପରିଣତ କରିବା କ'ଣ କିଛି ସହଜ କଥା ? ତଥାପି ବହୁ କଷ୍ଟ ସ୍ୱୀକାର କରି, ଅନେକ ଯୋଜନା କରି ଜନ୍ ନାଶ୍ ଏହିଠାରେ ଛୋଟ ଛୋଟ ଫୁଲ ବଗିଚା ଓ ରିଜେଣ୍ଟ କେନାଲ ଗଠନ କରିଥିଲେ। ତା'ଛଡ଼ା ସେ ୨୨ ଏକର ଜମି ଉପରେ ଗୋଟିଏ କୃତ୍ରିମ ହ୍ରଦର ଶିଳାନ୍ୟାସ କରିଥିଲେ।

ରିଜେଣ୍ଟ ପାର୍କର ଉତ୍ତରରେ ଥିବା ୫ ଏକର ଜମି ଚିଡ଼ିଆଖାନା ଉଦ୍ଦେଶ୍ୟରେ ରଖାଯାଇଥିଲା। କିନ୍ତୁ ଏହାକୁ ୧୮୨୬ ଖ୍ରୀ.ରେ ରୂପ ଦେଇଥିଲେ ସାର୍ ଷ୍ଟାମ୍‌ଫୋର୍ଡ ରାଫଲସ୍ ଓ ସାର୍ ହମ୍ଫ୍ରେ ଡେଭି। ସେଇଥିରୁ ବଢ଼ି ବଢ଼ି ବର୍ତ୍ତମାନ ଚିଡ଼ିଆଖାନାର ଆୟତନ ହେଉଛି ୩୫ ଏକର। ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଏହି ଚିଡ଼ିଆଖାନା ବେଶ୍ ଜନପ୍ରିୟ ଥିଲା। କିନ୍ତୁ ୧୯୫୦ ପରେ ସରକାର ଏହାର ଯଥାଯଥ ଯତ୍ନ ନେଇ ପାରିଲେ ନାହିଁ। ସେଥିପାଇଁ ଏହାର ଜନପ୍ରିୟତା କ୍ରମଶଃ କମିବାକୁ ଲାଗିଛି।

ହେଲେ ମିତୁ, ଆମର ଦିନଟି ଖୁବ୍ ସୁନ୍ଦର କଟିଲା। ଖରା ଉଠି ନ ଥିଲା। କିନ୍ତୁ ବର୍ଷା ମଧ୍ୟ ନ ଥିଲା। ମେଘଢଙ୍କା ଆକାଶ। ସାମାନ୍ୟ ଥଣ୍ଡା ଥଣ୍ଡା ଭାବ। ତେଣୁ ଚାଲି ଚାଲି ବୁଲିବାକୁ ଭାରି ବଢ଼ିଆ ଲାଗୁଥାଏ। ଆଉ ସତକଥା, କେତେ ନୂଆ ନୂଆ ଜୀବଜନ୍ତୁ ଏଇଠାରେ ରହିଛନ୍ତି। ଯାହା ଆମକୁ ବହୁତ ଭଲ ଲାଗିଲା, ତାହା ହେଉଛି ପାଣ୍ଡା (Panda)। ଛବି ବହିରେ ଦେଖିଥିବା 'ପାଣ୍ଡା'କୁ ଆଖି ସାମ୍ନାରେ ଦେଖି ପିଲାମାନେ ଆନନ୍ଦରେ ନାଚି ଉଠିଲେ। ପାଣ୍ଡା ବ୍ୟତୀତ ସେମାନଙ୍କ ପାଇଁ ଅନ୍ୟ ଆକର୍ଷଣ ହେଲା ଗରିଲା ଓ ସିମ୍ପାଜି। ଦିନର ବେଶ୍ ଭାଗ ସମୟ ଗରିଲା ଓ ସିମ୍ପାଜିଙ୍କର ପଂଜୁରୀ ନିକଟରେ ଆମର କଟିଗଲା।

ଭୀଷଣ କ୍ଳାନ୍ତ ହୋଇ ଗତକାଲି ସନ୍ଧ୍ୟାରେ ଚିଡ଼ିଆଖାନାରୁ ଫେରିଥିଲେ ମଧ୍ୟ ଆଜି ସକାଳେ ନିଦରୁ ଉଠିବା ବେଳେ ପିଲାମାନେ କୌଣସି ରକମର ଅସୁବିଧା କଲେ ନାହିଁ। କାରଣ ଆମେ ଆଗରୁ ତାଙ୍କୁ କହି ରଖିଥିଲୁ ଯେ ପାଗ ଯଦି ଭଲ ହୁଏ ତେବେ ଆଜି ବକିଙ୍ଗହାମ୍ ପ୍ରାସାଦ ଦେଖାଇବାକୁ ନେଇଯିବୁ। ସେମାନେ ଆଗରୁ ହୁଏତ ପ୍ରାସାଦ କେତୋଟି ଦେଖିଛନ୍ତି। କିନ୍ତୁ ସତ ରାଣୀ, ସତ ଯୁବରାଜ ରହୁଥିବା ପ୍ରାସାଦର ଆକର୍ଷଣ ଭିନ୍ନ। ମୋ ପାଇଁ ଅବଶ୍ୟ ପ୍ରାସାଦ ଅପେକ୍ଷା "Changing the Guard" ଉତ୍ସବର ଆକର୍ଷଣ ଥିଲା ଅଧିକ। ପ୍ରାସାଦ ସାମ୍ନାରେ ଠିଆ ହୋଇଥିବା ପ୍ରହରୀକୁ ବଦଳାଇବା ସମୟରେ ଗୋଟିଏ ପ୍ୟାରେଡ ହୋଇଥାଏ। ଏଇଟି ହିଁ 'Changing the Guard'ଉତ୍ସବ। ମେ ମାସରୁ ଅଗଷ୍ଟ ମାସ ପର୍ଯ୍ୟନ୍ତ ଏହା ପ୍ରତିଦିନ ହୋଇଥାଏ। କିନ୍ତୁ ଯେଉଁଦିନ ବେଶୀ ବର୍ଷା ହୁଏ, ସେଦିନ ଏହାକୁ ବାତିଲ କରି ଦିଆଯାଏ। ଭାଗ୍ୟକୁ ପାଗ ଥିଲା ବଢ଼ିଆ। ସମୟ ନଷ୍ଟ ନ କରି ଆମେ ଶୀଘ୍ର ବାହାରି ପଡ଼ିଲୁ। ଏହି ଗାର୍ଡ ବଦଳେଇବା ଉତ୍ସବ ଦେଖିବା ପାଇଁ ଏତେ ଭିଡ ହୁଏ ଯେ ଠିଆ ହେବା ପାଇଁ ଜାଗା ମିଳେ ନାହିଁ। ସେଥିପାଇଁ ଶୀଘ୍ର ପହଞ୍ଚି ଗଲେ ଭଲ। ମେଟ୍ରୋରେ ଗ୍ରୀନ୍‌ପାର୍କ ଷ୍ଟେସନ୍‌ରେ ଓହ୍ଲେଇ ପାର୍କ ଭିତର ଦେଇ ପ୍ରାସାଦକୁ ଯିବାକୁ ହୁଏ। ପ୍ରାସାଦ ସାମ୍ନାରେ ରହିଛି ରାଣୀ ଭିକ୍ଟୋରିଆଙ୍କ ଧଳା ମାର୍ବଲରେ ତିଆରି ମୂର୍ତ୍ତି, ଯାହାକୁ ମଧ୍ୟ କୁହାଯାଏ ଭିକ୍ଟୋରିଆ ମେମୋରିଆଲ୍। ଏହିଠାରୁ ପ୍ୟାରେଡ୍‌ଟି ଭଲ ଭାବରେ ଦେଖିହୁଏ। କିନ୍ତୁ ମୋର ତ ଫଟୋ ଉଠେଇବାର ଇଚ୍ଛା। ସେଥିପାଇଁ ଆମେ ପ୍ରାସାଦର ଗ୍ରିଲ୍ ପାଚେରୀ ନିକଟକୁ ଚାଲିଗଲୁ। ପିଲାମାନଙ୍କ ଆଖିରେ

ପଲକ ପଡ଼ୁ ନ ଥାଏ। ପ୍ରାସାଦ ଉପରେ ଉଡୁଥାଏ ପତାକାଟି; ଅର୍ଥାତ୍ ରାଣୀ ବର୍ତ୍ତମାନ ପ୍ରାସାଦ ମଧ୍ୟରେ ହିଁ ଅଛନ୍ତି। ସେଥିପାଇଁ ପିଲାମାନେ ପ୍ରାସାଦର ପ୍ରଧାନ ଦ୍ୱାରକୁ ଏକଦୃଷ୍ଟିରେ ଦେଖୁଥାଆନ୍ତି। କାଳେ ଦ୍ୱାରବାଟେ ଚାଲି ଆସିଯିବେ ରାଣୀ ଏଲିଜାବେଥ୍ ବା ଯୁବରାଜ ଚାର୍ଲସ କିମ୍ବା ଚାର୍ଲସ ଓ ଡାଏନାଙ୍କର ପୁଅ ଦୁଇଟି।

ଗାର୍ଡ ବା ପ୍ରହରୀ ବଦଳାଇବା ଉତ୍ସବ ଆରମ୍ଭ ହେବାକୁ ଆହୁରି କିଛି ସମୟ ଡେରି ଥାଏ। ମୋ ଆଖି ଘୁରି ବୁଲୁଥାଏ ପ୍ରାସାଦର ଗୋଟିଏ ଅଂଶରୁ ଅନ୍ୟ ଅଂଶକୁ। ଜାଣିଛୁ ମିତୁ, ବର୍ତ୍ତମାନ ଯେଉଁଠି ବକିଙ୍ଗହାମ୍ ପ୍ରାସାଦ ରହିଛି, ସେହିଠାରେ ୧୭୦୩ ମସିହାରେ ବକିଙ୍ଗହାମ୍‌ର ଡ୍ୟୁକ୍ 'ବକିଙ୍ଗହାମ୍ ହାଉସ୍' ନିର୍ମାଣ କରାଇଥିଲେ। ୧୭୬୨ ମସିହାରେ ରାଜା ତୃତୀୟ ଜର୍ଜ ଏହି ଘରଟିକୁ କିଣି ନେଇଥିଲେ। କିନ୍ତୁ ଏହାର ପୁନଃନିର୍ମାଣ ହୋଇଥିଲା ୧୮୨୫ ଖ୍ରୀ.ରେ। ରାଜା ଚତୁର୍ଥ ଜର୍ଜଙ୍କ ସମୟରେ ଜନ୍ ନାଶ୍ 'ବକିଙ୍ଗହାମ୍ ହାଉସ୍'କୁ 'ବକିଙ୍ଗହାମ୍ ପ୍ରାସାଦ'ରେ ପରିଣତ କରିଥିଲେ। କିନ୍ତୁ ରାଣୀ ଭିକ୍ଟୋରିଆଙ୍କ ରାଜୁତିକାଳ ପର୍ଯ୍ୟନ୍ତ କେହି ଏହି ପ୍ରାସାଦରେ ବାସ କରି ନ ଥିଲେ। ଭିକ୍ଟୋରିଆ ରାଣୀ ହେବା ପରେ ସ୍ଥିର କଲେ ଯେ ଏଇଟି ହେବ ବ୍ରିଟିଶ ରାଜ ପରିବାରର ପ୍ରାସାଦ ଏବଂ ସେଦିନରୁ ଆଜି ପର୍ଯ୍ୟନ୍ତ ପ୍ରତିଟି ରାଜା, ରାଣୀ ଏହି ପ୍ରାସାଦରେ ହିଁ ବାସ କରି ଆସୁଛନ୍ତି।

ଦିନ ଏଗାରଟା ଦଶ ମିନିଟ୍‌ରେ ଗାର୍ଡ ବଦଳେଇବା ଉତ୍ସବ ଆରମ୍ଭ ହେଲା। ବ୍ୟାଣ୍ଡ, ପ୍ୟାରେଡ- ସବୁ ନେଇ ଉତ୍ସବଟି କି ସୁନ୍ଦର! ପ୍ରବଳ ଲୋକ ଭିଡ ମଧ୍ୟରେ ଫାଟକର ଗ୍ରିଲ୍‌କୁ ଜାବୁଡି ଧରି ଉତ୍ସବଟି ଦେଖିବାବେଳେ ମୁଁ ଭାବୁଥିଲି ଏମିତି ଝୁଙ୍କି ମାରି ଉତ୍ସବଟି ଦେଖିବାର ବ୍ୟବସ୍ଥାକୁ ଯଦି ବ୍ରିଟିଶ ସରକାର ବଦଳାଇ ଦେଇ ପାରନ୍ତେ, ତେବେ କେତେ ଭଲ ନ ହୁଅନ୍ତା! ଯେଉଁ ଉତ୍ସବଟି ଏତେ ବେଶୀ ଜନପ୍ରିୟ, ସେଇଟି ଦେଖିବାକୁ ଆସୁଥିବା ଲୋକମାନଙ୍କ ପାଇଁ ବିଶାଳ ପ୍ରାସାଦର ସାମ୍ନାରେ ଖାଲି ପଡିଥିବା ଅଂଶରେ ବେଞ୍ଚ ପକାଇ ଗ୍ୟାଲେରୀର ବ୍ୟବସ୍ଥା ତ କରି ହୁଅନ୍ତା!

ଉତ୍ସବ ଶେଷ ହେବା ପରେ ପୁଣି ମେଟ୍ରୋ ଆଡକୁ ଆମେ ଚାଲିଲୁ। ଦିନର ବାକୀ ଭାଗ ସମୟ 'ଭିକ୍ଟୋରିଆ ଆଣ୍ଡ ଆଲବର୍ଟ ମ୍ୟୁଜିଅମ୍'ରେ କଟେଇବାର ଇଚ୍ଛା ଥାଏ। ଲଣ୍ଡନରେ ବହୁତ ଗୁଡିଏ ମ୍ୟୁଜିଅମ୍ ରହିଛି। ଯଦି ଜଣେ ଭଲ

ଭାବରେ ସେସବୁ ବୁଲି ଦେଖିବାକୁ ଚାହିଁବ, ତେବେ ତା'କୁ ମାସ ମାସ ସମୟ ଲାଗିଯିବ। କିନ୍ତୁ ଆମ ପାଖରେ ତ ସୀମିତ ସମୟ, ତେଣୁ ଆମେ ବାଛି ବାଛି ସ୍ଥିର କରିଥିଲୁ ଯେ କେବଳ ଦୁଇ ତିନୋଟି ମ୍ୟୁଜିଅମ୍ ହିଁ ଦେଖିବୁ। ସେଗୁଡିକ ମଧ୍ୟରୁ 'ଭିକ୍ଟୋରିଆ ଆଣ୍ଡ ଆଲବର୍ଟ' ମ୍ୟୁଜିଅମ୍ ଗୋଟିଏ।

ଆମ ଭଳି ସାଧାରଣ ଲୋକଙ୍କ ପାଇଁ ଅନ୍ୟାନ୍ୟ ମ୍ୟୁଜିଅମ୍ ଅପେକ୍ଷା ଏହି ମ୍ୟୁଜିଅମ୍‌ର ଆକର୍ଷଣ ବୋଧହୁଏ ସବୁଠାରୁ ବେଶୀ। କାରଣ ଏହିଠାରେ ଯୁଗେ ଯୁଗେ ବ୍ୟବହୃତ ହୋଇ ଆସିଥିବା ନିତିଦିନିଆ ପଦାର୍ଥମାନ ସାଇତା ହୋଇ ରହିଛି। ୧୮୫୨ ମସିହାରେ ଯୁବରାଜ ଆଲବର୍ଟ ଏହି ମ୍ୟୁଜିଅମ୍ ସ୍ଥାପନ କରିଥିଲେ। ତାଙ୍କର ଉଦ୍ଦେଶ୍ୟ ଥିଲା ଯେ ଏହି ମ୍ୟୁଜିଅମ୍‌ରେ ରଖାଯାଇଥିବା ଜିନିଷମାନ ଦେଖି ଭବିଷ୍ୟତରେ ବିଭିନ୍ନ କଳା କ୍ଷେତ୍ରରେ ଲୋକମାନେ ଅଧିକରୁ ଅଧିକ ସୁନ୍ଦର ଜିନିଷମାନ ପ୍ରସ୍ତୁତ କରି ପାରିବେ। ସେଥିପାଇଁ ଏଠାରେ ରାଜପରିବାରଙ୍କର ଆସବାବପତ୍ରରୁ ଆରମ୍ଭ କରି ବିଭିନ୍ନ ଯୁଗର ପୋଷାକ ପରିଚ୍ଛଦ, ଅଳଙ୍କାର, ରୋଷେଇ ଘରସାମଗ୍ରୀ, ଗାଲିଚା, ଏମିତିକି ହାତ ତିଆରି ଉଚ୍ଚକୋଟୀର ଲେସ୍‌ର ନମୁନାମାନ ରଖାଯାଇଛି। ଏହାଛଡା ମଧ୍ୟ ରହିଛି ବିଭିନ୍ନ ଯୁଗର କଳା ଓ ସ୍ଥାପତ୍ୟର ଶ୍ରେଷ୍ଠ ନିଦର୍ଶନମାନ। ମଧ୍ୟଯୁଗରେ ପୃଥିବୀର ବିଭିନ୍ନ ଦେଶ ଉପରେ ଇଂଲାଣ୍ଡର ରାଜନୀତିକ ବା ବାଣିଜ୍ୟିକ ଆଧିପତ୍ୟ ଥିଲା। ତେଣୁ ଏହିସବୁ ଦେଶମାନଙ୍କରୁ ବିଭିନ୍ନ ପଦାର୍ଥ ସଂଗ୍ରହ କରାଯାଇ ମ୍ୟୁଜିଅମ୍‌ରେ ରଖା ହୋଇଛି। ଚୀନ୍, ଜାପାନ, ନେପାଳ, ସିଂହଳ ବ୍ୟତୀତ ଭାରତରୁ ସଂଗୃହୀତ ବହୁ ସାମଗ୍ରୀ ଏଠାରେ ଗୋଟିଏ କୋଠରୀରେ ରଖାଯାଇଛି। ତୁଳନାତ୍ମକ ଭାବରେ କୋଠରୀଟି ଛୋଟ, କିନ୍ତୁ ବହୁ ସୁନ୍ଦର ସୁନ୍ଦର ଜିନିଷ ରଖାଯାଇଛି ଏଇଠି। ଭାରତର ବିଭିନ୍ନ ପ୍ରାନ୍ତର ହସ୍ତଶିଳ୍ପର ନମୁନାମାନ, ମଧ୍ୟଯୁଗରେ ବୁଣାଯାଇଥିବା ଶାଢୀ ଓ ଅନ୍ୟ ପୋଷାକ ଏହିଠାରେ ରହିଛି। ଏହା ବ୍ୟତୀତ ଏଠାରେ ଶୋଭା ପାଉଛି ଲାହୋରରୁ ୧୬୩୦ରେ ଅଣାଯାଇଥିବା ଗାଲିଚାଟିଏ ଏବଂ ୧୬୫୭ ମସିହାର ଧଳା ଜେଡ୍ (Jade)ର କପଟିଏ। କୁହାଯାଏ ଯେ ଏହି କପଟି ଏକଦା ସମ୍ରାଟ୍ ଶାହାଜାହାନଙ୍କ ବ୍ୟବହାର ସାମଗ୍ରୀ ଥିଲା।

ମାତ୍ର କେଇ ଘଣ୍ଟା ଭିତରେ ମ୍ୟୁଜିଅମ୍‌ଟି ଯେତିକି ଦେଖିବା ଓ ଉପଭୋଗ କରିବା ସମ୍ଭବ, ସେତିକି କରି କିଛି ସମୟ ପୂର୍ବରୁ ଆମେ ହୋଟେଲ୍‌କୁ ଫେରି

ଆସିଛୁ। ଆସନ୍ତାକାଲି ରୟାଲ୍ ବଟାନିକାଲ୍ ଗାର୍ଡେନ୍ ବା କିଉ ଗାର୍ଡେନ୍ (Kew Garden) ଯିବା କଥା ସ୍ଥିର ହୋଇଛି। କିନ୍ତୁ ସବୁ ଯୋଜନା ନିର୍ଭର କରେ ଏଠିକାର ପାଗ ଉପରେ। ଅଳ୍ପ ସମୟ ଆଗରୁ ଟେଲିଭିଜନ୍‌ର ପାଣିପାଗ ବିବରଣୀରେ ଘୋଷଣା କରାଗଲା ଯେ ଆସନ୍ତା କାଲି ବର୍ଷା ହେବାର ସମ୍ଭାବନା କମ୍। କିନ୍ତୁ ଲଣ୍ଡନର ପାଗକୁ କ'ଣ ବିଶ୍ୱାସ କରିହୁଏ ?

ମିତୁ, ଏପର୍ଯ୍ୟନ୍ତ ଲଣ୍ଡନରେ ମୁଁ ମାତ୍ର ତିନୋଟି ଦିନ କଟାଇଛି। ଅଥଚ ମନେ ହେଉଛି ଯେମିତି ଅତି ଚିହ୍ନାଜଣା ଏ ସହର। ତିନିଶହ ବର୍ଷ କାଳ ବ୍ରିଟିଶ ଅଧୀନରେ ରହିବା ପରେ ଆମ ଉପରେ ବ୍ରିଟିଶ ସଭ୍ୟତା ଓ ସଂସ୍କୃତିର କି ଯେ ବିରାଟ ଛାପ ପଡ଼ିଛି, ତାହା ଏହିଠାକୁ ଆସିଲେ ଜଣେ ଅନୁମାନ କରିପାରିବ। ହୁଏତ ସେଥିପାଇଁ ମତେ ବିଭିନ୍ନ ଜିନିଷ ମଧ୍ୟରେ ଆମ ଦେଶର ଝଲକ ଦିଶିଯାଉଛି ଏବଂ ଗୋଟିଏ ନୂଆ ଦେଶ, ନୂଆ ମାଟିରେ ପାଦ ଦେବା ଭଳି ମନେ ହେଉନାହିଁ।

ଆଜି ପାଇଁ ତେବେ ଏତିକି। ଆଶା କରୁଛି, ତୁମେମାନେ ଭଲରେ ଥିବ। ପୁଣି ପରେ ଚିଠି ଦେବି। ରହୁଛି।

ଇତି

ତୋର 'ନାନୀ'

ଲଣ୍ଡନ

୮ ଜୁଲାଇ, ୧୯୯୨

ସ୍ନେହର ମିତ୍ର,

କିଛି ସମୟ ଆଗରୁ ଆମେ ଗ୍ରିନ୍‌ଓ୍ୱିଚ୍‌ରୁ ଫେରିଛୁ। ଆଜି ସକାଳେ ବହୁତ ସୁନ୍ଦର ପାଗ ହୋଇଥିଲା। ଆମେ ସେଥିପାଇଁ ଧାରଣା କରିପାରିନଥିଲୁ ଯେ ଗ୍ରିନ୍‌ଓ୍ୱିଚ୍‌ରେ ଏମିତି ହାଡଥରା ଥଣ୍ଡା ପଡିଥିବ ବୋଲି। ସାରାଦିନ ସେଇଠି କଟାଇ ଯେତେବେଳେ ବସ୍‌ରେ ହୋଟେଲ୍‌କୁ ଫେରିଲୁ, ଶୀତରେ ସେତେବେଳକୁ ଦେହ ହାତ କୋଳ ମାରି ଯାଇଥିଲା। ରୁମ୍ ଭିତରେ ପାଦ ଦେଉ ଦେଉ ପିଲାମାନେ ଜୋତା ଖୋଲି ଦେଇ କମ୍ବଳତଳେ ପଶିଗଲେ। ସେଇମିତି ଖଟରେ ଶୋଇ ଶୋଇ ସେମାନେ ଏବେ ଟେଲିଭିଜନ୍ ଦେଖୁଛନ୍ତି। ପିଲାଙ୍କର 'ଟମ୍ ଆଣ୍ଡ ଜେରି' କାର୍ଟୁନ୍ ଦେଖିବା ପାଇଁ ମୋର ଆଦୌ ଇଚ୍ଛା ନାହିଁ। ସେଇଥିପାଇଁ କମ୍ବଳରେ ଗୋଡ ଘୋଡେଇ ନେଇ ଚାହା ପିଉ ପିଉ ତୋତେ ଚିଠି ଲେଖିବସିଲି।

ତୁ ମୋର ପୂର୍ବ ଚିଠି ନିଶ୍ଚୟ ପାଇଥିବୁ। ସେଇଥିରେ ଲେଖିଥିଲି ଯେ ପାଞ୍ଚ ତାରିଖ ଦିନ ପାଗ ଦେଖି ଆମେ 'କିଉ ଗାର୍ଡେନ୍‌ସ' ଯିବୁ। ଟେଲିଭିଜନ୍‌ର ପାଣିପାଗ ବିବରଣୀ ଅନୁସାରେ ପରଦିନ ବର୍ଷା ହେବାର ବିଶେଷ ସମ୍ଭାବନା ନ ଥିଲା। କିନ୍ତୁ ଲଣ୍ଡନ ପାଗକୁ କି ବିଶ୍ୱାସ ?

ଆମର ଆଶଙ୍କା କେତେ ପରିମାଣରେ ସତ ହେଲା। ସେଦିନ ସକାଳୁ

ବର୍ଷା ସିନା ନ ଥିଲା, କିନ୍ତୁ ଆକାଶରେ କଳା ମେଘ ଘୋଡେଇ ହୋଇ ରହିଥିଲା ଏବଂ ସୂର୍ଯ୍ୟ କେଉଁଠି ଲୁଚି ବସିଥିଲେ। ଏମିତି ପାଗ ଦେଖି ମନରେ କିଛି ଦ୍ୱନ୍ଦ ହେଲା- ଯିବୁ କି ନ ଯିବୁ। ଶେଷରେ ସ୍ଥିର କଲୁ, ଲଣ୍ଡନକୁ ଆସି ପୁଣି ପାଗକୁ ଡରିଲେ ଚଳିବ! ଆମର ସାଜ ସରଞ୍ଜାମ (ଅର୍ଥାତ୍ ଛତା ଓ ବର୍ଷାତି) ଧରି ଆମେ ବାହାରି ପଡିଲୁ।

କିଉ ଗାର୍ଡେନ୍‌ସ ବା ରୟାଲ ବଟାନିକାଲ୍ ଗାର୍ଡେନ୍‌କୁ ଯିବାରେ କୌଣସି ଅସୁବିଧା ନାହିଁ। କାରଣ ସେଠାକୁ ଉଭୟ ବସ୍ ଓ ମେଟ୍ରୋ ଯୋଗାଯୋଗ ରହିଛି। ଆମେ ମେଟ୍ରୋରେ ଯାଇ କିଉ ଷ୍ଟେସନ୍‌ରେ ଓହ୍ଲେଇଲୁ। ସେଠାରୁ କିଉ ଗାର୍ଡେନ୍‌ସ ପର୍ଯ୍ୟନ୍ତ ଯେଉଁ ରାସ୍ତା ଯାଇଛି ତା'ର ଦୁଇ କଡରେ ରହିଛି ଖୁବ୍ ସୁନ୍ଦର ଘରମାନ। ବହୁ ପୁରୁଣା ଘର। କିନ୍ତୁ ଦେଖି ଜାଣି ହେଉଥାଏ ଯେ ସେସବୁର ନିୟମିତ ଯତ୍ନ କରାଯାଇଛି। ସେଇ ରାସ୍ତାରେ ଅଳ୍ପ କିଛି ବାଟ ଯିବା ପରେ ପଡିଲା କିଉ ଗାର୍ଡେନ୍।

୧୭୫୯ ମସିହାରେ କିଉ ଗାର୍ଡେନ୍ ସ୍ଥାପନ କରିଥିଲେ ରାଜା ତୃତୀୟ ଜର୍ଜଙ୍କର ମା' ରାଣୀ ଅଗଷ୍ଟା। ସେତେବେଳେ ସ୍ଥାନଟିର ଆୟତନ ଥିଲା ମାତ୍ର ପାଞ୍ଚ ଏକର। କିନ୍ତୁ ୧୮୪୧ ମସିହାରେ ଏହି ବଗିଚାକୁ ପୃଥିବୀର ବିଭିନ୍ନ ବୃକ୍ଷଲତାର ଗବେଷଣା କେନ୍ଦ୍ର ରୂପେ ବାଛିବା ପରେ ସ୍ଥାନଟିର ଆୟତନ ବଢେଇବାକୁ ହେଲା। କ୍ରମଶଃ ଆଖପାଖର ଅଞ୍ଚଳକୁ ବଗିଚାର ଅନ୍ତର୍ଭୁକ୍ତ କରାଗଲା। ଏହିପରି ବଢି ବଢି ବର୍ତ୍ତମାନ ସ୍ଥାନଟିର ଆୟତନ ୨୮୦ ଏକର।

ମିତ୍ର, ବଗିଚା ଭିତରେ ପାଦ ରଖିବା ମାତ୍ରକେ ମୋ ମନ ଆନନ୍ଦରେ ଭରିଗଲା। ଯେଉଁ ଆଡେ ଆଖି ବୁଲାଉଥାଏ, ଦୃଷ୍ଟିରେ ପଡୁଥାଏ ସବୁଜ ରଙ୍ଗର ଚାଦର। ଆଉ ଏଇ ସବୁଜରଙ୍ଗର ଏକଟଣା ଭାବକୁ ଦୂରେଇ ଦେଉଥାଏ ବିଭିନ୍ନ ରଙ୍ଗର ଫୁଲ ବଗିଚା ଓ 'ଗ୍ରୀନ୍ ହାଉସ୍'। ମୁଁ ପୂର୍ବରୁ 'ଗ୍ରୀନ୍ ହାଉସ୍' କେବେହେଲେ ଦେଖି ନଥିଲି। କାଚ ତିଆରି ବିରାଟ ଘର। ତା' ଭିତରର ତାପମାନ ନିୟନ୍ତ୍ରଣ କରାଯାଇ ଭିତରେ ରଖାଯାଇଛି ନିର୍ଦ୍ଦିଷ୍ଟ ଜଳବାୟୁରେ ଭଲ ବଢୁଥିବା ଗଛଲତା।

କିଉ ଗାର୍ଡେନ୍‌ସ ଭିତରେ ଅଳ୍ପବାଟ ଯିବା ପରେ ପୋଖରୀଟିର ସାମ୍ନାରେ ରହିଛି ଏଇଭଳି ଏକ ଗ୍ରୀନ୍ ହାଉସ୍। ଏହାକୁ କୁହାଯାଏ 'ପାମ୍ ହାଉସ୍'। ବିଷୁବ ଜଳବାୟୁରେ ଭଲ ବଢୁଥିବା ଗଛଗୁଡିକୁ ଏହା ଭିତରେ ରଖାଯାଇଛି।

କାଚ ଘରର କବାଟ ଖୋଲି ଭିତରେ ପଶିଯିବା ମାତ୍ରକେ ଦମକାଏ ଗରମ ପବନ ଆସି ମୁହଁରେ ବାଜିଲା । ଥାଉ ଅଳ୍ପ ସମୟ ଭିତରେ ଦେହରୁ ଗମ୍ ଗମ୍ ଝାଳ ବାହାରିବାକୁ ଲାଗିଲା । ଆମେ ଯେମିତି ଇଂଲାଣ୍ଡରୁ ବାହାରି ଆସି କୌଣସି ବିଷୁବ ଅଞ୍ଚଳରେ ପହଞ୍ଚିଯାଇଛୁ !

'ପାମ୍ ହାଉସ୍' ବ୍ୟତୀତ ଏଠାରେ ରହିଛି 'ଟେମ୍ପରେଟ୍ ହାଉସ୍' ଯେଉଁଠାରେ କି ଭୂମଧ୍ୟସାଗରୀୟ ଅଞ୍ଚଳରେ ବଢୁଥିବା ଗଛମାନଙ୍କୁ ରଖାଯାଇଛି । ସେଇଭଳି ଅଷ୍ଟ୍ରେଲିଆରେ ଭଲ ବଢୁଥିବା ଗଛମାନଙ୍କୁ ରଖାଯାଇଛି 'ଅଷ୍ଟ୍ରେଲିଆ ହାଉସ୍'ରେ । ଏଇପରି ପୃଥିବୀର ବିଭିନ୍ନ ପ୍ରାନ୍ତର ଗଛବୃକ୍ଷର ଯତ୍ନ ଓ ରକ୍ଷଣାବେକ୍ଷଣ ଏହିଠାରେ କରାଯାଇଥାଏ । କେବଳ ସେତିକି ନୁହଁ, ମୁଁ ଶୁଣିଲି ଯେ ଏହିଠାରେ ଗୋଟିଏ ଗବେଷଣା କେନ୍ଦ୍ର ରହିଛି ଯେଉଁଠାରେ କି ତିନିବର୍ଷିଆ ଡିଗ୍ରୀ କୋର୍ସ ନେବାର ବ୍ୟବସ୍ଥା ରଖାଯାଇଛି । ପୃଥିବୀର ବିଭିନ୍ନ ପ୍ରାନ୍ତରୁ ବହୁ ଛାତ୍ରଛାତ୍ରୀ ଏହି କୋର୍ସ ନେବା ପାଇଁ ଏଠାକୁ ଆସିଥାଆନ୍ତି ।

ପାମ୍ ହାଉସ୍, ଟେମ୍ପରେଟ୍ ହାଉସ୍ ପାର ହୋଇ କିଛି ବାଟ ଯିବା ପରେ ଆମ ଆଖିରେ ପଡିଲା ବିରାଟ ଗୋଟିଏ ପାଗୋଡା । ୧୭୬୧ ଖ୍ରୀ.ରେ ଏହି ପାଗୋଡାଟି ରାଣୀ ଅଗଷ୍ଟାଙ୍କ ପାଇଁ ନିର୍ମିତ ହୋଇଥିଲା । ୧୬୩ ଫୁଟ୍ ଉଚ୍ଚର ଦଶଟି ମହଲା ଥିବା ପାଗୋଡା । କିନ୍ତୁ ଏହା ଭିତରକୁ ଯିବାପାଇଁ ପର୍ଯ୍ୟଟକମାନଙ୍କୁ ଅନୁମତି ଦିଆଯାଏ ନାହିଁ । ତଥାପି ସେହିଠାରେ ଦଳଦଳ ହୋଇ ଲୋକ ବସି ଥାଆନ୍ତି । ଛୋଟ ଛୋଟ ପିଲାମାନେ ପାଗୋଡା ଚାରିପଟେ ଲୁଚକାଳି ଖେଳୁଥାଆନ୍ତି ।

ଆମେ ତ ଥାଉ ପର୍ଯ୍ୟଟକଙ୍କୁ ଦେଖିବା ପାଇଁ କିଉ ଗାର୍ଡେନ୍‌ସ୍‌କୁ ଆସି ନଥିଲୁ । ଆମର ଇଚ୍ଛା ଥାଏ, କେଉଁଠାରେ ଟିକିଏ ଶାନ୍ତ, ସବୁଜ ସ୍ଥାନ ଦେଖି ବସିବା ପାଇଁ । ତେଣୁ ପାଗୋଡା ନିକଟରେ ନ ରହି ସରୁ ପାଦଚଲା ରାସ୍ତା ଦେଇ ଆମେ ଗୋଟିଏ ହ୍ରଦ ନିକଟରେ ପହଞ୍ଚିଗଲୁ । ଅନାବନା ଘାସ, ବହୁରକମର ଛୋଟ ବଡ ଗଛ ଘେରା ହ୍ରଦଟିଏ । ସୌନ୍ଦର୍ଯ୍ୟରେ ବା ଆକାରରେ ପୃଥିବୀର ଶ୍ରେଷ୍ଠ ହ୍ରଦମାନଙ୍କ ସହିତ ଏହାର କୌଣସି ତୁଳନା ହୁଏ ନାହିଁ । ତଥାପି ହ୍ରଦକୂଳରେ ପଡିଥିବା କାଠବେଞ୍ଚରେ ବସି ଚଢେଇମାନଙ୍କର କାକଳୀ ଶୁଣିବା ବେଳେ ମନ ଆନନ୍ଦରେ ଭରିଗଲା ।

ଆମେ ଚୁପ୍‌ଚାପ୍ ସେଇଠାରେ ବସି ରହିଲୁ । ପିଲାମାନେ ଦୌଡାଦୌଡି

କରି ଘାସ ଗୋଟାଇ, ଅନାବନା ଗଛରୁ ଝଡି ତଳେ ପଡିଥିବା ଫୁଲର ତୋଡା କରି ଖେଳୁଥାଆନ୍ତି। ଏଇମିତି କିଛି ସମୟ ଖେଳିବା ପରେ ସେମାନେ ଖାଇବା ପାଇଁ ଚାହିଁଲେ। ଆମେ ସାଙ୍ଗରେ କିଛି ଖାଇବା ଜିନିଷ ନେଇଥିଲୁ। କିନ୍ତୁ ମିତୁ, ସେସବୁ ବାହାର କରି ଆମେ ଖାଇବା ଆରମ୍ଭ କରିଛୁ କି ନାହିଁ, କେଉଁଠାରୁ ଚାଲି ଆସିଲେ ଦଳ ଦଳ ବତକ ଓ କେତେ ରକମର ଚଢେଇ। ମଣିଷ ଦେଖି ଆଦୌ ଡରୁ ନ ଥାଆନ୍ତି। ଆମର ଅତି ନିକଟକୁ ଆସି ବିଭିନ୍ନ ରକମର ସ୍ୱରରେ ଖାଇବାକୁ ମାଗୁଥାଆନ୍ତି। ପିଲାମାନେ ଆଉ ଖାଇବେ କ'ଣ, ନିଜନିଜର ପାଉଁରୁଟୀ, ବିସ୍କୁଟ୍‌ରୁ ଟିକିଏ ଟିକିଏ ଭାଙ୍ଗି ସେମାନଙ୍କୁ ଦେବା ଆରମ୍ଭ କରିଦେଲେ। ଆମ ଖାଇବା ଶେଷ ହେବା ପରେ ମଧ୍ୟ ପକ୍ଷୀମାନେ ବହୁତ ସମୟ ସେଇଠି ଆମ ଚାରିକଡରେ ଘୁରି ବୁଲିଲେ। ଶେଷରେ ଆମେ ଯେତେବେଳେ କିଉ ପ୍ରାସାଦ ଦେଖିବା ଉଦ୍ଦେଶ୍ୟରେ ଉଠି ବାହାରିଲୁ, ପକ୍ଷୀଦଳ ମଧ୍ୟରୁ ଗୋଟିଏ ଛୋଟ ମାଟିଆ ବତକଟିଏ ଆମ ପଛେ ପଛେ ଚାଲିବାକୁ ଲାଗିଲା। ଆଉ ତା'ପରେ ଗିଟିର କି ଜିଦ୍! "ଆମେ ଯାକୁ ଘରକୁ ନେଇ କରି ଯିବା। ଦେଖୁନ, ସେ ଆମ ସାଙ୍ଗରେ ଯିବ ବୋଲି ପଛେ ପଛେ ଚାଲିଛି।" ଆମେ କେତେ ବୁଝେଇଲୁ, କିନ୍ତୁ ସେ କାହିଁକି ବୁଝିବ? ଭାଗ୍ୟକୁ କିଛି ସମୟ ଆମ ପଛେ ପଛେ ଆସିବାପରେ ବତକଟି ହଠାତ୍ ବୁଲିଯାଇ ଉଡିଗଲା ହ୍ରଦଭିତରେ ପହଁରୁଥିବା ତା' ଦଳ ନିକଟକୁ। ଗିଟି ଟିକିଏ ମୁହଁ ଶୁଖାଇଲା; ପୁଣି ଅଳ୍ପ ସମୟ ଭିତରେ ସବୁ ଭୁଲିଗଲା।

କିଉ ଗାର୍ଡେନ୍‌ସ୍‌ର ଗୋଟିଏ କଡକୁ ରହିଛି କିଉ ପ୍ରାସାଦ। ଏହାକୁ ମଧ୍ୟ 'ଡଚ୍ ହାଉସ୍' କୁହାଯାଏ, କାରଣ ଏହାର ନିର୍ମାତା ସାମୁଏଲ୍ ଫୋର୍‌ଟ୍ରେ ଥିଲେ ଡଚ୍। ରାଜା ତୃତୀୟ ଜର୍ଜ ତାଙ୍କଠାରୁ ଘରଟି କିଣି ନେଇଥିଲେ ଏବଂ ଏହା ଥିଲା ତାଙ୍କ ପତ୍ନୀଙ୍କର ସବୁଠାରୁ ପ୍ରିୟ ପ୍ରାସାଦ। ମୃତ୍ୟୁ ପର୍ଯ୍ୟନ୍ତ ସେ ଏଇଠାରେ ହିଁ ରହିଥିଲେ। ପରବର୍ତ୍ତୀ କାଳରେ ରାଣୀ ଭିକ୍ଟୋରିଆ ଏହି ପ୍ରାସାଦ ରାଷ୍ଟ୍ରକୁ ଉତ୍ସର୍ଗ କରି ଦେଇଥିଲେ। ଇଂଲାଣ୍ଡ ରାଜ ପରିବାରର ଅନ୍ୟାନ୍ୟ ପ୍ରାସାଦ ଭଳି ଏହା ବିଶାଳ ନ ହେଲେ ମଧ୍ୟ ଏହାର ଏକ ନିଜସ୍ୱ ସୌନ୍ଦର୍ଯ୍ୟ ରହିଛି। ବିଶେଷ କରି ଏହାର ବଗିଚାଟି ଖୁବ୍ ସୁନ୍ଦର।

କିଉ ପ୍ରାସାଦ ଚାରିପଟେ ଲଗାଯାଇଥିବା ଫୁଲ ଗଛଗୁଡିକୁ ବୁଲି ଦେଖିବା ପରେ ଆମେ ଫେରିଲୁ। ସଂପୂର୍ଣ୍ଣ ଗୋଟିଏ ଦିନ କିଉ ଗାର୍ଡେନ୍‌ସ୍‌ରେ କଟାଇ

ମୋର ମନେ ହୋଇଥିଲା ଯେ ଯିଏ ଆମଭଳି ପ୍ରକୃତିକୁ ବହୁତ ବେଶୀ ଭଲ ପାଉଥିବ, ତା' ପକ୍ଷରେ ଲଣ୍ଡନ ଆସି ଏହି ସ୍ଥାନଟିକୁ ବାଦ୍ ଦେବା ଆଦୌ ଉଚିତ ନୁହଁ। ମନ୍ଦିରରେ ପୂଜା ଦେଇ ଆସିଲେ ମନରେ ଯେମିତି ଏକ ପ୍ରଶାନ୍ତି ଭାବ ଘେରିଯାଏ, ଠିକ୍ ସେଇମିତି କିଉ ଗାର୍ଡେନ୍‌ସରୁ ଫେରିବାବେଳେ ଏକ ଶାନ୍ତ ଓ ଶୁଦ୍ଧ ଭାବ ମୋ ଚାରିପଟେ ଘେରିଯାଇଥିଲା।

ସାରାଦିନ ଆକାଶରେ କଳାହାଣ୍ଡିଆ ମେଘ ଘୋଡେଇ ହୋଇ ରହିଥିଲେ ମଧ୍ୟ ସେଦିନ ଆଦୌ ବର୍ଷା ହୋଇ ନଥିଲା। ଅଥଚ ପରଦିନ ସକାଳୁ ଆକାଶ ଭାଙ୍ଗି ଜୋର୍ ବର୍ଷା ଆରମ୍ଭ ହୋଇଗଲା। ଘର ହୋଇଥିଲେ ଏମିତିଆ ପାଗରେ ରେଜେଇ ତଳେ ପଶି ଚାହା ପିଉଥାଆନ୍ତି। ଗରମ ଗରମ ପକୁଡ଼ି, ପିଆଜି ଖାଇବା ବ୍ୟବସ୍ଥା କରିଥାଆନ୍ତି। କିନ୍ତୁ ହାତରେ ସାତୋଟି ଦିନ ଧରି ଲଣ୍ଡନ ଆସି ସେଇଥିରୁ ଗୋଟିଏ ଦିନ ନଷ୍ଟ କରିଦେବା କଥା ଚିନ୍ତା କରି ହେଉ ନଥାଏ। ଏଣେ ବର୍ଷା ଦେଖି ପିଲାମାନେ ବାହାରକୁ ବାହାରିବା ପାଇଁ ଖୁବ୍ ଗୋଟାଏ ଉତ୍ସାହ ଦେଖାଉ ନ ଥାଆନ୍ତି। ବର୍ଷାତି ପିନ୍ଧି ବୁଲିବା ତ ସେମାନଙ୍କ ପାଇଁ ଏକରକମର ଶାସ୍ତି। ସେମାନଙ୍କର କୁଣ୍ଠା ଓ ପାଗ ଦେଖି ଆମେ ସ୍ଥିର କଲୁ ଏଇଭଳି ଦିନଟି ମ୍ୟାଡାମ୍ ଟୁସାଡ୍‌ଙ୍କ ୱାକ୍‌ସ ମିଉଜିଅମ୍ ଓ ପ୍ଲାନେଟୋରିଅମ୍‌ରେ କଟାଇବା ପାଇଁ ଯଥାର୍ଥ।

ପୃଥିବୀ ପ୍ରସିଦ୍ଧ ମ୍ୟାଡାମ୍ ଟୁସାଡଙ୍କର ୱାକ୍‌ସ୍ ମିଉଜିଅମ୍ କଥା ତୁ ନିଶ୍ଚୟ ପଢ଼ିଥିବୁ। ପୃଥିବୀର ଅନ୍ୟାନ୍ୟ ବହୁ ସ୍ଥାନରେ ଏଇଭଳି ମିଉଜିଅମ୍ ରହିଛି। କିନ୍ତୁ ମ୍ୟାଡାମ୍ ଟୁସାଡ୍ ସହିତ ସେସବୁର କୌଣସି ତୁଳନା ହୁଏ ନାହିଁ।

ମ୍ୟାଡାମ୍ ଟୁସାଡ୍ ୱାକ୍‌ସ ମିଉଜିଅମ୍‌ଟି ସ୍ଥାପନ କରି ଲଣ୍ଡନକୁ ପ୍ରସିଦ୍ଧ କରି ଦେଇଛନ୍ତି। ଅଥଚ ସେ ନିଜେ ଇଂରେଜ ନୁହନ୍ତି। ତାଙ୍କର ଜନ୍ମ ହୋଇଥିଲା ଫ୍ରାନ୍‌ସରେ। ୧୭୬୧ ମସିହାରେ। ପ୍ରାୟ ସେହି ସମୟରେ ପ୍ୟାରିସ୍‌ରେ ଗୋଟିଏ ୱାକ୍‌ସ୍ ମିଉଜିଅମ୍ ସ୍ଥାପିତ ହୋଇଥିଲା। ମ୍ୟାଡାମ୍ ଟୁସାଡ୍ ବଡ ହେବା ପରେ ଏହି ମିଉଜିଅମ୍ ପାଇଁ ଫରାସୀ ରାଜପରିବାରଙ୍କର ମହମର ମୂର୍ତ୍ତିମାନ ନିର୍ମାଣ କରିଥିଲେ। ଏହାର କେଇ ବର୍ଷ ମଧ୍ୟରେ ଫରାସୀ ବିଦ୍ରୋହ ଆରମ୍ଭ ହୋଇଗଲା। ବିଦ୍ରୋହର ଶେଷ ଅଧ୍ୟାୟ ଥିଲା 'ରେନ୍ ଅଫ୍ ଟେରର୍'। ଏହି ସମୟରେ ଗିଲୋଟିନ୍ ଦ୍ୱାରା ରାଜପରିବାର ଓ ସେମାନଙ୍କର ସମର୍ଥକମାନଙ୍କର ମୁଣ୍ଡକାଟ

କରାଯାଇଥିଲା । ସେତେବେଳେ ଏହି କଟାମୁଣ୍ଡଗୁଡ଼ିକର ମହମ ପ୍ରତିମା କରିବା ଦାୟିତ୍ୱ ଦିଆଗଲା ମ୍ୟାଡାମ ଟୁସାଡ୍‌ଙ୍କୁ । ସେ ପ୍ରତିମା ନିର୍ମାଣ କରିଥିଲେ ସତ, କିନ୍ତୁ ଅଧିକଦିନ ଏଭଳି ଏକ ପରିବେଶରେ ରହିବାକୁ ଚାହିଁ ନଥିଲେ । ୧୮୦୨ ମସିହାରେ ନିଜ ପିଲାମାନଙ୍କୁ ନେଇ ସେ ଇଂଲାଣ୍ଡ ଚାଲି ଆସିଲେ । କିନ୍ତୁ ଆସିବାବେଳେ ସାଙ୍ଗରେ ନିଜର ମହମ ପ୍ରତିମାଗୁଡ଼ିକୁ ଆଣିବା ପାଇଁ ଭୁଲି ନ ଥିଲେ । ଏବେ ମଧ୍ୟ ମିଉଜିଅମ୍‌ର 'ଚେମ୍ବର୍ ଅଫ୍ ହରର୍‌ସ'ରେ କଟାମୁଣ୍ଡ ଗୁଡ଼ିକର ମହମ ପ୍ରତିମାମାନ ରଖାଯାଇଛି ।

୧୮୩୫ ମସିହାରେ ମ୍ୟାଡାମ୍ ଟୁସାଡ୍‌ଙ୍କର ପ୍ରଥମ ପ୍ରଦର୍ଶନୀ ବେକର୍ ଷ୍ଟ୍ରିଟ୍‌ରେ ହୋଇଥିଲା । କିନ୍ତୁ ବର୍ତ୍ତମାନ ଯେଉଁଠାରେ ତାଙ୍କର ମିଉଜିଅମ୍ ରହିଛି ତାହା ମ୍ୟାଡାମ୍ ଟୁସାଡ୍‌ଙ୍କର ମୃତ୍ୟୁର ୩୪ ବର୍ଷ ପରେ ୧୮୮୪ରେ ସ୍ଥାପିତ ହୋଇଥିଲା । ୧୮୫୦ ମସିହାରେ ୮୯ ବର୍ଷ ବୟସରେ ମ୍ୟାଡାମ୍ ଟୁସାଡ୍ ମୃତ୍ୟୁବରଣ କରିଥିଲେ ।

ତାଙ୍କର ମୃତ୍ୟୁ ପରେ ମଧ୍ୟ ୱାକ୍ସ୍ ମିଉଜିଅମ୍‌ର ସ୍ମୃତିକୁ ଜୀବନ୍ତ ରଖାଯାଇଛି । ଏବେ ମଧ୍ୟ ଏହିଠାରେ ବହୁ ପ୍ରତିମା ନିର୍ମାଣ କରାଯାଉଛି । ଏହି ମିଉଜିଅମ୍‌ରେ ଇଂଲାଣ୍ଡ ରାଜପରିବାରଠାରୁ ଆରମ୍ଭ କରି ମିଖାଏଲ୍ ଗୋର୍ବାଚେଭ୍, ମହାତ୍ମା ଗାନ୍ଧୀ, ଇନ୍ଦିରା ଗାନ୍ଧୀ ଓ ରାଜୀବ ଗାନ୍ଧୀଙ୍କର ମୂର୍ତ୍ତି ରହିଛି । ଆଉ ରହିଛି ଆଗାଥା କ୍ରିଷ୍ଟିଙ୍କଠାରୁ ଆରମ୍ଭ କରି ମୁନ୍ରୋ ପର୍ଯ୍ୟନ୍ତ ବହୁ ଲେଖକ ଲେଖିକାଙ୍କର ପ୍ରତିମାମାନ । ଏହା ବ୍ୟତୀତ ମଧ୍ୟ ଶୋଭା ପାଉଛି ମେରିଲିନ୍ ମୋନ୍‌ରୋ, ମାଇକେଲ୍ ଜ୍ୟାକ୍‌ସନ୍, ବୋରିସ୍ ବେକର- ଏଭଳି ଅନେକ ଅଭିନେତା, ଅଭିନେତ୍ରୀ, ସଙ୍ଗୀତ ଶିଳ୍ପୀ ତଥା କ୍ରୀଡାବିତ୍‌ଙ୍କର ମୂର୍ତ୍ତି ।

କିଏ ଏସବୁକୁ ମୂର୍ତ୍ତି କହିବ ? ସତେ ଯେମିତି ଜୀବନ୍ତ ପ୍ରତିମା ! ଏଇଠି ବେଶ୍ ମଜାର ଘଟଣାଟିଏ ଘଟିଲା । ମିଉଜିଅମ୍‌ର ଗୋଟିଏ ସ୍ଥାନରେ ରେଷ୍ଟୋରାଁଟିଏର ଦୃଶ୍ୟ ସୃଷ୍ଟି କରାଯାଇଥାଏ । ଦୁଇଜଣ ୱେଟର୍ ଟ୍ରେ ଧରି ଖାଦ୍ୟ ନେଉଥାଆନ୍ତି । ସେଇଠାରେ ଗୋଟିଏ ଟେବୁଲ୍‌ର ଉଭୟ ପାର୍ଶ୍ୱରେ ଖାଦ୍ୟପାଇଁ ଅପେକ୍ଷା କରି ବସିଥାଆନ୍ତି ଜଣେ ପୁରୁଷ ଓ ଜଣେ ମହିଳା । ଆଉ ଟେବୁଲ ନିକଟରେ ଠିଆ ହୋଇ ରହିଥାଆନ୍ତି ଅନ୍ୟ ଜଣେ ମହିଳା । ହଠାତ୍ ଟେବୁଲ୍ ନିକଟରେ ଠିଆ ହୋଇଥିବା ମହିଳା ଜଣକ ବୁଲିପଡ଼ି ଚାଲିଯିବାକୁ ଲାଗିଲେ । ଆମେ ସମସ୍ତେ ଚମକି ପଡ଼ିଲୁ । ରୁମି ପାଟିରୁ ଅଜାଣତରେ ବାହାରି ପଡ଼ିଲା, ''ମୁଁ ତ ଆପଣଙ୍କୁ

ମୂର୍ତ୍ତିଟିଏ ବୋଲି ଭାବିଥିଲି।'' ଭଦ୍ରମହିଳା ଜଣକ ହସିଦେଇ ଚାଲିଗଲେ। ଏଇଥିରୁ ତୁ ଅନୁମାନ କରି ପାରୁଥିବୁ ଏଠାକାର ଅଧିକାଂଶ ମୂର୍ତ୍ତି କିଭଳି ଜୀବନ୍ତ।

ହେଲେ ମିତୁ, ଠିକ୍ ସେଇ କଥା ମହାତ୍ମା ଗାନ୍ଧୀ, ଇନ୍ଦିରା ଗାନ୍ଧୀ ବା ରାଜୀବ ଗାନ୍ଧୀଙ୍କ ମୂର୍ତ୍ତି ବିଷୟରେ କହି ହେବ ନାହିଁ। ସତରେ, ସେମାନଙ୍କର ପ୍ରତିମୂର୍ତ୍ତି ଦେଖି ମୋ ମନ ଖରାପ ହୋଇଗଲା। ଯେଉଁଠି ଅନ୍ୟମାନଙ୍କର ମୂର୍ତ୍ତି ଏତେ ଜୀବନ୍ତ, ଠିକ୍ ସେଇ କ୍ଷେତ୍ରରେ ଆମ ଦେଶର ନେତାମାନଙ୍କର ମୂର୍ତ୍ତି ଏପରି 'ମୂର୍ତ୍ତି' ଭଳି ହେଲା କାହିଁକି ?

ମ୍ୟାଡାମ୍ ଟୁସାଡ୍ ମିଉଜିଅମ୍‌ଟି ସଂପୂର୍ଣ୍ଣ ରୂପେ ଦେଖିସାରିବା ପରେ ଆମର ପରବର୍ତ୍ତୀ ଲକ୍ଷ୍ୟସ୍ଥଳ ଥିଲା ପ୍ଲାନେଟାରିଅମ୍। ଏଇଟି ୱାକ୍‌ସ ମିଉଜିଅମ୍ ସହିତ ଲାଗି କରି ରହିଛି। କେବଳ ସେତିକି ନୁହଁ, ଉଭୟ ପ୍ଲାନେଟାରିଅମ୍ ଓ ମିଉଜିଅମ୍‌ର ଟିକେଟ୍ ଏକାଠି କିଣିଲେ ଶସ୍ତା ମଧ୍ୟ ପଡେ। ଆମେ ପ୍ରଥମରୁ ଦୁଇଟା ଯାକର ଟିକେଟ୍ ଏକାଠି କିଣି ନେଇଥିଲୁ। ତେଣୁ ମିଉଜିଅମ୍ ଭିତରୁ ଯାଇଥିବା ଏକ ବିଶେଷ ରାସ୍ତା ବାଟେ ପ୍ଲାନେଟାରିଅମ୍‌ରେ ପହଞ୍ଚିଗଲୁ। ମିଉଜିଅମ୍‌ରେ ଚାଲି ଚାଲି ଗୋଡ ତ ଥକି ଯାଇଥିଲା। ତେଣୁ ପ୍ଲାନେଟାରିଅମ୍‌ର ଆରାମଦାୟକ ଚୌକୀରେ ବସି ସୌରଜଗତର ରହସ୍ୟ ଦେଖିବା ପାଇଁ ବହୁତ ଭଲ ଲାଗିଲା।

ସେଠାରୁ ବାହାରି ପାଖରେ ଥିବା ସାଣ୍ଡୱିଚ୍ ଖାଇସାରିବା ବେଳକୁ ସମୟ ହୋଇଥିଲା ସାଢେ ଗୋଟାଏ। ସକାଳ ନଅରୁ ସାଢେ ଗୋଟାଏ- ଏତେ ଗୁଡାଏ ସମୟ ବୁଲା କିଛି କମ୍ ନୁହଁ। ହାତରେ ଅପର୍ଯ୍ୟାପ୍ତ ସମୟ ଥିଲେ ଆମେ ହୁଏତ ହୋଟେଲ୍ ଫେରିଯାଇଥାଆନ୍ତୁ। କିନ୍ତୁ ଆଉ ଯେ ମାତ୍ର ଦୁଇଟି ଦିନ ପାଖରେ। ହୋଟେଲ୍ ଫେରିଯାଇ ଅଧାଦିନ ଗଡେଇ ଦେବା କଥା କ'ଣ ଚିନ୍ତା କରି ହୁଏ ?

ତେବେ ପ୍ରଶ୍ନ ହେଲା ଯିବୁ କୁଆଡେ ? ବହୁ ଆଲୋଚନା ପରେ ଶେଷରେ ରୁମି ହିଁ ସ୍ଥାନଟିଏ ବାଛିଲା। ତାଙ୍କ ସ୍କୁଲ୍‌ର ଆର୍ଟ ଶିକ୍ଷୟିତ୍ରୀ ଗତବର୍ଷ ଶ୍ରେଣୀରେ 'ମୋନେ'ଙ୍କର 'ୱାଟର୍‌ଲିଲି ପଣ୍ଡ' ବିଷୟରେ ଶିକ୍ଷା ଦେଇଥିଲେ। ସେ କହିଥିଲେ ଯେ ଏଇଟି ଲଣ୍ଡନ୍‌ର ନ୍ୟାସ୍‌ନାଲ୍ ଗ୍ୟାଲେରୀ ଅଫ୍ ଆର୍ଟରେ ରହିଛି। ତେଣୁ ନ୍ୟାସନାଲ୍ ଗ୍ୟାଲେରୀ ଅଫ୍ ଆର୍ଟ ଗଲେ କେମିତି ହୁଅନ୍ତା ? କିଛି ନ ବୁଝି ସାନ ମଧ୍ୟ ବଡ ଭଉଣୀ ସାଙ୍ଗରେ ପାଳି ଧରିଲା, ''ହଁ, ହଁ, ନ୍ୟାସ୍‌ନାଲ୍

ଗ୍ୟାଲେରୀ ଅଫ୍ ଆର୍ଟ ଯିବା ।''

ଏ ତ ''...ବଇଦ ବତାଇଲା ପେଜ ତୋରାଣୀ'' ଭଳି କଥା । ଆମେ ପିଲାମାନଙ୍କ କଥା ଭାବି ସାହସ କରି ନ୍ୟାସ୍‌ନାଲ ଗ୍ୟାଲେରୀ ଦେଖିବା କଥା କହି ପାରୁ ନ ଥିଲୁ । କିନ୍ତୁ ଯେଉଁଠି ପିଲାମାନଙ୍କର ସେଇଟିକୁ ଦେଖିବା ପାଇଁ ଏତେ ଇଚ୍ଛା, ଆମର ଅରାଜି ହେବାର ପ୍ରଶ୍ନ କାହିଁ? ସଙ୍ଗେ ସଙ୍ଗେ ବେକରସ ଫିଲଡ୍ ଷ୍ଟେସନ୍‌ରୁ ମେଟ୍ରୋରେ ଆମେ ପିକାଡିଲି ସ୍କାୟାର୍ ଚାଲିଗଲୁ । ସେଇଠାରୁ ଚାଲିକରି ଟ୍ରାଫାଲଗର ସ୍କାୟାର୍ । ତାହାର ଠିକ୍ ବିପରୀତରେ ରହିଛି ଏହି ନ୍ୟାସନାଲ୍ ଗ୍ୟାଲେରୀ ।

ଏଇଟି ପୃଥିବୀର ଶ୍ରେଷ୍ଠ ଆର୍ଟ ଗ୍ୟାଲେରୀ ମଧ୍ୟରୁ ଅନ୍ୟତମ । ପ୍ୟାରିସ୍‌ର ଲୁଭ୍ ମିଉଜିଅମ୍ ଭଳି ଏଠାରେ ରହିଛି ବହୁ ପ୍ରସିଦ୍ଧ ଇଉରୋପୀୟ କଳାକାରମାନଙ୍କର ହାତ ଅଙ୍କା ଛବି । ଅଥଚ ଏହା ଭିତରକୁ ଯିବା ପାଇଁ କୌଣସି ଟିକେଟ୍ କିଣିବାକୁ ହୁଏ ନାହିଁ ।

ବିଭିନ୍ନ କଳାକୃତିକୁ ଏକାଠି କରି ଏକ ରାଷ୍ଟ୍ରୀୟ ସଂଗ୍ରହାଗାର ନିର୍ମାଣ କରିବା କଥା ପ୍ରଥମ ଉଠିଥିଲା ୧୮୨୪ରେ । ସେହିବର୍ଷ ବ୍ରିଟିଶ୍ ପାର୍ଲିଆମେଣ୍ଟ ଜଣେ ସଂଗ୍ରହକାରୀଙ୍କଠାରୁ ୩୮ଟି ପେଣ୍ଟିଙ୍ଗ୍ କିଣିବାର ନିଷ୍ପତ୍ତି ନେଇଥିଲା ଏବଂ ୬୦,୦୦୦ ପାଉଣ୍ଡ ବିନିମୟରେ ସେଗୁଡିକ କିଣା ହୋଇଥିଲା । କ୍ରମଶଃ ନିୟମିତ ଭାବରେ ଅଧିକରୁ ଅଧିକ କଳାକୃତି କିଣିବାର ସିଦ୍ଧାନ୍ତ ନିଆଗଲା । ଶେଷରେ ୧୮୩୮ ମସିହାରେ ସ୍ଥାପିତ ହୋଇଥିଲା ନ୍ୟାସ୍‌ନାଲ୍ ଗ୍ୟାଲେରୀ ।

ନ୍ୟାସ୍‌ନାଲ୍ ଗ୍ୟାଲେରୀ ମଧ୍ୟରେ ବହୁ ଯତ୍ନରେ ରଖାଯାଇଥିବା ସମସ୍ତ ଛବି ଉପରେ ଯଦି ମୁଁ ଲେଖି ବସେ, ତେବେ ମୋ କଲମରୁ କାଳି ସରିଯିବ, ରାତି ପାହିଯିବ । କିନ୍ତୁ କଥା ଶେଷ ହେବ ନାହିଁ । ସେଥିପାଇଁ ଯେଉଁ କେତୋଟି ମତେ ବହୁତ ବେଶୀ ଭଲ ଲାଗିଲା, ସେହିଗୁଡିକ ବିଷୟରେ ତୋତେ ଲେଖୁଛି । ମୁଁ କଳାକାର ନୁହଁ, କଳା ସମାଲୋଚକ ମଧ୍ୟ ନୁହଁ, ତେଣୁ କେତେଗୁଡିଏ ପ୍ରସିଦ୍ଧ ଛବିର ସୂକ୍ଷ୍ମ ମାହାତ୍ମ୍ୟ ଠିକ୍ ବୁଝି ପାରିଲି ନାହିଁ । ତଥାପି ଯେଉଁ ଚିତ୍ରକାରଙ୍କର ହାତ ଅଙ୍କା ଛବି ମୋତେ ମୁଗ୍ଧ କରିଦେଲା, ସେ ହେଉଛନ୍ତି ବ୍ରିଟିଶ୍ କଳାକାର କନ୍‌ଷ୍ଟେବଲ୍ (Constable) । ତାଙ୍କ ହାତ ଅଙ୍କାରେ ଯେଉଁ କୋମଳ ସୌନ୍ଦର୍ଯ୍ୟ, ସକାଳର ସତେଜତା ରହିଥିଲା, ତାହା ମୋର ସମଗ୍ର ସତ୍ତାକୁ ସୁବାସିତ କରିଦେଲା ।

ବିଶେଷ କରି 'The Haywain'ଏବଂ 'The Morning Walk'ଛବି ଦୁଇଟି।

ନ୍ୟାସ୍‌ନାଲ୍ ଗ୍ୟାଲେରୀରେ କେବଳ ଇଂରେଜ କଳାକାରମାନଙ୍କର କଳାକୃତି ରଖାଯାଇ ନାହିଁ, ଏଇଠାରେ ମଧ୍ୟ ସ୍ଥାନ ପାଇଛି ଡଚ୍, ଫରାସୀ, ଇଟାଲୀୟ ଓ ସ୍ପେନୀୟ କଳାକାରଙ୍କର ଶ୍ରେଷ୍ଠ କଳାକୃତିମାନ।

ମୁଁ କିଛିଦିନ ତଳେ ଭିନ୍‌ସେଣ୍ଟ ଭ୍ୟାନ୍‌ଗଗ୍‌ଙ୍କର ଜୀବନୀ ପଢ଼ିଥିଲି। ବହିଟି ପଢ଼ିବା ବେଳେ ବହୁତଥର ମୋ ଆଖିକୁ ପାଣି ଚାଲି ଆସିଥିଲା। କି ସଂଘର୍ଷମୟ ଜୀବନ ତାଙ୍କର! ସାରା ଜୀବନ ଦୁଃଖ, ଅପମାନ ସହି ସେ କେବଳ କଳାର ସାଧନା କରିଯାଇଥିଲେ। ଅଥଚ ଜୀବନକାଳ ମଧ୍ୟରେ ତାଙ୍କୁ କେବେହେଲେ କେହି ସମ୍ମାନ ଦେଇ ନ ଥିଲା; ତାଙ୍କର ପେଣ୍ଟିଙ୍ଗକୁ କୌଣସି ସ୍ଥାନରେ ଟଙ୍ଗାଇବାର ଉପଯୋଗ୍ୟ ମଧ୍ୟ ମଣି ନ ଥିଲା। ନିଜ ହାତ ଥକା ଛବି ବିକ୍ରି କରି ନ ପାରି ସେ ଏଭଳି ଏକ ଅବସ୍ଥାରେ ପହଞ୍ଚିଥିଲେ ଯେତେବେଳେ ତାଙ୍କୁ ବଞ୍ଚିବା ପାଇଁ କୋଇଲା ଖଣିରେ କାମ କରିବାକୁ ପଡିଥିଲା। ଆଉ ଜୀବନର କେତୋଟି ମୂଲ୍ୟବାନ ବର୍ଷକୁ 'ପାଗଳଖାନା'ରେ କଟେଇବାକୁ ହୋଇଥିଲା। ସେହି ଭିନ୍‌ସେଣ୍ଟ ଭ୍ୟାନ୍‌ଗଗ୍‌ଙ୍କର 'ସନ୍ ଫ୍ଲାୱାର' ଛବି ସମେତ ବହୁ ପ୍ରସିଦ୍ଧ କଳାକୃତି ଏହିଠାରେ ଶୋଭା ପାଉଛି।

ପିଲାମାନେ ପ୍ରଥମରୁ ନ୍ୟାସନାଲ ଗ୍ୟାଲେରୀ ଦେଖିବା ପାଇଁ ଏତେ ଆଗ୍ରହ ଦେଖାଉଥିଲେ। କିନ୍ତୁ 'ୱାଟର୍ ଲିଲି ପଣ୍ଡ' ଦେଖି ସାରିବା ପରେ ସେମାନଙ୍କର ମନ ଭରିଗଲା। ତା'ଛଡା ଏମିତି ଯେ ଚାଲିବାକୁ ହେବ, ସେ ଧାରଣା ସେମାନେ କରିପାରି ନ ଥିଲେ। ପ୍ରାୟ ସାଢେ ପାଞ୍ଚଟା ବେଳକୁ ସେମାନେ ଅମୋଘ ଅସ୍ତ୍ର ପ୍ରୟୋଗ କଲେ ''ବହୁତ ଭୋକ। ଆଉ ରହି ହେଉ ନାହିଁ।''

ଅବଶ୍ୟ କଥାଟି ସଂପୂର୍ଣ୍ଣ ମିଛ ନୁହଁ। ସେଇ ସକାଳୁ ବାହରିବା ପରେ ମଝିରେ ସ୍ୟାଣ୍ଡୱିଚ୍ ଯାହା ଖିଆ ହୋଇଥିଲା, ଏତେ ଚାଲି ଚାଲି ସେତକ ହଜମ ହୋଇ ସାରିଥାଏ। ତେଣୁ ନ୍ୟାସ୍‌ନାଲ୍ ଗ୍ୟାଲେରୀ ଅଫ୍ ଆର୍ଟରୁ ବାହାରି ପାଖରେ ଥିବା ଗୋଟିଏ ସୁନ୍ଦର ରେସ୍ତୋରାଁ ଭିତରେ ପଶିଲୁ। ରେସ୍ତୋରାଁର ଗୋଟିଏ କଣରେ ପଡିଥିବା ଟେବୁଲରେ ବସିଯାଇ ମୁଁ ସ୍ୱସ୍ତିର ନିଶ୍ୱାସ ନେଲି। ପାଖ ଚୌକୀରେ ମୋ ପର୍ସ, ରେନ୍ କୋଟ୍ ରଖିଦେଇ ମେନୁ ଉପରେ ଆଖି ବୁଲେଇ ଆଣିଲି। ଟେବୁଲ୍‌ର ଅନ୍ୟ ପାଖରେ ପଡିଥିବା ଚୌକୀରେ ବସି ତୋ

ଭାଉନା ପଇସାକୁ ବେଖାତିର କରି ସବୁ ଭଲ ଭଲ ଜିନିଷ ଖାଇବାର ଯୋଜନା କରୁ ଥାଆନ୍ତି। ପିଲା ଦୁଇଜଣ ମଧ୍ୟ ଗୋଟିଏ ଗୋଟିଏ ମେନୁ ଧରି କ'ଣ ଖାଇବେ ସେଇ ଆଲୋଚନା ଚଲେଇ ଥାଆନ୍ତି। ହଠାତ୍ ମୋ ଆଖିରେ ପଡିଲା ଯେ ରେନ୍ କୋଟ୍‌ଟି ତଳେ ପଡିଛି। ମୁଁ ତ ପାଖ ଚୌକୀ ଉପରେ ସେଇଟିକୁ ରଖିଥିଲି, ତଳକୁ ଗଲା କେମିତି? ଆଉ ରେନ୍‌କୋଟ୍ ଉପରେ ତ ମୋର ପର୍ସଥିଲା। ପର୍ସ କାହିଁ? ମୋ ଭିତରେ ସବୁ ଓଲଟପାଲଟ ହୋଇଗଲା। ଗୋଟାଏ ମୁହୂର୍ତ୍ତ ମଧ୍ୟରେ ଆମ ସମସ୍ତଙ୍କର ଅବସ୍ଥିତିରେ ଏମିତିଆ ଘଟଣାଟିଏ ଘଟିଲା କେମିତି? ଆଗ ଗୁଡାଏ ମନ ଖରାପ କଲି। ଅସାବଧାନ ହୋଇ କାନ୍ଧରୁ ପର୍ସ କାଢି ରଖି ଦେଇଥିବାରୁ ନିଜକୁ ଗୁଡାଏ ଦୋଷ ଦେଲି। କିନ୍ତୁ ଏମିତି ଯେ ରେସ୍ତୋରାଁ ଭିତରୁ ମୋ ପାଖ ଚୌକୀରୁ କିଏ ଜଣେ ପର୍ସ ନେଇଯିବ, ସେ କଥା କ'ଣ ଚିନ୍ତା କରିଥିଲି?

ଏସବୁ ବିଷୟରେ ତୋ ଭାଇନା ବଡ ଥଣ୍ଡା। ଶାନ୍ତ ହୋଇ କହିଲେ, "ଆଗ ଯାହା ଯାହା ଯାଇଛି, ତା'ର ଗୋଟିଏ ତାଲିକା କର। ତା'ପରେ ଯାହା ହେଲେ କରିବା।" ମୁଁ ପୂର୍ବ ରାତିରେ ବ୍ୟାଗ୍ ସଜାଡି ରଖିଥିଲି। ତେଣୁ ସେଥିରେ ଥିବା ଜିନିଷର ତାଲିକା କରିବାକୁ ସମୟ ଲାଗିଲା ନାହିଁ। ତାଲିକାଟିକୁ ଦେଖି ନେଇ ମୁଁ ମନେ ମନେ ଜଣେ ଅଜଣା ଗାଇଡ୍ ବହିର ଲେଖକଙ୍କୁ ଧନ୍ୟବାଦ ଜଣାଇଲି। କିଛି ମାସ ଆଗରୁ ପଢିଥିବା ସେହି ବହିରେ ଲେଖାଥିଲା ଯେ ନୂଆ ନୂଆ ସ୍ଥାନରେ ବୁଲିବା ସମୟରେ ପାସ୍‌ପୋର୍ଟ ଧରି ବୁଲିବ ନାହିଁ। ସବୁବେଳେ ନିକଟରେ ଯେତିକି ଅର୍ଥ ନିହାତି ଆବଶ୍ୟକ, କେବଳ ସେତିକି ରଖିବ ଏବଂ ଜରୁରୀ ଆବଶ୍ୟକତା ପାଇଁ ପାଖରେ ନଗଦ ଅର୍ଥ ନ ରଖି ଟ୍ରାଭେଲର୍‌ସ୍ ଚେକ୍ ରଖିବ। ମୁଁ ଲେଖକଙ୍କର ଉପଦେଶ ଅନୁସାରେ ପର୍ସରେ ପାସ୍‌ପୋର୍ଟ ବା ସେଇଭଳି କୌଣସି ଜରୁରୀ କାଗଜ ରଖି ନଥିଲି। ସାରାଦିନର ଖର୍ଚ୍ଚପରେ ଅଳ୍ପ କିଛି ପାଉଣ୍ଡ ଥିଲା ଏବଂ ଆମେରିକାନ୍ ଏକ୍‌ସପ୍ରେସ୍‌ର ଗୋଟିଏ ଟ୍ରାଭେଲର୍‌ସ ଚେକ୍ ଥିଲା। ମୁଁ ବେଶୀ ସାବଧାନ (!) ବୋଲି ତୋ ଭାଇନା ନିଜ ପାଖରେ କୌଣସି ପାଉଣ୍ଡ ନ ରଖି ସବୁତକ ମୋ ଜିମା ଦେଇଥିଲେ। ତେଣୁ ଆଉ ତ ଖାଇବା କଥା ହେଲା ନାହିଁ। ଭାଗ୍ୟ ଭଲ, ମେଟ୍ରୋର 'ଟ୍ରାଭେଲ୍ ପାଶ୍' ତାଙ୍କ ପକେଟରେ ଥିଲା। ସେଇମିତି ଭୋକିଲା ଅବସ୍ଥାରେ ମେଟ୍ରୋ ଧରି ହୋଟେଲ୍

ଫେରି ଆସିଲୁ। ରୁମ୍‌ରେ ପାଉଁରୁଟୀ, ବଟର୍, ବିସ୍କୁଟ୍ ଏସବୁ ପିଲାଙ୍କୁ ଖାଇବାକୁ ଦେଇ ମୋର ପ୍ରଥମ କାମ ହେଲା ଆମେରିକାନ୍ ଏକ୍ସ୍‌ପ୍ରେସ୍ ଅଫିସ୍‌କୁ ଫୋନ୍ କରିବା। ଟ୍ରାଭେଲରସ୍ ଚେକ୍ ହଜିଗଲେ ଆମେରିକାନ୍ ଏକ୍ସ୍‌ପ୍ରେସ୍ ଅଫିସ୍‌ରୁ ନୂଆ ଟ୍ରାଭେଲରସ ଚେକ୍ ମିଳିଯାଏ ବୋଲି ମୁଁ ଜାଣିଥିଲି। କିନ୍ତୁ ମିତୁ, ସବୁକିଛି ଯେ ଏତେ ସହଜରେ ହୋଇଯାଏ, ସେ କଥା ଜଣା ନଥିଲା।

ଆମ ହୋଟେଲ୍ ନିକଟରେ ଥିବା ଆମେରିକାନ୍ ଏକ୍ସ୍‌ପ୍ରେସ୍ ଅଫିସ୍‌ରେ ପହଞ୍ଚିବାର ମାତ୍ର ଦଶମିନିଟ୍ ମଧ୍ୟରେ ନୂଆ ଟ୍ରାଭେଲରସ୍ ଚେକ୍ ମିଳିଗଲା। ତାକୁ ଦେଖିଦେଇ ମୋର ପର୍ସ ଚୋରୀ ହୋଇଥିବାର ଅଧା ଶୋକ ଚାଲିଗଲା।

ଏ ହେଲା ପଥରଦିନ ଘଟଣା। କିନ୍ତୁ ଗତକାଲି ସକାଳୁ ଉଠିବା ପରେ ପୁଣି ମନ ଭିତର ଗୋଳେଇ ହୋଇ ଯାଉଥାଏ। ହେଲା ଏବେ, ଚୋରୀଟା ଅଳ୍ପ ଉପର ଦେଇ ଗଲା। କିନ୍ତୁ କାହିଁକି ଯେ ମୁଁ ଆଉ ଟିକିଏ ସାବଧାନ ନ ହେଲି? ଆଗରୁ ସ୍ଥିର ହୋଇଥିଲା ଯେ ଆମେ ଗତକାଲି ବ୍ରିଟିଶ୍ ମିଉଜିଅମ୍ ଦେଖିବାକୁ ଯିବୁ। ହେଲେ ମିଉଜିଅମ୍ ବୁଲିବାର ସବୁ ସ୍ପୃହା ମୋର ଚାଲିଯାଇଥାଏ। ମୋ ମନର ଅବସ୍ଥା ଦେଖି ତୋ ଭାଇନା ହଠାତ୍ କହିଲେ, ''ମିଉଜିଅମ୍ ପରେ ଯିବା, ଆଗ ଚାଲ ଯିବା ହ୍ୟାରଡ୍‌ସ୍।''

ହ୍ୟାରଡ୍‌ସ୍!

ବାସ୍-ସେଇ ଯାଦୁକାରୀ ଶବ୍ଦଟି ଯେମିତି କିମିଆ କରିଦେଲା। ମୋର ସବୁତକ ମନଖରାପ ଉଭାନ ହୋଇଗଲା ଗୋଟିଏ ମୁହୂର୍ତ୍ତରେ।

ଲଣ୍ଡନର ବହୁ ପୁରୁଣା ଓ ବୋଧହୁଏ ସବୁଠାରୁ ଅଧିକ ଜଣାଶୁଣା ଏହି ହ୍ୟାରଡ୍‌ସ ଡିପାର୍ଟମେଣ୍ଟାଲ ଷ୍ଟୋର୍। ତୁ ତ ଜାଣିଛୁ, ମୁଁ ଟିକିଏ ଦୋକାନ ପ୍ରିୟ। କେତେ ଉପନ୍ୟାସରେ ଏହି ହ୍ୟାରଡ୍‌ସ ବିଷୟରେ ପଢ଼ିଛି। ସେହିଠାକୁ ଯିବା କଥା ଶୁଣି ମୋ ମନ ଖୁସି ହୋଇଗଲା।

ବ୍ରମ୍ପଟନ୍ ଷ୍ଟ୍ରିଟ୍‌ରେ ହ୍ୟାରଡ୍‌ସ। ଆମ ହୋଟେଲ୍‌ଠାରୁ ବେଶୀ ବାଟ ନୁହଁ। ଆମେ ତେଣୁ ମେଟ୍ରୋରେ ନ ଯାଇ ଚାଲି ଚାଲି ହ୍ୟାରଡ୍‌ସ ଗଲୁ। ମିତୁ, ମୁଁ ଆମେରିକାରେ ବହୁ ଦୋକାନ, ଡିପାର୍ଟମେଣ୍ଟାଲ୍ ଷ୍ଟୋର୍ ଦେଖିଛି। କିନ୍ତୁ କେଜାଣି କାହିଁକି ମୋର ମନେ ହେଲା ସେସବୁ ତୁଳନାରେ ହ୍ୟାରଡ୍‌ସ୍ ଆହୁରି ସୁନ୍ଦର, ଆହୁରି ବଡ଼। 'କିଛି କିଣିବି ନାହିଁ, ଖାଲି ଦେଖିବି'- ଏହି କଥା

ମନକୁ ମନ ଘୋରି ହୋଇଥିଲେ ମଧ ଛୋଟ ଛୋଟ ଜିନିଷ କିଣିବାର ଲୋଭ ସମ୍ବରଣ କରିପାରିଲି ନାହିଁ।

ସକାଳଟି ସୁନ୍ଦର ଭାବରେ ହ୍ୟାରଡ୍‌ସ୍‌ରେ କଟେଇ ହାତରେ ସୁନେଲୀ ଅକ୍ଷରରେ ଲେଖା ହୋଇଥିବା ସବୁଜ ହ୍ୟାରଡ୍‌ସ୍ ବ୍ୟାଗ ଧରି ନୂଆ ଉତ୍ସାହ ନେଇ ଆମେ ବ୍ରିଟିଶ୍ ମିଉଜିଅମ୍ ବାହାରିଲୁ। ମେଟ୍ରୋରେ 'ଟୋଟେନ୍‌ହାମ୍ କୋର୍ଟ ରୋଡ୍' ଷ୍ଟେସନ୍ ପର୍ଯ୍ୟନ୍ତ ଯାଇ ଅଳ୍ପ ଚାଲିଲେ ପଡେ ଗ୍ରେଟ୍ ରସେଲ୍ ଷ୍ଟ୍ରିଟ୍। ସେଇଠାରେ ହିଁ ରହିଛି ବ୍ରିଟିଶ୍ ମିଉଜିଅମ୍। ପୃଥିବୀର ସର୍ବଶ୍ରେଷ୍ଠ ମିଉଜିଅମ୍ ମଧ୍ୟରୁ ଏଇଟି ଅନ୍ୟତମ। ନ୍ୟାସ୍‌ନାଲ୍ ଆର୍ଟ ଗ୍ୟାଲେରୀ ଭଳି ଏହା ଭିତରକୁ ପଶିବା ପାଇଁ ଟିକେଟ୍ ଦରକାର ହୁଏ ନାହିଁ।

ମିଉଜିଅମ୍‌ର ବିରାଟ ପୋର୍ଟିକୋଟିକୁ ଦେଖିଦେଲେ ଜଣଙ୍କର ଆଖି ଖୋସି ହୋଇଯିବ। ପୋର୍ଟିକୋରୁ ସାମ୍ନା ହଲ୍ ଦେଇ ଆମେ ଯେଉଁଠାରେ ପହଞ୍ଚିଲୁ ସେଇଟି ହେଉଛି 'ରିଡିଙ୍ଗ୍ ରୁମ୍'। ସେଇଠାରୁ ଉତ୍ତର ଓ ଡାହାଣ ପଟକୁ ଗଲେ ରହିଛି ବିଶାଳ ଲାଇବ୍ରେରୀ। ବାଁ ପଟକୁ ରହିଛି ପ୍ରାଚୀନ ରୋମ୍, ଗ୍ରୀସ୍, ଇଜିପ୍ଟ ଓ ଆସିରିଆରୁ ସଂଗ୍ରହ କରାଯାଇଥିବା ବହୁ ପ୍ରାଚୀନ ପଦାର୍ଥ। ବ୍ରିଟିଶ୍ ମିଉଜିଅମ୍‌ରେ ସଂଗୃହୀତ ହୋଇ ରହିଥିବା ପଦାର୍ଥମାନ ଯଦି ଜଣେ ଭଲ ଭାବରେ ଦେଖିବାକୁ ଚାହେଁ, ତେବେ ତା'ର ମାସ ମାସ କଟିଯିବ। ଆମ ଭଳି ହାତରେ ମାତ୍ର କେତୋଟି ଘଣ୍ଟା ଧରି କ'ଣ ବ୍ରିଟିଶ୍ ମିଉଜିଅମ୍ ଦେଖା ହୁଏ ? କେବଳ ମନକୁ ବୁଝେଇବା କଥା।

ମିତ୍ର, ଏଇ ବ୍ରିଟିଶ୍ ମିଉଜିଅମ୍‌ଟି ୧୭୫୩ ମସିହାରେ ସ୍ଥାପିତ ହୋଇଥିଲା। ସେହିବର୍ଷ ପ୍ରସିଦ୍ଧ ଇଂରେଜ ଡାକ୍ତର ସାର୍ ହାନ୍‌ସ୍ ସ୍ଲୋନ୍ ବହୁ ସମୟ ଓ ଅର୍ଥ ବ୍ୟୟ କରି ସଂଗ୍ରହ କରିଥିବା ନିଜର ବ୍ୟକ୍ତିଗତ ସଂଗ୍ରହାଗାର ରାଷ୍ଟ୍ରକୁ ଦାନ କରିଦେଲେ। ସ୍ଲୋନ୍‌ଙ୍କ ସଂଗ୍ରହାଗାର ଓ ପ୍ରସିଦ୍ଧ କର୍ଟନିଆନ୍ ଲାଇବ୍ରେରୀକୁ ନେଇ ପ୍ରତିଷ୍ଠା କରାଗଲା ବ୍ରିଟିଶ୍ ମିଉଜିଅମ୍। କ୍ରମଶଃ ଏହା ସହିତ ଇଂଲାଣ୍ଡର ବହୁ ଲାଇବ୍ରେରୀକୁ ଯୋଡି ଦିଆଗଲା। ଏହିପରି ବଢି ବଢି ଏହା ବର୍ତ୍ତମାନ ଏତେ ବିଶାଳ ହୋଇଯାଇଛି ଯେ ଲାଇବ୍ରେରୀର ଦେଖାଶୁଣା ଭାର ଏକ ଭିନ୍ନ ଅନୁଷ୍ଠାନକୁ ଦିଆହୋଇ ଯାଇଛି।

ଆମେ ପ୍ରଥମେ ବାଁପଟ ଦ୍ୱାର ଦେଇ ମିଉଜିଅମ୍‌ର ପଶ୍ଚିମ ଭାଗରେ ପହଞ୍ଚିଲୁ।

ତୋତେ ତ ପୂର୍ବରୁ କହିଛି ଯେ ଏହିଠାରେ ଇଜିପ୍ଟ, ଆସିରିଆ, ଗ୍ରୀସ୍ ଓ ରୋମ୍‌ରୁ ଅଣା ଯାଇଥିବା ବିଭିନ୍ନ ପଦାର୍ଥ ରହିଛି। ପ୍ରତିଟି କୋଠରୀ ଅନନ୍ୟ। ପ୍ରତ୍ୟେକ ସଂଗୃହୀତ ପଦାର୍ଥ ପଛରେ ରହିଛି ଏକ ଇତିହାସ। କିନ୍ତୁ ଯାହା ଦେଖି ମୁଁ ବାସ୍ତବରେ ଅଭିଭୂତ ହୋଇଗଲି ତାହା ହେଉଛି ପ୍ରସିଦ୍ଧ 'ଏଲ୍‌ଜିନ୍ ମାର୍ବଲସ୍'। ଏଲ୍‌ଜିନ୍‌ର ସପ୍ତମ ଆର୍ଲ ଥୋମାସ୍ ବ୍ରୁସ୍ ୧୮୦୧ ରୁ ୧୮୦୩ ମସିହା ମଧ୍ୟରେ ଏଥେନ୍‌ସରୁ ବହୁ ସୁନ୍ଦର ସୁନ୍ଦର ମାର୍ବଲ୍‌ର ମୂର୍ତ୍ତି ସଂଗ୍ରହ କରିଥିଲେ। ଗ୍ରୀସ୍‌ର ଲୋକମାନେ ସେତେବେଳେ ପ୍ରାଚୀନ କଳାକୁ ମୂଲ୍ୟ ବା ମର୍ଯ୍ୟାଦା ଦେଉ ନ ଥିଲେ। ତେଣୁ ହେଳାରେ ଏସବୁ ମଧ୍ୟରୁ ଅଧିକାଂଶ ନଷ୍ଟ ହୋଇ ଯାଉଥିଲା। ସେହି ସମୟରେ ଥୋମାସ୍ ବ୍ରୁସ୍ ସେସବୁକୁ ସଂଗ୍ରହ କରି ୧୮୧୬ ମସିହାରେ ବ୍ରିଟିଶ୍ ସରକାରଙ୍କୁ ଅଧା ମୂଲ୍ୟରେ ବିକ୍ରି କରି ଦେଇଥିଲେ। ଏଲ୍‌ଜିନ୍ ମାର୍ବଲ୍‌ସ ମଧ୍ୟରୁ ସବୁଠାରୁ ଅଧିକ ଜଣାଶୁଣା ହେଉଛି ପାର୍ଥେନନ୍ ବା ଏଥେନା ପାର୍ଥେନସ୍‌ଙ୍କ ମନ୍ଦିରରୁ ସଂଗ୍ରହ କରାଯାଇଥିବା ବିଭିନ୍ନ ମୂର୍ତ୍ତି। ଏହି ସବୁ ଖ୍ରୀ.ପୂ. ୪୪୭ ରୁ ୪୩୨ ମଧ୍ୟରେ ପେରିକଲସ୍‌ଙ୍କ ସମୟରେ ନିର୍ମିତ ହୋଇଥିଲା। ଏତେ ବର୍ଷ ପରେ ମଧ ଯେ ସେସବୁ ପୂର୍ବ ପରି ଶକ୍ତ ରହିଛି, ତାହା ହିଁ ଆଶ୍ଚର୍ଯ୍ୟର ବିଷୟ।

ଏଲ୍‌ଜିନ୍ ମାର୍ବଲ୍‌ସ ବ୍ୟତୀତ ମତେ ଯାହା ଦେଖି ଖୁସି ଲାଗିଲା ତାହା ହେଉଛି ଇଜିପ୍ଟରୁ ସଂଗୃହୀତ ବିଭିନ୍ନ ପଦାର୍ଥ। ଯେଉଁ କୋଠରୀ ମଧ୍ୟରେ ଏସବୁ ରହିଛି ତାହାର ପ୍ରବେଶ ଦ୍ୱାରରେ ରଖାଯାଇଛି କଳା ଗ୍ରାନାଇଟ୍‌ରେ ନିର୍ମିତ ଦୁଇଟି ମୂର୍ତ୍ତି। ଏହି ଦୁଇଟି ଖ୍ରୀ.ପୂ. ୧୪୦୦ରେ ନିର୍ମିତ ହୋଇଥିଲା। ଅଥଚ ଗ୍ରୀସୀୟ ମୂର୍ତ୍ତି ଭଳି ଏଗୁଡିକ ଅତୁଟ ରହିଛି। ପ୍ରାଚୀନ ଶିଳ୍ପୀମାନଙ୍କର କଳା ଓ ସ୍ଥାପତ୍ୟ କ୍ଷେତ୍ରରେ କେତେ ଯେ ଦକ୍ଷତା ଥିଲା, ତାହା ଏଇଥିରୁ ଅନୁମାନ କରିହୁଏ।

ସୀମିତ ସମୟ ମଧ୍ୟରେ ବ୍ରିଟିଶ ମିଉଜିଅମ୍‌ର ଯେତିକି ଅଂଶ ଦେଖିବା ସମ୍ଭବପର, ସେତିକି ଦେଖି ଆମେ ଫେରିଲୁ। ପାଦ କ୍ଳାନ୍ତ ହୋଇ ପଡିଥାଏ, କିନ୍ତୁ ମନ ଥାଏ ସତେଜ।

ଆଜି ଯେତେବେଳେ ସକାଳବେଳା ନିଦ ଭାଙ୍ଗିଲା, ବାହାରେ ସୁନ୍ଦର ପାଗ ଦେଖି ମନ ଖୁସି ହୋଇଗଲା। ଏଇଟି ଆମର ଲଣ୍ଡନରେ ଶେଷ ଦିନ। କାଲି ସକାଳୁ ଲଣ୍ଡନ୍ ଛାଡିବୁ। ତେଣୁ ଆଜି ଦିନଟିକୁ ବିଶେଷ ଭାବରେ କଟାଇବାର

ଇଚ୍ଛା ଥାଏ। ଶେଷରେ ସ୍ଥିର ହେଲା ଯେ ଦିନଟିକୁ ଲଣ୍ଡନ ବାହାରେ କୌଣସି ସ୍ଥାନରେ କଟାଇବୁ। ବେଶୀ ଦୂର ବାଟ ଯାଇ ସେଇଦିନ ଫେରିବା ତ ସମ୍ଭବ ହେବ ନାହିଁ। ତେଣୁ ଆମେ ସ୍ଥିର କଲୁ ଯେ ଗ୍ରିନ୍‌ଓ୍ୱିଚ୍ ଯିବୁ। କେନ୍ଦ୍ର ଲଣ୍ଡନଠାରୁ ସାଢେ ଚାରି ମାଇଲ୍ ଦୂରରେ ଟେମ୍‌ସ୍ ନଦୀର ଦକ୍ଷିଣ ଧାରରେ ରହିଛି ଗ୍ରିନ୍‌ଓ୍ୱିଚ୍। ଏକଦା ଏହା ଥିଲା ଛୋଟ ଅଜଣା ଅଶୁଣା ଗ୍ରାମଟିଏ। ଏଠିକାର ଲୋକମାନଙ୍କ ମଧ୍ୟରୁ ଅଧିକାଂଶ ମାଛ ମାରି ନିଜ ଜୀବିକା ଅର୍ଜନ କରୁଥିଲେ। କିନ୍ତୁ କାହିଁକି କେଜାଣି, ପଞ୍ଚଦଶ ଶତାବ୍ଦୀରେ ଗ୍ଲୋସେଷ୍ଟରର ଡ୍ୟୁକ୍ ହମ୍ଫ୍ରେଙ୍କୁ ଏହି ଗ୍ରାମଟି ପସନ୍ଦ ହୋଇଥିଲା ଏବଂ ସେ ସେହିଠାରେ ଏକ ବାସଗୃହ ନିର୍ମାଣ କରିଥିଲେ।

ଅବସ୍ଥା ଚକ୍ରରେ ଏହି ବାସଗୃହ ଇଂଲାଣ୍ଡ ରାଜ ପରିବାର ଅଧୀନକୁ ଆସିଥିଲା। ସପ୍ତମ ହେନେରୀ ଏହି ବାସଗୃହର ପୁନଃନିର୍ମାଣ କରାଇ ଏହାକୁ ଏକ ପ୍ରାସାଦରେ ପରିଣତ କରାଇଥିଲେ। ପ୍ରାସାଦଟି ଅଷ୍ଟମ ହେନେରୀଙ୍କର ବହୁତ ପ୍ରିୟ ଥିଲା। ଏହିଠାରେ ହିଁ ସେ ତାଙ୍କର ଛଅରାଣୀଙ୍କ ମଧ୍ୟରୁ ଦୁଇଜଣଙ୍କୁ ବିବାହ କରିଥିଲେ ଓ ଜଣଙ୍କୁ ମୃତ୍ୟୁ ଦଣ୍ଡ ଦେଇଥିଲେ। ଏଇଠି ମଧ୍ୟ ତାଙ୍କର ଦୁଇ କନ୍ୟା ମେରୀ ଓ ଏଲିଜାବେଥ୍ ଜନ୍ମ ହୋଇଥିଲେ। କିନ୍ତୁ ପରବର୍ତ୍ତୀ କାଳରେ ଏହି ପ୍ରାସାଦ ଧ୍ୱଂସ ପାଇ ଯାଇଥିଲା ଏବଂ ଏହା ସ୍ଥାନରେ ଦ୍ୱିତୀୟ ଚାର୍ଲସ ଏକ ନୂତନ ରାଜପ୍ରାସାଦ ନିର୍ମାଣ କରାଇଥିଲେ। ପରେ ରାଜପରିବାର ଏହି ପ୍ରାସାଦଟି ରାଷ୍ଟ୍ରକୁ ଦାନ କରି ଦେଇଥିଲେ ଏବଂ ଏହିଠାରେ ସ୍ଥାପିତ ହୋଇଥିଲା ଏକ ଡାକ୍ତରଖାନା। ଊନବିଂଶ ଶତାବ୍ଦୀରେ ଡାକ୍ତରଖାନାଟି ଅନ୍ୟ ଏକ କୋଠରୀକୁ ଉଠି ଯାଇଥିଲା ଏବଂ ତା'ର ସ୍ଥାନ ନେଇଥିଲା ରୟାଲ୍ ନାଭାଲ୍ କଲେଜ।

ରୟାଲ୍ ନାଭାଲ୍ କଲେଜ ବ୍ୟତୀତ ଗ୍ରିନଓ୍ୱିଚ୍‌ରେ ରହିଛି ରାଣୀଙ୍କ ଗୃହ, ନ୍ୟାସନାଲ୍ ମ୍ୟାରିଟାଇମ୍ ମିଉଜିଅମ୍ ଏବଂ ପ୍ରାଚୀନ ରୟାଲ୍ ଅବଜରଭେଟରି।

ମୋର ବିଶେଷ କୌତୁହଳ ଥିଲା ଏହି ରୟାଲ୍ ଅବଜରଭେଟରି ନେଇ। ତୁ ତ 'ଗ୍ରିନ୍‌ଓ୍ୱିଚ୍ ମିନ୍ ଟାଇମ୍' ବିଷୟରେ ନିଶ୍ଚୟ ଜାଣିଥିବୁ। ଗ୍ରିନ୍‌ଓ୍ୱିଚ୍‌ର ସମୟ ସହିତ ତୁଳନା କରାଯାଇ ପୃଥିବୀର ପ୍ରତ୍ୟେକ ସ୍ଥାନର ସମୟ ସ୍ଥିର କରାଯାଇଛି। ଏବେ ମଧ୍ୟ ରୟାଲ ଅବଜରଭେଟରିର ଫାଟକ ନିକଟରେ ଗୋଟିଏ ୧୨୦ ବର୍ଷର ପୁରୁଣା ଘଣ୍ଟା ରହିଛି। ଏହା 'ଗ୍ରିନ୍‌ଓ୍ୱିଚ୍ ମିନ୍ ଟାଇମ୍' ଦେଖାଇଥାଏ। ଆମ ଭଳି ବହୁ ଲୋକ ଘଣ୍ଟାଟିକୁ ଦେଖୁ ଥାଆନ୍ତି। ଏଭଳି ଏକ ଗୁରୁତ୍ୱପୂର୍ଣ୍ଣ

ସ୍ଥାନରେ ଠିଆ ହେବାର ସୁଯୋଗ ଯେ ମତେ ମିଳିଲା ସେଥିପାଇଁ ମୁଁ ଈଶ୍ୱରଙ୍କୁ ମନେ ମନେ ବହୁତ ଧନ୍ୟବାଦ ଦେଉଥାଏ ।

ମୁଁ ଶୁଣିଥିଲି ଗ୍ରିନ୍‌ୱିଚ୍ ଗ୍ରାମଟି ଖୁବ୍ ସୁନ୍ଦର । ତେଣୁ ଶୀତରେ ଦେହ ଥରିଯାଉଥିଲେ ମଧ୍ୟ ଆମେ ଚାଲି ଚାଲି ଗ୍ରାମଟି ଭିତରେ ବୁଲିଲୁ । ପୁରୁଣା କାଳର ଘର, ପୁରୁଣା ଶୈଳୀରେ ନିର୍ମିତ ଚର୍ଚ୍ଚ । ଲଣ୍ଡନଠାରୁ ଏତେ ନିକଟରେ ଅଥଚ କେତେ ଭିନ୍ନ ଏହି ସ୍ଥାନଟି !

ଗ୍ରିନ୍‌ୱିଚ୍‌ରୁ ଫେରିବାର କେତେ ଘଣ୍ଟା କଟିଗଲାଣି । ବାହାରେ ଅନ୍ଧାର ହୋଇ ଆସୁଛି । ଆସନ୍ତା କାଲି ଏତେବେଳକୁ ମୁଁ ମୋ ନିଜ ଦେଶରେ ଥିବି । ଭାବି ଦେଲେ ଖୁସି ଲାଗୁଛି, ଏଣେ ମନ ମଧ୍ୟ ଖରାପ ହୋଇଯାଉଛି କେତେ ଶୀଘ୍ର ସାତୋଟି ଦିନ କଟିଗଲା ! ଦେଖିବାକୁ ଆହୁରି କେତେ ଜିନିଷ ବାକୀ ରହିଗଲା । ଇଂଲାଣ୍ଡର 'Countryside' ଉପରେ ଏତେ ଶୁଣିଛି, ଅଥଚ ତାହାହିଁ ଦେଖିବାକୁ ସମୟ ମିଳିଲା ନାହିଁ । ସେସବୁ ଦେଖିବା ପାଇଁ ମତେ ଆଉଥରେ ଏଠାକୁ ଆସିବାକୁ ହେବ ଏବଂ ହାତରେ ବେଶ୍ କିଛି ସମୟ ରଖି ଆସିବାକୁ ହେବ ।

ଆଜି ପାଇଁ ଏତିକି । ରହୁଛି ।

ଇତି

ତୋର 'ନାନୀ'

କୁପରଟିନୋ

୨୭ ସେପ୍ଟେମ୍ବର, ୧୯୯୨

ସ୍ନେହର ମିତୁ,

ପ୍ରାୟ ମାସକର ତଳ କଥା। ପିଲାମାନେ ସ୍କୁଲ୍ ଓ ତୋ ଭାଇନା ଅଫିସ୍ ଯିବା ପରେ ମୁଁ ପତ୍ରିକାଟିଏ ପଢୁଥିଲି। ହଠାତ୍ ମୋର ଜଣେ ସାଙ୍ଗ ଅଦିତିଙ୍କର ଫୋନ୍ ଆସିଲା। ଅଦିତି ଏ ଅଞ୍ଚଳରେ ବହୁ ସମାଜସେବୀ ଅନୁଷ୍ଠାନ ସହିତ ଜଡିତ। ଫୋନ୍‌ରେ ସେ କହିଲେ ଯେ ସେପ୍ଟେମ୍ବର ୧୩ ତାରିଖ ଦିନ 'ଗ୍ରାଣ୍ଡ ପ୍ୟାରେଣ୍ଟସ୍ ଡେ' (Grandparents' Day)। ସେହି ଉଦ୍ଦେଶ୍ୟରେ ସେ ଏଠିକାର 'ସିନିୟର୍ ସିଟିଜେନ୍‌ସ ହୋମ୍' (ବା ଆମେ ଯାହାକୁ ଓଲ୍ଡ୍ ଏଜ୍ ହୋମ୍ କହିଥାଉ)ରେ ଭାରତୀୟ ପିଲାମାନଙ୍କ ଦ୍ୱାରା ଗୋଟିଏ ନାଚ କରିବାକୁ ଚାହାନ୍ତି। ରୁମି, ରିଟି ଭାଗ ନେଇ ପାରିବେ କି? ମୋର ଅରାଜି ହେବାର କୌଣସି କାରଣ ନ ଥିଲା।

ମୁଁ 'ଫାଦର୍‌ସ ଡେ', 'ମଦର୍‌ସ ଡେ' କଥା ଶୁଣିଥିଲି। କିନ୍ତୁ 'ଗ୍ରାଣ୍ଡ ପ୍ୟାରେଣ୍ଟସ୍ ଡେ' କଥା ଏଇ ପ୍ରଥମ ଶୁଣିଲି। ଏହି ଦିନ ଅଜା, ଆଈ, ଜେଜେମା, ଜେଜେବାପାଙ୍କୁ କାର୍ଡ, ଫୁଲ ବା ଉପହାର ଦିଆଯିବାର ଦିନ। ଅର୍ଥାତ୍ ନାତି ନାତୁଣୀମାନେ ଯେ ସେମାନଙ୍କୁ ଭୁଲି ଯାଇ ନାହାନ୍ତି, ତାହା ହିଁ ମନେ ପକେଇ ଦେବାର ଦିନ।

କିନ୍ତୁ ଆମେରିକାର ବ୍ୟକ୍ତିକୈନ୍ଦ୍ରିକ, ବସ୍ତୁବାଦୀ ପରିବେଶରେ କେତେଜଣ ବା ସମାଜର ଏହି ବୟସ୍କ ସଦସ୍ୟମାନଙ୍କୁ ନିଜର ମୂଲ୍ୟବାନ୍ ସମୟରୁ କାଣିଚାଏ ଦିଅନ୍ତି ? ଡାକରେ କାର୍ଡ ବା ଉପହାର ପଠେଇ ଦେଇ କିମ୍ବା ଫୋନ୍ ଦ୍ୱାରା ଫୁଲତୋଡା ପହଞ୍ଚେଇ ଦେବାର ଅର୍ଡର ଦେଇ ସେମାନେ ମନେ କରନ୍ତି ଯେ ଯଥେଷ୍ଟ ହୋଇଗଲା । ଏଣେ ହାତରେ ଅପର୍ଯ୍ୟାପ୍ତ ଅବସର ଥିବା ବୟସ୍କ ବ୍ୟକ୍ତିମାନେ କାତର ହୋଇ ଅପେକ୍ଷା କରନ୍ତି ନିଜ ପରିବାରର ଲୋକମାନଙ୍କୁ ଥରେ ନିକଟରେ ଦେଖିବା ପାଇଁ; ସେମାନଙ୍କର ହାତର ସ୍ପର୍ଶ ପାଇବା ପାଇଁ । କିନ୍ତୁ ଅଧିକାଂଶଙ୍କୁ କେବଳ ନିରାଶ ହିଁ ହେବାକୁ ହୁଏ । ବର୍ଷରେ ଦିନଟିଏ ମଧ ଦେଇପାରନ୍ତି ନାହିଁ ସେମାନଙ୍କର ପରିବାରର ଲୋକମାନେ । ଏଇଭଳି କେତେଜଣଙ୍କ ମନରେ କିଛି ସମୟ ପାଇଁ ଆନନ୍ଦ ଭରିଦେବା ଉଦ୍ଦେଶ୍ୟରେ ଅଦିତି ନାଚଟିଏର ଆୟୋଜନ କରିଥିଲେ । ବିଶେଷ ରିହରସାଲ୍‌ର ଦରକାର ହେଲା ନାହିଁ । କାରଣ କିଛି ମାସ ପୂର୍ବରୁ ସ୍କୁଲର 'ଇଣ୍ଟରନ୍ୟାସନାଲ ନାଇଟ୍'ରେ ଏହି ବାରଜଣ ଭାରତୀୟ ପିଲା ନାଚଟି କରିଥିଲେ ।

ଶେଷରେ ସେପ୍ଟେମ୍ବର ୧୩ ତାରିଖ ଆସିଲା । ସେଇ ଦିନ ତିନିଟା ବେଳେ ନାଚ ପ୍ରୋଗ୍ରାମ୍ । ସ୍ଥାନଟି ହେଉଛି ସନି ଭିଉ ମ୍ୟାନର୍ (Sunny View Manor)-ସରକାରୀ ସାହାଯ୍ୟରେ ବୟସ୍କ ବ୍ୟକ୍ତିମାନଙ୍କ ପାଇଁ କୁପରଟିନୋରେ ଗଢା ହୋଇଥିବା ଅନୁଷ୍ଠାନଟିଏ । ଅଥଚ ଏଇଟି ଦେଖିବାକୁ ଅନେକାଂଶରେ ଗୋଟିଏ ହୋଟେଲ୍ ଭଳି । ସାମ୍ନାର କାଚ କବାଟ ପାର ହୋଇ ଯିବା ପରେ ରିସେପ୍‌ସନ୍ । ରିସେପ୍‌ସନିଷ୍ଟଙ୍କ ସାମ୍ନାରେ ରହିଥିବା ଅଂଶଟି ହୋଟେଲ୍‌ର ଲବି ଭଳି ଦେଖିବାକୁ । ଫୁଲ ଓ ପେଣ୍ଟିଂରେ ସଜା ହୋଇଥିବା ସ୍ଥାନଟିରେ କେତେଗୁଡିଏ ସୋଫା ପଡିଥାଏ । ଏହା ପରେ କିଛି ବାଟ ଗଲେ ପଡେ ଡାଇନିଙ୍ଗ ରୁମ୍ । ଆଉ ତା'ପରେ ଅଛି ଦିଉଟି ପାର୍ଲର୍, ଲଣ୍ଡ୍ରି ରୁମ୍ ।

ଆମେ ଅଢେଇଟା ବେଳେ ଲବିରେ ପହଞ୍ଚିଗଲୁ । ନୀରବ, ନିସ୍ତବ୍ଧ ସ୍ଥାନଟି ବାରଜଣ ପିଲାଙ୍କର ହସ, ପାଟିତୁଣ୍ଡରେ ଭରିଗଲା । ପିଲାମାନଙ୍କୁ ଯେତେ ଚୁପ୍ କରେଇଲେ କ'ଣ ସେମାନେ ଶୁଣୁଥାଆନ୍ତି ! ଏ ତ ସ୍କୁଲ ନୁହଁ । ପୁଣି ଚକଚକିଆ ପୋଷାକ ପିନ୍ଧି, ଚୁଡି ଗହଣାରେ ସଜେଇ ହୋଇ ସେମାନଙ୍କର ଉତ୍ସାହ ଓ ଉତ୍ତେଜନା ବହୁତ ବଢିଯାଇଥାଏ ।

ଆମେ ପହଞ୍ଚିବା ପରେ ପରେ ହିଁ ଅପରାହ୍ନର କାର୍ଯ୍ୟକ୍ରମ ପରିଚାଳନା କରୁଥିବା ଜଣେ ମହିଳା ଆମମାନଙ୍କୁ ଭିତରକୁ ନେଇଗଲେ। ସେଇଠାରେ ଖୋଲା ଲନ୍‌ରେ ଷ୍ଟେଜ୍‌ଟିଏର ବ୍ୟବସ୍ଥା ହୋଇଥିଲା। ଷ୍ଟେଜ୍ ସାମ୍ନାରେ ପଡିଥିବା ଚୌକୀଗୁଡିକରେ ଅପେକ୍ଷା କରି ବସି ରହିଥିଲେ ପ୍ରାୟ ପଚାଶ, ପଞ୍ଚାବନ ଜଣ ବୃଦ୍ଧବୃଦ୍ଧା। ସମସ୍ତଙ୍କ ଦେହରେ ପରିଷ୍କାର ପୋଷାକ, ମୁହଁରେ ଆଗ୍ରହ।

ତିନିଟା ବେଳେ ନାଚଟି ଆରମ୍ଭ ହେଲା। କ୍ୟାସେଟ୍‌ରେ ବାଜୁଥିବା ସଙ୍ଗୀତର ତାଳେ ତାଳେ ପିଲାମାନେ ଖୁବ୍ ସୁନ୍ଦର ନାଚିଲେ। ନାଚ ଯେତେବେଳେ ଶେଷ ହେଲା, କରତାଳିରେ ଭରିଗଲା ସ୍ଥାନଟି। ତା'ପରେ କୋକ୍ ଓ ଆଇସ୍‌କ୍ରିମ୍‌ର ଛୋଟ ପାର୍ଟିଟିଏ। ସେତିକିବେଳେ ଦର୍ଶକମାନଙ୍କ ମଧ୍ୟରୁ ଜଣେ ବୟସ୍କା ମହିଳା ଉଠି ଆସି ମୋ ପାଖ ଚୌକୀରେ ବସି ପଡିଲେ। ଆଉ ନିଜର ପରିଚୟ ଦେଇ କହିଲେ, ''ହ୍ୟାଲୋ! ମୁଁ ନର୍ଗିସ୍।'' ମୁଁ ମୋ ନାଁ କହି ହାତ ବଢେଇ ଦେଲି। ତା'ପରେ ସେ ଗପ ଜମେଇ ଦେଲେ। ଭଦ୍ରମହିଳାଙ୍କର ନାଁ ଶୁଣି ମୋ ମନରେ ବେଶ୍ କୌତୁହଳ ଜମି ଯାଇଥିଲା। 'ନର୍ଗିସ୍'ତ ଆଉ ପାଶ୍ଚାତ୍ୟ ନାମ ନୁହଁ। ଏଣେ ତାଙ୍କର କାନ ପର୍ଯ୍ୟନ୍ତ ଲମ୍ବିଥିବା ମାଟିଆ ବାଳ, କୁଞ୍ଚ ପଡିଯାଇଥିବା ଗୋରା ଚମ, ଶାଗୁଆ ରଙ୍ଗର ସ୍କାର୍ଟ ବ୍ଲାଉଜ୍‌ରୁ ତାଙ୍କର ଜାତୀୟତାର ଅନୁମାନ ଲଗେଇ ହେଉ ନଥାଏ। ଆଉ କୌତୁହଳ ଦମନ ନ କରିପାରି ପଚାରି ଦେଲି। ସେ ହସି କରି କହିଲେ, ''ମୋ ନାଁରୁ ଜାଣି ପାରିଲ ନାହିଁ?''

ମିତୁ ଜାଣିଛୁ, ମହିଳା ଜଣକ ପାର୍ଶୀ। ସାରା ଜୀବନ କଟିଛି ବମ୍ବେରେ। ପନ୍ଦର ବର୍ଷ ତଳେ ସେ ଆମେରିକା ଆସିଥିଲେ। ତା'ପରେ କେଉଁ ଅବସ୍ଥାରେ ପଡି 'ସନି ଭିଉ ମ୍ୟାନର୍'ରେ ଆସି ପହଞ୍ଚିଲେ, ସେହି ବିଷୟରେ ସେ କିଛି କହିଲେ ନାହିଁ। ମୁଁ ମଧ୍ୟ ଭଦ୍ରାମୀ ଦୃଷ୍ଟିରୁ ପଚାରି ପାରିଲି ନାହିଁ। କିଛି ସମୟ କଥାବାର୍ତ୍ତା କରିବା ପରେ ନର୍ଗିସ୍ ଜାଣିପାରିଲେ ଯେ ମୁଁ ଲେଖାଲେଖି କରେ। ହଠାତ୍ ସେ ଉତ୍ସାହିତ ହୋଇ କହିଲେ, ''ଚାଲ, ତୁମକୁ ମୁଁ ଜଣଙ୍କ ସାଙ୍ଗରେ ଚିହ୍ନା ପରିଚୟ କରେଇ ଦେବି। ସେ ମଧ୍ୟ ଲେଖାଲେଖି କରିବାକୁ ଭଲ ପାଆନ୍ତି।''

ନର୍ଗିସ୍ ମତେ ଆଉ ଜଣଙ୍କ ନିକଟକୁ ନେଇଗଲେ। ଧଳା ରଙ୍ଗର ବ୍ଲାଉଜ, କଳା ରଙ୍ଗର ପ୍ୟାଣ୍ଟ, କାନରେ ବଡ କଳା ଧଳା କାନଫୁଲ, ବେକରେ ମ୍ୟାଚିଙ୍ଗ ହାର ପିନ୍ଧି ଥରୁଥିବା ହାତରେ ବାଡି ଧରି ଶୀଥିଳ ଚର୍ମା ବୃଦ୍ଧା ଜଣକ ବସିଥିଲେ।

ନର୍ଗିସ୍ ଚିହ୍ନେଇ ଦେଲେ, ‘‘ଏ ହେଉଛନ୍ତି ଆୟୋଲା ହେଣ୍ଡ୍ରିକ୍‌ସେନ୍।’’

ନାଁଟି ଶୁଣି ମୁଁ ଅବାକ୍ ହେଲି। କାରଣ କୁପରଗ୍‌ଟିନୋରୁ ବାହାରୁଥିବା କେତେକ ପତ୍ରପତ୍ରିକାରେ ତାଙ୍କର ଲେଖା ମୁଁ ଆଗରୁ ଦେଖିଛି। କିନ୍ତୁ ସେସବୁର ଲେଖିକା ଯେ ଏହି ମହିଳା ଜଣଙ୍କ, ତାହା ଭାବି ହେଉ ନଥାଏ। ବାଡି ଧରିଥିବା ଥରୁଥରୁ ହାତଟି ଦେଖି କିଏ ବା ଅନୁମାନ କରିପାରିବ ଯେ ଏହି ହାତ ଏତେ ସୁନ୍ଦର କଲମ ଚଳେଇ ପାରେ!

ମିତ୍ର, କିଛି ସମୟ ତାଙ୍କ ସହିତ କଥାବାର୍ତ୍ତା କରିବା ପରେ ମୋର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ। ପ୍ରାୟ ପଞ୍ଚାଅଶୀ ପାଖାପାଖି ବୟସ। ସାଧାରଣତଃ ଦେଖାଯାଏ ଯେ ଏଭଳି ବୟସରେ ମଣିଷର ପରିଷ୍କାର ଭାବରେ ଚିନ୍ତା କରିବାର କ୍ଷମତା କମିଯାଏ; ସାବଲୀଳ ଭାବରେ କଥା କହିବା ଶକ୍ତି ରହେ ନାହିଁ। ଅଥଚ ଆୟୋଲା ଯେମିତି ସ୍ୱତନ୍ତ୍ର! ବୟସ ଏବେ ବି ଛୁଇଁ ପାରି ନାହିଁ ତାଙ୍କର ଚିନ୍ତାଶକ୍ତିକୁ। ତାଙ୍କର ପ୍ରତ୍ୟେକଟି କଥା କି ସୁନ୍ଦର; ଆଉ ତା'ଠାରୁ ଅଧିକ ସୁନ୍ଦର ତାଙ୍କର କଥା କହିବା ଶୈଳୀ। ହଠାତ୍ କାହିଁକି କେଜାଣି ଆୟୋଲାଙ୍କ ସହିତ ବସି ବହୁତ କଥାବାର୍ତ୍ତା କରିବାକୁ ଇଚ୍ଛା ହେଲା। ସେଦିନ ତ ସମ୍ଭବ ନଥିଲା। ସେଥିପାଇଁ ତା'ପର ବୁଧବାର ସକାଳ ଦଶଟା ବେଳେ ତାଙ୍କ ସହିତ ଦେଖା କରିବାକୁ ନିର୍ଦ୍ଦିଷ୍ଟ କରି ମୁଁ ଘରକୁ ଫେରି ଆସିଥିଲି।

ବୁଧବାର ଦିନ ଠିକ୍ ଦଶଟା ବେଳେ ସନି ଭିଉ ମ୍ୟାନରରେ ପହଞ୍ଚି ଦେଖିଲି ମତେ ହିଁ ଅପେକ୍ଷା କରି ଆୟୋଲା ‘ଲବି'ରେ ବସିଛନ୍ତି। ମତେ ଦେଖି ଖୁସି ହୋଇଯାଇ କହିଲେ, ‘‘ମୁଁ ଆଜି ସକାଳୁ ତୁମ ଆସିବା ପାଇଁ ଅପେକ୍ଷା କରି ରହିଛି। ଚାଲ, ମୋ ରୁମ୍‌କୁ ଯିବା।’’

ଆୟୋଲାଙ୍କର ସହଜ କଥା ପଦକ ମୋ ଭିତରର କେଉଁ କଣକୁ ସ୍ପର୍ଶ କରିଗଲା। ମୋ ତଣ୍ଟି ଭିତରେ କ'ଣ ଯେମିତି ଅଟକି ଗଲା। ମୁଁ କିଛି ନ କହି ଆୟୋଲାଙ୍କ ସହିତ ଚାଲିଲି। ଉପର ମହଲାରେ ତାଙ୍କର କୋଠରୀ। କିନ୍ତୁ ସେଇ କେତୋଟି ସିଡ଼ି ଚଢ଼ିବାର କ୍ଷମତା ଆଉ ତାଙ୍କର ନାହିଁ। ତେଣୁ ଆମେ ଲିଫ୍‌ଟରେ ଉପରକୁ ଗଲୁ। ହୋଟେଲ୍ ଭଳି ଦୁଇପଟେ କୋଠରୀମାନ ରହିଛି। ସେଇଥିରୁ ଗୋଟିଏ କୋଠରୀ ଆୟୋଲାଙ୍କର। ଖୁବ୍ ଗୋଟିଏ ବଡ କୋଠରୀ ନୁହଁ। ତଥାପି ମଝିରେ ପରଦା ଦେଇ ତାକୁ ଦୁଇ ଭାଗରେ ଆୟୋଲା ଭାଗ

କରି ଦେଇଛନ୍ତି । ଗୋଟିଏ ଭାଗ ତାଙ୍କର ଶୋଇବା ଘର ଏବଂ ଅନ୍ୟଟି ଉଭୟ ବସିବା ଓ ପଢ଼ିବା ଘର । ତା' ସାଙ୍ଗରେ ଲାଗିକରି ରହିଛି ଛୋଟ ରୋଷେଇ ଘରଟିଏ ।

"ଆପଣ ନିଜେ ରୋଷେଇ କରନ୍ତି ?" ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି ।

ଆୟୋଲା କହିଲେ, "ପ୍ରାୟ ନିଜେ କରେ । ଯେଉଁଦିନ କରି ନପାରେ ସେଦିନ ଡାଇନିଙ୍ଗ୍ ହଲ୍‌କୁ ଯାଏ ।"

ନିଜ ହାତରେ ଆୟୋଲା ଚାହା କରି ଆଣିଲେ । ଆଉ ଗୋଟିଏ ପ୍ଲେଟ୍‌ରେ ବିସ୍କୁଟ୍ । ତାଙ୍କ ପ୍ରିୟ ଆରାମ ଚୌକୀରେ ଝୁଲି ଝୁଲି ଚାହା ପିଉ ପିଉ ସେ ନିଜ କଥା କହିବାକୁ ଆରମ୍ଭ କଲେ । ତାଙ୍କର ଜନ୍ମ ୧୯୦୮ ମସିହାରେ । ମିଜୋରି (Missouri)ରାଜ୍ୟରେ । ଯେତେବେଳେ ତାଙ୍କର ବୟସ ତିନି, ସେତେବେଳେ ତାଙ୍କ ମା, ବାପା କ୍ୟାଲିଫୋର୍ଣ୍ଣିଆ ଚାଲି ଆସିଥିଲେ । କ୍ୟାଲିଫୋର୍ଣ୍ଣିଆର ମୋହାଭେ ମରୁଭୂମି ମଝିରେ ଥିବା ଉପତ୍ୟକାରେ ସେତେବେଳେ ସେଓ ଚାଷ କରାଯାଉଥିଲା । ଏଇଭଳି ଗୋଟିଏ 'ଆପ୍‌ଲ ଭ୍ୟାଲି'ର ଦାୟିତ୍ୱରେ ତାଙ୍କର ବାପା ଥିଲେ ଏବଂ ମରୁଭୂମିରେ ହିଁ ଆୟୋଲାଙ୍କର ପିଲାଦିନ କଟିଥିଲା ।

ପିଲାଦିନର କାହାଣୀ ଗପୁ ଗପୁ ଆୟୋଲା ଯେମିତି ଚାଲି ଯାଉଥିଲେ ସେହି ପୁରୁଣା ଦିନକୁ । ସେ ଏକ ଅଦ୍ଭୁତ ପିଲାଦିନ । ଆଖପାଖରେ ଘର ନଥିଲା । ସାଙ୍ଗସାଥୀ ପ୍ରାୟ କେହି ନଥିଲେ । ସେମାନଙ୍କ ନିକଟତମ ପଡୋଶୀ ଥିଲେ ପାଞ୍ଚ ମାଇଲ୍ ଦୂରରେ । ସ୍କୁଲ୍ ମଧ ଘରୁ ଗୋଟିଏ ମାଇଲ୍ ଦୂରରେ ଥିଲା । ଅଧିକାଂଶ ଦିନ ତାଙ୍କ ମା' ତାଙ୍କୁ ନେଇ ସ୍କୁଲ୍‌ରେ ଛାଡି ଆସୁଥିଲେ । ଆଉ ସ୍କୁଲ୍ ଯିବା ରାସ୍ତାର ଦୁଇ କଡରେ ଥିବା ବୁଦାମାନଙ୍କରେ ଛୋଟ ଛୋଟ ରଙ୍ଗୀନ୍ କନା ବାନ୍ଧି ଦେଇଥିଲେ । ଯେଉଁଦିନ କୌଣସି କାରଣରୁ ମା' ସ୍କୁଲ୍‌ରେ ଛାଡିବାକୁ ଯାଇ ପାରୁ ନଥିଲେ ସେହିଦିନ ଏହି ରଙ୍ଗୀନ୍ କନା ଦେଖି ଦେଖି ଆୟୋଲା ସ୍କୁଲ୍ ଚାଲିଯାଉଥିଲେ । ମରୁଭୂମି ଭିତରେ ଏପରି ନ ହେଲେ ବିଗହରା ହେବାର ସମ୍ଭାବନା ଥିଲା ବହୁତ ବେଶୀ ।

ସ୍କୁଲ୍ କଥା କହୁ କହୁ ଆୟୋଲା ହସି ପକେଇ ଥିଲେ । ସମୁଦାୟ ସ୍କୁଲ୍‌ରେ ପିଲାଙ୍କ ସଂଖ୍ୟା ଥିଲା ବାର ଓ ଶିକ୍ଷକ ଥିଲେ ଜଣେ । ଗୋଟିଏ କୋଠରୀରେ ବଡ ସାନ ସବୁ ପିଲା ବସୁଥିଲେ ଏବଂ ଶିକ୍ଷକ ଏକାଠି ବିଭିନ୍ନ ଶ୍ରେଣୀର

ପାଠ ପଢାଉଥିଲେ। ଆୟୋଲାଙ୍କ ସମବୟସୀ ଥିଲେ ଆଉ ତିନି ଜଣ ପୁଅ। ତିନି ଭାଇ ସେମାନେ। "ଓଃ ଯାହା ବଦମାସ ଥିଲେ ନା ସେ ତିନି ଜଣ! କେତେବେଳେ ମୋ ଉପରେ ପୋକ ଛାଡି ଦେଉଥିଲେ ତ କେତେବେଳେ ମୋ ପାଣିରେ ମାଟି ଗୋଡି ପକେଇ ଦେଉଥିଲେ। ଏବେ ମୁଁ ବେଳେବେଳେ ସେମାନଙ୍କ କଥା ଭାବେ। କିଏ ଜାଣେ କେଉଁଠି ଅଛନ୍ତି ସେମାନେ ସବୁ।" ଆୟୋଲାଙ୍କର ଛୁଟୀ ଦିନ ଗୁଡିକ କଟୁଥିଲା ବାପାଙ୍କ ସାଙ୍ଗରେ। "ମରୁଭୂମିରେ ସେଓ ଚାଷ କରିବା କି ଯେ କଷ୍ଟକର, ତାହା ନ ଦେଖିଲେ ତୁମେ ଜାଣି ପାରିବ ନାହିଁ। ସବୁଠାରୁ ବଡ ସମସ୍ୟା ଥିଲା ପାଣି। ସେତେବେଳେ ତ ଆଉ ବର୍ତ୍ତମାନ ଯୁଗ ଭଳି ଯନ୍ତ୍ରପାତି ନଥିଲା। ମାଟି ତଳେ କେଉଁଠି ପାଣି ଅଛି ତାହା ଜଣାପଡିବ କେମିତି? ସେତେବେଳେ ଜଣେ ବୁଢା ରେଡ୍ ଇଣ୍ଡିଆନ୍ ଥିଲା। ତା' ଆଖିକୁ ଭଲ ଦିଶୁ ନଥିଲା। କିନ୍ତୁ ବାଡିରେ ଠକ୍ ଠକ୍ କରି ସେ କହିପାରୁଥିଲା କେଉଁଠି ଖୋଳିଲେ ପାଣି ବାହାରିବ। ଏବଂ ସବୁଠାରୁ ଆଶ୍ଚର୍ଯ୍ୟ କଥା ପ୍ରାୟ ସବୁବେଳେ ତା' କଥା ସତ ହେଉଥିଲା।"

ସେତେବେଳେ ମୋହାଭେରେ ବହୁତ ବଣୁଆ ଗଧ ଥିଲେ। ଲୋକମାନେ ବେଳେବେଳେ ସେମାନଙ୍କୁ ଧରି ନେଇ ପୋଷା ମନଉଥିଲେ। ସେମାନଙ୍କୁ ଦେଖି ଆୟୋଲା ଏଇ ଭଳି ଗୋଟିଏ ବଣୁଆ ଗଧକୁ ଧରି ଆଣି ପାଳିବା ପାଇଁ ଭାରି ମନ କରିଥିଲେ। ଦିନା କେତେ ଘରେ ଜିଦ୍ ମଧ କରିଥିଲେ। କିନ୍ତୁ ସେ ଜିଦ୍ ରହିଲା ନାହିଁ। ଆୟୋଲାଙ୍କର ମଧ ଖୁବ୍ ଶୀଘ୍ର 'ଗଧ ପାଳିବା' ଇଚ୍ଛା ଛାଡିଗଲା।

ହାଇସ୍କୁଲ୍‌ରେ ପଢିବା ସମୟରେ ଆୟୋଲାଙ୍କୁ ମୋହାଭେ ଛାଡିବାକୁ ହୋଇଥିଲା। ସେତେବେଳେ ନିଜର ପଢାଖର୍ଚ୍ଚ ତୁଲେଇବା ପାଇଁ ସେ ଗୋଟିଏ କମଳା ପ୍ୟାକିଙ୍ଗ କଂପାନୀରେ କାମ କରୁଥିଲେ। ବିଭିନ୍ନ ଜାଗାରୁ ଅଣାଯାଇ କମଳା ପର୍ବତ ପ୍ରମାଣରେ ଗଦା ହେଉଥିଲା। ସେସବୁକୁ ବାଛି, ଗଣି ଗୋଟିଏ ଗୋଟିଏ କାର୍ଡବୋର୍ଡ ବାକ୍ସରେ ରଖିବା ଦାୟିତ୍ୱ ଥିଲା ଆୟୋଲାଙ୍କର।

ହାଇସ୍କୁଲ୍ କଥା ଗପୁ ଗପୁ ଆୟୋଲା ବିଭୋର ହୋଇଗଲେ। "ସ୍କୁଲ୍‌ରେ ପଢିବା ସମୟରେ ମୋର ଜଣେ ପାଇଲଟ୍‌ଙ୍କ ସହିତ ବନ୍ଧୁତ୍ୱ ହୋଇଥିଲା।" ତାଙ୍କର ଚାକିରୀ ବାକିରୀ ନ ଥିଲା। କିନ୍ତୁ ଦରଭଙ୍ଗା ଉଡାଜାହାଜଟିଏ ଥିଲା।

ସେ ଉଡାଜାହାଜରେ ଲୋକଙ୍କୁ ବୁଲେଇ ପଇସା ରୋଜଗାର କରୁଥିଲେ। କିନ୍ତୁ ଯାତ୍ରୀ ସଂଗ୍ରହ କରିବା ବଡ କଠିନ କାମ ଥିଲା। ସେତେବେଳେ ଏବେକା ଭଳି ଉଡାଜାହାଜ ଏତେ ଜଣାଶୁଣା ହୋଇ ନଥିଲା। ପୁଣି ଆକାଶରେ ଉଡୁଥିବା ଯାନଟିଏ। ଲୋକମାନେ ବା କାହିଁକି ଜାଣିଶୁଣି ଜୀବନକୁ ବାଜି ଲଗେଇବେ ! ଆୟୋଲାଙ୍କର ସେତିକିବେଳେ କାମ ହୋଇଥିଲା ଯାତ୍ରୀ ସଂଗ୍ରହ କରିବା। ହସି ପକେଇ ସେ କହିଲେ, "ମୁଁ ପାଟି କରି ଲୋକଙ୍କୁ ଆକୃଷ୍ଟ କରୁଥିଲି- 'ଦୁଇ ଡଲାର୍। ମାତ୍ର ଦୁଇ ଡଲାର୍‌ରେ ଆକାଶରେ ଉଡି ପାରିବ। ଏଭଳି ସୁବର୍ଣ୍ଣ ସୁଯୋଗ ହାତଛଡା କର ନାହିଁ।"

"ଆପଣଙ୍କ କଥାରେ ଲୋକ ଆସୁଥିଲେ ?" ମୁଁ ପଚାରିଦେଲି।

"ଆରେ ଆସିବେ ନାହିଁ? ହାତ ହଲେଇ ମୁଁ ଯେଉଁ ପାଟି କରୁଥିଲି ତାହା ନ ଦେଖିଲେ ବିଶ୍ୱାସ କରିବ ନାହିଁ।"

ସେଥର ଦୁଇଜଣ ମିଶି ବେଶ୍ ଭଲ ରୋଜଗାର କରିଥିଲେ। କିନ୍ତୁ କିଛି ମାସ ପରେ ଆୟୋଲାଙ୍କର ପାଇଲଟ୍ ବନ୍ଧୁଙ୍କୁ ଫିନିକ୍ସରେ ଚାକିରୀ ମିଳିଗଲା।

"ନା, ସେ ବେଶୀ ଦିନ ଚାକିରୀ କରିପାରି ନଥିଲେ। ଅଳ୍ପ କେତେ ବର୍ଷ ପରେ ପ୍ଲେନ୍ ଦୁର୍ଘଟଣାରେ ତାଙ୍କର ମୃତ୍ୟୁ ହୋଇଗଲା।"

ଆୟୋଲା କିଛି ସମୟ ପାଇଁ ଚୁପ୍ ହୋଇଗଲେ। କାଛର କୌଣସି ଏକ ଅଦୃଶ୍ୟ ବିନ୍ଦୁରେ ତାଙ୍କ ଆଖି ଅଟକି ଯାଇଥିଲା। ଚୌକିରେ ଝୁଲିବା ମଧ ବନ୍ଦ ହୋଇଯାଇଥିଲା। କେତେବେଳଠୁଁ ନୀରବ ରହି ସେ ଯେମିତି କ'ଣ ମନେ ପକାଉଥିଲେ। ମୁଁ ସେ ନୀରବତା ଭାଙ୍ଗି ପାରିଲି ନାହିଁ।

ମିତୁ, ମୁଁ ଜାଣେ ନାହିଁ ପାଇଲଟ୍‌ଙ୍କ ସହିତ ଆୟୋଲାଙ୍କର କିଭଳି ସଂପର୍କ ଥିଲା, କେତେଦୂର ଘନିଷ୍ଠତା ଥିଲା। କିନ୍ତୁ ଏ ଯେ ତାଙ୍କ ସ୍କୁଲ୍ ବେଳର ଘଟଣା ! ତା'ପରେ ପ୍ରାୟ ୬୮ ବର୍ଷ କଟିଗଲାଣି। ସମୟର ସ୍ରୋତରେ ସବୁ କିଛି ଧୋଇ ପରିଷ୍କାର ହୋଇଯିବା କଥା। କିନ୍ତୁ କାହିଁକି ଘଟଣାଟି ଏତେ ବେଶୀ ଅନ୍ୟମନସ୍କ କରି ଦେଲା ତାଙ୍କୁ ?

ହଠାତ୍ ଯେମିତି ସମ୍ବିତ୍ ଫେରି ପାଇଲେ ସେ। ହସି ଦେଇ ସେ ହୋଇଗଲେ ପୂର୍ବର ଆୟୋଲା। "କ୍ଷମା କରିବ। କେଉଁ କଥା କହୁ କହୁ କେଉଁଠି ଯାଇ ପହଁଞ୍ଚିଯାଉଛି। ବୁଢୀ ହେଲିଣି ତ ...ହଁ ହାଇସ୍କୁଲ୍ ସମୟର କଥା ପରା କହୁଥିଲି।"

ଆୟୋଲା ହାଇସ୍କୁଲ୍ ପାଶ୍ କରିବା ପରେ ଜର୍ଣ୍ଣାଲିଜମ୍ ପଢିଲେ ଓ ସେହି ସମୟରୁ ହିଁ ଲେଖାଲେଖି କରିବା ଆରମ୍ଭ କରିଦେଇଥିଲେ। ୨୧ ବର୍ଷ ବୟସରେ କଲେଜ୍ ପଢା ସରିବା ପରେ ସେ ଥରେ ତାଙ୍କର ବଡ ଭଉଣୀ ଘରକୁ ବୁଲି ଯାଇଥିଲେ। ତାଙ୍କ ଭଉଣୀ ଓ ଭିଣେଇଙ୍କର ରେଷ୍ଟୋରାଁଟିଏ ଥିଲା। ସେଇଠିକୁ ବହୁତ ଲୋକ ଆସୁଥିଲେ। ଛୋଟ ସହରର ଛୋଟ ରେଷ୍ଟୋରାଁ। ତେଣୁ ଯିଏ ସେଠିକୁ ଆସୁଥିଲା, ତାହା ସହିତ ଚିହ୍ନା ହୋଇଯାଉଥିଲା। ଏଇଭଳି ଦିନେ ଆୟୋଲାଙ୍କ ଦେଖାହେଲା ନରୱେରୁ ଆସିଥିବା ଜଣେ ଯୁବକଙ୍କ ସହିତ। ପ୍ରଥମ ଦେଖାରେ ହିଁ ସେମାନେ ପ୍ରେମରେ ପଡିଯାଇଥିଲେ ଏବଂ ମାତ୍ର ଛଅ ମାସ ପରେ ବିବାହ କରିଥିଲେ।

ଏସବୁ ହେଉଛି ୧୯୨୯ ମସିହା କଥା। ଗ୍ରେଟ୍ ଡିପ୍ରେସନ୍‌ର ସମୟ। ଚାକିରୀ ସହଜରେ ମିଳୁ ନଥାଏ। ବଜାରରେ ଜିନିଷ ମିଳୁ ନଥାଏ। ଯାହା ବା ମିଳୁଥାଏ, ତା'ର ଦର ଆକାଶ ଛୁଆଁ। କିନ୍ତୁ ନୂଆ ବାହା ହୋଇଥିବା ଏଇ ଦମ୍ପତିଟିକୁ ଏସବୁ କିଛି ଛୁଇଁ ପାରି ନଥିଲା। ସେହି ସମୟର କଥା କହୁ କହୁ ଆୟୋଲାଙ୍କ ଓଠରେ ହସ ଖେଳିଯାଇଥିଲା। ଯେଉଁ ବ୍ୟକ୍ତି-ସ୍ୱାତନ୍ତ୍ର୍ୟ ନେଇ ବର୍ତ୍ତମାନ ଆମେରିକାର ମଣିଷ ଯୁଦ୍ଧ କରିଯାଉଛି, ସେତେବେଳେ ସେସବୁ କଥା କେହି ଶୁଣି ନ ଥିଲା। ପରିବାର ମଧ୍ୟରେ ସମସ୍ତେ ମିଳିମିଶି ଚଳୁଥିଲେ। ଆୟୋଲାଙ୍କର ବିଧବା ନଣନ୍ଦ ଛୋଟ ଛୋଟ ତିନି ପିଲାଙ୍କୁ ନେଇ ତାଙ୍କ ପାଖରେ ରହୁଥିଲେ। ତାଙ୍କ ସ୍ୱାମୀଙ୍କର ଜେଜେମା ନରୱେରୁ ଆସି ତାଙ୍କରି ଛୋଟ ଘରେ ରହୁଥିଲେ।

''ଜାଣିଛ, ମୁଁ ତାଙ୍କୁ ନାଁ ଧରି ଡାକୁଥିଲି 'ଟିନା'।''

ଟିନା ଆୟୋଲାଙ୍କୁ ଭାରି ସ୍ନେହ କରୁଥିଲେ। କିନ୍ତୁ ଆୟୋଲାଙ୍କ ହାତରନ୍ଧା ତାଙ୍କର ପସନ୍ଦ ନ ଥିଲା। ତେଣୁ ଜେଜେମା ଲାଗିପଡି ନାତୁଣୀ ବୋହୂକୁ ନରୱେର ରନ୍ଧା ଶିଖାଇବାରେ ଲାଗିଲେ। ''ମୁଁ ବେଶ୍ କିଛି ରନ୍ଧା ଶିଖି ନେଇଥିଲି। କିନ୍ତୁ କୌଣସି ଦିନ ଟିନାଙ୍କ ଭଳି ରାନ୍ଧି ପାରିଲି ନାହିଁ।''

ହଠାତ୍ ଚୌକିରୁ ଉଠି ପଡି ଆୟୋଲା ଶୋଇବା ଘର ଭିତରକୁ ଚାଲିଗଲେ। ଆଲମାରୀ ଖୋଲି ଭିତରୁ କଇଁଚି ହଳେ ଆଣି ମୋ ପାଖ ଟେବୁଲରେ ରଖି ଦେଲେ। ପୁଣି ଆରାମ ଚୌକିରେ ବସି ଯାଇ କହିଲେ, ''ଏ କଇଁଚି ଦେଖୁଛ?

ଏଇଟା ହେଉଛି ଟିନାଙ୍କର ପ୍ରିୟ କଇଁଚି। ନରୱେରୁ ଆସିବା ବେଳେ ସେ ଏଇଟିକୁ ନେଇ ଆସିଥିଲେ। ଏଇଟି ମୋ ପାଖକୁ କେମିତି ଆସିଲା ଜାଣିଛ?''

ଡିପ୍ରେସନ୍ ସମୟ। ଖାଇବାକୁ ପଇସା ଅଣ୍ଟୁ ନ ଥାଏ। ବଜାରରୁ ଲୁଗାପଟା କିଣି ପିନ୍ଧିବା ପ୍ରଶ୍ନ ଉଠୁଛି କେଉଁଠୁ? ସେଥିପାଇଁ ଆୟୋଲା ଅଖା କନା କାଟି ନିଜ ପରିବାରର ଲୋକଙ୍କ ପାଇଁ ପୋଷାକ ସିଲେଇ କରୁଥିଲେ। ଅଧିକାଂଶ ସମୟରେ କନା କାଟିବାରେ ଟିନା ଆୟୋଲାଙ୍କୁ ସାହାଯ୍ୟ କରୁଥିଲେ। କିନ୍ତୁ କଇଁଚିଟି କାହାକୁ ଛୁଇଁବାକୁ ଦେଉ ନ ଥିଲେ। ଏମିତି କିଛି ଦିନ କଟିଯିବା ପରେ ଆୟୋଲାଙ୍କର ଅବିବାହିତ ମାମୁଁ ଶ୍ୱଶୁରଙ୍କୁ ଡେଟ୍ରଏଟ୍‌ରେ ଚାକିରୀ ମିଳିଗଲା। ତାଙ୍କ ପାଇଁ ରନ୍ଧା ରନ୍ଧି କରିବାକୁ ଓ ତାଙ୍କ ଖବର ବୁଝିବାକୁ ଢେଙ୍କେମା ଡେଟ୍ରଏଟ୍ ଚାଲିଗଲେ।

''ଡେଟ୍ରଏଟ୍ ଯିବା ପୂର୍ବରୁ ମୋତେ ପାଖକୁ ଡାକି ସେ ଏ କଇଁଚିଟି ମୋ ହାତରେ ଦେଇଗଲେ। ତାଙ୍କ ସାଙ୍ଗରେ ସେଇ ମୋର ଶେଷ ଦେଖା। ଦୁଇବର୍ଷ ପରେ ନିମୋନିଆରେ ତାଙ୍କର ମୃତ୍ୟୁ ହୋଇଗଲା।''

କଇଁଚିଟି ଉଠେଇ ନେଇ ଆଉ ଥରେ ଦେଖିଲେ ଆୟୋଲା, ''ମୋର ତ ଝିଅନାହିଁ, କାହାକୁ ଦେଇଯିବି ଏଇ କଇଁଚି?'' ପୁଣି ନିଜେ ନିଜ ପ୍ରଶ୍ନର ଉତ୍ତର ଦେଇ କହିଲେ, ''ଝିଅ ନାହିଁ ସିନା, ନାତୁଣୀ ତ ଅଛି। ତାକୁ ଇ ଦେଇଯିବି।''

ଯତ୍ନରେ କଇଁଚିଟିକୁ ନେଇ ଆୟୋଲା ପୁଣି ଆଲମାରୀ ଭିତରେ ରଖି ଦେଇ ଆସିଲେ। ସେଇଠି କାନ୍ଥରେ ଜଣେ ଯୁବକଙ୍କର ଫୋଟୋ ଟଙ୍ଗା ହୋଇଥିଲା। ମୁଁ ପଚାରି ଦେଲି, ''ଏଇଟି କାହା ଫୋଟୋ?''

''ମୋ ସ୍ୱାମୀଙ୍କର। Wasn't he handsome?''

ଆୟୋଲାଙ୍କର ସ୍ୱାମୀ ଆମେରିକାର ନାଗରିକତ୍ୱ ଗ୍ରହଣ କରି ନେଇଥିଲେ। କିନ୍ତୁ କୌଣସି ଦିନ ସେ ନରୱେକୁ ଭୁଲି ପାରି ନଥିଲେ। ସବୁ ଭିତରେ ସେ ଧରି ରଖିଥିଲେ ନିଜ ଦେଶର ସଂସ୍କୃତିକୁ। ସ୍ୱାମୀଙ୍କ ସହିତ କଟେଇଥିବା ସତଚାଳିଶ ବର୍ଷର କଥା କହୁ କହୁ ଆୟୋଲା ଯେମିତି ଅନ୍ୟ ଜଗତକୁ ଚାଲି ଯାଉଥିଲେ।

ମିତୁ, ତାଙ୍କୁ ଟିକିଏ ଥଟ୍ଟା କରିବାର ଲୋଭ ସମ୍ବରଣ କରିପାରିଲି ନାହିଁ।

''ସତଚାଳିଶ ବର୍ଷ ଗୋଟିଏ ମଣିଷ ସହିତ କଟେଇ ଦେଲେ? ବୋର୍ କେମିତି ହେଲେ ନାହିଁ? ଆପଣ ଡିଭୋର୍ସ କଥା କେବେ ଭାବି ନାହାନ୍ତି?''

ଆୟୋଲା ହସିଲେ, ''ମୁଁ ଜାଣେ, ବର୍ତ୍ତମାନ ଆମେରିକାରେ ଲୋକମାନେ କଥା କଥାକେ ଡିଭୋର୍ସ କରୁଛନ୍ତି। ବିଶେଷ କରି କ୍ୟାଲିଫୋର୍ଣ୍ଣିଆରେ ଛାଡପତ୍ରର ପରିମାଣ ବୋଧହୁଏ ସବୁଠାରୁ ଅଧିକ। କିନ୍ତୁ ଆମ ବେଳେ ସେପରି ନଥିଲା। ଡିଭୋର୍ସ ଯେ ହେଉ ନ ଥିଲା ତା' ନୁହଁ। କିନ୍ତୁ ଛୋଟ ଛୋଟ କାରଣରେ ଆମେ ବାହାଘର ଭାଙ୍ଗି ଦେଉ ନ ଥିଲୁ।''

୧୯୭୬ ମସିହାରେ ଆୟୋଲାଙ୍କର ସ୍ୱାମୀ କ୍ୟାନ୍‌ସରରେ ମୃତ୍ୟୁବରଣ କରିଥିଲେ।

ସ୍ୱାମୀଙ୍କର ମୃତ୍ୟୁ ପରେ ଆୟୋଲା କିଛି ଦିନ ବଡ ପୁଅ ଘରେ ରହିଥିଲେ। କିନ୍ତୁ ତାଙ୍କର ସେଇଠି ରହିବାଟା ବୋହୂ ପସନ୍ଦ କରି ନ ଥିଲା। ତେଣୁ ଅଳ୍ପ ଦିନ ପରେ ସେ ପୁଅ ଘରୁ ଚାଲି ଆସି ଭଡା ଘରେ ରହିଥିଲେ।

ସେ ଚାଲି ଆସିବା ପରେ ମଧ୍ୟ ପୁଅବୋହୂଙ୍କର ମନାନ୍ତର ଲାଗି ରହିଲା। ଶେଷରେ ସେମାନେ ପରସ୍ପରକୁ ଛାଡପତ୍ର ଦେଲେ। ଏଇ କିଛି ବର୍ଷ ଆଗରୁ ଦିନେ ଏହି ବୋହୁ ଆୟୋଲାଙ୍କୁ ଫୋନ୍ କରିଥିଲା। ସେ ତାଙ୍କୁ ଦେଖା କରିବାକୁ ଚାହୁଁ ଥିଲା। ଆୟୋଲା ବା କାହିଁକି ମନା କରିବେ? ସେ ଆସି ବହୁତ ଗପି ଥିଲା। ଶେଷରେ ଯିବା ପୂର୍ବରୁ ତାଙ୍କ ହାତ ଧରି କ୍ଷମା ମାଗି ଯାଇଥିଲା। ସେ କହିଥିଲା ଯେ ସେ ତାଙ୍କ ପ୍ରତି ଅଯଥାରେ ଈର୍ଷାପରାୟଣା ହୋଇଯାଇଥିଲା।

''ମୁଁ ତାକୁ ବହୁତ ଦିନରୁ କ୍ଷମା କରିସାରିଛି। ସେ ଯେ ମତେ ମୋ ପ୍ରଥମ ନାତି ଦେଇଛି।''

ଡିଭୋର୍ସର କିଛି ବର୍ଷ ପରେ ଆୟୋଲାଙ୍କର ବଡ ପୁଅ ଜଣେ ଜାପାନିଜ ଝିଅକୁ ବିବାହ କରିଛି। ''ମୁଁ ଯେତେବେଳେ ବଡ ପୁଅ ଘରକୁ ବୁଲିଯାଏ, ମୋର ସେହି ବୋହୁ ବହୁତ ଯତ୍ନ କରେ।''

ବାର ବର୍ଷ ଭଡା ଘରେ ରହିବା ପରେ ତିନି ବର୍ଷ ତଳେ ଆୟୋଲା ସନି ଭିଉ ମ୍ୟାନରକୁ ଆସିଛନ୍ତି। କିନ୍ତୁ ଏମିତି ଏ ବୟସରେ ଏକା ଏକା ଚଳିବାକୁ ଅସୁବିଧା ହେଉନାହିଁ? କିଛି ସମୟ ଚୁପ୍ ରହି ଆୟୋଲା କହିଲେ, ''ନା। ମୁଁ ସ୍ୱାଧୀନ ଭାବରେ ଚଳିବାକୁ ପସନ୍ଦ କରେ।'' ଆୟୋଲାଙ୍କର ଦୁଇ ପୁଅ। ସେମାନେ ବେଶୀ ଦୂରରେ ରହନ୍ତି ନାହିଁ। ମଝିରେ ମଝିରେ ଆସି ଦେଖି

ଯାଆନ୍ତି। ଜିନିଷପତ୍ର କିଣି ଦେଇ ଯାଆନ୍ତି। ଆୟୋଲାଙ୍କର ନିଜସ୍ୱ କିଛି ଆୟ ଅଛି। ତେଣୁ ସେ ପୁଅମାନଙ୍କ ଉପରେ ସଂପୂର୍ଣ୍ଣ ନିର୍ଭରଶୀଳ ହେବା ପାଇଁ ଚାହାନ୍ତି ନାହିଁ। ସ୍ୱାଧୀନ ଭାବରେ ରହିବାକୁ ଭଲ ପାଆନ୍ତି। କିନ୍ତୁ ଏ କ'ଣ ସତରେ ତାଙ୍କର ଅନ୍ତରର କଥା ? ଅଶୀ ପାର ହୋଇ ଯାଇଥିବା ଶରୀରରେ ଦିନକୁ ଦିନ ନୂଆ ନୂଆ ରୋଗ ଦେଖାଯାଏ। କେଉଁଦିନ ଦେହ ଦରଜ ତ କେଉଁଦିନ ମୁଣ୍ଡ ବୁଲେଇବା। ଏଭଳି ଦିନମାନଙ୍କରେ କ'ଣ ଜଣେ ସତରେ ଏକା ଏକା ଚଳିପାରେ ? ଅବଶ୍ୟ ଆଖପାଖର ସମାଜ ସେବା ଅନୁଷ୍ଠାନ କର୍ମଚାରୀମାନେ ମଝିରେ ମଝିରେ ଆସି ସାହାଯ୍ୟ କରନ୍ତି। ଘର ସଫା କରିବା ପାଇଁ, ୱାଶିଙ୍ଗ ମେସିନ୍‌ରେ ଲୁଗା ସଫା କରି ଇସ୍ତ୍ରୀ କରିଦେବା ପାଇଁ ମଧ୍ୟ ଲୋକ ଅଛନ୍ତି। ତଥାପି କ'ଣ ନିଜ ଲୋକଙ୍କୁ ପାଖରେ ପାଇବା ପାଇଁ ମନ ବିକଳ ହୁଏ ନାହିଁ ?

ମିତ୍ର, ଆୟୋଲାଙ୍କୁ ମୁଁ ସେ ପ୍ରଶ୍ନ ପଚାରି ପାରିଲି ନାହିଁ। ସେଇଟା ଯେ ସଂପୂର୍ଣ୍ଣ ଭାବରେ ତାଙ୍କର ବ୍ୟକ୍ତିଗତ ବିଷୟ। ତା' ଭିତରେ ନାକ ଗୁଞ୍ଜିବାର ମୋର କୌଣସି ଅଧିକାର ନାହିଁ। କିନ୍ତୁ ଆଉ ଗୋଟିଏ ପ୍ରଶ୍ନ ନ ପଚାରି ରହିପାରିଲିନାହିଁ।

ଗତ ଚଉରାଅଶୀ ବର୍ଷ ମଧ୍ୟରେ ସେ ସମାଜର ବହୁ ପରିବର୍ତ୍ତନ ଦେଖିଛନ୍ତି। ଦୁଇ ଦୁଇଟି ବିଶ୍ୱଯୁଦ୍ଧ ତାଙ୍କ ଆଖି ସାମ୍ନାରେ ଘଟିଯାଇଛି। କେତେ ନିର୍ବାଚନ ହୋଇ କେତେ ରାଷ୍ଟ୍ରପତି ଆସିଛନ୍ତି, ପୁଣି ଯାଇଛନ୍ତି। ତାଙ୍କ ଆଖି ସାମ୍ନାରେ ବିଜ୍ଞାନର କାହିଁ କେତେ ଅଗ୍ରଗତି ହୋଇଯାଇଛି। ଆଉ ତା' ସହିତ ତାଳ ଦେଇ ବଦଳିଛି ଆମେରିକାର ସମାଜ। ଏସବୁ ନେଇ କ'ଣ ଆୟୋଲାଙ୍କ ମନରେ କୌଣସି କ୍ଷୋଭ ଅଛି ?

ଆୟୋଲାଙ୍କର ଉତ୍ତର ବଡ ସ୍ପଷ୍ଟ। ''ବର୍ତ୍ତମାନ ସମାଜରେ ଯେଉଁ ବିଳାସ ମୁଁ ଦେଖୁଛି, ସେସବୁ ଆମ ବେଳେ ନ ଥିଲା। ଟେଲିଭିଜନ୍, ୱାଶିଙ୍ଗ୍ ମେସିନ୍, ଡିଶ୍‌ୱାସର୍ ଏସବୁ ତ ଦୂର କଥା; ମୁଁ ପ୍ରଥମ ରେଡିଓ ଦେଖିଲି ଯେତେବେଳେ ମୋର ବୟସ ସାତ। ସେଥର ଖରାଛୁଟୀରେ ମୁଁ ଆଈଙ୍କ ପାଖକୁ ଯାଇଥାଏ। ସେହି ବର୍ଷ ଆଈ ନୂଆ ରେଡିଓଟିଏ କିଣିଥାଆନ୍ତି। ସେତେବେଳେ ମୁଁ ଅବାକ୍ ହୋଇ ଭାବିଥିଲି କେମିତି ଗୋଟିଏ ଡବା ଭିତରୁ ମଣିଷର ସ୍ୱର ଆସୁଛି।

କିନ୍ତୁ ଗୋଟିଏ ବିଷୟ ଏଇଠି କହୁଛି। ଆମ ସମୟରେ ଯେଉଁ ମାନସିକ ଶାନ୍ତି ଥିଲା, ତାହା ଏବେ ପ୍ରାୟ ବିରଳ।''

ଟିକିଏ ରହି ସେ ପୁଣି କହିଲେ, ''କେବଳ ଗୋଟିଏ କଥା ନେଇ ବେଳେବେଳେ ମୋ ମନ ଖରାପ ହୋଇଯାଏ।''

ଆୟୋଲାଙ୍କର ଝିଅଟିଏ ଥିଲା। ଝିଅଟିର ବୟସ ଯେତେବେଳେ ଖୁବ୍ କମ୍, ସେତେବେଳେ ହୃଦ୍‌ରୋଗରେ ତା'ର ମୃତ୍ୟୁ ଘଟିଥିଲା। ସେତେବେଳେ ଚିକିତ୍ସା ବିଜ୍ଞାନ ଏତେ ଉନ୍ନତ ନ ଥିଲା। ''ଯଦି ବର୍ତ୍ତମାନର ସମୟରେ ମୋ ଝିଅ ଜନ୍ମ ହୋଇଥାଆନ୍ତା, ତେବେ ସେ ନିଶ୍ଚୟ ବଞ୍ଚିଯାଇଥାଆନ୍ତା।''

ଆୟୋଲାଙ୍କ ସାଙ୍ଗରେ ଗପୁ ଗପୁ କେମିତି ଅଢେଇ ଘଣ୍ଟା ସମୟ ଚାଲିଗଲା ଜାଣି ପାରିଲି ନାହିଁ। ସାଢେ ବାରଟାବେଳେ ଯିବା ପାଇଁ ମୁଁ ବାହାରିଲି। ଆୟୋଲା ବ୍ୟସ୍ତ ହୋଇ କହି ପକେଇଲେ, ''Oh dear, do you really have to go?''

ମିତୁ, ଏହି କଥା ପଦକ ଶୁଣି ବହୁତ କଷ୍ଟ ଲାଗିଲା। ଅନୁଷ୍ଠାନର ଜୀବନ କି ଯେ ଏକାକୀ, ମୁଁ ଏଇଥିରୁ ଜାଣିପାରିଲି। ପରେ ପୁଣି ଗୋଟିଏ ଦିନ ତାଙ୍କ ସାଙ୍ଗରେ କଟେଇବାର ପ୍ରତିଶ୍ରୁତି ଦେଇ ମୁଁ ଫେରିଥିଲି।

ଆଜି ତେବେ ଏଇଠି ଲେଖା ବନ୍ଦ କରୁଛି। ମୋ ଚିଠି ପାଇ ଶୀଘ୍ର ଉତ୍ତର ଦେବୁ। ରହୁଛି।

ଇତି

ତୋର 'ନାନୀ'

କୁପରଟିନୋ
୧୬ ଅକ୍ଟୋବର, ୧୯୯୨

ସ୍ନେହର ମିତୁ,

ଆଜି ସକାଳ ଡାକରେ ତୋ ଚିଠି ପାଇଛି। ଏତେ ଶୀଘ୍ର ତୋଠାରୁ ଉତ୍ତର ପାଇବି ବୋଲି ଆଶା କରି ପାରି ନ ଥିଲି। ସେଇଥିପାଇଁ ଲଫାଫା ଉପରେ ତୋ ଅକ୍ଷର ଦେଖି ମନ ଖୁସି ହୋଇଗଲା।

ଆୟୋଲା ହେଣ୍ଡ୍ରିକ୍ସେନ୍‌ଙ୍କ କାହାଣୀ ତୋତେ ଭାରି ଭଲ ଲାଗିଛି ବୋଲି ଲେଖିଛୁ। ମୁଁ ଏହା ଭିତରେ ଫୋନ୍ କରି ଆୟୋଲାଙ୍କୁ ସେ କଥା ଜଣେଇ ଦେବି। ତୁ ଯଦି ପାରିବୁ, ଦୁଇଧାଡ଼ିର ଚିଠିଟିଏ ତାଙ୍କ ନିକଟକୁ ଲେଖିଦେବୁ। ତୋ ଚିଠି ତାଙ୍କର ଏକାକୀ ଜୀବନରେ ନିଶ୍ଚୟ କିଛିଟା ଆନନ୍ଦ ଭରିଦେବ।

ଆୟୋଲାଙ୍କ ସହିତ କଥାବାର୍ତ୍ତା କରିବାର କିଛି ଦିନ ପରେ ମୁଁ ଏଠିକାର ଲାଇବ୍ରେରୀରୁ ବୃଦ୍ଧାବସ୍ଥା ଉପରେ କେତୋଟି ବହି ଆଣି ପଢୁଥିଲି। ସେଥିମଧ୍ୟରୁ ଗୋଟିଏ ବହିରେ ପ୍ରାଗୈତିହାସିକ ଯୁଗରୁ ଆରମ୍ଭ କରି ମଧ୍ୟଯୁଗ ପର୍ଯ୍ୟନ୍ତ ବୟସ୍କ ବ୍ୟକ୍ତିମାନଙ୍କ ପ୍ରତି ସମାଜ କିଭଳି ବ୍ୟବହାର କରୁଥିଲା, ତାହା ବର୍ଣ୍ଣିତ ହୋଇଥିଲା। ମିତୁ, ବହିଟି ପଢ଼ି ମୁଁ ଅବାକ୍ ହୋଇଗଲି। ପ୍ରାଚୀନ ସମାଜ ସମ୍ପର୍କରେ ମୋର କେତେ ଯେ ଭୁଲ୍ ଧାରଣା ଥିଲା, ବହିଟି ପଢ଼ିବା ପରେ ଜାଣି ପାରିଲି।

ସାଧାରଣତଃ ଆମମାନଙ୍କ ମନରେ ଗୋଟିଏ ବିଶ୍ୱାସ ରହିଯାଇଛି ଯେ

କେଉଁ ଆଦିମ କାଳରୁ ବୟସ୍କମାନେ ସମାଜର ଶ୍ରେଷ୍ଠତମ ସ୍ଥାନ ପାଇ ଆସୁଛନ୍ତି। ଏହା ଯେ ସଂପୂର୍ଣ୍ଣ ରୂପେ ମିଥ୍ୟା, ତା' ନୁହଁ। ପ୍ରାଗୈତିହାସିକ ଯୁଗରେ କେତେକ ସମାଜର ଲୋକମାନେ ସେମାନଙ୍କର ବୟସ୍କ ସଦସ୍ୟମାନଙ୍କୁ ଈଶ୍ୱରଙ୍କ ପରି ପୂଜା କରୁଥିଲେ। ଈଶ୍ୱରଙ୍କ ସାମ୍ନାରେ ପଶୁବଳି ଦେବା ପରି ଦଳର ବୃଦ୍ଧ ବୃଦ୍ଧାଙ୍କ ନିକଟରେ ବଳି ଦିଆଯାଉଥିଲା। ଅଥଚ ସେହି ସମୟରେ ପୃଥିବୀରେ ଏଭଳି କେତେକ ଦଳ ବାସ କରୁଥିଲେ ଯେଉଁମାନେ କି ଏକ ଭୟଙ୍କର କାର୍ଯ୍ୟ କରୁଥିଲେ। ଜଣେ ମଣିଷ ବୃଦ୍ଧାବସ୍ଥାରେ ପାଦ ଦେବା ପରେ ସେମାନେ ତାକୁ ପାହାଡ ଉପରୁ ତଳକୁ ଫୋପାଡି ମାରି ଦେଉଥିଲେ। ଅଥବା ମଣିଷଖିଆ ପଶୁମାନଙ୍କ ସାମ୍ନାରେ ଛାଡି ଦେଉଥିଲେ।

କିନ୍ତୁ ଏଭଳି ଅମାନୁଷିକ କାର୍ଯ୍ୟ ସେମାନେ କରୁଥିଲେ କାହିଁକି? ନୃତତ୍ତ୍ୱବିଦ୍ ଓ ଐତିହାସିକମାନେ ବହୁ ଅନୁଧ୍ୟାନ କରିବା ପରେ ଏହାର ଉତ୍ତର ପାଇପାରିଛନ୍ତି। ପ୍ରାଚୀନ ସମାଜରେ ମଣିଷର ଅନ୍ୟ ମଣିଷ ପ୍ରତି ବ୍ୟବହାର ଅଭ୍ୟାସ ବା ଆବଶ୍ୟକତାରୁ ସୃଷ୍ଟି ହୋଇଥିଲା। ସେତେବେଳେ ମନେ କରାଯାଉଥିଲା ଯେ ଗୋଟିଏ ସମାଜରେ ବାସ କରୁଥିବା ସମସ୍ତ ବ୍ୟକ୍ତି କେବଳ ସାମୁହିକ ହିତ ନିମନ୍ତେ କାର୍ଯ୍ୟ କରିବେ। ଯେଉଁ ସଦସ୍ୟମାନେ ଏହା କରିପାରୁ ନ ଥିଲେ ବା ଯେଉଁମାନେ ଅନ୍ୟମାନଙ୍କ ଉପରେ ନିର୍ଭରଶୀଳ ହେବା ଭଳି ଅବସ୍ଥାରେ ପହଞ୍ଚି ଯାଉଥିଲେ, ସେମାନଙ୍କର ଯେ ବଞ୍ଚି ରହିବାର କୌଣସି ଅଧିକାର ଅଛି, ତାହା କେହି ମନେ କରୁ ନଥିଲେ। ତେଣୁ ଏଭଳି ବ୍ୟକ୍ତିମାନଙ୍କୁ ହତ୍ୟା କରି ଦିଆଯାଉଥିଲା। କେତେକ କ୍ଷେତ୍ରରେ ଉକ୍ତ ବ୍ୟକ୍ତିର ସହାୟତାରେ ଏହା କରାଯାଉଥିଲା। ଆଉ କେତେକ କ୍ଷେତ୍ରରେ ଏଇଭଳି ବ୍ୟକ୍ତିମାନେ ସମାଜର ସ୍ୱୀକୃତିରେ ଆତ୍ମହତ୍ୟା କରୁଥିଲେ।

ଏ ସମ୍ପର୍କରେ ମୁଁ କାହାଣୀଟିଏ ପଢିଥିଲି। ଏଇଟିକୁ ପ୍ରାଚୀନ ଗ୍ରୀକ୍ ଐତିହାସିକ ହିରୋଡେଟସ୍ ଉଲ୍ଲେଖ କରିଥିଲେ। ସେତେବେଳେ ଗ୍ରୀସ୍‌ରେ ବୟସ୍କମାନଙ୍କୁ ବହୁତ ସମ୍ମାନ ଦିଆଯାଉଥିଲା। ସମାଜର ଶ୍ରେଷ୍ଠ ସ୍ଥାନ ସେମାନଙ୍କ ପାଇଁ ସଂରକ୍ଷିତ ଥିଲା। ଆଉ ଯେତେବେଳେ ସେମାନଙ୍କର ମୃତ୍ୟୁ ହୋଇଯାଉଥିଲା, ସେମାନଙ୍କର ମୃତ ଶରୀରକୁ ବହୁ ଆଡମ୍ବରରେ ନିଆଯାଇ ଦାହ କରାଯାଉଥିଲା। ସେହି ସମୟରେ ଗ୍ରୀସ୍‌ରେ 'କାଲାଟି' ନାମକ ଆଉ ଏକ ଦଳର ଲୋକ ରହୁଥିଲେ। ଏହି କାଲାଟି

ସମାଜରେ ଏକ ଅଦ୍ଭୁତ ପ୍ରଥା ଥିଲା । ଜଣେ ବୟସ୍କ ବ୍ୟକ୍ତିର ମୃତ୍ୟୁ ହୋଇଗଲେ, ତାହାର ଶରୀରକୁ ଅନ୍ୟମାନେ ନ ପୋଡି, ନ ପୋତି ଭକ୍ଷଣ କରି ଦେଉଥିଲେ । ହୁଏତ ମୃତବ୍ୟକ୍ତିର ଶରୀରକୁ ନିଜ ଭିତରେ ବଞ୍ଚେଇ ରଖିବା ଭଳି କୌଣସି ଏକ ଅଦ୍ଭୁତ ଯୁକ୍ତି ରହିଥିଲା ଏହା ପଛରେ ।

ସେତେବେଳେ ପାରସ୍ୟର ରାଜା ଦାରିୟସ୍‌ଙ୍କ ରାଜ ସଭାରେ ଉଭୟ ସମାଜର ଲୋକ ରହିଥିଲେ । ଥରେ ପରୀକ୍ଷା କରିବା ପାଇଁ ଦାରିୟସ୍ ଗ୍ରୀକ୍ ଓ କାଲାଟିମାନଙ୍କୁ ପରସ୍ପରର ପ୍ରଥା ଗ୍ରହଣ କରି ନେବାକୁ କହିଲେ । ଅର୍ଥାତ୍ ଗ୍ରୀସ୍‌ର ଲୋକମାନଙ୍କୁ କୁହାଗଲା ଯେ ବୟସ୍କ ବ୍ୟକ୍ତିଙ୍କର ମୃତ ଶରୀରକୁ ନ ପୋଡି ଭକ୍ଷଣ କରିବାକୁ ହେବ ଏବଂ କାଲାଟିମାନଙ୍କୁ କୁହାଗଲା ଯେ ସେମାନଙ୍କ ସମାଜର ମୃତ ବ୍ୟକ୍ତିର ଶରୀରକୁ ଦାହ କରିବାକୁ ହେବ । ରାଜାଙ୍କ କଥା ଶୁଣି ଗ୍ରୀସ୍‌ର ଲୋକମାନେ ଭୟରେ ଶିହରି ଉଠିଥିଲେ । ସେମାନେ ପ୍ରଥମରୁ ନିଜର ଅସମ୍ମତି ରାଜାଙ୍କୁ ଜଣେଇ ଦେଲେ । କାଲାଟିମାନଙ୍କ ଭିତରେ ମଧ୍ୟ ପ୍ରବଳ ଗୁଞ୍ଜରଣ ଖେଳି ଉଠିଲା । ସେମାନେ ନିଜ ପ୍ରଥା ଛାଡିବା ପାଇଁ ଆଦୌ ରାଜି ହେଲେ ନାହିଁ । ସେମାନେ କହିଲେ ଯେ ପୃଥିବୀର ସବୁ ଧନସମ୍ପତ୍ତି ଯଦି କିଏ ସେମାନଙ୍କ ଆଗରେ ଠୁଳ କରିଦିଏ, ତଥାପି ମଧ୍ୟ ସେମାନେ ମୃତବ୍ୟକ୍ତିର ଶରୀରକୁ ପୋଡିବା ଭଳି ଏକ 'ଅସମ୍ମାନ ଜନକ' କାର୍ଯ୍ୟ କରି ପାରିବେ ନାହିଁ ।

ଏଇଥିରୁ ଜଣାପଡେ ଯେ ଆମେ ଯାହାକୁ ନୃଶଂସ ବୋଲି କହୁଛୁ, ତାହାକୁ ତତ୍‌କାଳୀନ କେତେକ ସମାଜର ଲୋକମାନେ ନୃଶଂସ ବୋଲି ଭାବୁ ନ ଥିଲେ । ସେ ସବୁ ଥିଲା ସେମାନଙ୍କର ବହୁକାଳରୁ ଚଳି ଆସୁଥିବା ପ୍ରଥା । ସେ ସବୁକୁ ଅମାନ୍ୟ କରିବା କଥା ସେମାନେ ଚିନ୍ତା କରିପାରୁ ନ ଥିଲେ ।

ବର୍ତ୍ତମାନର ସଭ୍ୟ ସମାଜରେ ଆମ ପକ୍ଷରେ ଏଇଭଳି ଏକ ବର୍ବରୋଚିତ ବ୍ୟବହାର ଗ୍ରହଣ କରିବା କଷ୍ଟକର, କିନ୍ତୁ ପୁରାତନ ସମାଜର ଏଭଳି କାର୍ଯ୍ୟକଳାପ ପଛରେ କାରଣଟିଏ ଥିଲା । ସେତେବେଳେ ତ ଲୋକମାନଙ୍କୁ ଲେଖିବା ଜଣା ନଥିଲା । ସମାଜରେ ପ୍ରଚଳିତ ବିଭିନ୍ନ ପ୍ରଥାକୁ କେବଳ ଶ୍ରୁତି ମାଧ୍ୟମରେ ବଞ୍ଚେଇ ରଖୁଥିଲେ ସେମାନେ । ତେଣୁ ଯେଉଁ ବୟସ୍କ ବ୍ୟକ୍ତିମାନଙ୍କ ସ୍ମୃତି ଶକ୍ତି ହ୍ରାସ ପାଇ ଯାଉଥିଲା, ସେମାନଙ୍କର ସମାଜରେ ବା କି ମୂଲ୍ୟ ! ଅପରନ୍ତୁ ସେମାନଙ୍କର 'ବାଚାଳାମୀ' ସମାଜ ଉପରେ କୁପ୍ରଭାବ ପକାଇବା ଭୟ ରହିଥିଲା ।

ମିତ୍ର, ଆଉ ଗୋଟିଏ ବିଷୟ ହେଲା 'ବାଚାକାମୀ' କରିବା ଅବସ୍ଥାରେ ପହଞ୍ଚୁଥିଲେ ହାତଗଣତା କେଇଜଣ। କାରଣ ବୃଦ୍ଧାବସ୍ଥାରେ ପହଞ୍ଚିବାର ବହୁପୂର୍ବରୁ ପ୍ରାକୃତିକ କାରଣରୁ ଅଧିକାଂଶଙ୍କର ମୃତ୍ୟୁ ହୋଇଯାଉଥିଲା। ବର୍ତ୍ତମାନ ମଣିଷର ହାରାହାରି ଜୀବନ ପ୍ରାୟ ୭୦ ବର୍ଷ। କିନ୍ତୁ ପ୍ରାଗୈତିହାସିକ ଯୁଗରେ ମଣିଷର ହାରାହାରି ଜୀବନ ଥିଲା ୨୫। ନୃତତ୍ତ୍ୱବିତ୍‌ମାନେ ସେ ସମୟର ମଣିଷର ହାଡ ଓ କଂକାଳକୁ ପରୀକ୍ଷା କରି ଜାଣି ପାରିଛନ୍ତି ଯେ ଶତକଡା ୯୫ ଭାଗ ମଣିଷ ଚାଳିଶ ବର୍ଷ ହେବା ପୂର୍ବରୁ ମୃତ୍ୟୁବରଣ କରୁଥିଲେ ଏବଂ ୭୫ ଭାଗ ୩୦ ଛୁଇଁ ପାରୁ ନ ଥିଲେ। ତେଣୁ ମୃତ୍ୟୁଦଣ୍ଡ ଭୋଗିବା ବୟସରେ ଖୁବ୍ କମ୍ ଲୋକ ପହଞ୍ଚୁଥିଲେ।

ସମୟକ୍ରମେ ଏ ସବୁ ସମାଜରେ ପରିବର୍ତ୍ତନ ଦେଖାଗଲା। ଯେତେବେଳେ ଲୋକମାନେ ଲେଖି ଶିଖିଲେ, ସେତେବେଳେ ଦେଖାଗଲା ଯେ ବୟସ୍କମାନଙ୍କର ସ୍ମୃତିଶକ୍ତି ଉପରେ ସମାଜ ଆଉ ନିର୍ଭରଶୀଳ ନୁହଁ। ଫଳରେ ବୟସ୍କମାନଙ୍କୁ ହତ୍ୟା କରିବାର ପ୍ରଥା କ୍ରମଶଃ ହ୍ରାସ ପାଇ ଶେଷରେ ଲୋପ ପାଇଗଲା।

ଏ ତ ଗଲା ପ୍ରାଗୈତିହାସିକ ଯୁଗ କଥା। ପ୍ରାଚୀନ ଓ ମଧ୍ୟଯୁଗରୁ ମିଳିଥିବା ବିଭିନ୍ନ ପ୍ରମାଣରୁ ଜଣାପଡେ ଯେ ସେ ସମୟରେ ବୟସ୍କମାନଙ୍କୁ ବହୁ ସମ୍ମାନ ଦିଆଯାଉଥିଲା। କିନ୍ତୁ ସମାଜତତ୍ତ୍ୱବିତ୍‌ମାନେ ମତ ଦିଅନ୍ତି ଯେ ଏହି ସମ୍ମାନ କେବଳ ଧନୀ ବା ଏକଦା ଶକ୍ତିଶାଳୀ ଥିବା ବୟସ୍କ ବ୍ୟକ୍ତିମାନଙ୍କୁ ଦିଆଯାଉଥିଲା। ସମାଜର ନିମ୍ନବର୍ଗରେ ଥିବା ବୃଦ୍ଧ ବୃଦ୍ଧାମାନେ ବଡ ଦୟନୀୟ ଅବସ୍ଥାରେ ଦିନ କଟାଉଥିଲେ। ସେମାନଙ୍କ ପ୍ରତି ହିଂସ୍ର ବ୍ୟବହାର କରାଯାଉ ନ ଥିଲା ସତ, କିନ୍ତୁ ସେମାନଙ୍କୁ ନେଇ ବହୁ ଥଟ୍ଟା ତାମସା କରାଯାଉଥିଲା। ସମାଜ ସେମାନଙ୍କୁ ହେୟ ଦୃଷ୍ଟିରେ ଦେଖୁଥିଲା।

ଏଥର ମାର୍କିନ୍ ସମାଜ କଥା କହେ। ଏମିତିରେ ଦେଖିଲେ ଆମେରିକାନ୍ ସମାଜ ବେଶୀ ପୁରୁଣା ନୁହଁ। ପଞ୍ଚଦଶ ଶତାବ୍ଦୀରେ କଲମ୍ବସ୍ ଆମେରିକା ଆବିଷ୍କାର କରିବା ପରେ ଇଉରୋପର ବିଭିନ୍ନ ପ୍ରାନ୍ତରୁ ଲୋକମାନେ ଏଠାକୁ ଆସି ଆମେରିକାନ୍ ସମାଜର ଭିତ୍ତି ସ୍ଥାପନା କରିଥିଲେ। ସେହି ସମୟରେ ବୟସ୍କବ୍ୟକ୍ତିମାନଙ୍କୁ ବହୁ ସମ୍ମାନ ଦିଆଯାଉଥିଲା। କାରଣ ସମାଜରେ ବେଶୀ ବୟସ୍କ ବ୍ୟକ୍ତି ନ ଥିଲେ। ଏହି ସମ୍ମାନ ଦେବାର ପ୍ରଥା ପ୍ରାୟ ୨୦୦ ବର୍ଷ ଧରି ରହିଥିଲା। କିନ୍ତୁ

ସମାଜତତ୍ତ୍ୱବିତ୍‌ମାନେ କହନ୍ତି ଏହା କେବଳ 'ଭକ୍ତି'ରେ ସୀମିତ ଥିଲା। ଏଥିରେ 'ଭଲପାଇବା'ର ପରିମାଣ ଥିଲା କମ୍।

ଅଷ୍ଟାଦଶ ଶତାବ୍ଦୀରେ ଦେଖାଗଲା ଯେ ଏଇଭଳି ଭକ୍ତିପୂର୍ଣ୍ଣ ବ୍ୟବହାର କରି କରି ସମାଜ ଥକି ଯାଇଛି। ଏହି ସମୟରେ ଯୁବକମାନଙ୍କର ବ୍ୟବହାରରେ ବହୁତ ପରିବର୍ତ୍ତନ ଦେଖାଯାଇଥିଲା। ପୂର୍ବରୁ ବିଭିନ୍ନ ସମସ୍ୟାରେ ବୟସ୍କ ବ୍ୟକ୍ତିମାନଙ୍କର ମତାମତ ନିଆଯାଉଥିଲା ଏବଂ ସେମାନଙ୍କର ମତାନୁସାରେ କାର୍ଯ୍ୟ କରାଯାଉଥିଲା। କିନ୍ତୁ କ୍ରମଶଃ ଦେଖାଗଲା ଯେ ଆଉ ସେମାନଙ୍କର ମତାମତ କେହି ଲୋଡୁନାହାନ୍ତି। କେବଳ ସେତିକି ନୁହଁ, ଥରେ ଭକ୍ତିର ପରଦାକୁ ଘୁଞ୍ଚେଇ ଦେବା ପରେ ସେମାନଙ୍କୁ ଘୃଣା ଓ ହତାଦର କରିବା ଆରମ୍ଭ ହୋଇଗଲା।

ତେବେ ଅଧିକାଂଶ କ୍ଷେତ୍ରରେ ଏହିଭଳି ହତାଦର ବା ଥଟ୍ଟା ପରୋକ୍ଷ ଭାବରେ କରାଯାଉଥିଲା। ଏହାର ଶ୍ରେଷ୍ଠ ଉଦାହରଣ ମିଳେ ସେହି ସମୟର ମାର୍କିନ୍ ସାହିତ୍ୟରୁ। ସେହି ସମୟର ଗଳ୍ପ, ଉପନ୍ୟାସ ବା ନାଟକରେ ବୁଢାବାପା ବା ମା'ଙ୍କ ପ୍ରତି ଅନାଦରସୂଚକ ଶବ୍ଦମାନ ବ୍ୟବହାର କରାଯାଉଥିବାର ପ୍ରମାଣ ମିଳେ। ଏହିଭଳି ଏକ ପରିସ୍ଥିତି ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ରହିଥିଲା।

ବିଂଶ ଶତାବ୍ଦୀର ଆରମ୍ଭରେ ଦେଖାଗଲା ଯେ ବୃଦ୍ଧ ମା, ବାପାଙ୍କଠାରୁ ପିଲାମାନେ ଦୂରେଇ ଯାଉଛନ୍ତି। ଏହା ପୂର୍ବରୁ ଯେ ଆମେରିକାରେ ଏକାନ୍ନବର୍ତ୍ତୀ ପରିବାର ଥିଲା, ତା' ନୁହଁ। କିନ୍ତୁ ପରିବାରର ବିଭିନ୍ନ ସଦସ୍ୟ ପରସ୍ପରର ପଡୋଶୀ ରୂପେ ରହୁଥିଲେ। ବିଂଶ ଶତାବ୍ଦୀରେ ଦେଖାଗଲା ଯେ ଏହି ପ୍ରଥାରେ ପରିବର୍ତ୍ତନ ଆସିଛି। ତଥାପି ପିଲାମାନେ ସଂପୂର୍ଣ୍ଣ ରୂପେ ମା, ବାପାଙ୍କଠାରୁ ଦୂରେଇ ଯାଇ ନଥିଲେ। ବେଶ୍ ନିୟମିତ ଭାବରେ ଅଧିକାଂଶ ମା, ବାପାଙ୍କୁ ଦେଖା କରୁଥିଲେ।

ଏହା ହେଉଛି ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ କଥା। କ୍ରମଶଃ ଏହି ପ୍ରଥାରେ ପରିବର୍ତ୍ତନ ଦେଖାଗଲା। ମାର୍କିନ୍ ସମାଜ ଯୁବକମାନଙ୍କୁ ଏକ ବିଶେଷ ସ୍ଥାନ ପ୍ରଦାନ କଲା। ଏଇଥିରୁ ସୃଷ୍ଟି ହେଲା ଏକ ବସ୍ତୁସର୍ବସ୍ୱ ସମାଜ। ମା, ବାପା ଏବଂ ପିଲାମାନଙ୍କ ମଧ୍ୟରେ ଯେଉଁ ଦୂରତ୍ୱ ସୃଷ୍ଟି ହୋଇଥିଲା, ତାହା କ୍ରମଶଃ ଅଧିକରୁ ଅଧିକତର ହେବାରେ ଲାଗିଲା।

ଏଇଭଳି ଏକ ପରିବେଶରେ ଯୁବକମାନେ 'ବୃଦ୍ଧାବସ୍ଥା'କୁ ସମାଜର ଏକ

ସମସ୍ୟା ରୂପେ ଗଣିଲେ। ବୃଦ୍ଧବୃଦ୍ଧାଙ୍କୁ ପେନ୍‌ସନ୍ ଦେବା କଥା ମଧ୍ୟ ଉଠିଲା। ସରକାର ସେମାନଙ୍କର ରହିବା ପାଇଁ ବିଶେଷ ଅନୁଷ୍ଠାନମାନ ଗଢ଼ିଲେ। ଏହି ବିଷୟରେ ମୁଁ ଥରେ ଲେଖାଟିଏ ପଢ଼ିଥିଲି। ଲେଖିକା କ୍ଷୁବ୍ଧ ହୋଇ ଲେଖିଥିଲେ, "ପ୍ରାଗୈତିହାସିକ ସମାଜ ଭଳି ଆମେ ଆମ ସମାଜର ବୟସ୍କବ୍ୟକ୍ତିମାନଙ୍କୁ ହତ୍ୟା କରୁନାହିଁ; ବରଂ ଅନୁଷ୍ଠାନମାନଙ୍କରେ ଜୀବନ୍ତ କବର ଦେଇଦେଉ। ଆଉ ମୁଖଲଜ୍ଜା ପାଇଁ ଏସବୁ ଅନୁଷ୍ଠାନକୁ ଘର (Home) ବୋଲି କହିଥାଉ।"

କୁପର୍‌ଟିନୋର ଏଭଳି ଗୋଟିଏ ହୋମ୍- ଆୟୋଲା ରହୁଥିବା ସନିଭିଉ ମ୍ୟାନର୍- ଦେଖିବା ପରେ ମୁଁ ଲେଖିକାଙ୍କ ସହିତ ଏକମତ ନ ହୋଇ ରହି ପାରୁନାହିଁ। ମିତୁ, ଏହା ଭିତରେ ମୁଁ ଆଉ ଦୁଇଥର ସେଇଠିକୁ ଯାଇଛି। କିନ୍ତୁ ଦୁଇଥର ଯାକ ମୁଁ ଏଭଳି କୌଣସି ଘଟଣା ଶୁଣିବାକୁ ପାଇଛି ବା କୌଣସି ଏକ ଘଟଣା ମୋ ଆଖିରେ ପଡ଼ିଛି, ଯାହାକି ମୋ ମନକୁ ବହୁତ ସମୟ ପାଇଁ ଭାରାକ୍ରାନ୍ତ କରି ଦେଇଛି। ଏଇ ତ, କିଛି ଦିନ ତଳେ ଏହି ଅନୁଷ୍ଠାନ ତରଫରୁ କେତେଜଣ ମତେ ଭାରତ ବିଷୟରେ କହିବା ପାଇଁ ଡାକିଥିଲେ। ଭାରତ ସମ୍ପର୍କରେ ଏମାନଙ୍କର ବାସ୍ତବ ଧାରଣା ବହୁତ୍ କମ୍। ଅନେକେ ମନେ କରନ୍ତି ଯେ ଏବେ ମଧ୍ୟ ଭାରତ ସେହି ରାଜାରାଜୁଡ଼ାଙ୍କ ଅମଳରେ ରହିଯାଇଛି। ହାତୀ, ସାପୁଆ କେଳା, ମାଙ୍କଡ଼ ନାଚ- ଏସବୁ ବ୍ୟତୀତ ଭାରତରେ ଯେ କିଛି ଅଛି ତାହା ସେମାନେ ଜାଣନ୍ତି ନାହିଁ। ମୁଁ ଆମ ଦେଶ, ଆମ ସଭ୍ୟତା ଓ ସଂସ୍କୃତି ବିଷୟରେ କହିବାବେଳେ ସେମାନେ ଆଶ୍ଚର୍ଯ୍ୟ ହୋଇ ଯାଉଥାଆନ୍ତି। ମୁଁ କହି ସାରିବା ପରେ ସେମାନେ ମତେ ବହୁ ପ୍ରଶ୍ନ ପଚାରିବା ଆରମ୍ଭ କରିଦେଲେ। କିନ୍ତୁ ଏସବୁ ଭିତରେ ଆୟୋଲା ଚୁପ୍ ହୋଇ ବସିଥାଆନ୍ତି। ମତେ କୌଣସି ପ୍ରଶ୍ନ ପଚାରୁ ନ ଥାଆନ୍ତି। ଅଥଚ କିଛି ଦିନ ଆଗରୁ ସେ ହିଁ ମତେ ଅନ୍ୟମାନଙ୍କ ସହିତ ଚିହ୍ନା କରେଇ ଦେଇଥିଲେ। ମୁଁ ଫେରିବା ବେଳେ ମତେ ବିଦାୟ ଦେବା ପାଇଁ ଆୟୋଲା ଲବି ପର୍ଯ୍ୟନ୍ତ ଆସିଲେ। ଆଉ ରହି ନ ପାରି ମୁଁ ପଚାରି ଦେଲି, "ସବୁ ଖବର ଭଲ ତ? ଆଜି ଏତେ ଚୁପ୍‌ଚାପ୍ କାହିଁକି?"

ଆୟୋଲା ଗୋଟିଏ ସୋଫାରେ ବସିଗଲେ। ଆଉ ଥରଥର ଗଳାରେ କହିଲେ ଯେ ତିନିଦିନ ତଳେ ତାଙ୍କର ଘନିଷ୍ଠ ବାନ୍ଧବୀ 'ଡରୋଥି'ର ମୃତ୍ୟୁ

ହୋଇ ଯାଇଛି। ଅନୁଷ୍ଠାନ ଭିତରେ ମୃତ୍ୟୁ ଏତେ ନିକଟକୁ ଆସି ଛୁଇଁ ଯିବାର ଘଟଣାଟି ତାଙ୍କୁ ସଂପୂର୍ଣ୍ଣ ରୂପେ ଦୋହଲେଇ ଦେଇଛି।

ଆୟୋଲା ଯେ ଏହି ପ୍ରଥମ ମୃତ୍ୟୁ ଦେଖିଲେ ତାହା ନୁହଁ। ତାଙ୍କ ଆଖି ସାମ୍ନାରେ ବହୁ ପ୍ରିୟଜନ ତାଙ୍କୁ ଛାଡି ଚାଲି ଯାଇଛନ୍ତି- ତାଙ୍କର ଛୋଟ ଝିଅ, ମାଆ, ବାପା, ସ୍ୱାମୀ। କିନ୍ତୁ ବର୍ତ୍ତମାନର ପରିସ୍ଥିତି ଭିନ୍ନ।

ଏମିତିରେ 'ସିନୟର ସିଟିଜେନ୍‌ସ ହୋମ୍'ରେ ରହିବା ମାତ୍ରକେ ଅଧିକାଂଶ ବୃଦ୍ଧ ବୃଦ୍ଧା ମନେ କରନ୍ତି ଯେ ମୃତ୍ୟୁ ସେମାନଙ୍କର ଖୁବ୍ ନିକଟରେ। ଏହାଛଡା ମନ ଭିତରେ ସବୁବେଳେ ଭାବଟିଏ ଆସେ ଯେ ସେମାନଙ୍କର ପିଲାମାନେ ସେମାନଙ୍କୁ ପାଖରେ ରଖିବାକୁ ଚାହାନ୍ତି ନାହିଁ। ସେଇଥିପାଇଁ ସେମାନଙ୍କୁ ଦୂରେଇ ଦେଇଛନ୍ତି। ଅନୁଷ୍ଠାନକୁ ପଠେଇ ଦେଇଛନ୍ତି। ଏଇଭଳି ମାନସିକତା ନେଇ ସେମାନେ ବେଶୀ ଦିନ ବଞ୍ଚି ରହି ପାରନ୍ତି ନାହିଁ। ଗୋଟିଏ ଗଣନାରୁ ଜଣା ପଡିଛି ଯେ ସିନିୟର୍ ସିଟିଜେନ୍‌ସ ହୋମ୍‌ରେ ରହିବାର ବର୍ଷେରୁ ଦୁଇବର୍ଷ ମଧ୍ୟରେ ଅଧିକାଂଶଙ୍କର ମୃତ୍ୟୁ ହୋଇଯାଏ।

ଆୟୋଲାଙ୍କର ଗୋଟିଏ ବଡ ସାଥୀ ତାଙ୍କର କଲମ। ଯେତେଦିନ ତାଙ୍କର ଚିନ୍ତା ଶକ୍ତି ରହିଥିବ, ହାତ କଲମ ଚଳେଇ ପାରୁଥିବ, ସେତେଦିନ ତାଙ୍କର ବଞ୍ଚିବା ପାଇଁ ଗୋଟିଏ ଆଧାର ରହିଥିବ। କିନ୍ତୁ ଯେତେବେଳେ ସେ କଲମ ଚଳେଇ ପାରିବେ ନାହିଁ, କ'ଣ ହେବ ତାଙ୍କର ଅବସ୍ଥା ?

ଆଜି ପାଇଁ ଏତିକି। ଆଶା କରୁଛି ତୁମେମାନେ ଭଲରେ ଥିବ। ତୁ ଉତ୍ତର ଦେବାରେ ଡେରି କରିବୁ ନାହିଁ। ରହୁଛି।

ଇତି

ତୋର 'ନାନୀ'

ସେଡାର୍ ଲକ୍, ଏଲ୍ ପୋର୍ଟାଲ୍
୨୪ ଅକ୍ଟୋବର, ୧୯୯୨

ସ୍ନେହର ମିତୁ,

ଆମେରିକାରେ ଆସି ପହଞ୍ଚିବାର ଅଳ୍ପ କିଛିଦିନ ପରେ ମୁଁ ପ୍ରଥମ ଥର ପାଇଁ ୟୋସେମିଟି ବିଷୟରେ ଶର୍ବରୀଠାରୁ ଶୁଣିଥିଲି। 'ଶର୍ବରୀ' ନାଁଟି ଏତେ ବେଶୀ କାବ୍ୟିକ, କିନ୍ତୁ ଶର୍ବରୀ ଝିଅଟି ଆଦୌ ଭାବପ୍ରବଣ ନୁହଁ। ନୀଳ ଆକାଶ, ଦୂର ପାହାଡ ଓ ଗୋଲାପ ବଗିଚା ଦେଖି ଉତ୍‌ଫୁଲ୍ଲ ହୋଇଉଠେ ନାହିଁ। କିନ୍ତୁ ଶର୍ବରୀର ସ୍ୱାମୀ ବ୍ରିଜେଶ୍ ପ୍ରକୃତିକୁ ଭାରି ଭଲପାଏ। ବ୍ରିଜେଶ୍‌ର କଥା ଭାଙ୍ଗି ନ ପାରି ଶର୍ବରୀ ତିନିଦିନ ପାଇଁ ୟୋସେମିଟି ଯିବାକୁ ରାଜି ହୋଇଥିଲା। ସାଙ୍ଗରେ ବହୁ ରକମର ବହି, ପତ୍ରପତ୍ରିକା ନେବାକୁ ଭୁଲି ନ ଥିଲା ସେ। ଅଥଚ ସେଠାରୁ ଫେରିବା ପରେ ସେ ଯେମିତି ହୋଇଯାଇଥିଲା ଅନ୍ୟ ଏକ ଶର୍ବରୀ। ୟୋସେମିଟିର ଗଛ, ଝରଣା, ପାହାଡ ତାକୁ ଏତେ ବେଶୀ ମୁଗ୍ଧ କରି ଦେଇଥିଲା ଯେ ତା'ର ଗପିବା ପାଇଁ ଯେମିତି ଆଉ କିଛି କଥା ନଥିଲା! ସାଙ୍ଗରେ ନେଇଥିବା ତା'ର ସବୁତକ ବହି, ପତ୍ରିକା ସେଇମିତି ନୂଆ ଭାବରେ ଫେରି ଆସିଥିଲେ।

ଶର୍ବରୀଠାରୁ ଶୁଣିବା ପରେ ଆମେ ୟୋସେମିଟି ଯିବା ପାଇଁ ବହୁତ ଉତ୍ସାହିତ ହୋଇ ପଡିଥିଲୁ। କିନ୍ତୁ ବିଭିନ୍ନ କାରଣରୁ ସେଠାକୁ ଯିବାର ଯୋଜନାଟି ସାକାର

ଗୂର୍ପ ନେଇ ପାରୁ ନ ଥିଲା। କୁପରଟିନୋରୁ ଗାଡିରେ ମାତ୍ର ସାଢେ ଚାରି ଘଣ୍ଟାର ରାସ୍ତା, ଅଥଚ କେମିତି କେଜାଣି ଯାଇ ହେଉ ନଥିଲା। ଅକ୍ଟୋବର ଆରମ୍ଭରେ ଆମେ କିନ୍ତୁ ନିଶ୍ଚିତ କଲୁ ଯେ ଯେମିତି ହେଉ ଏହି ମାସରେ ହିଁ ୟୋସେମିଟି ଯିବୁ। ନଭେମ୍ବର ମାସରେ ଭୀଷଣ ଥଣ୍ଡା ଆରମ୍ଭ ହୋଇଯିବ। ଆଉ ଥରେ ବରଫ ପଡିବା ଆରମ୍ଭ ହୋଇଗଲେ ପର୍ଯ୍ୟଟକମାନଙ୍କ ପାଇଁ ୟୋସେମିଟି ନ୍ୟାସନାଲ୍ ପାର୍କଟି ବନ୍ଦ ହୋଇଯିବ। ପୁଣି ଖୋଲୁ ଖୋଲୁ ଏପ୍ରିଲ୍ ବା ମେ।

ଗ୍ରାଣ୍ଡ କ୍ୟାନିଅନ୍ ଭଳି ୟୋସେମିଟି ନ୍ୟାସ୍‌ନାଲ ପାର୍କର ଭିତରେ ରହିଛି ୟୋସେମିଟି ଭିଲେଜ। ଏହି ଭିଲେଜ୍‌ରେ ରହିଥିବା ପାର୍କ ଅଫିସ୍ ୟୋସେମିଟି ଅଞ୍ଚଳରେ ଥିବା ସମସ୍ତ ହୋଟେଲ୍, ରେସ୍ତୋରାଁ ଓ ଦୋକାନ ବଜାରକୁ ନିୟନ୍ତ୍ରଣ କରିଥାଏ। ସ୍ଥାନଟିର ପ୍ରାକୃତିକ ସୌନ୍ଦର୍ଯ୍ୟ ଯେପରି ଅତୁଟ ରହେ ସେଥିପାଇଁ ଏତେ ସବୁ ବ୍ୟବସ୍ଥା। ଆମେ ମନ ସ୍ଥିର କରି ନେବା ପରେ ୟୋସେମିଟି ଭିଲେଜ୍‌କୁ ହୋଟେଲ ସଂକ୍ରାନ୍ତରେ ମୁଁ ଫୋନ୍ କରିଲି। ହେଲେ ମିତୁ, ସେଠିକାର କୌଣସି ହୋଟେଲରେ ରୁମ୍ ଖାଲି ନ ଥିଲା। ଏଠିକା ହୋଟେଲମାନଙ୍କରେ ରୁମ୍ କୁଆଡେ ଦୁଇ ତିନିମାସ ଆଗରୁ ରିଜର୍ଭ ହୋଇଯାଏ। ଆମେ ତ ମନଦୁଃଖରେ ୟୋସେମିଟିର ଯୋଜନା ପ୍ରାୟ ବନ୍ଦ କରିଦେବା ଉପରେ ଥିଲୁ। ସେତିକିବେଳେ ତୋ ଭାଇନାଙ୍କର ଜଣେ ଆମେରିକାନ୍ ବନ୍ଧୁ 'ଏଲ୍ ପୋର୍ଟାଲ୍'ର ସେଡାର୍ ଲଜ୍ କଥା କହିଲେ। ଛୋଟ ସହର 'ଏଲ୍ ପୋର୍ଟାଲ' ୟୋସେମିଟି ଭିଲେଜ୍‌ଠାରୁ ମାତ୍ର ଆଠମାଇଲ ଦୂର। ଏଲ୍ ପୋର୍ଟାଲ୍‌ର ସେଡାର ଲଜ୍ ସୁନ୍ଦର ହୋଟେଲଟିଏ। ହୋଟେଲ୍‌ର ଅତ୍ୟାଧୁନିକ କୋଠରୀମାନଙ୍କରେ ସବୁ ରକମର ସୁବିଧା ରହିଛି। ଏଣେ ହୋଟେଲଟିର ତିନିପଟେ ଘେରି ହୋଇ ରହିଛି ପାହାଡ। ଆଉ ସାମ୍ନାରେ ଛୋଟ ପାହାଡିଆ ନଦୀଟିଏ ଶାନ୍ତ ଭାବରେ ବହି ଯାଉଛି। ରହିବା ସ୍ଥାନଟି ସୁନ୍ଦର, ୟୋସେମିଟି ଭିଲେଜ୍ ଅତି ନିକଟରେ। ଆମର ଅରାଜି ହେବାର କୌଣସି କାରଣ ନ ଥିଲା।

ତୁ ଯଦି କ୍ୟାଲିଫୋର୍ଣିଆର ମାନଚିତ୍ର ଖୋଲିବୁ, ତେବେ ଦେଖି ପାରିବୁ ଯେ ରାଜ୍ୟର ପୂର୍ବପଟେ ଉତ୍ତରରୁ ଦକ୍ଷିଣ ଯାଏ ଲମ୍ବି ଯାଇଛି ସିଏରା ନେଭାଡାର ପର୍ବତଶ୍ରେଣୀ। ଏହି ପର୍ବତଶ୍ରେଣୀର ପ୍ରାୟ ମଝିରେ ରହିଛି ୟୋସେମିଟି ନ୍ୟାସ୍‌ନାଲ ପାର୍କ ଓ ୟୋସେମିଟି ଉପତ୍ୟକା।

ୟୋସେମିଟି ଉପତ୍ୟକାର ଚାରିପଟେ ଘେରି ହୋଇ ରହିଛି ଗ୍ରାନାଇଟ୍ ପଥରର ପାହାଡମାନ। କିନ୍ତୁ ଏ ଅଞ୍ଚଳଟି ସବୁଦିନେ ଏଇଭଳି ନ ଥିଲା। ବିଭିନ୍ନ ଗବେଷଣାରୁ ଜଣା ପଡିଛି ଯେ ଏକଦା ୟୋସେମିଟି ଅଞ୍ଚଳରେ ରହିଥିଲା ଅଗଭୀର ପ୍ରାଚୀନ ସମୁଦ୍ର। କ୍ରମଶଃ ସମୁଦ୍ରଟି ପୋତି ହୋଇ ପଡିଲା ଏବଂ ଉପରକୁ ଉଠି ଆସିଲା ସମୁଦ୍ର ତଳେ ରହିଥିବା ସ୍ଥଳଭାଗ। କୋଟି କୋଟି ବର୍ଷ ବିତିଗଲା ତା'ପରେ। କ୍ରମେ ସ୍ଥଳଭାଗଟିରେ ମଧ୍ୟ ବହୁ ପରିବର୍ତ୍ତନ ଘଟିଲା ଏବଂ ସୃଷ୍ଟି ହେଲା ପାହାଡ, ଜଙ୍ଗଲ ଓ ଉପତ୍ୟକା।

ୟୋସେମିଟି ଅଞ୍ଚଳର ଗୋଟିଏ ବଡ ଆକର୍ଷଣ ହେଉଛି ବିଶାଳ ଗ୍ରାନାଇଟ୍ ପାହାଡମାନ। ସେସବୁକୁ ଦେଖିଲେ ଜଣେ ଅବାକ୍ ହୋଇଯିବ। ଘର ତିଆରି ବେଳେ ଯେମିତି ପଥରଗୁଡିକୁ ଧାଡି ଧାଡି କରି ବସା ହୁଏ, ଠିକ୍ ସେଇମିତି କିଏ ଯେମିତି ଗ୍ରାନାଇଟ୍ ପଥରମାନ ଗୋଟିଏ ପରେ ଗୋଟିଏ ଯୋଡି ପାହାଡଟିଏ ତିଆରି କରିଛି। ଏମିତି ସମାନ କରି ପଥର କାଟିଲା କିଏ ? ପରେ ଏଠିକାର 'ଭିଜିଟର୍ ସେଣ୍ଟର୍'ରୁ ଆଣିଥିବା ବହିଟି ପଢିବା ପରେ ଏହାର କାରଣ ଜାଣି ପାରିଲି।

ବରଫ ଯୁଗରେ ପୃଥିବୀର ଅନ୍ୟାନ୍ୟ ଅଂଶ ପରି ୟୋସେମିଟି ଅଞ୍ଚଳଟି ବଡ ବଡ ବରଫ ଖଣ୍ଡରେ ଘୋଡେଇ ହୋଇ ପଡିଥିଲା। ବରଫର ଚାପରେ ଗ୍ରାନାଇଟ୍ ପାହାଡର ଦୁର୍ବଳ ଅଂଶଗୁଡିକ ପରସ୍ତ ପରସ୍ତ ହୋଇ ଭାଙ୍ଗିଗଲା। ଆଉ ବରଫ ତରଳି ଯିବା ପରେ ମନେ ହେଲା କିଏ ଯେମିତି ଧାଡି ଧାଡି କରି ଗ୍ରାନାଇଟ୍ ପଥରମାନ ବସେଇଛି। ବର୍ଷ ବର୍ଷ ଧରି ହାତୁଡିରେ ପିଟି, ବାଲି କାଗଜରେ ଘଷି କିଏ ଯେମିତି ପାହାଡଗୁଡିକୁ ମସୃଣ କରିଛି।

ମିତୁ, ଈଶ୍ୱରଙ୍କ ସୃଷ୍ଟି ବାସ୍ତବରେ ଅତୁଳନୀୟ। ତାଙ୍କଠାରୁ ବଡ କଳାକାର ଆଉ କ'ଣ କିଏ ଜଗତରେ ଅଛି ? ବୋଧହୁଏ ସେଇଥିପାଇଁ ୟୋସେମିଟି ଦେଖିବା ପରେ ମାର୍କ ଟ୍ୱେନ୍ ଲେଖିଥିଲେ, "ୟୋସେମିଟିର ବାତାବରଣ ଅତି ଶୁଦ୍ଧ। କାହିଁକି ବା ହେବ ନାହିଁ ? ଏଇଟା ଯେ ଦେବତାମାନଙ୍କର ରହିବା ସ୍ଥାନ।"

ବହୁତ ଦିନ ଧରି ଏହି ରମଣୀୟ ସ୍ଥାନଟିର ଅବସ୍ଥିତି ସମ୍ପର୍କରେ ରେଡ୍ଇଣ୍ଡିଆନ୍‌ମାନଙ୍କ ବ୍ୟତୀତ ଆଉ କେହି ଜାଣି ନ ଥିଲେ। କିନ୍ତୁ ସିଏରା ନେଭାଡାର ପର୍ବତଶ୍ରେଣୀ ଭିତରେ ଗୋଟିଏ ଅତି ସୁନ୍ଦର ଉପତ୍ୟକା ରହିଥିବାର

ଗୁଜବ ଧଳା ଲୋକମାନଙ୍କର କାନରେ ପଡିଥିଲା । ଶେଷରେ ଏହି ଗୁଜବର ସତ୍ୟାସତ୍ୟ ପରଖ କରିବା ପାଇଁ ଓ ସେଠାରେ ରହୁଥିବା ରେଡ୍ ଇଣ୍ଡିଆନ୍‌ମାନଙ୍କୁ ନିଜ ଅକ୍ତିଆରରେ ଆଣିବା ପାଇଁ ଜେମ୍‌ସ ସାଭେଜ୍‌ଙ୍କ ନେତୃତ୍ୱରେ ପଚାଶ, ଷାଠିଏ ଜଣ ସୈନ୍ୟ ୧୮୫୧ ମସିହାରେ ଯୋସେମିଟି ଉପତ୍ୟକାରେ ପହଞ୍ଚିଲେ । ମିଳିଥିବା ବିଭିନ୍ନ ପ୍ରମାଣରୁ ଜଣାପଡେ ଯେ ଏମାନେ ହିଁ ପ୍ରଥମ ଧଳାଲୋକ ଯେଉଁମାନେ କି ପାହାଡ ଟପି ଏହି ଉପତ୍ୟକାରେ ପହଞ୍ଚି ପାରିଥିଲେ । ବରଫ ପାହାଡ ଘେରା ଉପତ୍ୟକାଟି ଯେତେବେଳେ ଜେମ୍‌ସ ସାଭେଜ୍‌ଙ୍କ ଦୃଷ୍ଟିରେ ପଡିଲା, ସେତେବେଳେ ସେ ସ୍ତବ୍ଧ ହୋଇ ରହି ଯାଇଥିଲେ । କ୍ଷଣକ ପାଇଁ ସେ ଭୁଲି ଯାଇଥିଲେ ଯେ ସେ ରେଡ୍ ଇଣ୍ଡିଆନ୍‌ମାନଙ୍କୁ ଅକ୍ତିଆର କରିବା ଉଦ୍ଦେଶ୍ୟରେ ଆସିଛନ୍ତି ।

ଯୁଦ୍ଧ ହେଲା । ଯୁଦ୍ଧରେ ସେମାନେ ବିଜୟୀ ମଧ୍ୟ ହେଲେ । ବିଜୟ ଲାଭ କରି ସେନାବାହିନୀ ଫେରି ଆସିଥିଲେ । କିନ୍ତୁ ଜେମ୍‌ସ ସାଭେଜ୍ ଆଉ ଫେରି ନ ଥିଲେ । ସ୍ଥାନଟି ତାଙ୍କୁ ଏତେ ବେଶୀ ଭଲ ଲାଗି ଯାଇଥିଲା ଯେ ସେ ସେଇଠି ଘର କରି ସବୁଦିନ ପାଇଁ ରହି ଯାଇଥିଲେ । ସେ ରେଡ୍‌ଇଣ୍ଡିଆନ୍‌ମାନଙ୍କ ଭାଷା ଶିଖି ନେଇଥିଲେ ଏବଂ ସେମାନଙ୍କ ସହିତ ସମ୍ପୂର୍ଣ୍ଣ ରୂପେ ସାମିଲ୍ ହେବା ପାଇଁ ରେଡ୍ ଇଣ୍ଡିଆନ୍ ଝିଅଟିଏକୁ ମଧ୍ୟ ବିବାହ କରିଥିଲେ ।

ସାଭେଜ୍‌ଙ୍କ ଦଳରେ ସୈନ୍ୟବାହିନୀଙ୍କ ବ୍ୟତୀତ ଥିଲେ ଜଣେ ଡାକ୍ତର । ଡାକ୍ତର ବୁନେଲ୍ । ଡାକ୍ତର ବୁନେଲ୍ ମନେ କରିଥିଲେ ଯେ ସେଠାରେ ରହୁଥିବା ରେଡ୍ ଇଣ୍ଡିଆନ୍ ଦଳଙ୍କ ନାମ ହେଉଛି 'ଯୋ-ସେ-ମି-ଟି' । ତେଣୁ ସେ ଉପତ୍ୟକାଟିର ନାମ ରଖିଥିଲେ ଯୋସେମିଟି । ପରେ ଜଣା ପଡିଥିଲା ଯେ ରେଡ୍ ଇଣ୍ଡିଆନ୍ ଦଳଟି ଉପତ୍ୟକାର ନାମ ରଖିଥିଲେ 'ଆହ୍-ୱାହ୍-ନୀ' ଏବଂ ନିଜକୁ କହୁଥିଲେ 'ଆହ୍-ୱାହ୍-ନେ-ଚୀ' । ଆଉ ସେମାନଙ୍କ ଭାଷାରେ ଯୋସେମିଟିର ଅର୍ଥ ହେଉଛି ଭାଲୁ (Grizzly bear) । ଏହା ଜଣା ପଡିବା ପରେ ମଧ୍ୟ ଡାକ୍ତର ବୁନେଲ୍ ଦେଇଥିବା 'ଯୋସେମିଟି' ନାମଟି ରହିଗଲା ।

ଯୋସେମିଟି ଉପତ୍ୟକା ଆବିଷ୍କାର କରିବା ପରେ ଡାକ୍ତର ବୁନେଲ୍ ଏହି ନୂତନ ସ୍ଥାନ ବିଷୟରେ ଲେଖାଟିଏ ଲେଖିଥିଲେ । ଏହାକୁ ସେ ସାନଫ୍ରାନ୍‌ସିସ୍‌କୋର ଗୋଟିଏ ପ୍ରଧାନ ସମ୍ବାଦପତ୍ରକୁ ମଧ୍ୟ ପଠେଇଥିଲେ । ସେଥିରେ ସେ ଲେଖିଥିଲେ

ଯେ ଉପତ୍ୟକାକୁ ଘେରି ରହିଥିବା ପାହାଡର ଉଚ୍ଚତା ୧୫୦୦ ଫୁଟ୍‌ରୁ କମ୍ ହେବ ନାହିଁ। (କିନ୍ତୁ ପ୍ରକୃତରେ ଏଠାରେ ରହିଥିବା ପାହାଡମାନଙ୍କର ଉଚ୍ଚତା ପ୍ରାୟ ତା'ର ଦୁଇଗୁଣ)। ବୁନେଲ୍‌ଙ୍କ ଲେଖା ପଢି ସମ୍ବାଦପତ୍ରର ସମ୍ପାଦକ ଓ ଅନ୍ୟାନ୍ୟ କର୍ମକର୍ତ୍ତା ହସି ଥଟ୍ଟା କରିଥିଲେ। କ୍ୟାଲିଫୋର୍ଣ୍ଣିଆରେ ଯେ ଏଭଳି ଉଚ୍ଚ ପାହାଡ ରହିଛି, ସେକଥା ସେମାନେ ଆଦୌ ବିଶ୍ୱାସ କରି ନ ଥିଲେ। ଦୁଃଖ ଓ କ୍ଷୋଭରେ ଡାକ୍ତର ବୁନେଲ୍ ନିଜ ଲେଖାକୁ ନଷ୍ଟ କରି ଦେଇଥିଲେ। ଫଳରେ ଏଇଭଳି ଏକ ଅପରୂପ ଅବସ୍ଥିତିର ସମ୍ବାଦ କିଛି ବର୍ଷ ପାଇଁ ମାନବ ସମାଜ ନିକଟରୁ ଉହ୍ୟ ରହିଗଲା। ପରେ ୧୮୫୪ ମସିହାରେ ଆଉ ଗୋଟିଏ ଦଳ ଯୋସେମିଟି ଆସିଥିଲା। ଏହି ଦଳର ନେତୃତ୍ୱ ନେଇଥିଲେ ଲେଫ୍‌ଟନାଣ୍ଟ ମୁର୍। ଲେଫ୍‌ଟନାଣ୍ଟ ମୁର୍ ଯୋସେମିଟିରୁ ଫେରିବା ପରେ ନିଜର ଅଭିଜ୍ଞତା ଉପରେ ଲେଖାଟିଏ ଲେଖିଥିଲେ। ଏଇଟି ପ୍ରକାଶ ପାଇବା ପରେ କ୍ୟାଲିଫୋର୍ଣ୍ଣିଆରେ ଚହଳ ପଡି ଯାଇଥିଲା। ଯାହା ଜଣାପଡେ, ଏଇଟି ହେଉଛି ଯୋସେମିଟି ବିଷୟରେ ପ୍ରଥମ ପ୍ରକାଶିତ ପ୍ରବନ୍ଧ।

ମୁର୍‌ଙ୍କ ଲେଖା ପଢି ବହୁ ପର୍ଯ୍ୟଟକ ଯୋସେମିଟି ଯିବା ପାଇଁ ଚାହିଁଥିଲେ। କିନ୍ତୁ ସେତେବେଳେ ରେଡ୍ ଇଣ୍ଡିଆନ୍‌ମାନଙ୍କର ଆକ୍ରମଣର ଭୟ ରହିଥିଲା। ତା'ପରେ ୧୮୬୧ ମସିହାରେ ଆମେରିକାର ଗୃହଯୁଦ୍ଧ ଆରମ୍ଭ ହୋଇଗଲା। ତୁ ହୁଏତ ଭାବୁଥିବୁ ଭୟଙ୍କର ଗୃହଯୁଦ୍ଧର ବାତାବରଣରେ ଯୋସେମିଟି ବୁଲି ଯାଇଥିବେ କେତେଜଣ ? କିନ୍ତୁ ଏ କଥା ଠିକ୍ ନୁହେଁ। ସେହି ସମୟରେ ବେଶ୍ କିଛିଜଣ ପର୍ଯ୍ୟଟକ ପ୍ରଥମ ଥର ପାଇଁ ଯୋସେମିଟି ଯାଇଥିବାର ସୂଚନା ମିଳେ।

୧୮୬୮ ମସିହାରେ ଯୋସେମିଟି ଅଞ୍ଚଳରେ ପାଦ ଦେଇଥିଲେ ଜଣେ ଯୁବକ ଜନ୍ ମୁର୍। ପ୍ରଥମ ଦେଖାରେ ସ୍ଥାନଟି ତାଙ୍କୁ ଏତେ ବେଶୀ ଭଲ ଲାଗିଯାଇଥିଲା ଯେ ମୃତ୍ୟୁ ପର୍ଯ୍ୟନ୍ତ ସେଇଠି ରହି ଯାଇଥିଲେ ସେ। ମେଜର୍ ଜନ୍ ପାଓ୍ୱେଲ୍‌ଙ୍କୁ ବାଦ୍ ଦେଲେ ଯେମିତି ଗ୍ରାଣ୍ଡ କ୍ୟାନିଅନ୍‌ର କାହାଣୀ ଅସଂପୂର୍ଣ୍ଣ ରହିଯାଏ, ଠିକ୍ ସେମିତି ଜନ୍ ମୁର୍‌ଙ୍କ ବିଷୟ ଉଲ୍ଲେଖ ନ କରିଲେ ଯୋସେମିଟିର ଇତିହାସ ସଂପୂର୍ଣ୍ଣ ହୁଏ ନାହିଁ। ନିଜର ବେଶ ପୋଷାକ, ଖାଦ୍ୟପେୟ ପ୍ରତି କୌଣସି ଦୃଷ୍ଟି ନ ଦେଇ, ହାତରେ ବାଡିଟିଏ ଧରି ଜନ୍ ମୁର୍ ଯୋସେମିଟିର ଅନ୍ଧିସନ୍ଧି ବୁଲି ଦେଖିଥିଲେ। ପାହାଡର ପଥରମାନଙ୍କ ସହିତ ଏକ ସ୍ୱତନ୍ତ୍ର ସଂପର୍କ

ସ୍ଥାପନ କରିଥିଲେ ସେ। ଜଳପ୍ରପାତ ଓ ହ୍ରଦର ସ୍ୱଚ୍ଛପାଣି ଦେଖି ଆତ୍ମହରା ହୋଇଥିଲେ। ଜଙ୍ଗଲର ପ୍ରତିଟି ଗଛକୁ ନିଜର ଆତ୍ମୀୟ ମନେ କରିଥିଲେ। କ୍ରମଶଃ ମୁର୍ ଉପଲବ୍ଧି କରିଥିଲେ ଯେ ୟୋସେମିଟିର ପ୍ରାକୃତିକ ସୌନ୍ଦର୍ଯ୍ୟ ଦିନକୁ ଦିନ କମିଯାଉଛି। କାଠ ପାଇଁ ବଡ ବଡ ଗଛ କାଟି ନେଇ ଲୋକମାନେ ଜଙ୍ଗଲକୁ ନଷ୍ଟ କରି ଦେଉଛନ୍ତି। କେବଳ ସେତିକି ନୁହଁ, ୟୋସେମିଟି ଆଖପାଖରେ ରହୁଥିବା ଲୋକମାନେ ଉପତ୍ୟକାରେ ମେଣ୍ଢା ଓ ଗୋରୁଗାଈ ଚରାଇ ସ୍ଥାନଟିକୁ ଧ୍ୱସ୍ତ ବିଧ୍ୱସ୍ତ କରି ଦେଉଛନ୍ତି। ଏହି ''ଶିଙ୍ଗବିଶିଷ୍ଟ ପଙ୍ଗପାଳ''ଙ୍କ ପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ଜନ୍ ମୁର୍ ବହୁତ ଚେଷ୍ଟା କରିଥିଲେ। କିନ୍ତୁ ତାଙ୍କର ସବୁ ପରିଶ୍ରମ ବିଫଳ ହୋଇଥିଲା। ଶେଷରେ 'କଲମ'ର ଶରଣାଗତ ହେଲେ ସେ। ନା, ଜନ୍ ମୁର୍ ୟୋସେମିଟିକୁ ନେଇ ଲେଖାଲେଖି ଆରମ୍ଭ କଲେ ନାହିଁ। ସେ ସାହାଯ୍ୟ ନେଲେ ପ୍ରସିଦ୍ଧ 'ସେଞ୍ଚୁରୀ' ପତ୍ରିକାର ସଂପାଦକ ରବର୍ଟ ଅଣ୍ଡରଉଡ୍ ଜନ୍ସନ୍‌ଙ୍କର।

ଜନ୍ ମୁର୍ ସଂପାଦକ ଜନ୍ସନ୍‌ଙ୍କୁ ସାଙ୍ଗରେ ନେଇ ୟୋସେମିଟିର ବିଭିନ୍ନ ଅଞ୍ଚଳ ବୁଲି ଦେଖାଇଥିଲେ। ଗ୍ରାନାଇଟ୍ ପାହାଡଠାରୁ ଆରମ୍ଭ କରି ବିଭିନ୍ନ ହ୍ରଦ ଓ ଜଳପ୍ରପାତ ନିକଟକୁ ସେ ଜନ୍ସନ୍‌ଙ୍କୁ ନେଇଯାଇଥିଲେ। କାଠ କାଟି, ମେଣ୍ଢା ଚରାଇ ଲୋକମାନେ ୟୋସେମିଟି ଅଞ୍ଚଳକୁ କିଭଳି ନଷ୍ଟ କରି ଦେଉଛନ୍ତି, ତାହା ଜନ୍ସନ୍ ସ୍ୱଚକ୍ଷୁରେ ଦେଖିଥିଲେ। ଜଳପ୍ରପାତର କ୍ଷୀଣ ଧାରାକୁ ଦେଖାଇ ମୁର୍ କହିଥିଲେ ଯେ ଏଥିପାଇଁ ଦାୟୀ ମେଣ୍ଢାମାନେ। ସେମାନେ ଜଳପ୍ରପାତ ନିକଟରେ ରହିଥିବା ବୁଦାଗୁଡିକୁ ନଷ୍ଟ କରି ଦେଉଛନ୍ତି। ଫଳରେ ଶୀତଦିନେ ପଡୁଥିବା ବରଫ ବେଶୀଦିନ ଜମି ରହି ପାରୁନାହିଁ।

ଜନ୍ସନ୍ ଜନ୍ ମୁର୍‌ଙ୍କର କ୍ଷୋଭର କାରଣ ବୁଝିପାରିଥିଲେ। ୟୋସେମିଟିରୁ ଫେରିବା ପରେ ସେ କ୍ଷୁବ୍ଧ ହୋଇ ସରକାରଙ୍କର ୟୋସେମିଟି ସଂପର୍କରେ ଉଦାସୀନତାର ପ୍ରବଳ ସମାଲୋଚନା କରିଥିଲେ। ଜନ୍ସନ୍‌ଙ୍କର ଅଗ୍ନିବାହୀ ଲେଖା କଂଗ୍ରେସରେ ଚହଳ ପକେଇ ଦେଇଥିଲା। ଶେଷରେ ଅକ୍ଟୋବର ୧, ୧୮୯୦ରେ କଂଗ୍ରେସ ୟୋସେମିଟି ଆଇନ୍ ପାଶ୍ କଲା। ଏହି ଆଇନ୍ ଅନୁସାରେ ୟୋସେମିଟି ଅଞ୍ଚଳରେ କାଠ କାଟିବା ବା ମେଣ୍ଢା, ଗୋରୁ ଗାଈ ଚରେଇବା ନିଷିଦ୍ଧ ହୋଇଗଲା ଏବଂ ଅଞ୍ଚଳଟିକୁ 'ନ୍ୟାସନାଲ୍ ପାର୍କ' ବୋଲି ଘୋଷଣା କରାଗଲା। ଏତେବେଳେ

ଜନ୍ ମୁର୍‌ଙ୍କର ସ୍ୱପ୍ନ ସାକାର ହେଲା ।

କିନ୍ତୁ ମିତୁ, ମଜାର କଥା କ'ଣ ଜାଣିଛୁ ? ଖରାଦିନରେ ଜଳପ୍ରପାତମାନଙ୍କର ଜଳଧାରା କମିଯିବା ପାଇଁ ମେଣ୍ଢାମାନେ ଦାୟୀ ନୁହନ୍ତି, ଏଥିପାଇଁ ଦାୟୀ ୟୋସେମିଟିର ମାଟି । ଜଳପ୍ରପାତମାନଙ୍କର ସୃଷ୍ଟି କାଳରୁ ଖରାଦିନରେ ଜଳଧାରା କ୍ଷୀଣ ହୋଇଯାଉଥିଲା । ଏବେ ମଧ୍ୟ ହେଉଛି । ଭୌଗୋଳିକ ପରୀକ୍ଷାରୁ ଜଣାପଡିଛି ଯେ ଏହି ଅଞ୍ଚଳର ମାଟି ଅଗଭୀର ଓ ପଥୁରିଆ । ସେଥିପାଇଁ ଶୀତଦିନର ବରଫକୁ ନିଜ ଉପରେ ସାଇତି ବେଶୀ ଦିନ ରଖିପାରେ ନାହିଁ । ଖରାଦିନ ଆରମ୍ଭରେ ମାଟି ଶୁଖି ଆସେ ଓ ଜଳଧାରା କ୍ଷୀଣ ହୋଇଯାଏ ।

ମେଣ୍ଢାମାନଙ୍କ ଯୋଗୁଁ ଜଳପ୍ରପାତର ଧାରା କମିଯାଉଥିବାର ଯୁକ୍ତି ସଂପୂର୍ଣ୍ଣ ରୂପେ ସତ୍ୟ ନ ହୋଇଥିଲେ ମଧ୍ୟ ଏହା କଂଗ୍ରେସରେ ଚହଳ ସୃଷ୍ଟି କରିବାରେ ସକ୍ଷମ ହୋଇଥିଲା ଏବଂ ୟୋସେମିଟି ଆଇନ୍ ପାଶ୍ କରେଇ ପାରିଥିଲା । ନ ହେଲେ ହୁଏତ ବର୍ତ୍ତମାନ ୟୋସେମିଟିର ସୌନ୍ଦର୍ଯ୍ୟ କେବଳ ଇତିହାସରେ ରହିଯାଇଥାଆନ୍ତା । ଉପତ୍ୟକାଟି ମରୁଭୂମିରେ ପରିଣତ ହୋଇ ସାରିଥାଆନ୍ତା । ଜଙ୍ଗଲରେ ରହିଥିବା 'ସିକୋଆ' ବୃକ୍ଷମାନଙ୍କର ବିଶାଳତା ସଂପର୍କରେ ପଢି ମନ ଭିତରେ ଅବିଶ୍ୱାସ ଜାଗିଥାଆନ୍ତା ।

ଏଇ 'ସିକୋଆ' ହେଉଛି ଏକ ଅଦ୍ଭୁତ ଜାତିର ବୃକ୍ଷ । ବୋଧହୁଏ ଏହା ପୃଥିବୀର ବୃହତ୍ତମ ବୃକ୍ଷ । ଗୋଟିଏ ସାଧାରଣ ସିକୋଆର ଓସାର ୧୪ ଫୁଟ୍‌ରୁ ଅଧିକ । ଆଉ ଗୋଟିଏ ଛୋଟ ସିକୋଆର ଉଚ୍ଚତା ପ୍ରାୟ ୧୦୦ ଫୁଟ ହୋଇଥାଏ । ଯେଉଁ ବିଶାଳ ସିକୋଆମାନ ଏଇଠି ରହିଛନ୍ତି, ସେଗୁଡିକର ଉଚ୍ଚତା ୨୦୦ ଫୁଟରୁ ଅଧିକ ।

ବାଇଶ ତାରିଖ ଅପରାହ୍ନରେ ୟୋସେମିଟିରେ ପହଞ୍ଚିବାର ଅଳ୍ପ ସମୟ ପରେ ହିଁ ଆମେ ସିକୋଆ ଜଙ୍ଗଲ ଦେଖିବାକୁ ଯାଇଥିଲୁ । ମୁଁ ବହୁତ ଦିନ ତଳେ କୌଣସି ଏକ ବହିରେ ଏଇଭଳି ଗୋଟିଏ ସିକୋଆର ଛବି ଦେଖିଥିଲି । ଗଛଟି ଏତେ ବଡ ଯେ ତା'ର ଗଣ୍ଡି ଭିତରେ ସୁଡଙ୍ଗଟିଏ କରାଯାଇଥିଲା । କିନ୍ତୁ ମିତୁ, ଏ ଗଛଟି ଆଉ ନାହିଁ । ଏଠାକୁ ଆସିବା ପରେ ମୁଁ ଜାଣିଲି ଯେ ଏହା ଭିତରେ ହୋଇଥିବା ଗୋଟିଏ ଝଡରେ ଗଛଟି ଭାଙ୍ଗି ଯାଇଥିଲା । ସୁଡଙ୍ଗ ଖୋଳିବା ଯୋଗୁଁ ଗଛଟି ଦୁର୍ବଳ ହୋଇପଡିଥିଲା । ତେଣୁ ଝଡର ଦୌରାତ୍ମ୍ୟ

ସହିପାରିଲା ନାହିଁ। ସୁଡଙ୍ଗ କରା ଯାଇଥିବା ସିକୋଆ ସିନା ଦେଖି ପାରିଲି ନାହିଁ, କିନ୍ତୁ ଅନ୍ୟଗୁଡ଼ିକ କ'ଣ କୌଣସି ଗୁଣରେ କମ୍! ଉପରକୁ ଚାହିଁଲେ ଆଖି ପାଉନାହିଁ। ଏଭଳି ବିଶାଳ ବୃକ୍ଷମାନ ମୁଁ ଆଗରୁ କେବେହେଲେ କେଉଁଠି ଦେଖି ନ ଥିଲି। ବେଶୀ କଥା କହୁଥିବା ମୋ ଝିଅ ଗିଟି ମଧ୍ୟ ସେଦିନ ଚୁପ୍ ହୋଇ ଯାଇଥିଲା। କେତେ ସମୟ 'ହାଁ' ହୋଇ ଗଛଗୁଡ଼ିକୁ ଦେଖିବା ପରେ ଫିସ୍ ଫିସ୍ କରି ପଚାରିଥିଲା "ଏଗୁଡ଼ିକ କ'ଣ ସତ ଗଛ?" ପରୀ କାହାଣୀରେ ରାଜପୁତ୍ର, ରାଜକନ୍ୟାଙ୍କୁ ଧରିବା ପାଇଁ ରାକ୍ଷସମାନେ ଗଛ ପାଲଟି ଯାଉଥିବା କଥା ସେ ପଢ଼ିଥିଲା। ବୋଧହୁଏ ସେଇଭଳି କିଛି ତା' ମନକୁ ଆସିଥିଲା।

ସେଦିନ ସିକୋଆ ଜଙ୍ଗଲରେ କିଛି ସମୟ କଟାଇ ଆମେ ଫେରି ଆସିଥିଲୁ। ଜଙ୍ଗଲ ଜାଗା ତ, ହଠାତ୍ ଅନ୍ଧାର ମାଡ଼ି ଆସେ। କିଟିମିଟିଆ ଅନ୍ଧାରରେ ସରୁ ପାହାଡ଼ିଆ ରାସ୍ତାରେ ଗାଡ଼ି ଚଲେଇ ଆସିବାର ଦୁଃସାହସ ଆମର ନ ଥିଲା। ହୋଟେଲକୁ ଫେରିବା ବାଟରେ ୟୋସେମିଟି ଭିଲେଜ୍‌ର ଦୋକାନରୁ ବିସ୍କୁଟ୍ ପ୍ୟାକେଟ୍ ଦୁଇଟି କିଣିବା ପାଇଁ ଅଟକିଲୁ।

କିନ୍ତୁ ସେତିକିବେଳେ ମନେ ରହିବା ଭଳି ଘଟଣାଟିଏ ଘଟିଗଲା। ବିସ୍କୁଟ୍ ପ୍ୟାକେଟ୍‌ର ପଇସା ଦେଉ ଦେଉ ଆମର ହଠାତ୍ ଦେଖା ହୋଇଗଲା ସାଣ୍ଟାକ୍ଲାରାରୁ ଆସିଥିବା ତିନିଜଣ ଯୁବକଙ୍କ ସହିତ- ସୁନୀଲ, ପ୍ରସାଦ୍ ଓ ଦୀପ୍। ନୂଆ ଜାଗାରେ ଚିହ୍ନା ମୁହଁ ଦେଖି ଆମେ ଖୁବ୍ ଖୁସି ହୋଇଗଲୁ। ସେମାନଙ୍କ ସହିତ କଥାବାର୍ତ୍ତା କରି ଜାଣିଲୁ ଯେ ସେମାନେ କ୍ୟାମ୍ପିଙ୍ଗ କରିବା ପାଇଁ ଆସିଛନ୍ତି। ରାତିରେ ରୋଷେଇ ପାଇଁ ଜିନିଷପତ୍ର ସଜାଡ଼ି ରଖୁ ରଖୁ ଆବିଷ୍କାର କଲେ ଯେ ଲୁଣ ଭୁଲି ଆସିଛନ୍ତି। ସେଇଥିପାଇଁ ଲୁଣ କିଣିବାକୁ ଆସିଥିଲେ ସେମାନେ। ହଠାତ୍ ପ୍ରସାଦ କହିଲା, "ଆପଣମାନେ ଆମ ସାଙ୍ଗରେ ଚାଲନ୍ତୁ। ରାତିରେ ସେଇଠି ଖାଇବେ।" ଆମେ 'ହଁ' କହିବା ଆଗରୁ ପିଲାମାନେ ତ ଖୁସିରେ ଡେଇଁବା ଆରମ୍ଭ କରିଦେଲେ। ଆଉ ହୋଟେଲକୁ ନ ଫେରି କ୍ୟାମ୍ପ ଗ୍ରାଉଣ୍ଡକୁ ଚାଲିଲୁ।

ୟୋସେମିଟି ଉପତ୍ୟକାର ପ୍ରାୟ ମଝିରେ ବହି ଯାଇଛି ମର୍ସେଡ୍ ନଦୀ। ଏହି ନଦୀ କୂଳରେ କେତୋଟି ସୁନ୍ଦର ସ୍ଥାନରେ ପାର୍କ କର୍ମକର୍ତ୍ତାମାନେ 'କ୍ୟାମ୍ପ ଗ୍ରାଉଣ୍ଡ'ମାନ ତିଆରି କରିଛନ୍ତି। ୧୯୨୪ରେ କ୍ୟାମ୍ପିଙ୍ଗ ପାଇଁ ପ୍ରଥମ ଅନୁମତି ଦିଆଯାଇଥିଲା। କିନ୍ତୁ ସେତେବେଳେ ଏଇଭଳି ଖୋଲାରେ ରାତି କଟେଇବା

ପାଇଁ ସାହସ କରୁଥିଲେ ମାତ୍ର ଅଳ୍ପ କେତେଜଣ । ଅଥଚ ଏବେ ୟୋସେମିଟିରେ କ୍ୟାମ୍ପିଙ୍ଗ ଏତେ ବେଶୀ ଜନପ୍ରିୟ ଯେ ବହୁ ପୂର୍ବରୁ ରିଜର୍ଭେସନ ନ କଲେ କ୍ୟାମ୍ପ ଗ୍ରାଉଣ୍ଡରେ ସ୍ଥାନ ମିଳେ ନାହିଁ । କାରଣ କ'ଣ ଜାଣିଛୁ ? ପାର୍କ କର୍ମକର୍ତ୍ତାମାନେ କ୍ୟାମ୍ପ ଗ୍ରାଉଣ୍ଡରେ ସବୁ କିଛିର ସୁନ୍ଦର ଭାବରେ ଆୟୋଜନ କରି ରଖିଛନ୍ତି । ଗାଡି ରଖିବା ପାଇଁ ସ୍ଥାନ ଅଛି । ଗାଧୁଆ ଘରମାନ ରହିଛି । ରାତିରେ ସୁରକ୍ଷା ପାଇଁ ପୋଲିସ୍ ବ୍ୟବସ୍ଥା ମଧ୍ୟ ଅଛି । ଏହାଛଡା ପ୍ରତ୍ୟେକ ଦଳ ପାଇଁ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନ ରହିଛି । କେଉଁଠି ତମ୍ବୁ ପକାଇବେ, କେଉଁଠି ନିଆଁ ଜଳେଇବେ, ଆଉ କେଉଁଠି ଚୁଲି ଜଳିବେ- ସେସବୁ ପୂର୍ବ ନିର୍ଦ୍ଦିଷ୍ଟ ।

ତୁ ହୁଏତ ଭାବୁଥିବୁ, ଏତେ ସବୁର ବ୍ୟବସ୍ଥା ପରେ ମଧ୍ୟ ତମ୍ବୁ, ପେଟ୍ରୋମାକ୍ସ, ଚୁଲୀ, ସ୍ଲିପିଙ୍ଗ ବ୍ୟାଗ୍ ଇତ୍ୟାଦି କିଣିବା ଗୋଟିଏ ବିରାଟ ଖର୍ଚ୍ଚ । ନା, ଆଦୌ ନୁହଁ । କ୍ୟାମ୍ପିଙ୍ଗ ପାଇଁ ଯାହା ଯାହା ଦରକାର, ସେସବୁ କେତେକ ବିଶେଷ ଦୋକାନରୁ ଭଡାରେ ମିଳେ । କେବଳ ରୋଷେଇ ସାମଗ୍ରୀ, କମ୍ବଳ ଏଇଭଳି ନିଜର କେତେକ ଜିନିଷ ନେଇ ଯିବାକୁ ହୁଏ । ତେବେ କ୍ୟାମ୍ପିଙ୍ଗରେ ଅସୁବିଧା ରହିଛି ଗୋଟିଏ । ତାହା ହେଲା ଭାଲୁ । ରାତିରେ ଖାଇବା ଜିନିଷର ବାସ୍ନାରେ ପାହାଡରୁ ଭାଲୁମାନେ ଓହ୍ଲେଇ ଆସନ୍ତି ଏବଂ ଖାଆନ୍ତି ଯେତିକି, ଜିନିଷପତ୍ର ଭାଙ୍ଗି ଅନର୍ଥ କରନ୍ତି ସେତିକି । ସେଥିପାଇଁ କ୍ୟାମ୍ପ ଗ୍ରାଉଣ୍ଡରେ ଛୋଟ ଛୋଟ ଲକର୍ ରହିଛି । ରାତିର ରୋଷେଇବାସ ସରିଲେ ବଳକା ଖାଦ୍ୟକୁ ଏହି ଲକର୍ ଭିତରେ ରଖି ତାଲା ଦେଇ ଦେବାକୁ ହୁଏ ।

ଆମେ ପ୍ରସାଦ, ସୁନୀଲ୍ ଓ ଦୀପ୍‌ଙ୍କ ସାଙ୍ଗରେ ଯାଇ 'ଅପର୍ ରିଭର୍' କ୍ୟାମ୍ପ ଗ୍ରାଉଣ୍ଡରେ ପହଞ୍ଚିଲୁ । ସେତେବେଳକୁ ତମ୍ବୁ ପକା ସରିଛି । ପେଟ୍ରୋମାକ୍ସଟିଏ ଜଳୁଛି । ପ୍ରସାଦ ତମ୍ବୁ ସାମ୍ନାରେ କାଠ ଗଦେଇ ନିଆଁ ଜଳେଇ ଦେଲା । ସୁନୀଲ୍ ମିଞ୍ଜି ମିଞ୍ଜି ଜଳୁଥିବା ଚୁଲୀରେ ଚାହା କରି ଆଣିଲା । ଦୀପ୍ ପିଲାଙ୍କୁ କାଗଜ କପ୍‌ରେ କୋକ୍ ଦେଲା । କାଗଜ ପ୍ଲେଟ୍‌ରେ ଆଳୁ ଚିପ୍‌ସ ନେଇ ଆସିଲା । ମିତୁ, ନିଆଁ ଚାରିପଟେ ଗୋଲ ହୋଇ ବସି ଧୂଆଁଳିଆ ଚାହା ପିଇବାରେ ସେ ଯେଉଁ ମଜା, କ'ଣ ବର୍ଣ୍ଣନା କରିବି ! ଚାହା ପିଆ ସରିଲା ପରେ ରୋଷେଇ ଆୟୋଜନରେ ଲାଗି ପଡିଲେ ସେମାନେ । ମତେ କୌଣସି କାମରେ ହାତ ଲଗେଇବାକୁ ଦେଲେ ନାହିଁ ।

ରାତି ଖାଇବାର ମେନୁ ଥିଲା ଟମାଟୋ ସସ୍ ଦିଆ ସ୍ପାଘେଟୀ ଆଉ ମକା ପୋଡା। ମୁଁ ଘରୁ କେକ୍ କରି ନେଇଥିଲି। ସାଙ୍ଗରେ ବିସ୍କୁଟ୍, ଚିପ୍‌ସ୍, ଫଳ ଥିଲା। ସେସବୁ ମଧ୍ୟ ଖିଆ ହେଲା। ଏଣେ କ୍ୟାସେଟ୍‌ରେ ହେମନ୍ତ, ଲତାଙ୍କର ମନଛୁଆଁ ସଙ୍ଗୀତ, ତେଣେ ନିଆଁ ଚାରିପଟେ ବସି କାଗଜ ପ୍ଲେଟ୍‌ରେ ଯାହା ସାଙ୍ଗରେ ଯାହାର ତାଳ ମେଳ ନ ଥିବା ଖାଦ୍ୟ। ମିତ୍ର, ମୁଁ କେତେ ଜାଗାରେ କେତେ ବଢ଼ିଆ ବଢ଼ିଆ ଜିନିଷ ଖାଇଛି, କିନ୍ତୁ ଏଭଳି ଅନନ୍ୟ ଖାଇବା ମୋ ଜୀବନରେ ବୋଧହୁଏ ଏଇ ପ୍ରଥମ। ଖୋଲା ଜାଗାରେ ପିଲାମାନେ ଯେଉଁ ଖୁସି ହେଉଥାଆନ୍ତି, ତାହା ଦେଖିବା ଭଳି। ତମ୍ବୁ ଭିତରେ ପଶି, ପୁଣି ବାହାରି କେତେ ରକମର ଖେଳ ସେମାନେ ଖେଳୁଥାଆନ୍ତି।

ଖିଆପିଆ ସରିବା ପରେ ପୁଣି ଗୋଟିଏ ଘେରା ଥଦା ପକା ଚାହା ପିଆ ହେଲା। ତା' ପରେ ଆମେ ହୋଟେଲ ଯିବାକୁ ବାହାରିଲୁ। ପ୍ରବଳ ଅନିଚ୍ଛା ନେଇ ପିଲାମାନେ ଆମ ସାଙ୍ଗରେ ଆସିଲେ।

ପଥରଦିନ ରାତିରେ ଏତେ କ୍ଲାନ୍ତ ହୋଇ ଶୋଇଥିଲେ ମଧ୍ୟ ଗତକାଲି ବେଶ୍ ସକାଳୁ ଆମର ନିଦ ଭାଙ୍ଗିଗଲା। ଆମେ ଖୁବ୍ ଶୀଘ୍ର ପ୍ରସ୍ତୁତ ହୋଇଗଲୁ। ଆମର ଲକ୍ଷ୍ୟ ଥିଲା 'ଗ୍ଲାସିଅରସ ପଏଣ୍ଟ'। ମୁଁ କେଉଁଠି ପଢ଼ିଥିଲି ଯେ ଏଇଟି ହେଉଛି ୟୋସେମିଟିର ସବୁଠାରୁ ସୁନ୍ଦର ସ୍ଥାନ। ଏହିଠାରୁ ଉପତ୍ୟକା, ଜଙ୍ଗଲ ଓ ପାହାଡର ସୌନ୍ଦର୍ଯ୍ୟ ଉପଭୋଗ କରିହୁଏ। ବହୁତ ଲୋକ ଚାଲି ଚାଲି ୟୋସେମିଟି ଭିଲେଜ୍‌ରୁ ଗ୍ଲାସିଅରସ ପଏଣ୍ଟ ପର୍ଯ୍ୟନ୍ତ ଯାଆନ୍ତି। କିନ୍ତୁ ୩୨ ମାଇଲ୍ ଚାଲିବାର ଶାରୀରିକ ବା ମାନସିକ କ୍ଷମତା ଆମର ନ ଥିଲା। ତେଣୁ ଗାଡି ନେଇ ବାହାରିଲୁ। ଗ୍ଲାସିଅରସ ପଏଣ୍ଟକୁ ଯାଇଥିବା ରାସ୍ତାଟି ବେଶ୍ ବୁଲାଣିଆ ଏବଂ ଏହାର ଉଚ୍ଚତା ଅନେକ ବେଶୀ। ସେଥିପାଇଁ ଶୀତଦିନେ ବରଫ ପଡିବା ଆରମ୍ଭ ହେଲେ ରାସ୍ତାଟି ଜନସାଧାରଣଙ୍କ ପାଇଁ ବନ୍ଦ କରି ଦିଆଯାଏ।

ଗ୍ଲାସିଅରସ୍ ପଏଣ୍ଟକୁ ଗଲାବେଳେ ବାଟରେ ଏଇଭଳି ଗୋଟିଏ ସ୍ଥାନ ପଡିଲା ଯେଉଁଠିକି କିଛି ମାସ ଆଗରୁ ନିଆଁ ଲାଗି ଯାଇଥିଲା। ମୁଁ ଟେଲିଭିଜନ ସମ୍ବାଦରେ ଏହି ଘଟଣା ଦେଖିଥିଲି। ଜଙ୍ଗଲରେ ନିଆଁ ଲାଗିବା ଏକ ପ୍ରାକୃତିକ ଘଟଣା। ପୂର୍ବରୁ ଜଙ୍ଗଲରେ ପ୍ରାକୃତିକ ଉପାୟରେ ନିଆଁ ଲାଗିଲେ ପାର୍କ ପରିଚାଳନା କମିଟି ବିବ୍ରତ ହୋଇପଡୁଥିଲେ। ନିଆଁଲିଭାଳୀ ଦଳଙ୍କୁ ଡକାଇ ନିଆଁକୁ ନିୟନ୍ତ୍ରଣରେ

ଆଣୁଥିଲେ। କିନ୍ତୁ ବର୍ତ୍ତମାନ ଜଣାପଡିଛି ଯେ ଏଭଳି କରିବା ଦ୍ୱାରା ଶୁଖିଲା ପତ୍ର, ଡାଳ ବା ପୁରୁଣା ଶୁଖିଲା ଗଛ ନ ପୋଡି ରହିଯାଉଛି। ତା' ଦ୍ୱାରା ପରେ ଯେଉଁ ନିଆଁ ଲାଗୁଛି, ତାହା ଅତି ଭୟଙ୍କର ହୋଇଯାଉଛି। ସେଥିପାଇଁ ପ୍ରାକୃତିକ ଉପାୟରେ ଜଙ୍ଗଲରେ ନିଆଁ ଲାଗିଲେ ଦମକଳ କେବଳ ସତର୍କ ହୋଇ ରହନ୍ତି, ବିଶେଷ କିଛି କରନ୍ତି ନାହିଁ। ହେଲେ, ଏଥରକ ଯେଉଁ ନିଆଁ ଲାଗିଥିଲା, ତା'ର କାରଣ ଥିଲା ଭିନ୍ନ। କେତେଜଣ ହାଇସ୍କୁଲ ଛାତ୍ର ସାଙ୍ଗ ହୋଇ ୟୋସେମିଟି ଭିତରେ ଚାଲି ଚାଲି ବୁଲୁଥିଲେ। ଏମାନଙ୍କ ମଧ୍ୟରୁ ଦୁଇଜଣ କୌଣସି କାରଣରୁ ଦଳଠାରୁ ବିଚ୍ଛିନ୍ନ ହୋଇଯାଇଥିଲେ ଓ ଜଙ୍ଗଲରେ ହଜିଯାଇଥିଲେ। ବହୁତ ଚେଷ୍ଟା କରିବା ପରେ ମଧ୍ୟ ସେମାନେ ରାସ୍ତା ଖୋଜି ପାଇ ନ ଥିଲେ। ଏଣେ ପାଖରେ ଥିବା ଖାଦ୍ୟ ଶେଷ ହେବାକୁ ବସିଥାଏ। ଆଉ କୌଣସି ଉପାୟ ନ ପାଇ ସେମାନେ କାଠ ଗଦା କରି ନିଆଁ ଲଗେଇ ଦେଲେ। ଆଶା କରିଥିଲେ ଯେ ସେମାନଙ୍କୁ ଖୋଜୁଥିବା ହେଲିକପ୍ଟର ନିଆଁ ଦେଖି ସେମାନଙ୍କୁ ଉଦ୍ଧାର କରିବ। ପିଲା ଦୁଇଟିଙ୍କୁ ହେଲିକପ୍ଟର ଉଦ୍ଧାର କରିଥିଲା ସତ, କିନ୍ତୁ ସେମାନେ ଲଗେଇଥିବା ନିଆଁଟି ଆଖପାଖ ଅଞ୍ଚଳକୁ ବ୍ୟାପି ଯାଇ ସବୁ ଜାଳି ପୋଡି ଛାରଖାର କରି ଦେଇଥିଲା। ନିଆଁ ଲିଭାଳୀ ଦଳଙ୍କୁ ବେଶ କିଛିଦିନ ନିଆଁ ସହିତ ଯୁଦ୍ଧ କରିବାକୁ ହୋଇଥିଲା।

ଘଟଣାଟି ଘଟିଥିଲା ପ୍ରାୟ ଦୁଇମାସ ତଳେ। କିନ୍ତୁ ଏବେ ମଧ୍ୟ ପୋଡି କଳା କଳା ହୋଇଯାଇଥିବା ଗଛଗୁଡ଼ିକ ସେଇଭଳି ରହିଛି। ସେ ସବୁ ଦେଖି ମୋ ମନ ଖରାପ ହୋଇଗଲା। ହୁଏତ ପୁଣି ବର୍ଷା ହେଲେ ଏଇଠି ନୂଆ ଗଛ ଗଜୁରିବ। ପୁଣି ସବୁଜ ଜଙ୍ଗଲରେ ଭରି ହୋଇଯିବ ସ୍ଥାନଟି।

ସରୁ ବୁଲାଣିଆ ରାସ୍ତାରେ ଧୀରେ ଧୀରେ ଯାଇ ଗ୍ଲାସିଅର୍‌ସ୍ ପଏଣ୍ଟରେ ଆମେ ପହଞ୍ଚିବା ବେଳକୁ ଦିନ ଏଗାରଟା। ଗାଡି ରଖି କିଛି ବାଟ ଚାଲିବାକୁ ହେଲା। କିନ୍ତୁ ଉପରେ ପହଞ୍ଚିବା ପରେ ସେ ଯେଉଁ ଅପରୂପ ଦୃଶ୍ୟ, ମୋ ନିଃଶ୍ୱାସ ଯେମିତି କିଛି ସମୟପାଇଁ ବନ୍ଦ ହୋଇଗଲା। ୩୨୦୦ ଫୁଟ ଉପରୁ ୟୋସେମିଟି ଉପତ୍ୟକା ଦେଖାଯାଉଥାଏ ଛବିଟିଏ ଭଳି। ରାସ୍ତାରେ ଯାଉଥିବା ଗାଡିଗୁଡିକ ଠିକ୍ କଣ୍ଢେଇ ପରି ମନେ ହେଉଥାଏ। ଦୂରରେ ୟୋସେମିଟି ଜଳପ୍ରପାତ ଉପରେ ସୂର୍ଯ୍ୟକିରଣ ପଡି ଚମକି ଉଠୁଥାଏ ସ୍ଥାନଟି। ଆଉ ସାମ୍ନାରେ ଗମ୍ଭୀର

ଭାବରେ ଠିଆ ହୋଇଥାଏ "ହାଫ୍ ଡୋମ୍" । ପ୍ରକୃତରେ ଏଇଟି ପାହାଡଟିଏ, କିନ୍ତୁ ଠିକ୍ ଅର୍ଦ୍ଧ ଗମ୍ବୁଜଟିଏ ପରି ଦିଶୁଥାଏ । ବାକୀ ଅଧା କିଏ ଯେମିତି ଛୁରୀ ଧରି କାଟି ଦେଇଛି ।

'ହାଫ୍-ଡୋମ୍'ର ଆକାର ଏଭଳି କିପରି ହେଲା, ତାହା ନେଇ ଏପର୍ଯ୍ୟନ୍ତ ବାଦ ବିବାଦ ଚାଲିଛି । ଜନ୍ ମୁର୍‌ଙ୍କ ମତରେ ବରଫ ଯୁଗରେ ଗୋଟିଏ ବଡ ବରଫ ଖଣ୍ଡ ଚାପରେ ଏଇଭଳି ହୋଇଛି । ଅଥଚ ଚାର୍ଲସ୍ ଡାରଓ୍ୱିନ୍ କହିଥିଲେ ଯେ ସମ୍ଭବତଃ ଭୂମିକମ୍ପ ଦ୍ୱାରା ଏହାର ସୃଷ୍ଟି ହୋଇଛି । କାହା କଥା ଠିକ୍, କାହା କଥା ଭୁଲ୍- ତାହା ଏପର୍ଯ୍ୟନ୍ତ ଜଣା ପଡିନାହିଁ ।

ମୋର ମଧ୍ୟ ସେକଥା ଜାଣିବା ପାଇଁ କୌଣସି ଆଗ୍ରହ ନ ଥାଏ । ଯେଉଁଠି ସୃଷ୍ଟି ଏତେ ମନୋରମ, ସେଇଠି ସୃଷ୍ଟିର ରହସ୍ୟ ଭେଦ କରିବାର କି ଆବଶ୍ୟକତା ଅଛି ? ହାଫ୍ ଡୋମ୍ ଓ ଉପତ୍ୟକାର ସୌନ୍ଦର୍ଯ୍ୟ ଉପଭୋଗ କରୁ କରୁ ମୁଁ ନିଜକୁ ଭୁଲିଯାଇଥାଏ । ସେଇଠି ତିଆରି ହୋଇଥିବା ସିମେଣ୍ଟର ବେଞ୍ଚରେ ବସି ପ୍ରକୃତିର ବୈଚିତ୍ର୍ୟ ଦେଖୁଥାଏ । ରହି ରହି ହଠାତ୍ ଗିଟି କହିଲା, "ମା, ଭୋକ ।" ମୁଁ ଘଣ୍ଟାକୁ ଚାହିଁ ଦେଖିଲି ପ୍ରାୟ ଦୁଇଟା ପାଖାପାଖି । କେମିତି ଯେ ଏତେଗୁଡାଏ ସମୟ ଚାଲିଗଲା ଜଣା ପଡିଲା ନାହିଁ । ପିଲାମାନେ ସେଇ ସକାଳୁ କ'ଣ ଟିକିଏ ଖାଇ ଆସିଥିଲେ । ଆମେ ଗାଡି ପାଖକୁ ଫେରି ଆସିଲୁ । ଖାଇବା ଜିନିଷ ଆମ ସାଙ୍ଗରେ ଥିଲା । ସେଇଠି ବଢିଆ ପିକ୍‌ନିକ୍‌ଟିଏ ହେଲା । ପିକ୍‌ନିକ୍ ପରେ ଖରାରେ କିଛି ସମୟ ଅଳସେଇ ଚାରିଟା ବେଳକୁ ଫେରିଲୁ ।

ଗ୍ଲାସିଅର୍‌ସ୍ ପଏଣ୍ଟରୁ ଫେରିବା ବାଟରେ ପଡେ "ବ୍ରାଇଡାଲ୍ ଭେଲ୍ ଫଲ୍‌ସ ।" ଏହି ଜଳପ୍ରପାତର ଜଳଧାରା ଦେଖିଲେ ମନେ ହୁଏ ଯେମିତି ଧଳା ଓଢଣୀଟିଏ ମୁହଁକୁ ଘୋଡେଇ ରଖିଛି । ସେଇଥିପାଇଁ ବୋଧହୁଏ ଏହାର ନାମ ରଖାଯାଇଛି ବ୍ରାଇଡାଲ୍ ଭେଲ୍ । ଏହି ଜଳ ପ୍ରପାତଟିର ଅବସ୍ଥିତି ଏହିପରି ଯେ ଦୂରରୁ ଦେଖିଲେ ଏହାର ଉଚ୍ଚତା ଠିକ୍ ଜାଣି ହୁଏ ନାହିଁ । ଥରେ ଜନ୍ ମୁର୍ ତାଙ୍କର ଜଣେ ସହରୀ ବନ୍ଧୁଙ୍କୁ ଏହି ଜଳପ୍ରପାତ ଦେଖାଇବାକୁ ଆଣିଥିଲେ । ଜଳପ୍ରପାତ ଦେଖି ସାନ୍‌ଫ୍ରାନ୍‌ସିସ୍‌କୋରୁ ଆସିଥିବା ବ୍ୟକ୍ତି ଜଣକ କହିଥିଲେ, "ଏତେ ଦୂରରୁ ମନେ ହେଉଛି ଜଳପ୍ରପାତଟି ୧୫ ଫୁଟ ଉଚ୍ଚ । କିନ୍ତୁ ନିଶ୍ଚିତ ଭାବରେ ଏହା ୫୦/୬୦ ଫୁଟରୁ କମ୍ ହେବ ନାହିଁ ।" ପରେ ଜଣାପଡିଥିଲା ଯେ ଜଳପ୍ରପାତର ଉଚ୍ଚତା

୬୨୦ ଫୁଟ।

ଆମେ କିନ୍ତୁ ଜଳପ୍ରପାତଟିକୁ ସଂପୂର୍ଣ୍ଣ ଭାବରେ ଉପଭୋଗ କରି ପାରିଲୁ ନାହିଁ। କାରଣ ପାଣି ପ୍ରାୟ ନ ଥାଏ। ଜଳପ୍ରପାତକୁ ଉପଭୋଗ କରିବାକୁ ହେଲେ ବସନ୍ତ ଋତୁରେ ହିଁ ୟୋସେମିଟିକୁ ଆସିବା ଉଚିତ୍। ତଥାପି ଅସ୍ତଗାମୀ ସୂର୍ଯ୍ୟଙ୍କ କିରଣ ଜଳପ୍ରପାତରେ ପଡି ରଙ୍ଗର ଯେଉଁ ଖେଳ ଚାଲିଥାଏ, ତାହା ଜଣେ ନ ଦେଖିଲେ ବିଶ୍ୱାସ କରି ପାରିବ ନାହିଁ।

ସୂର୍ଯ୍ୟାସ୍ତ ପରେ ପରେ ହିଁ ଅନ୍ଧାର ମାଡି ଆସିଲା। ଆମେ ଫେରି ଆସିଲୁ ହୋଟେଲକୁ। ହୋଟେଲରେ ରାତି ଖାଇବା ଖାଇ, ପିଲାଙ୍କ ସାଙ୍ଗରେ କିଛି ସମୟ ଖେଳି ଶୋଉ ଶୋଉ ବେଶ୍ ଡେରି ହୋଇ ଯାଇଥିଲା। ମୁଁ ତ ଭାବିଥିଲି ସକାଳ ନଅଟା ଆଗରୁ ନିଦ ଭାଙ୍ଗିବ ନାହିଁ। କିନ୍ତୁ କେମିତି କେଜାଣି ପାଞ୍ଚଟା ବେଳେ ମୋ ନିଦ ଭାଙ୍ଗିଗଲା। ପାହାଡିଆ ନଦୀର କୁଳୁକୁଳୁ ଶବ୍ଦ ଶୁଣିବା ପାଇଁ ବାଲ୍‌କୋନିକୁ ଯାଇଥିଲି। କିନ୍ତୁ ବାହାରେ ଯେଉଁ ଥଣ୍ଡା, ମୋ ଦେହ ହାତ କୋଳ ମାରିଗଲା। ପୁଣି ରୁମ୍ ଭିତରକୁ ଆସି କମ୍ବଳ ଘୋଡେଇ ହୋଇ ବସିଗଲି। ସେମିତି ଘୋଡିଘାଡି ହୋଇ ତତେ ଚିଠି ଲେଖୁଛି। ଆଜି ତିନିଟା, ଚାରିଟା ବେଳେ ଆମେ ୟୋସେମିଟି ଛାଡିବୁ। ଆଉ ସକାଳଠାରୁ ସେହି ସମୟ ପର୍ଯ୍ୟନ୍ତ ଅନିର୍ଦ୍ଦିଷ୍ଟ ଭାବରେ ୟୋସେମିଟି ଭିତରେ ବୁଲିବା ପାଇଁ ସ୍ଥିର କରିଛୁ। ମୁଁ ଏବେ ବୁଝି ପାରୁଛି କାହିଁକି ଶର୍ବରୀ ଭଳି ପ୍ରାକ୍‌ଟିକାଲ୍ ଝିଅଟିଏ ୟୋସେମିଟି ଦେଖି ଭାବବିହ୍ୱଳ ହୋଇ ଉଠିଥିଲା। ଯେଉଁ ୟୋସେମିଟି ଭ୍ୟାଲି ଜେମ୍‌ସ୍ ସାଭେଜ୍‌ଙ୍କ ଭଳି ଜଣେ ଆର୍ମି ମେଜରଙ୍କୁ ଆଉ ଜନ୍ ମୁର୍‌ଙ୍କ ଭଳି ଜଣେ ଉଚ୍ଚ ଶିକ୍ଷିତ ବିଦ୍ୱାନ୍‌ଙ୍କୁ ନିଜ କୋଳକୁ ଟାଣି ଆଣି ପାରିଥିଲା, ତା' ପକ୍ଷରେ ଶର୍ବରୀ ଭଳି ସାଧାରଣ ଝିଅଟିଏର ମନ ବଦଳେଇ ଦେବା କ'ଣ ଏମିତି ବଡ କଥା ?

ଆଜି ଏଇଠି ଶେଷ କରୁଛି। ଚିଠି ପାଇ ଚିଠି ଦେବୁ। ରହୁଛି।

ଇତି

ତୋର 'ନାନୀ'

କୁପରଟିନୋ

୧୦ ଜାନୁୟାରୀ, ୧୯୯୩

ସ୍ନେହର ମିତୁ,

ନୂଆବର୍ଷର ଶୁଭେଚ୍ଛା ନେବୁ। ୧୯୯୩ ତୁମମାନଙ୍କ ପାଇଁ ସୁନ୍ଦର ହେଉ, ଈଶ୍ୱରଙ୍କ ନିକଟରେ ମୋର ଏଇ ପ୍ରାର୍ଥନା।

ମୁଁ କିଛି ଦିନ ତଳେ ସାନ୍‌ଫ୍ରାନ୍‌ସିସ୍‌କୋର କେତୋଟି ପୋଷ୍ଟକାର୍ଡ ତୋ ପାଖକୁ ପଠାଇଥିଲି। ଆଶା କରୁଛି ଏହା ଭିତରେ ପାଇଯାଇଥିବୁ। ସେଗୁଡିକ ପଠାଇବା ବେଳେ ମୋର ମନେ ପଡିଲା ଯେ ମୁଁ ଆଜିଯାଏ ତତେ ସାନ୍‌ଫ୍ରାନ୍‌ସିସ୍‌କୋ ବିଷୟରେ କିଛି ଲେଖି ପାରି ନାହିଁ। ଅନେକ ଦିନ ତଳେ ଥରେ କହିଥିଲି ଯେ ସୁବିଧାରେ କେବେ ଆମେରିକାବାସୀଙ୍କର ଏଇ ପ୍ରିୟ ସହରଟି ବିଷୟରେ ତତେ ଲେଖିବି। ଅଥଚ ମୁଁ ମୋ କଥା ରଖି ପାରି ନାହିଁ। ସାନ୍‌ଫ୍ରାନ୍‌ସିସ୍‌କୋ ଆମ ଘରଠାରୁ ଏତେ ପାଖରେ; କିନ୍ତୁ ପୁରୀରେ ରହି କେବେ ରଥଯାତ୍ରା ନ ଦେଖିବା ଭଳି ଏତେ ନିକଟରେ ରହି ମଧ୍ୟ ଆମର ସାନ୍‌ଫ୍ରାନ୍‌ସିସ୍‌କୋ ଦେଖା ହୋଇ ନଥିଲା। ତେଣୁ କ'ଣ ବା ଲେଖିଥାଆନ୍ତି ?

ଗତ ଦେଢବର୍ଷ ଭିତରେ ସାନ୍‌ଫ୍ରାନ୍‌ସିସ୍‌କୋ ଯେ ଆଦୌ ଯିବା ହୋଇ ନାହିଁ, ତାହା ନୁହଁ। ବହୁତଥର ବହୁତ କାମରେ ସେଠିକୁ ଯିବାକୁ ହୋଇଛି। ଏଆରପୋର୍ଟ, ଭାରତୀୟ ଦୂତାବାସ, ସିଙ୍ଗାପୁର ଏଆର୍‌ଲାଇନ୍‌ସ୍ ଅଫିସ୍- ସବୁ

ତ ସେଇ ସାନ୍‌ଫ୍ରାନ୍‌ସିସ୍‌କୋରେ । ତା'ଛଡା ବାହାରୁ ଆସୁଥିବା ଆମର ଚିହ୍ନା ପରିଚୟ ଲୋକଙ୍କୁ ନେଇ ସାନ୍‌ଫ୍ରାନ୍‌ସିସ୍‌କୋର ପ୍ରସିଦ୍ଧ 'ଗୋଲଡେନ୍ ଗେଟ୍ ବ୍ରିଜ୍' ମଧ୍ୟ ଦେଖାଇ ଦେବାକୁ ହୋଇଛି । କିନ୍ତୁ ଜଣେ ପର୍ଯ୍ୟଟକର ଆଖିରେ ମୁଁ କେବେ ସହରଟିକୁ ଦେଖି ନ ଥିଲି ।

ହୁଏତ ଆହୁରି ବେଶ୍ କିଛି ଦିନ ସାନ୍‌ଫ୍ରାନ୍‌ସିସ୍‌କୋ ଆମର ଅଦେଖା ରହି ଯାଇଥାଆନ୍ତା ଯଦି ଟମ୍ ଆମମାନଙ୍କୁ ସହରଟି ବୁଲି ଦେଖାଇବା ପାଇଁ ଆଗ୍ରହ ପ୍ରକାଶ କରି ନ ଥାଆନ୍ତେ । ଟମ୍ ଅର୍ଥାତ୍ ଟମ୍ ହଫୋର୍ଡ । ୬୪ ବର୍ଷ ବୟସ୍କ ଟମ୍‌ଙ୍କ ସାଙ୍ଗରେ ବଡ ନାଟକୀୟ ପରିସ୍ଥିତିରେ ଏଇ ସାନ୍‌ଫ୍ରାନ୍‌ସିସ୍‌କୋ ସହରରେ ହିଁ ତୋ ଭାଇନାଙ୍କର ଦେଖା ଓ ବନ୍ଧୁତ୍ୱ ହୋଇଥିଲା । ସେ ପ୍ରାୟ ଚାରିବର୍ଷ ତଳ କଥା । ତା'ପରେ ଟମ୍ ଭାରତ ବୁଲି ଆସି ଆମ ଘରେ ରହିଥିଲେ । ଆଉ ଆମେ ଆମେରିକା ଆସିବା ପରଠାରୁ ନିୟମିତ ଭାବରେ ଫୋନ୍ ଓ ଚିଠି ଦ୍ୱାରା ଆମ ସହିତ ସଂପର୍କ ରଖିଥିଲେ । ଟମ୍ ରହନ୍ତି ନିଉମେକ୍‌ସିକୋର ଆଲ୍‌ବୁକର୍କି ସହରରେ । କିନ୍ତୁ ତାଙ୍କର ଝିଅ ରେବେକା ଓ ଦେଢବର୍ଷର ନାତୁଣୀ ଡାକୋଟା ସାନ୍‌ଫ୍ରାନ୍‌ସିସ୍‌କୋରେ ରହନ୍ତି । ସେମାନଙ୍କୁ ଦେଖିବା ପାଇଁ ମଝିରେ ମଝିରେ ଟମ୍ ଆଲ୍‌ବୁକର୍କିରୁ ଆସି ଥାଆନ୍ତି ।

କ୍ରିସ୍‌ମାସ୍‌ର କିଛି ଦିନ ପୂର୍ବରୁ ଟମ୍ ଆଲ୍‌ବୁକର୍କିରୁ ଫୋନ୍ କରି ଆମକୁ କହିଲେ ଯେ ସେ କ୍ରିସ୍‌ମାସ୍ ସମୟଟି ସାନ୍‌ଫ୍ରାନ୍‌ସିସ୍‌କୋରେ କଟେଇବେ ଏବଂ କ୍ରିସ୍‌ମାସ୍ ପରଦିନ ସେ ଆମମାନଙ୍କୁ ନେଇ ସହରଟି ସହିତ ପରିଚୟ କରେଇ ଦେବାକୁ ଚାହାନ୍ତି । ଆମମାନଙ୍କର କ'ଣ କୌଣସି ଆପତ୍ତି ଅଛି ? ଆପତ୍ତି !! ଟମ୍ ଭଳି ଜଣେ ଗାଇଡ୍ ମିଳିଲେ ପୁଣି କିଏ ଆପତ୍ତି କରେ ? ଆମେମାନେ ତ ଆଗ୍ରହରେ ଦିନ ଗଣିବା ଆରମ୍ଭ କରି ଦେଇଥିଲୁ ।

କ୍ରିସ୍‌ମାସ୍ ପରଦିନ ଶନିବାର । ସେଇଦିନ ସକାଳୁ ରେବେକା ଓ ଡାକୋଟାଙ୍କୁ ନେଇ ଟମ୍ ଆମ ଘରେ ପହଞ୍ଚିଗଲେ । ରେବେକାଙ୍କ ବଡ ଭ୍ୟାନ୍‌ରେ ବସି ଆମେ ବାହାରି ପଡିଲୁ ସାନ୍‌ଫ୍ରାନ୍‌ସିସ୍‌କୋ ।

ଆମେରିକା ଆସିବାର କିଛି ମାସ ପରେ ମୋର ଆଗ୍ରହ ଅଛି ଜାଣି ରେବେକା ସାନ୍‌ଫ୍ରାନ୍‌ସିସ୍‌କୋର ଇତିହାସ ଉପରେ ବହିଟିଏ ମତେ ପଢିବାକୁ ଦେଇଥିଲେ । ଲେଖକ ର୍ୟାଣ୍ଡ ରିଚାର୍ଡସ୍‌ଙ୍କ ଭାଷା ଏତେ ସାବଲୀଳ ଯେ ପଢିବା

ବେଳେ ମନେ ହେଉଥାଏ ସତେ ଯେମିତି ସେ ଐତିହାସିକ ଘଟଣାଗୁଡ଼ିକୁ ଜୀବନ୍ତ କରି ପାଠକ ସାମ୍ନାରେ ତୋଳି ଧରିଛନ୍ତି। ମୁଁ ସେଇଥିରୁ ଜାଣିଲି ଯେ ସ୍ଥାନଟିର ପ୍ରଥମ ଅଧିବାସୀ ଥିଲେ ରେଡ୍ ଇଣ୍ଡିଆନ୍। ଏମାନେ ପାଞ୍ଚରୁ ଦଶ ହଜାର ବର୍ଷ ପୂର୍ବେ ଏସିଆର ସାଇବେରିଆ ଅଞ୍ଚଳରୁ ଆସିଥିଲେ। ପ୍ରଥମେ ସାଇବେରିଆରୁ ଆଲାସ୍କା ଓ ତା'ପରେ ଆଲାସ୍କାରୁ ଚାଲିଆସିଥିଲେ ଦକ୍ଷିଣକୁ। କିନ୍ତୁ ବର୍ତ୍ତମାନ ସାନ୍‌ଫ୍ରାନ୍‌ସିସ୍‌କୋ ଅଞ୍ଚଳରେ ରେଡ୍ ଇଣ୍ଡିଆନ୍‌ମାନଙ୍କର ବଂଶଧରମାନଙ୍କୁ ପ୍ରାୟ ଦେଖିବାକୁ ମିଳେ ନାହିଁ। ଏହାର କାରଣଟିଏ ଅଛି। ଇଉରୋପୀୟମାନେ ଯେତେବେଳେ ଏହି ଅଞ୍ଚଳରେ ପ୍ରଥମ ଆସି ପହଞ୍ଚିଲେ, ସେମାନେ ସାଙ୍ଗରେ ଦୁଇଟି ରୋଗ ନେଇ ଆସିଥିଲେ- ମିଳିମିଳା ଓ ସିଫିଲିସ୍। ଏହି ରୋଗ ଦୁଇଟିର ପ୍ରତିରୋଧ କରିବାର ଶକ୍ତି ରେଡ୍ ଇଣ୍ଡିଆନ୍‌ମାନଙ୍କ ଶରୀରରେ ନ ଥିଲା। ଫଳରେ ସିଫିଲସ୍ ଓ ମିଳିମିଳାରେ ଆକ୍ରାନ୍ତ ହୋଇ ଅଧିକାଂଶ ରେଡ୍ ଇଣ୍ଡିଆନ୍‌ଙ୍କର ମୃତ୍ୟୁ ହୋଇଗଲା। ଆଉ ବାକୀ ଯେଉଁମାନେ ରହିଥିଲେ, ସେମାନେ ଧଳା ଲୋକଙ୍କ ଆକ୍ରମଣ ଓ ଅତ୍ୟାଚାର ସହି ନ ପାରି ସ୍ଥାନ ଛାଡି ଚାଲିଯାଇଥିଲେ।

ମିତୁ ଜାଣିବୁ, ଧଳା ଲୋକମାନେ ମଧ୍ୟ ଏହି ସ୍ଥାନଟିକୁ ଆବିଷ୍କାର କରିଥିଲେ ସଂପୂର୍ଣ୍ଣ ଆକସ୍ମିକ ଭାବରେ। କଲମ୍ବସ୍‌ଙ୍କ ପରେ ଅନେକ ଇଉରୋପୀୟ ଆମେରିକାରେ ଆସି ପହଞ୍ଚିଥିଲେ ମଧ୍ୟ ସାନ୍‌ଫ୍ରାନ୍‌ସିସ୍‌କୋର ଅବସ୍ଥିତି ସଂପର୍କରେ ସେମାନେ କିଛି ଜାଣି ନ ଥିଲେ। ମୁଁ ଅଷ୍ଟାଦଶ ଶତାବ୍ଦୀ କଥା ଲେଖୁଛି, ସେତେବେଳେ ମେକ୍ସିକୋଠାରୁ କ୍ୟାଲିଫୋର୍ଣ୍ଣିଆ ସମସ୍ତ ଅଞ୍ଚଳ ସ୍ପେନ୍ ଅଧୀନରେ ରହିଥିଲା। ସ୍ପେନ୍‌ର ଜାହାଜମାନ କ୍ୟାଲିଫୋର୍ଣ୍ଣିଆର କୂଳ ଦେଇ ସେତେବେଳେ ଯାତାୟାତ କରୁଥିଲେ। ସାନ୍‌ଫ୍ରାନ୍‌ସିସ୍‌କୋର ପଥୁରିଆ କୂଳ ଯେ ସେମାନଙ୍କର ଆଖିରେ ପଡି ନ ଥିଲା, ତା' ନୁହଁ। କିନ୍ତୁ ଏତେ ଦୂରରୁ ସେମାନେ ଅନୁମାନ କରି ପାରି ନ ଥିଲେ ଯେ ସ୍ଥାନଟି ବସବାସ ଓ ବାଣିଜ୍ୟ ପାଇଁ ଏଭଳି ଉପଯୁକ୍ତ। ସ୍ଥଳଭାଗ ଭିତରକୁ ସମୁଦ୍ର ପଶିଯାଇଛି। ସ୍ଥାନଟିକୁ ଯିବାକୁ ହେଲେ ସେଇ କ୍ଷୁଦ୍ର ସାମୁଦ୍ରିକ ପଥ ଦେଇ ଜାହାଜଗୁଡ଼ିକୁ ନେଇ ଯିବାକୁ ହେବ। ସେତେବେଳେ କେହି ଏଭଳି ସାହସ କରି ପାରି ନ ଥିଲେ। ସେମାନେ ବା ଜାଣିବେ କେମିତି ଯେ ସେହିଠାରେ ରହିଛି ଗୋଟିଏ ପ୍ରାକୃତିକ ବନ୍ଦର!

୧୭୬୯ରେ ସ୍ଥଳଭାଗ ଦେଇ 'ଆଲ୍‌ଟା କ୍ୟାଲିଫୋର୍ଣ୍ଣିଆ' ଆବିଷ୍କାର କରିବା

ପାଇଁ ଡନ୍ ଗ୍ୟାସ୍‌ପର୍‌ଙ୍କ ଅଧୀନରେ ମେକ୍‌ସିକୋରୁ ଦଳଟିଏ ବାହାରିଥିଲେ। କିନ୍ତୁ ଆଲ୍‌ଟା କ୍ୟାଲିଫୋର୍ଣ୍ଣିଆର ମୋଣ୍ଟେରେ (Monterey) ଆବିଷ୍କାର କରିବା ବଦଳରେ ସେମାନେ ଆସି ପହଞ୍ଚିଥିଲେ 'ୟେରବା ବୁଏନା' ଗ୍ରାମରେ। (ପରେ ଯାହାକୁ ସାନ୍‌ଫ୍ରାନ୍‌ସିସ୍‌କୋ କୁହାଗଲା)। ନୂତନ ସ୍ଥାନ ଆବିଷ୍କାର କରି ଡନ୍ ଗ୍ୟାସ୍‌ପର୍ ଖୁସି ହୋଇ ନଥିଲେ। ବରଂ ଲକ୍ଷ୍ୟସ୍ଥଳରେ ପହଞ୍ଚି ପାରି ନ ଥିବାରୁ ହତୋତ୍ସାହ ହୋଇ ପଡିଥିଲେ। ଏହାର କିଛି ବର୍ଷ ପରେ ୧୭୭୫ରେ କ୍ୟାପ୍‌ଟେନ୍ ଆୟାଲା ଏହିଠାରେ ଆସି ପହଞ୍ଚିଥିଲେ ଏବଂ ସ୍ଥାନଟି ଦେଖି ମନେ କରିଥିଲେ ଯେ ଗୋଟିଏ ସହର ଗଢିବା ପାଇଁ ସ୍ଥାନଟି ଉପଯୁକ୍ତ। ଏହାର ପରବର୍ଷ ୟେରବା ବୁଏନା ଉପରେ ସ୍ପେନ୍‌ର କର୍ତ୍ତୃତ୍ୱ ଜାରୀ କରିବା ପାଇଁ ଉଭୟ ସେନାବାହିନୀ ଓ ମିସନାରୀ ଆସି ପହଞ୍ଚିଥିଲେ। କିନ୍ତୁ ସ୍ଥାନଟିର କୌଣସି ଉନ୍ନତି ହୋଇ ପାରି ନ ଥିଲା। ପରେ ୧୮୨୧ରେ ମେକ୍‌ସିକୋ ସ୍ପେନ୍ ବିରୁଦ୍ଧରେ ବିଦ୍ରୋହ କରି ସ୍ୱାଧୀନ ହୋଇଗଲା। କ୍ୟାଲିଫୋର୍ଣ୍ଣିଆର ଅନ୍ୟାନ୍ୟ ସ୍ଥାନ ସହିତ ୟେରବା ବୁଏନା ମଧ୍ୟ ମେକ୍‌ସିକୋ ଅଧୀନରେ ଆସିଲା। କିନ୍ତୁ ଏତେ ଦୂରରୁ ସ୍ଥାନଟିର ଦେଖାଶୁଣା କିଭଳି କରିବେ ମେକ୍‌ସିକୋ ସରକାର ସେକଥା ଜାଣି ନ ଥିଲେ। ୧୮୩୩ରେ ଦେଖାଗଲା ଯେ ୟେରବା ବୁଏନା କଥା ପ୍ରାୟ ସମସ୍ତେ ଭୁଲିଯାଇଛନ୍ତି।

୧୮୪୬ ମସିହା ଜୁଲାୟୀ ମାସରେ ଏହିଠାରେ ଆସି ପହଞ୍ଚିଲେ ମାର୍କିନ୍ ନୌସେନାର ଜଣେ କ୍ୟାପ୍‌ଟେନ୍- କ୍ୟାପ୍‌ଟେନ୍ ଜନ୍ ମଣ୍ଟଗୋମେରି। ସେ ଏଠାରୁ ମେକ୍‌ସିକୋର ପତକା ଉଠାଇ ଦେଇ ତା' ସ୍ଥାନରେ ଆମେରିକାର 'ଷ୍ଟାର ଓ ଷ୍ଟ୍ରାଇପ୍' ଉଡାଇ ଦେଲେ। ଆଉ ୟେରବା ବୁଏନାର ନୂତନ ନାମକରଣ କରିଲେ 'ସାନ୍‌ଫ୍ରାନ୍‌ସିସ୍‌କୋ'।

ସମୟକ୍ରମେ ସାନ୍‌ଫ୍ରାନ୍‌ସିସ୍‌କୋ ହୁଏତ ଗ୍ରାମଟିଏରୁ ବଢି ବଢି ଛୋଟ ସହରରେ ପରିଣତ ହୋଇଥାଆନ୍ତା, କିନ୍ତୁ ୧୮୪୭ରେ ଏଠାରେ ଏଭଳି ଏକ ଘଟଣା ଘଟିଲା ଯାହାକି ସ୍ଥାନଟିର ରୂପରେଖା ବଦଳେଇ ଦେଲା। ମାତ୍ର ଅଳ୍ପ କେତେ ବର୍ଷ ଭିତରେ ଆମେରିକାର ପ୍ରଧାନ ସହରଟିଏ ହୋଇଗଲା ଏଇଟି। ସେହି ବର୍ଷ ସାନ୍‌ଫ୍ରାନ୍‌ସିସ୍‌କୋରୁ ୧୩୦ ମାଇଲ୍ ଦୂର କୋଲାମାଠାରେ କରତକଳଟିଏ ନିର୍ମାଣ କରିବା ସମୟରେ ମାଟିରୁ ସୁନା ମିଳିଲା। ରାତାରାତି ଏ ସମ୍ବାଦ ଚାରିଆଡେ ବ୍ୟାପିଗଲା। ପୃଥିବୀର ବିଭିନ୍ନ ପ୍ରାନ୍ତରୁ ସୁନା ଲୋଭରେ ଲୋକମାନେ

ଆସିବା ଆରମ୍ଭ କଲେ। ପରେ ସୁନା ଉତ୍ପାଦନ କମିଯିବା ପରେ ମଧ୍ୟ ଏମାନଙ୍କ ମଧ୍ୟରୁ ଅଧିକାଂଶ ଏହିଠାରେ ବସବାସ କରି ରହିଗଲେ। ସହରଟିର ଜନପ୍ରିୟତା ଆଉ କୌଣସି ଦିନ କମି ନ ଥିଲା।

ଏହି ଜନପ୍ରିୟ ସହରର ଇତିହାସରେ ୧୯୦୬ ମସିହା ଏପ୍ରିଲ୍ ମାସ ୧୮ ତାରିଖ ଚିରଦିନ ପାଇଁ ଖୋଦେଇ ହୋଇ ରହିଯିବ। ସେହିଦିନ ବିରାଟ ବିପତ୍ତିଟିଏ ସହରରେ ଓହ୍ଲେଇ ଆସିଥିଲା। ଭୋର ପାଞ୍ଚଟା ବାରମିନିଟ୍‌ରେ ବହୁତ ବଡ ଆକାରର ଭୂମିକଂପଟିଏ ହୋଇଥିଲା ଏଇଠି। କେବଳ ସେତିକି ନୁହଁ, ଭୂମିକଂପ ପରେ ପରେ ସହରରେ ନିଆଁ ଲାଗିଯାଇଥିଲା। ଆଉ ସାନ୍‌ଫ୍ରାନ୍‌ସିସ୍‌କୋର ଅଧିକାଂଶ ଅଞ୍ଚଳ ପୋଡି ପାଉଁଶ ହୋଇଯାଇଥିଲା।

ଏହି ବିପତ୍ତିରେ କିନ୍ତୁ ଭାଙ୍ଗି ପଡି ନ ଥିଲେ ସାନ୍‌ଫ୍ରାନ୍‌ସିସ୍‌କୋବାସୀ। ସମସ୍ତେ ଏକଜୁଟ ହୋଇ ସହରଟିର ପୁନଃନିର୍ମାଣ କରିଥିଲେ ଏବଂ ଖୁବ୍ ଶୀଘ୍ର ଗଢି ଉଠିଥିଲା ପୂର୍ବଭଳି ସୁନ୍ଦର ସହରଟିଏ।

ଭୂମିକଂପରେ ନ ଭାଙ୍ଗି ବା ନିଆଁରେ ନ ପୋଡି ଅତୁଟ ଭାବରେ ରହିଥିଲା ମାତ୍ର କେତୋଟି ଘର। ସେଥିମଧ୍ୟରୁ ଗୋଟିଏ ହେଉଛି ରସିଆନ୍ ହିଲ୍ ଉପରେ ଥିବା କ୍ୟାଥେରିନ୍ ଓ ଜ୍ୟାକ୍‌ଙ୍କ ଘର। କ୍ୟାଥେରିନ୍ ଓ ଜ୍ୟାକ୍‌ଙ୍କ ସହିତ ଟମ୍‌ଙ୍କର ବହୁତଦିନରୁ ଚିହ୍ନା ପରିଚୟ। ତେଣୁ ସେମାନଙ୍କର ୧୯୦୬ ପୂର୍ବର ଘର ଦେଖାଇବା ପାଇଁ ଟମ୍ ପ୍ରଥମେ ଆମକୁ ସେଇଠିକୁ ନେଇଗଲେ। କାଠ ତିଆରି ପୁରୁଣାକାଳିଆ ଘରଟି ଏକଦା ଥିଲା ଜ୍ୟାକ୍‌ଙ୍କର ଜେଜେମାଙ୍କର। ଘର ବାହାରଟି ଏବେ ମଧ୍ୟ ପୂର୍ବଭଳି ରହିଛି। ଅବଶ୍ୟ ଭିତରଟିକୁ ସଂପୂର୍ଣ୍ଣ ଭାବରେ ବଦଳେଇ ଦେଇଛନ୍ତି କ୍ୟାଥେରିନ୍। ଏୟାର୍‌କଣ୍ଡିସନରଠାରୁ ଡିସ୍‌ୱାଶର୍ ପର୍ଯ୍ୟନ୍ତ ସବୁ ରହିଛି ଘର ଭିତରେ। କ୍ୟାଥେରିନ୍ ନିଜେ ଆମମାନଙ୍କୁ ଘର ଭିତର ବୁଲେଇ ଦେଖାଇଲେ। ଉପର ମହଲାର ଶୋଇବା ଘର ଦେଇ ସେ ଆମକୁ ବାଲକୋନିକୁ ନେଇଗଲେ। ମିତୁ, ଏ ଯେମିତି ଗୋଟିଏ ପିକ୍‌ଚର୍ ପୋଷ୍ଟକାର୍ଡ, ସାମ୍ନାରେ ବେ ବ୍ରିଜ୍ (Bay Bridge) ଆଉ ଅନ୍ୟ ଜଡରେ ସାନ୍‌ଫ୍ରାନ୍‌ସିସ୍‌କୋର ଡାଉନ୍ ଟାଉନ୍ ଅର୍ଥାତ୍ ଅଫିସ୍, ଦୋକାନ, ବଜାର ସବୁ ସେଇଠି। ରସିଆନ୍ ହିଲ୍ ତ ପାହାଡଟିଏ, ତେଣୁ ସେଇଠୁ ସହରଟି ଦିଶୁଥାଏ ଅନନ୍ୟ। କିଛି ସମୟ ସେଇଠି କଟେଇ ଆମେ କ୍ୟାଥେରିନ୍ ଓ ଜ୍ୟାକ୍‌ଙ୍କଠାରୁ ବିଦାୟ ନେଇ ବାହାରିଲୁ।

ରସିଆନ୍ ହିଲ୍ ଭଳି ସାନ୍‌ଫ୍ରାନ୍‌ସିସ୍‌କୋରେ ରହିଛି ଆଉ ୪୨ଟି ପାହାଡ। କିନ୍ତୁ ସହରର ଆୟତନ ମାତ୍ର ୪୯ ମାଇଲ୍। ତେଣୁ ରାସ୍ତାଘାଟ କେମିତି ହୋଇଥିବ ତୁ ଅନୁମାନ କରିପାରୁଥିବୁ। ପାହାଡ ଉପରେ ହିଁ ରାସ୍ତା ଘର ସବୁ ତିଆରି ହୋଇଛି। ଏହିଭଳି ରାସ୍ତାରେ ଅନଭିଜ୍ଞ ଲୋକଟିଏ ସହଜରେ ଗାଡି ଚଲେଇ ପାରିବ ନାହିଁ। କିନ୍ତୁ ରେବେକା ତ ଏଇ ସହରର ବାସିନ୍ଦା। ସେ ସୁନ୍ଦର ଭାବରେ ଗାଡି ଚଲେଇ ନେଉଥାଆନ୍ତି।

ଟମ୍‌ଙ୍କ ନିର୍ଦ୍ଦେଶରେ ସେ ଆମକୁ ପ୍ରଥମେ ନେଇଗଲେ ଗୋଲ୍‌ଡେନ୍ ଗେଟ୍ ବ୍ରିଜ୍ ନିକଟକୁ। ଆମେ ଆଗରୁ ବହୁତ ଥର ବ୍ରିଜ୍‌ଟିକୁ ଦେଖିଥିଲୁ। କିନ୍ତୁ ତାହାର ଇତିହାସ ସଂପର୍କରେ ଆମର ବିଶେଷ ଧାରଣା ନ ଥିଲା। ବ୍ରିଜ୍ ଉପର ଦେଇ ଗଲାବେଳେ ଟମ୍ ଧାରା ବିବରଣୀଟିଏ ଦେଇ ଚାଲିଥାଆନ୍ତି। ସାନ୍‌ଫ୍ରାନ୍‌ସିସ୍‌କୋ ଇତିହାସ ଉପରେ ତାଙ୍କର କି ଅଗାଧ ଜ୍ଞାନ।

ତୁ ତ ଜାଣିଛୁ ନିଶ୍ଚୟ, ସାନ୍‌ଫ୍ରାନ୍‌ସିସ୍‌କୋ ସହରର ପ୍ରଧାନ ଚିହ୍ନ ହେଉଛି ଏହି ଗୋଲ୍‌ଡେନ୍ ଗେଟ୍ ବ୍ରିଜ୍। ସହରଟିର ନାମ ନେଲେ ଆଗ ମନକୁ ଆସେ ଏହାରି ଛବି। କିନ୍ତୁ ଏଇ ବ୍ରିଜ୍‌ଟି ବେଶୀ ପୁରୁଣା ନୁହେଁ। ଏହାର ବୟସ ମାତ୍ର ଛପନ ବର୍ଷ। ଏହାକୁ ନିର୍ମାଣ କରାଇଥିଲେ ଜୋସେଫ୍ ଷ୍ଟ୍ରସ୍। ଷ୍ଟ୍ରସ୍ ତାଙ୍କର ଜୀବନ କାଳ ମଧ୍ୟରେ ୪୦୦ଟି ପୋଲ ନିର୍ମାଣ କରିଥିଲେ, କିନ୍ତୁ ଗୋଲ୍‌ଡେନ୍ ଗେଟ୍ ବ୍ରିଜ୍ ହିଁ ତାଙ୍କର ସର୍ବଶ୍ରେଷ୍ଠ କୃତି।

ସମୁଦ୍ର ଉପର ଦେଇ ପୋଲଟିଏ ନିର୍ମାଣ କରିବାର ଆବଶ୍ୟକତା ବହୁତ ଲୋକ ଅନୁଭବ କରିଥିଲେ ମଧ୍ୟ ଏହି ଯୋଜନାଟି ଅନେକ ବର୍ଷ ଧରି କେବଳ କାଗଜ ଉପରେ ରହିଯାଇଥିଲା। କାରଣ ସହରର ବିଭିନ୍ନ ଗୋଷ୍ଠୀ ଏଭଳି ପୋଲଟିଏ ନିର୍ମାଣ କରିବା ବିରୁଦ୍ଧରେ ଅଦାଲତରେ ମକଦ୍ଦମା କରିବା ଆରମ୍ଭ କରିଦେଇଥିଲେ। ସେମାନଙ୍କ ମଧ୍ୟରୁ କେତେକ ମନେ କରିଥିଲେ ଯେ ଏଭଳି ଗୋଟିଏ ପୋଲ ନିର୍ମାଣ କରିଲେ କେବଳ ସହରଟିର ନୁହେଁ, ସମଗ୍ର ଉପମହାଦ୍ୱୀପର ସୌନ୍ଦର୍ଯ୍ୟ ହ୍ରାସ ପାଇଯିବ। ଆଉ କେତେକ ମତ ଦେଇଥିଲେ ଯେ ଯେଉଁ ସ୍ଥାନରେ ଏତେ ବେଶୀ ଭୂମିକଂପ ହୁଏ, ସେଇଠି ଅଯଥା ଖର୍ଚ୍ଚ କରି ଗୋଟିଏ ପୋଲ ନିର୍ମାଣ କରିବାର କୌଣସି ମାନେ ହୁଏ ନାହିଁ।

କିନ୍ତୁ ଷ୍ଟ୍ରସ୍ ହାରି ଯାଇ ନ ଥିଲେ। ଅକ୍ଳାନ୍ତ ଭାବରେ ସେ ପୋଲ ନିର୍ମାଣ

କରିବା ସପକ୍ଷରେ ଯୁକ୍ତି କରିଯାଇଥିଲେ। ଶେଷରେ ତାଙ୍କୁ ଅନୁମତି ମିଳିଲା। ୩୫ ନିୟୁତ ଡଲାର୍ ଖର୍ଚ୍ଚରେ ୧୯୩୭ରେ ବ୍ରିଜ୍ ନିର୍ମାଣ ସଂପୂର୍ଣ୍ଣ ହେଲା।

ମିତୁ, ବାସ୍ତବରେ ପୋଲଟି ଅତି ସୁନ୍ଦର। କଳା ଓ ବିଜ୍ଞାନର ଏହିଭଳି ଅପରୂପ ସଂଯୋଗ ପ୍ରାୟ ଦେଖିବାକୁ ମିଳେ ନାହିଁ। ଦୁଇ ମାଇଲ୍ ଲମ୍ବା ଏହି ପୋଲଟି ସାନ୍‌ଫ୍ରାନ୍‌ସିସ୍‌କୋ ସହରରୁ ମ୍ୟାରିନ୍ କାଉଣ୍ଟି ପର୍ଯ୍ୟନ୍ତ ଲମ୍ବିଯାଇଛି। ଏଇଟି ନିର୍ମାଣ କରିବା ଦ୍ୱାରା କେତେ ଯେ ସୁବିଧା ହୋଇଛି, ତାହା ପ୍ରତିଦିନ ମ୍ୟାରିନ୍ କାଉଣ୍ଟିକୁ ବା ମ୍ୟାରିନ୍ କାଉଣ୍ଟିରୁ ସାନ୍‌ଫ୍ରାନ୍‌ସିସ୍‌କୋକୁ ଯାତାୟାତ କରୁଥିବା ଲୋକମାନେ ହିଁ କହିପାରିବେ। ଅଥଚ ଏଇଟି ନିର୍ମାଣ କରିବାର ଅନୁମତି ପାଇଁ ଷ୍ଟ୍ରସ୍‌ଙ୍କୁ କି କଷ୍ଟ ନ କରିବାକୁ ହୋଇଛି!

ଗୋଲ୍‌ଡେନ୍ ଗେଟ୍ ବ୍ରିଜ୍ ଦେଖି ସାରିବା ପରେ ଆମେ ଫେରିଆସିଲୁ ଗୋଲ୍‌ଡେନ୍ ଗେଟ୍ ପାର୍କ ନିକଟକୁ। ଏଇଟି ନିର୍ମିତ ହୋଇଥିଲା ଊନବିଂଶ ଶତାବ୍ଦୀର ଶେଷ ଭାଗରେ। ସେହି ସମୟରେ ସରକାର ଉପଲବ୍ଧି କଲେ ଯେ ସାନ୍‌ଫ୍ରାନ୍‌ସିସ୍‌କୋ ସହରର ଲୋକସଂଖ୍ୟା ଦିନକୁ ଦିନ ବଢ଼ିଚାଲିଛି। ସେହି ଅନୁସାରେ ସହରରେ ଗଢ଼ା ଚାଲିଛି ଇଟା, ପଥର ଓ ସିମେଣ୍ଟର ସୌଧମାନ। ଅଥଚ ବ୍ୟସ୍ତ ମଣିଷ ଜୀବନରେ ଆନନ୍ଦ ଭରି ଦେବା ପାଇଁ ଯଥେଷ୍ଟ ବଗିଚା ସହରରେ ନାହିଁ।

ସରକାର ଥରେ ନିଷ୍ପତ୍ତି ନେଇଯିବା ପରେ ଏହିପରି ଏକ ବଗିଚା ନିର୍ମାଣ କାର୍ଯ୍ୟ ଜୋର୍‌ସୋର୍‌ରେ ୧୮୭୦ ମସିହାରେ ଆରମ୍ଭ ହୋଇଗଲା। 'ପାର୍କ' ଶବ୍ଦଟି ଶୁଣି ତୁ ନିଶ୍ଚୟ ଭାବୁଥିବୁ ଏଇଟି ଆଉ ପାଞ୍ଚଟି ପାର୍କ ଭଳି ହୋଇଥିବ; ଏତେ ଗୁରୁତ୍ୱ ଦେବାର ବା କ'ଣ ଅଛି? କିନ୍ତୁ ମିତୁ, ଏହି ପାର୍କଟି ଛୋଟ ନୁହଁ, ଏଇଟି ଗଢ଼ା ଯାଇଛି ହଜାରେ ଏକର ଜମି ଉପରେ। ବର୍ତ୍ତମାନ ଗୋଲ୍‌ଡେନ୍ ଗେଟ୍ ପାର୍କଟି ସାନ୍‌ଫ୍ରାନ୍‌ସିସ୍‌କୋ ସହରର ଏକ ପ୍ରଧାନ ଆକର୍ଷଣ। କେବଳ ପର୍ଯ୍ୟଟକ ନୁହଁ, ସହରର ଲୋକମାନେ ମଧ୍ୟ ବ୍ୟସ୍ତ ଏକଟଣା ଜୀବନରୁ କିଛି ସମୟ ପାଇଁ ମୁକ୍ତି ପାଇବା ଆଶାରେ ଏଠାକୁ ଚାଲିଆସନ୍ତି। ଏଇଠି ବଗିଚା, ଖେଳପଡିଆଠାରୁ ଆରମ୍ଭ କରି ମିଉଜିଅମ୍, ରେଷ୍ଟୋରାଁ ସବୁ ରହିଛି।

ଗୋଲ୍‌ଡେନ୍ ଗେଟ୍ ପାର୍କଟି ଏତେ ବଡ ଯେ ଚାଲି ଚାଲି ଏହା ଭିତରେ ବୁଲିବା ସମ୍ଭବ ନୁହେଁ। ଗାଡିରେ ବୁଲିଲେ ମଧ୍ୟ ସବୁକିଛି ଯଦି ଜଣେ ଦେଖିବାକୁ ଚାହିଁବ, ଗୋଟିଏ ଦିନ ତା' ପାଇଁ ଯଥେଷ୍ଟ ହେବ ନାହିଁ। କେତେ ରକମର

ଫୁଲ ଭରା ବଗିଚା ଦେଖି ମୋର ଓହ୍ଲେଇ ସେଇଠି ବସିରହିବାକୁ ଇଚ୍ଛା ହେଉଥାଏ। କିନ୍ତୁ ହାତରେ ସମୟ କାହିଁ? ଟମ୍ କେବଳ ରାସ୍ତାରୁ ଗାଡି ଅଟକେଇ ଆମକୁ ସବୁ ଦେଖାଇ ଦେଉଥାଆନ୍ତି।

ପାର୍କର ପ୍ରାଚୀନତମ ସୌଧ ହେଉଛି କନ୍‌ଜରଭେଟରି। ଏଇଟି ଲଣ୍ଡନ୍‌ର 'କିଉ ଗାର୍ଡେନ୍‌ସ' ଅନୁକରଣରେ ତିଆରି ହୋଇଛି। ଏଇଠାରେ ରହିଛି 'ଗ୍ରୀନ୍ ହାଉସ୍' ଓ ବହୁ ରକମର ବଗିଚା। ପାର୍କର ପୂର୍ବଦିଗରେ ରହିଛି ତିନୋଟି ମିଉଜିଅମ୍। ଏଥି ମଧ୍ୟରୁ ବେଶୀ ଜଣାଶୁଣା ହେଉଛି 'ୟଙ୍ଗ ମେମୋରିଆଲ ମିଉଜିଅମ୍' ଓ 'ଏସିଆନ୍ ଆର୍ଟ ମିଉଜିଅମ୍'। ଏସିଆନ୍ ଆର୍ଟ ମିଉଜିଅମ୍ ନିକଟରେ ରହିଛି ପ୍ରସିଦ୍ଧ ''ଜାପାନିଜ୍ ଟି ଗାର୍ଡେନ୍''(Japanese Tea Garden)।

୧୮୯୪ ମସିହାରେ ଗୋଲ୍‌ଡେନ୍ ଗେଟ୍ ପାର୍କରେ ଗୋଟିଏ ବିରାଟ ମେଳାର ଆୟୋଜନ କରାଯାଇଥିଲା। ଏହି ମେଳାର ଗୋଟିଏ ଅଂଶ ଥିଲା 'ଜାପାନିଜ୍ ଗ୍ରାମ'। ଏଇଟି ଏତେ ସୁନ୍ଦର ଭାବରେ ନିର୍ମିତ ହୋଇଥିଲା ଯେ ମେଳା ଉଠିଯିବା ପରେ ମଧ୍ୟ ଏହାକୁ ଭାଙ୍ଗିବାକୁ କାହାର ହାତ ଗଲା ନାହିଁ। କ୍ରମଶଃ ଏହା ପାର୍କର ଗୋଟିଏ ଅଂଶ ହୋଇଗଲା। କେବଳ ଏହାର ନାମ ପରିବର୍ତ୍ତନ କରାଯାଇ ଏହାକୁ କୁହାଗଲା ''ଜାପାନିଜ୍ ଟି ଗାର୍ଡେନ୍''।

ମେଳା ସମୟରେ 'ଜାପାନିଜ୍ ଗ୍ରାମ'ର ଦେଖାଶୁଣା କରିବା ପାଇଁ ଜାପାନ୍‌ରୁ ଜଣେ ବ୍ୟକ୍ତିଙ୍କୁ ଅଣା ଯାଇଥିଲା। ସେ ହେଲେ ମାକୋଟା ହାଗିୱାରା। ପରେ ଯେତେବେଳେ ଜାପାନିଜ୍ ଗ୍ରାମଟି 'ଜାପାନିଜ ଟି ଗାର୍ଡେନ୍'ରେ ପରିବର୍ତ୍ତିତ ହେଲା, ସେତେବେଳେ ଏହାର ପରିଚାଳନା ଦାୟିତ୍ୱ ମଧ୍ୟ ମାକୋଟାଙ୍କୁ ଦିଆଯାଇଥିଲା। ମାକୋଟା ଆଉ ଜାପାନ୍ ଫେରିଯାଇ ନ ଥିଲେ। ପରେ ତାଙ୍କର ବଂଶଧରମାନେ ବଗିଚା ଭିତରେ ଥିବା ଜାପାନିଜ୍ ଚାହା ଦୋକାନଟିକୁ ଚଳାଇଥିଲେ। କିନ୍ତୁ ୧୯୪୨ ମସିହାରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ବହୁ ଜାପାନିଜ୍‌ଙ୍କ ସମେତ ମାକୋଟାଙ୍କ ବଂଶଧରମାନଙ୍କୁ ବନ୍ଦୀ କରିଦିଆଯାଇଥିଲା। ତା' ପରଠାରୁ ଆଜି ପର୍ଯ୍ୟନ୍ତ ଏହି ବଗିଚାର ପରିଚାଳନା ସାନ୍‌ଫ୍ରାନ୍‌ସିସ୍‌କୋ ସହର କରି ଆସୁଛି।

ମାକୋଟାଙ୍କ ବଂଶଧରମାନେ ଆରମ୍ଭ କରିଥିବା ଚାହା ଦୋକାନଟି ଏବେ ମଧ୍ୟ ରହିଛି ଏବଂ ପୂର୍ବ ଭଳି ଏଇଟି ଏବେ ମଧ୍ୟ ଭୀଷଣ ଜନପ୍ରିୟ। ଟମ୍ ଆମମାନଙ୍କୁ ସେଇଠିକୁ ନେଇଗଲେ। ଅଳ୍ପ ସମୟ ପରେ କିମୋନୋ ପିନ୍ଧା

ଝିଅଟିଏ ଆସି ଆମକୁ ଜାପାନିଜ୍ ଚାହା ଓ ଜାପାନିଜ୍ ବିସ୍କୁଟ୍ ଦେଇଗଲା। ସେଇଠି କିଛି ସମୟ କଟାଇ ଆମେ ପୁଣି ବାହାରିଲୁ।

ଏଥର ଟମ୍ ଆମକୁ ନେଇଗଲେ ଆୟତାକାର ଗୋଲ୍‌ଡେନ୍ ଗେଟ୍ ପାର୍କର ପଶ୍ଚିମ ପ୍ରାନ୍ତରେ ରହିଥିବା 'ଡଚ୍ ଉଇଣ୍ଡମିଲ' ନିକଟକୁ। ନେଦରଲ୍ୟାଣ୍ଡର ସୁପ୍ରସିଦ୍ଧ ଉଇଣ୍ଡମିଲ୍ ଅନୁକରଣରେ ଏଇଟି ନିର୍ମିତ ହୋଇଛି। ଆଉ ଏହାର ଚାରିପଟେ ରହିଛି ଟ୍ୟୁଲିପ୍ ବଗିଚା। ମୋର ମନେ ହେଲା ମୁଁ ଯେମିତି ଆମ୍‌ଷ୍ଟରଡ୍ୟାମ୍‌ରେ ଆସି ପହଞ୍ଚିଯାଇଛି।

ଅଳ୍ପ ଦୂରରେ ସମୁଦ୍ର। ସ୍ଥାନଟି ଅତି ସୁନ୍ଦର ଲାଗୁଥାଏ। ରୁମି, ଗିଟି ଉଇଣ୍ଡମିଲ୍ ଚାରିପଟେ ଦୌଡାଦୌଡି କରି ଖେଳ ଆରମ୍ଭ କରିଦେଲେ। ଦେଢ ବର୍ଷର ଡାକୋଟା ମଧ୍ୟ ଆନନ୍ଦରେ ଚିତ୍କାର କରି ସେମାନଙ୍କ ପଛେ ପଛେ ଧାଇଁବାରେ ଲାଗିଥାଏ। ସେଇଠି ପଡିଥିବା କାଠ ବେଞ୍ଚରେ ମୁଁ କିଛି ସମୟ ପାଇଁ ବସିଗଲି। ଟ୍ୟୁଲିପ୍ ବଗିଚାର ସୌନ୍ଦର୍ଯ୍ୟ ଉପଭୋଗ କରିବା ବେଳେ କେଜାଣି କାହିଁକି ହଠାତ୍ ମୋର ନିଜ ଦେଶ କଥା ମନେ ପଡିଗଲା। ମିତୁ, କାହିଁକି ଆମ ଦେଶରେ ଆମେ ବିଭିନ୍ନ ପର୍ଯ୍ୟଟକସ୍ଥଳୀକୁ ଏଇଭଳି ସୁନ୍ଦର କରି ରଖି ପାରୁ ନାହୁଁ? ସବୁ ଦୋଷ ତ ସରକାରଙ୍କ ମୁଣ୍ଡରେ ଲଦି ଦେଲେ ଚଳିବ ନାହିଁ। ଆମ ନାଗରିକମାନଙ୍କର ମଧ୍ୟ କିଛି କର୍ତ୍ତବ୍ୟ ରହିଛି। ଏଇ ଦେଶରେ ମୁଁ ଦୁଇଟି ଜିନିଷ ଲକ୍ଷ୍ୟ କରିଛି। ପ୍ରଥମଟି ହେଲା ଅଧିକାଂଶ ଲୋକ ଏଠି ଯେଉଁ କାମଟି କରନ୍ତି, ସେଇଟିକୁ ଖୁବ୍ ମନ ଦେଇ ସୁନ୍ଦର ଭାବରେ ସଂପୂର୍ଣ୍ଣ କରନ୍ତି। କାମଟି ବଗିଚାର ଘାସ କାଟିବା ହେଉ ବା କାନ୍ଥରେ କଣ୍ଟାଟିଏ ପିଟିବା ହେଉ। ଦ୍ୱିତୀୟ କଥାଟି ହେଲା ଏ ଦେଶର ଲୋକମାନେ ବହୁତ ବେଶୀ ସଚେତନ। କେବଳ ଶିକ୍ଷିତମାନଙ୍କ ମଧ୍ୟରେ ନୁହେଁ, ନିମ୍ନବର୍ଗର ମଣିଷମାନଙ୍କ ନିକଟରେ ମଧ୍ୟ ରାଜନୀତିକ ସଚେତନତାଠାରୁ ଆରମ୍ଭ କରି ସାମାଜିକ ସଚେତନତା ଦେଖିବାକୁ ମିଳେ। ବାସ୍ତବିକ, ଏହି ଦୁଇଟି ବିଷୟ ଏ ଦେଶର ଲୋକମାନଙ୍କଠାରୁ ସମସ୍ତଙ୍କର ଶିଖିବା ଉଚିତ୍।

ସେଇଠି ବେଞ୍ଚରେ ବସି ଏମିତି କେତେ କ'ଣ ଭାବି ଭାବି ଦିନର ବାକୀତକ ସମୟ କଟେଇଦେବାପାଇଁ ମୁଁ ପ୍ରସ୍ତୁତ ଥିଲି; କିନ୍ତୁ ଟମ୍ ବେଶୀ ସମୟ ବସିବାକୁ ଦେଲେ ନାହିଁ। ଆମକୁ ଦେଖାଇବା ପାଇଁ ସେତେବେଳେ ଆହୁରି କେତେ କ'ଣ

ବାକୀ ରହିଛି।

ଟମ୍ ଓ ରେବେକା ଗୋଲ୍‌ଡେନ୍ ଗେଟ୍ ପାର୍କରୁ ଆମକୁ ନେଇଗଲେ ଫିଶରମ୍ୟାନ୍‌ସ ହ୍ୱାର୍ଫ (Fisherman's Wharf) ନିକଟକୁ। ମିତୁ, ଏ ଯେମିତି ଭିନ୍ନ ଏକ ସହର। ରାସ୍ତା ଦୁଇଧାରର ଚକମକିଆ ଦୋକାନ, ରେଷ୍ଟୋରାଁମାନଙ୍କରୁ ଭାସି ଆସୁଥିବା ଖାଇବା ଜିନିଷର ବାସ୍ନା, ମାଳମାଳ ପର୍ଯ୍ୟଟକ- ମୋର କଟକର ବାଲିଯାତ୍ରା କଥା ମନେ ପଡିଗଲା। ଏଇଟା ହିଁ ତ ସାନ୍‌ଫ୍ରାନ୍‌ସିସ୍‌କୋର ଅସଲ ପର୍ଯ୍ୟଟକସ୍ଥଳୀ।

୧୮୪୮ରେ ଯେତେବେଳେ ଏହି ଅଞ୍ଚଳରେ ସୁନା ଆବିଷ୍କୃତ ହେଲା, ସେତେବେଳେ ଉତ୍ତର ଇଟାଲୀର ବହୁତ ଲୋକ 'ଯେରବା ବୁଏନା' ଚାଲି ଆସିଥିଲେ। ସୁନା ଉତ୍ପାଦନ ଶେଷ ହୋଇଯିବା ପରେ ମଧ୍ୟ ଏହି ଲୋକମାନେ ଏଠାରେ ରହିଗଲେ ଏବଂ ସମୁଦ୍ରରୁ ମାଛ ଧରି ଜୀବିକା ଉପାର୍ଜନ କରିଥିଲେ। ସେତେବେଳେ ସେମାନେ ଏହି 'ଫିଶରମ୍ୟାନ୍‌ସ ହ୍ୱାର୍ଫ'ଠାରେ ନିଜର ବସତି ସ୍ଥାପନ କରିଥିଲେ। ଏତେ ବର୍ଷ ପରେ ଅବଶ୍ୟ ଏଠି ବହୁ ପରିବର୍ତ୍ତନ ଘଟିଛି। କେଉଟମାନଙ୍କର ଘରଗୁଡିକର ସ୍ଥାନ ନେଇଛି ଦୋକାନ ବଜାର। ଆଉ ସେମାନଙ୍କର ଡଙ୍ଗା ବଦଳରେ ରହିଛି ଆଧୁନିକ ଷ୍ଟିମର୍। କିନ୍ତୁ ଏବେ ମଧ୍ୟ ଏଇଠି ରହିଛନ୍ତି ସିସିଲିରୁ ଆସିଥିବା ଲୋକମାନଙ୍କର ବଂଶଧରମାନେ। ସେମାନଙ୍କ ମଧ୍ୟରୁ ଅନେକ ମାଛ ଧରିବା ବ୍ୟବସାୟ ସହିତ ଯୋଡି ଦେଇଛନ୍ତି ରେଷ୍ଟୋରାଁ ବ୍ୟବସାୟ।

ଗାଡି ରଖି ଚାଲି ଚାଲି ବୁଲିବା ବେଳେ ଏଇ ରେଷ୍ଟୋରାଁମାନଙ୍କରୁ ଖୁବ୍ ସୁନ୍ଦର ବାସ୍ନା ପବନରେ ଭାସି ଆସି ଆମକୁ ଅସ୍ଥିର କରି ଦେଉଥାଏ। ସକାଳୁ ଜଳଖିଆ ଖାଇ ବାହାରିବା ପରେ ଦିନସାରା ବାଟରେ ଫଳ, ବିସ୍କୁଟ୍, କେକ୍- ଏଇଭଳି ବହୁତ ରକମର ଜିନିଷ ଆମେ ଖାଇଥିଲୁ। ତେଣୁ ବିଶେଷ ଭୋକ ନ ଥିଲା। କିନ୍ତୁ 'ଫିଶରମ୍ୟାନ୍‌ସ ହ୍ୱାର୍ଫ'ର ରେଷ୍ଟୋରାଁମାନଙ୍କରୁ ଭାସି ଆସୁଥିବା ବାସ୍ନାର ମୁକାବିଲା କରିବା ଆମମାନଙ୍କ ଭଳି ଖାଦ୍ୟପ୍ରିୟ ମଣିଷମାନଙ୍କ ପକ୍ଷରେ ସମ୍ଭବ ନ ଥିଲା।

ଖାଇସାରିବା ବେଳକୁ ପ୍ରାୟ ଦିନ ଅଢେଇଟା। ଆମ ଦୁଇଜଣଙ୍କୁ ଟିକିଏ କ୍ଳାନ୍ତ ଲାଗି ଆସୁଥାଏ। ଅଥଚ ଚଉଷଠି ବର୍ଷ ବୟସ୍କ ଟମ୍‌ଙ୍କର ଯେମିତି କ୍ଳାନ୍ତି ନାହିଁ। ସେ ପିଲାଙ୍କୁ ମତେଇବାରେ ଲାଗିଥାଆନ୍ତି, "କ'ଣ ଷ୍ଟିମରରେ ବୁଲିବା ?"

ପିଲାମାନେ ପୁଣି ଏ କଥାରେ ଅରାଜି ହୁଅନ୍ତେ? ସେମାନେ ଡେଇଁବା ଆରମ୍ଭ କରିଦେଲେ। 'ହଁ, ହଁ।' ଆମେ ଚାଲିକରି ଗଲୁ 'ପିଅର୍ ୪୧'କୁ। ଏଇଠି ଅସଂଖ୍ୟ ଷ୍ଟିମର୍ ରହିଥାଏ। ଆଉ ଷ୍ଟିମର୍‌ରେ ବୁଲିବା ପାଇଁ ଗୋଟିଏ ଜାଗାରେ ଟିକେଟ୍ ମଧ୍ୟ ବିକ୍ରି ହେଉଥାଏ। ଟମ୍ ଆମକୁ ଟିକେଟ୍ କିଣିବାକୁ ନ ଦେଇ ନିଜେ ଯାଇ ଟିକେଟ୍ କିଣିଆଣିଲେ। ମିତୁ ଜାଣିଚୁ, ମାତ୍ର ପଇଁଚାଳିଶ ମିନିଟର ଷ୍ଟିମର୍‌ଯାତ୍ରା ପାଇଁ ଜଣକା ପନ୍ଦର ଡଲାର ଲେଖାଏଁ ଟିକେଟ୍! ମତେ ଭାରି ଖରାପ ଲାଗିଲା, କିନ୍ତୁ ଟମ୍ କ'ଣ ଆଉ ଆମଠାରୁ ପଇସା ନିଅନ୍ତେ?

ଟିକେଟର ଦାମ୍‌ଟା ସିନା ବେଶୀ, ଷ୍ଟିମର୍ ଯାତ୍ରା କିନ୍ତୁ ବାସ୍ତବରେ ମନେ ରଖିବା ଭଳି। ଏମିତିରେ ସାନ୍‌ଫ୍ରାନ୍‌ସିସ୍‌କୋରେ ଡିସେମ୍ବର ମାସରେ ମେଘୁଆ ପାଗ ହୋଇ ଥଣ୍ଡା ପବନ ପିଟେ। ଭାଗ୍ୟକୁ ସେଦିନ ଥଣ୍ଡା ପବନ ବହୁଥିଲେ ମଧ୍ୟ ଆକାଶ ପରିଷ୍କାର ଥିଲା ଓ ସୂର୍ଯ୍ୟ ମଧ୍ୟ ଉଠିଥିଲେ। ତେଣୁ ଆଦୌ ଖରାପ ଲାଗୁ ନ ଥାଏ। ଦୂରରୁ କୋଳାହଳମୟ ସାନଫ୍ରାନ୍‌ସିସ୍‌କୋ ସହର ଛବିଟିଏ ଭଳି ମନେ ହେଉଥାଏ। ଆମ ଷ୍ଟିମରଟି ଗୋଲଡେନ୍ ଗେଟ୍ ବ୍ରିଜ୍ ତଳ ଦେଇ ଅନ୍ୟ ପାଖକୁ ଯାଇ ଆଲ୍‌କାଟ୍ରାଜ୍ ଦ୍ୱୀପ କଡ ଦେଇ ପୁଣି 'ପିଅର ୪୧'କୁ ଫେରି ଆସିଲା।

ତୁ ଆଲ୍‌କାଟ୍ରାଜ୍ ଜେଲ୍ କଥା ଶୁଣିଥିବୁ ନିଶ୍ଚୟ। ଆଲ୍‌କାଟ୍ରାଜ ଶବ୍ଦଟି ସ୍ପାନିଶ୍। ଏହାର ଅର୍ଥ ପେଲିକାନ୍। ୧୭୭୫ ମସିହାରେ କ୍ୟାପଟେନ୍ ଆୟାଲା ସମୁଦ୍ର ଭିତରେ ପେଲିକାନ୍ ଚଢେଇ ଭରା ଦ୍ୱୀପଟିଏ ଦେଖି ତା'ର ନାଁ ରଖିଥିଲେ 'ଆଲକାଟ୍ରାଜ୍'। ପରେ ଦେଖାଗଲା ଯେ ଏଇ ଦ୍ୱୀପଟି ଗୋଟିଏ ବନ୍ଦୀଗୃହ ହେବା ପାଇଁ ଉପଯୁକ୍ତ। କାରଣ ଦ୍ୱୀପଟିର ଚାରିପଟେ ରହିଛି ବଡ ବଡ ପଥର ଖଣ୍ଡମାନ। ସହଜରେ ବନ୍ଦୀଟିଏ ଜେଲ୍‌ରୁ ଖସି ଯାଇ ପାରିବ ନାହିଁ। ଫଳରେ ୧୮୫୦ରୁ ୧୯୬୩ ପର୍ଯ୍ୟନ୍ତ ଏଇଠି ଥିଲା 'ହାଇ - ସିକ୍ୟୁରିଟି ଜେଲ୍'। ୧୯୬୩ ମସିହାରେ କଂଗ୍ରେସ୍‌ର ଗୋଟିଏ କମିଟି ଆଲ୍‌କାଟ୍ରାଜ୍ ଉପରେ ରିପୋର୍ଟଟିଏ ଦେଇଥିଲେ। ସେଇଥିରେ ଦେଖାଯାଇଥିଲା ଯେ ଜଣେ ବନ୍ଦୀକୁ ଆଲ୍‌କାଟ୍ରାଜ୍‌ରେ ରଖିବା ଖର୍ଚ୍ଚ ନିଉୟର୍କର ଶ୍ରେଷ୍ଠ ହୋଟେଲ୍ "ୱାଲ୍‌ଡର୍ଫ ଆଷ୍ଟୋରିଆ'ରେ ଜଣେ ମଣିଷ ରହିବାର ଖର୍ଚ୍ଚଠାରୁ ଅଧିକ। କଂଗ୍ରେସ ରିପୋର୍ଟ ପଢିବା ପରେ ସେହି ବର୍ଷ ଆଟର୍ଣ୍ଣି ଜେନେରାଲ୍ ରବର୍ଟ କେନେଡି ଆଲ୍‌କାଟ୍ରାଜ୍‌ର ଜେଲ୍‌କୁ ବନ୍ଦକରି ଦେଇଥିଲେ।

ଏବେ ଏଠାରେ ରହିଛି ମିଉଜିଅମ୍‌ଟିଏ ।

ଷ୍ଟିମର ଯାତ୍ରା ପରେ ଆମ ଦେହରେ ଆଉ ଚାଲିବା ପାଇଁ ଶକ୍ତି ନ ଥାଏ । ଦେହରେ ଗରମ ପୋଷାକ ଥିଲେ ମଧ୍ୟ ଖୋଲା ଡେକ୍‌ରେ ପଇଁଚାଳିଶ ମିନିଟ୍ କାଳ ବସି ରହି ଦେହ ହାତ କୋଲ ମାରିଯାଇଥାଏ । ରେବେକାଙ୍କ ଭ୍ୟାନ୍ ଭିତରେ ବସିଯିବା ପରେ ଯେମିତି ଦେହରେ ଜୀବନ ଆସିଲା । ରେବେକା ଗାଡି ଭିତରେ ହିଟର୍ ଚଲେଇ ଦେଇଥାଆନ୍ତି । ଟମ୍ ଗାଡି ଭିତରେ ବସି କାହାକୁ କିଛି ନ କହି ନିବିଷ୍ଟ ଚିତ୍ତରେ ମ୍ୟାପ୍ ଦେଖୁଥାଆନ୍ତି । କିଛି ସମୟ ପରେ ସେ କହିଲେ ଯେ ଆଉ କେବଳ ଦୁଇଟି ଜିନିଷ ଦେଖାଇବା ପରେ ସେ ଆମ୍ଭମାନଙ୍କୁ ଘରକୁ ନେଇଯିବେ ।

ଫିଶରମ୍ୟାନ୍‌ସ୍ ହ୍ୱାର୍ଫରୁ ଗାଡି ନେଇ ଆମେ ପହଞ୍ଚିଗଲୁ ପାଓ୍ୱେଲ୍ ଓ ମାର୍କେଟ ଷ୍ଟ୍ରିଟ୍‌ର ଛକରେ । ସେଇଠି ହେଉଛି କେବଲ୍ କାର୍‌ର ଟର୍ମିନସ୍ । ତୁ କେବଲ୍ କାର୍ କଥା ପଢିଛୁ କି ନାହିଁ ମୁଁ ଜାଣିନାହିଁ । କିନ୍ତୁ କେବଲ୍ କାର୍ ହେଉଛି ସାନ୍‌ଫ୍ରାନ୍‌ସିସ୍‌କୋ ସହରର ଏକ ବିଶେଷତ୍ୱ । ସାନ୍‌ଫ୍ରାନ୍‌ସିସ୍‌କୋ ଆସିଲେ ଗୋଲଡେନ୍ ଗେଟ୍ ବ୍ରିଜ୍ ନ ଦେଖି କେହି ଯେମତି ଫେରିଯାଏ ନାହିଁ, ସେହିଭଳି କେବଲ୍ କାର୍‌ରେ ନ ବସି ବା ଅତି କମ୍‌ରେ କେବଲ୍ କାର୍ ନ ଦେଖି କେହି ଫେରିଯିବା କଥା ଚିନ୍ତା କରି ପାରେ ନାହିଁ । ଏକଦା ବହୁ ଆମେରିକାନ୍ ସହରରେ କେବଲ୍ କାର୍ ଚାଲୁଥିଲା, କିନ୍ତୁ ବର୍ତ୍ତମାନ ସାନ୍‌ଫ୍ରାନ୍‌ସିସ୍‌କୋ ବ୍ୟତୀତ ଆଉ କେଉଁଠି ଏହା ଦେଖାଯାଏ ନାହିଁ ।

ଆମେରିକାର ପ୍ରଥମ କେବଲ୍ କାର୍ ୧୮୭୩ ମସିହାରେ ଚାଲିଥିଲା । ଆଶ୍ଚର୍ଯ୍ୟର କଥା ଏହି ଯେ ସେତେବେଳକାର କେବଲ୍ କାର୍ ଓ ବର୍ତ୍ତମାନର କେବଲ୍ କାର୍ ଭିତରେ ବିଶେଷ ପାର୍ଥକ୍ୟ ନାହିଁ ।

ସେଦିନ ଆମର ଆଉ କେବଲ୍ କାର୍ ଚଢିବା ହେଲା ନାହିଁ । କାରଣ ସନ୍ଧ୍ୟା ବେଳେ କେବଲ୍ କାର୍‌ରେ ବସିବା ପାଇଁ ବହୁତ ଭିଡ ହୁଏ । ଲମ୍ବା ଲାଇନ୍‌ରେ ଠିଆ ହେବାର ସାମର୍ଥ୍ୟ ଆମର ସେତେବେଳେ ଆଉ ନ ଥିଲା ।

କେବଲ୍ କାର୍ ଟର୍ମିନାଲ୍‌ରୁ ରେବେକା ଆମକୁ ବୁଶ୍‌ଷ୍ଟ୍ରିଟ୍ ଦେଇ ନେଇଗଲେ ଗ୍ରାଣ୍ଡ ଆଭେନ୍ୟୁ ନିକଟକୁ । ସେଇଠି ତିଆରି ହୋଇଥାଏ ଶାଗୁଆ ଟାଇଲ୍‌ର ବଡ ଫାଟକଟିଏ । ଆଉ ଫାଟକର ଉଭୟ ପାର୍ଶ୍ୱରେ ଦୁଇଟି ଡ୍ରାଗନ୍ । ଫାଟକର

କାରୁକାର୍ଯ୍ୟରେ ପ୍ରାଚ୍ୟର ଚିହ୍ନ। ମୁଁ ଅବାକ୍ ହୋଇଗଲି। ଏ ପୁଣି କି ସ୍ଥାନ? ଟମ୍ ହସି କରି କହିଲେ, ''ଏଠି ତୁମକୁ ଓହ୍ଲେଇବାକୁ ପଡିବ।''

ମିତ୍ର, ଫାଟକ ଦେଇ ପଶିଯିବା ପରେ ଆମେ ଯେମିତି ପହଞ୍ଚିଗଲୁ ଅନ୍ୟ ଏକ ଦେଶରେ। ଏଇଟି ହେଉଛି ସାନ୍‌ଫ୍ରାନ୍‌ସିସ୍‌କୋର 'ଚାଇନା ଟାଉନ୍'। ଚୀନ୍‌କୁ ଛାଡିଦେଲେ ସବୁଠାରୁ ବେଶୀ ଚାଇନିଜ୍ ଅଛନ୍ତି ଏଇ ଚାଇନା ଟାଉନ୍‌ରେ। ଊନବିଂଶ ଶତାବ୍ଦୀରେ ପୃଥିବୀର ଅନ୍ୟାନ୍ୟ ଦେଶ ଭଳି ଚୀନ୍‌ରୁ ମଧ୍ୟ ବହୁଲୋକ ସୁନା ଲୋଭରେ ସାନ୍‌ଫ୍ରାନ୍‌ସିସ୍‌କୋ ଆସିଥିଲେ। ଚୀନ୍‌ରୁ ଆସିଥିବା ଦଳଟି ମଧ୍ୟରେ କେବଳ ପୁରୁଷମାନେ ହିଁ ଥିଲେ। କାରଣ କେହି ନିଜର ପରିବାର ନେଇ ଆସି ନ ଥିଲେ। ସେମାନେ ମନେ କରିଥିଲେ ଯେ ଥରେ ଅର୍ଥ ଉପାର୍ଜନ କରି ବସବାସ କରିଯିବା ପରେ ନିଜ ଆତ୍ମୀୟମାନଙ୍କୁ ଚୀନ୍‌ରୁ ନେଇ ଆସିବେ। କିନ୍ତୁ ପରିବାରଠାରୁ ଦୂରରେ ରହିବା ଫଳରେ ଏମାନେ ବହୁ ରକମର ଅସାମାଜିକ କାର୍ଯ୍ୟକଳାପରେ ଲିପ୍ତ ହୋଇ ପଡିଲେ। ସେତେବେଳେ ଏହି ଅଞ୍ଚଳ ଜୁଆ, ବେଶ୍ୟାବୃତ୍ତି, ଅଫିମ- ଏହି ସବୁ ପାଇଁ ପ୍ରସିଦ୍ଧ ଥିଲା।

ଏବେ ଆଉ ଏସବୁ ନାହିଁ। ଏକଦା ଯେଉଁଠି ଜୁଆ ଖେଳର ଆଡ୍ଡାମାନ ଥିଲା, ସେଇଠି ଏବେ ରହିଛି କେତେ ରକମର ଦୋକାନ। କେଉଁଠି ମୁକ୍ତାର ଗହଣାମାନ ମିଳୁଛି ତ କେଉଁଠି ମିଳୁଛି ଚୀନ୍, ହଙ୍ଗକଙ୍ଗରୁ ଅଣାଯାଇଥିବା ବିଭିନ୍ନ ହସ୍ତଶିଳ୍ପ। ସେତିକି ନୁହେଁ, ଏଠିକାର ଚାଇନିଜମାନେ ବର୍ତ୍ତମାନ ସାନ୍‌ଫ୍ରାନ୍‌ସିସ୍‌କୋ ସହରର ସଂସ୍କୃତି ସହ ସଂପୂର୍ଣ୍ଣ ଭାବରେ ମିଶିଯାଇଛନ୍ତି। ପ୍ରତିବର୍ଷ ଜାନୁଆରୀ ମାସରେ ଏହିଠାରେ ଚାଇନିଜ୍ ନୂଆବର୍ଷ ପାଳିତ ହୁଏ ଏବଂ ସେଥିପାଇଁ ପ୍ୟାରେଡ୍‌ଠାରୁ ଆରମ୍ଭ କରି ବହୁ ରକମର ଉତ୍ସବର ମଧ୍ୟ ଆୟୋଜନ କରାଯାଏ। ଏସବୁ ଆୟୋଜନରେ ପୂର୍ଣ୍ଣ ପ୍ରାଣରେ ଯୋଗ ଦିଅନ୍ତି ସାନ୍‌ଫ୍ରାନ୍‌ସିସ୍‌କୋବାସୀ। ଗତବର୍ଷ ଟେଲିଭିଜନ୍‌ରେ ମୁଁ ଚାଇନିଜ୍ ନୂଆ ବର୍ଷ ପାଳନ ଉତ୍ସବ ଦେଖିଥିଲି। କିନ୍ତୁ ଏଇ ଭଳି ଯେ ଗୋଟିଏ 'ଛୋଟ ଚୀନ୍' ସାନ୍‌ଫ୍ରାନ୍‌ସିସ୍‌କୋ ସହର ଭିତରେ ରହିଛି ତାହାର ଧାରଣା ନ ଥିଲା।

ପିଲାମାନଙ୍କୁ କାଗଜ ତିଆରି ଚାଇନିଜ ପଙ୍ଖା ଗୋଟିଏ ଗୋଟିଏ କିଣେଇ ଦେଇ ଆମେ ଫେରିଲୁ। ତା'ପରେ ହାଇଓ୍ୱେ ୧୦୧ ଧରି କୁପରଟିନୋ। ଘରେ ପହଞ୍ଚିବା ବେଳକୁ ଆମେ ଅତିରିକ୍ତ କ୍ଲାନ୍ତ ହୋଇ ପଡିଥିଲୁ। କିନ୍ତୁ ଭାରି ଖୁସି

ଲାଗୁଥାଏ । ଟମ୍‌ଙ୍କ ଭଳି ଗାଇଡ୍‌ଟିଏ ଥିଲେ ବୋଲି ସିନା ଆମେ ସହରଟି ଏତେ ସୁନ୍ଦର ଭାବରେ ଦେଖିପାରିଲୁ ।

ସାନ୍‌ଫ୍ରାନ୍‌ସିସ୍‌କୋ ସହରଟି ଯେ ସଂପୂର୍ଣ୍ଣ ଭାବରେ ଆମର ଦେଖା ହୋଇଗଲା ତା' ନୁହେଁ । କେବଲ୍ କାର୍‌ରେ ବସି ନ ବୁଲିଲେ, ଡେଭିସ୍ ହଲ୍‌ରେ ଅପେରାଟିଏ ନ ଦେଖିଲେ କ'ଣ ସାନ୍‌ଫ୍ରାନ୍‌ସିସ୍‌କୋ ବୁଲା ହୋଇଛି ବୋଲି କହି ହେବ ? ଆମକୁ ଘରେ ଛାଡି ଫେରିଯିବା ବେଳେ ଟମ୍ ଖୁବ୍ ସୁନ୍ଦର କଥାଟିଏ କହିଥିଲେ । ସେ କହିଥିଲେ 'ମୁଁ ସହରଟି ସହିତ ତୁମର ପରିଚୟ କରେଇ ଦେଲି, ଏଥର ସଂପର୍କ ବଢେଇବାଟା ତୁମ ଉପରେ ନିର୍ଭର କରେ ।'

ମୁଁ ଟମ୍‌ଙ୍କ କଥା ଭୁଲି ନାହିଁ । ଆସନ୍ତା ଶନିବାର ଷୋହଳ ତାରିଖ ଦିନ ଆଉ ଥରେ ସାନ୍‌ଫ୍ରାନ୍‌ସିସ୍‌କୋ ଯିବାର ଆୟୋଜନ କରିଛୁ । ଯେଉଁ ସବୁ ସ୍ଥାନ ଆମେ ପ୍ରଥମ ଥର ଦେଖି ପାରି ନ ଥିଲୁ ସେହିସବୁ ସ୍ଥାନ ଭଲ ଭାବରେ ଦେଖିବାର ଆଶା ମଧ୍ୟ ରଖିଛୁ । ମୋର କାହିଁକି ମନେ ହେଉଛି ଯେ ସେହିଦିନଟି ମଧ୍ୟ ଡିସେମ୍ବର ଛବିଶ ତାରିଖ ଭଳି ଖୁବ୍ ସୁନ୍ଦର କଟିବ ।

ତୁମମାନଙ୍କର ଖବର କ'ଣ ? ପୁଅ ତ ତୁମ ଦୁଇଜଣଙ୍କୁ ଖୁବ୍ ବ୍ୟସ୍ତ ରଖୁଥିବ । ବହୁତ ଦିନ ହେଲାଣି ତାକୁ ଦେଖିନାହିଁ । ତା'ର କେତୋଟି ଫଟୋ ପଠାଇବୁ ଆଉ ଶୀଘ୍ର ଚିଠି ଦେବୁ । ରହୁଛି ।

ଇତି

ତୋର 'ନାନୀ'

କୁପରଟିନୋ
୧ ଫେବୃଆରୀ, ୧୯୯୩

ସ୍ନେହର ମିତୁ,

ତୋ ଚିଠି ପାଇଛି। ସାନ୍‌ଫ୍ରାନ୍‌ସିସ୍‌କୋର ଫଟୋଗୁଡ଼ିକ ତୋତେ ଭଲ ଲାଗିଛି ଜାଣି ଖୁସି ଲାଗିଲା। ମୁଁ ଏହା ଭିତରେ ଜଣେ ସାଙ୍ଗଙ୍କ ହାତରେ ପୁଅ ପାଇଁ ସାନ୍‌ଫ୍ରାନ୍‌ସିସ୍‌କୋର ଟି ସାର୍ଟଟିଏ ଆଉ ତୁମମାନଙ୍କ ପାଇଁ କିଛି ପିନିଅନ୍ ବାଦାମ ପଠେଇଛି। ଭାରତରେ ପହଞ୍ଚି ସେ ତୋ ପାଖକୁ ପାର୍ସଲ କରି ପଠେଇଦେବ।

ଏଇ କିଛିଦିନ ତଳେ ଟମ୍ ହଫୋର୍ଡ ଆଲ୍‌ବୁକର୍କିରୁ ବାଦାମଗୁଡ଼ିକ ପଠେଇଥିଲେ। ଏହି ବାଦାମର ବିଶେଷତ୍ୱ ହେଲା ଏହା ଛଅ ବର୍ଷରେ ଥରେ ହୁଏ। ମୁଁ ଆଗରୁ କେବେ ଏମିତିଆ ବାଦାମ ଦେଖି ନଥିଲି। ମାଟିଆ ରଙ୍ଗର ପାଲିସ୍ ଖୋସା ଭିତରେ ଛୋଟ ମଞ୍ଜି। ନୂଆ ରକମର ଜିନିଷଟିଏ ଦେଖି ଖୁସି ହେବୁ ବୋଲି ଅଳ୍ପ କିଛି ତୋ ପାଖକୁ ପଠେଇଦେଲି। ଖାଇ କରି ଲେଖିବୁ କେମିତି ଲାଗିଲା।

ଭୀଷଣ ସ୍ନେହୀ ମଣିଷ ଏଇ ଟମ୍ ହଫୋର୍ଡ। ତାଙ୍କ ସହିତ ପରିଚୟ ହେବା ପରଠାରୁ ଆଜିଯାଏ ସେ ଚିଠି ଲେଖି, ଫୋନ୍ କରି ବା ଛୋଟ ଛୋଟ ଉପହାର ପଠେଇ ଆମ ସହିତ ସୁନ୍ଦର ସମ୍ପର୍କଟିଏ ସଞ୍ଜୀବିତ କରି ରଖିଛନ୍ତି। ତୋତେ ତ ପୂର୍ବଥର ଲେଖିଥିଲି ଯେ ଟମ୍ ହଫୋର୍ଡଙ୍କ ସହିତ ତୋ ଭାଇନାଙ୍କର ପରିଚୟ ହୋଇଥିଲା ବଡ ନାଟକୀୟ ଭାବରେ। ଘଟଣାଟି ଘଟିଥିଲା

ପ୍ରାୟ ଚାରିବର୍ଷ ତଳେ ସାନ୍‌ଫ୍ରାନ୍‌ସିସ୍‌କୋର ଭାରତୀୟ କନ୍‌ସୁଲେଟ୍‌ରେ। ସେଥର ଗୋଟିଏ କନ୍‌ଭେନ୍‌ସନ୍‌ରେ ଯୋଗ ଦେବା ପାଇଁ ତୋ ଭାଇନା ସାନ୍‌ଫ୍ରାନ୍‌ସିସ୍‌କୋ ଆସିଥିଲେ। କିଛି ଗୋଟିଏ କାମରେ ସେଦିନ ତାଙ୍କୁ ଭାରତୀୟ କନ୍‌ସୁଲେଟ୍ ଯିବାକୁ ହୋଇଥିଲା। କାମ ସରିବା ପରେ ଟ୍ୟାକ୍‌ସି ଧରି ଷ୍ଟେସନ ଫେରିବା କଥା। କିନ୍ତୁ ସେଦିନ କେଜାଣି କାହିଁକି ଗୋଟିଏ ବି ଟ୍ୟାକ୍‌ସି ମିଳିଲା ନାହିଁ। କନ୍‌ସୁଲେଟ୍‌ର ଜଣେ କ୍ଲର୍କ ଫୋନ୍ କରି ଟ୍ୟାକ୍‌ସି ଡକେଇବାର ଚେଷ୍ଟା କଲେ। କିନ୍ତୁ ସଫଳ ହେଲେ ନାହିଁ।

ଏଣେ ଟ୍ରେନ୍ ସମୟ ହୋଇଯାଉଥାଏ। ତାଙ୍କର ବ୍ୟସ୍ତତା ଦୂରରୁ ଲକ୍ଷ୍ୟ କରୁଥିଲେ ଜଣେ ବୟସ୍କ ଭଦ୍ରଲୋକ। ସେ ଟମ୍ ହଫୋର୍ଡ। ଟମ୍ ଭାରତୀୟ ଭିସା ଆଣିବା ପାଇଁ କନ୍‌ସୁଲେଟ୍‌କୁ ଯାଇଥିଲେ ସେଇଦିନ। କିଛି ସମୟ ତୋ ଭାଇନାଙ୍କର ବ୍ୟସ୍ତତା ଲକ୍ଷ୍ୟ କରିବା ପରେ ସେ ତାଙ୍କ ନିକଟକୁ ଆସି ନିଜର ପରିଚୟ ଦେଲେ ଏବଂ କହିଲେ ଯେ ତାଙ୍କ ପାଖରେ ଗାଡି ଅଛି। ଯଦି ଇଚ୍ଛା କରନ୍ତି ତାଙ୍କୁ ସେ ଷ୍ଟେସନ ପର୍ଯ୍ୟନ୍ତ ଲିଫ୍‌ଟ ଦେଇ ପାରିବେ। ମିତୁ, ଅଜଣା ଅଶୁଣା ପୁଣି ଭିନ୍ନ ଦେଶର ଲୋକଟିଏ ସହିତ କେହି ହଠାତ୍ କରି ଆମେରିକାରେ କଥା କହେ ନାହିଁ। ତେଣୁ ଟମ୍‌ଙ୍କର ଏଭଳି ପ୍ରସ୍ତାବ ଶୁଣି ତୋ ଭାଇନା ଆଶ୍ଚର୍ଯ୍ୟ ହୋଇଗଲେ। କିନ୍ତୁ ସେତେବେଳେ ଟ୍ରେନ୍ ପାଇଁ ସମୟ ଥାଏ ବହୁତ କମ୍। ଟମ୍‌ଙ୍କ ପ୍ରସ୍ତାବକୁ ଆଗ୍ରହ ସହିତ ଗ୍ରହଣ କରିନେଲେ ସେ।

ସାନ୍‌ଫ୍ରାନ୍‌ସିସ୍‌କୋର ଭିଡ ରାସ୍ତାରେ ବାଟ ଖୋଜି ଖୋଜି ଷ୍ଟେସନକୁ ଯିବାବେଳେ ଦୁଇଜଣଙ୍କ ମଧ୍ୟରେ ବେଶ୍ କିଛି କଥାବାର୍ତ୍ତା ହୋଇଥିଲା। ଆଉ ସେହି ଅଧଘଣ୍ଟାକର କଥାବାର୍ତ୍ତାରେ ବଡ ଅଦ୍ଭୁତ ଭାବରେ ପରସ୍ପର ପ୍ରତି ସୌହାର୍ଦ୍ଦ୍ୟ ଜନ୍ମିଯାଇଥିଲା।

ମିତୁ, ଜୀବନରେ ଏମିତି ବହୁତ ଲୋକଙ୍କ ସହିତ ଚିହ୍ନା ପରିଚୟ ହୁଏ। କିନ୍ତୁ ସମସ୍ତଙ୍କ ସହିତ ତ ବନ୍ଧୁତ୍ୱ ହୁଏ ନାହିଁ। ପୁଣି ଯେଉଁ କେତେଜଣଙ୍କ ସହିତ ବନ୍ଧୁତ୍ୱ ସ୍ଥାପିତ ହୋଇଯାଏ, ସେହିମାନଙ୍କ ସହିତ ଯେ ଦୀର୍ଘଦିନ ପାଇଁ ସମ୍ପର୍କ ରହେ ତାହା ମଧ୍ୟ ନୁହଁ। ଗୋଟିଏ ବା ଉଭୟ ପକ୍ଷର କ୍ରମଶଃ ଉଦାସୀନତା ବନ୍ଧୁତ୍ୱରେ ଭଟ୍ଟା ପକେଇ ଦିଏ।

ଆଉ ସେଦିନର ପରିସ୍ଥିତି ଦେଖ। ଗାଡିରେ ଲିଫ୍‌ଟ ଦେବା ସମୟରେ ଯାହା କଥାବାର୍ତ୍ତା। ପୁଣି ଦୁଇଜଣଙ୍କ ମଧ୍ୟରେ କେବଳ ବୟସ, ଭାଷା ବା

ଧର୍ମର ତାରତମ୍ୟ ନୁହଁ, ମଝିରେ ରହିଥିଲା ଦୁଇ ମହାସାଗରର ଦୂରତ୍ୱ। ବନ୍ଧୁତ୍ୱ ଦୀର୍ଘସ୍ଥାୟୀ ହେବାର କୌଣସି ସମ୍ଭାବନା ନ ଥିଲା। କିନ୍ତୁ କେମିତି କେଜାଣି ସମ୍ପର୍କର ମୂଳଦୁଆ ପଡିଗଲା।

ଟମ୍‌ଙ୍କ ସହିତ ଯିବାବେଳେ ତୋ ଭାଇନା ଜାଣିଲେ ଯେ ଟମ୍ ଖୁବ୍ ଶୀଘ୍ର ଭାରତ ଯିବାର ଯୋଜନା କରୁଛନ୍ତି। ଆଉ ତାଙ୍କ ଯୋଜନାରେ ବାଙ୍ଗାଲୋର ଯିବାର ସମ୍ଭାବନା ମଧ୍ୟ ରହିଛି। ଗାଡିରୁ ଓହ୍ଲେଇ ଷ୍ଟେସନ୍‌କୁ ଯିବାବେଳେ ତୋ ଭାଇନା ପକେଟ୍‌ରୁ ନିଜ କାର୍ଡଟିଏ କାଢି ଟମ୍‌ଙ୍କ ହାତକୁ ବଢେଇ ଦେଲେ। ଆଉ କହିଲେ, ''ବାଙ୍ଗାଲୋର୍ ଯଦି ଆସିବେ ମତେ ନିଶ୍ଚୟ ଥରେ ଫୋନ୍ କରିବେ। ଆପଣଙ୍କୁ ବାଙ୍ଗାଲୋର୍ ବୁଲେଇ ଦେଖାଇବାର ଦାୟିତ୍ୱ ମୋର।''

ଟମ୍ ମୁହୂର୍ତ୍ତେ ଚୁପ୍ ହୋଇଗଲେ। ତା'ପରେ ଚଟ୍ କରି ତୋ ଭାଇନାଙ୍କର ହାତ ଧରି ଅଟକେଇ ଦେଇ କହିଲେ, ''Don't do it! ମତେ ତୁମ କାର୍ଡ ଦିଅ ନାହିଁ। ଯଦି କାର୍ଡ ଦେବ ତା'ହେଲେ ମୁଁ ହୁଏତ ସତରେ ତୁମ ପାଖରେ ପହଞ୍ଚିଯିବି। ସେତେବେଳେ ପୁଣି ଅନୁତାପ କରି ଭାବିବ ଯେ କେଉଁଠୁ ଆସି ବୁଢା ମୁଣ୍ଡରେ ବସିଲା।''

ତାଙ୍କ କଥା ଶୁଣି ହସିଥିଲେ ତୋ ଭାଇନା। ''ଥରେ ଆସି ମୁଣ୍ଡରେ ବସି କରି ଦେଖନ୍ତୁ ତ!'' ଏତିକି କହି ଟ୍ରେନ୍ ଧରିବାକୁ ତରତର ହୋଇ ଚାଲିଯାଇଥିଲେ ସେ।

ବାଙ୍ଗାଲୋର୍ ଫେରିବା ପରେ କଥାରେ କଥାରେ ଏଇ ଟମ୍‌ଙ୍କ କଥା ସେ ମତେ କହିଥିଲେ। ତା'ପରେ ବେଶ୍ କିଛି ମାସ କଟିଗଲା। ଟମ୍‌ଙ୍କ କଥା ପ୍ରାୟ ଆମେ ଭୁଲି ଯାଇଥିଲୁ। ଦିନକର କଥା। ଅଫିସ୍‌ରେ ବସି ତୋ ଭାଇନା କାମ କରୁଥିଲେ। ଫୋନ୍‌ଟିଏ ଆସିଲା।

''ହାଏ ସୁବ୍ରତ। ଦିସ୍ ଇଜ୍ ଟମ୍।'' ଚାରିମାସ ପରେ ଟମ୍‌ଙ୍କ ସ୍ମୃତି କିଛିଟା ଝାପ୍‌ସା। ହଠାତ୍ 'ଟମ୍' ନାଁ ଶୁଣି ବୋଧହୁଏ ସେ ସାମାନ୍ୟ ଚିନ୍ତାରେ ପଡିଗଲେ।

''ଟମ୍ ହଫୋର୍ଡ। କ'ଣ ଭୁଲିଯାଇଛ? ମୁଁ କ'ଣ କହିଥିଲି? ମତେ କାର୍ଡ ଦେଲେ ନିଶ୍ଚୟ ତୁମ ସହିତ ଯୋଗାଯୋଗ କରିବି।''

ଟମ୍!! ତୋ ଭାଇନା ସତରେ ବଡ ଖୁସି ହୋଇଗଲେ। କହିଲେ, ''ହଠାତ୍ ଫୋନ୍‌ରେ ଆପଣଙ୍କ ସ୍ୱର ଶୁଣି ଠିକ୍ ବୁଝି ପାରିଲି ନାହିଁ। କିନ୍ତୁ ଆପଣଙ୍କ

କଥା ଭୁଲି ନାହିଁ। କେଉଁଠାରୁ କହୁଛନ୍ତି ?''

ଟମ୍ ବାଙ୍ଗାଲୋର୍‌ରେ ସେଇଦିନ ସକାଳେ ପହଞ୍ଚି ଗୋଟିଏ ହୋଟେଲ୍‌ରେ ରୁମ୍‌ଟିଏ ନେଇଥିଲେ। ସେଇ ହୋଟେଲ୍‌ରେ ପହଞ୍ଚିଗଲେ ତୋ ଭାଇନା। ଟମ୍‌ଙ୍କୁ କହିଲେ, ''ଜିନିଷପତ୍ର ପ୍ୟାକ କରି ଚାଲନ୍ତୁ।'' ଟମ୍ କିଛି ବୁଝିପାରିଲେ ନାହିଁ। ''ଏଇ ତ ଆସି ପହଞ୍ଚିଲି। ଆଉରି ଦୁଇଦିନ ବାଙ୍ଗାଲୋର୍‌ରେ ରହିବି ମୁଁ। ଜିନିଷପତ୍ର ପ୍ୟାକ୍ କରିବି କାହିଁକି ?''

''ବାଙ୍ଗାଲୋର୍‌ରେ ତ ରହିବେ। କିନ୍ତୁ ହୋଟେଲ୍‌ରେ ନୁହଁ, ଆମ ଘରେ।''

ଟମ୍ ସାମାନ୍ୟ ଇତସ୍ତତଃ ହେଲେ। କହିଲେ, ''ମୋର କିଛି ଆପତ୍ତି ନାହିଁ। କିନ୍ତୁ ତୁମେ କ'ଣ ତୁମ ସ୍ତ୍ରୀଙ୍କଠାରୁ ମୋ ରହିବା ବିଷୟରେ ଅନୁମତି ନେଇଛ ?''

''ଅନୁମତି ନେବାର କୌଣସି ଆବଶ୍ୟକତା ନାହିଁ। ମୋ ସାଙ୍ଗମାନେ ଏମିତି ଆସି ପହଞ୍ଚନ୍ତି। ସେ ଏ ସବୁରେ ଅଭ୍ୟସ୍ତ।''

ଏଭଳି ଉତ୍ତରରେ ଟମ୍ ସଂପୂର୍ଣ୍ଣ ରୂପରେ ସନ୍ତୁଷ୍ଟ ହୋଇ ପାରିଲେ ନାହିଁ। କିନ୍ତୁ ଆଉ କିଛି ନ କହି ହୋଟେଲ୍‌ର ବିଲ୍ ଛିଣ୍ଡାଇ ଗାଡିରେ ବସିଲେ। ଆମ ଘର ପାଖରେ ଗାଡି ପହଞ୍ଚିଲା। ଅଥଚ ଟମ୍ ଗାଡିରୁ ଓହ୍ଲେଇବାକୁ ନାରାଜ। ''ତୁମେ ଆଗ ଯାଇ ତୁମ ସ୍ତ୍ରୀଙ୍କୁ ମୋ ଆସିବା କଥା କୁହ। ସେ ରାଜି ହେଲେ ତେବେ ଯାଇ ମୁଁ ଘରେ ପଶିବି। ...ତୁମେ ଜାଣିନ, ଆମ ଦେଶରେ ଏଇଭଳି ଘଟଣାରୁ ଡିଭୋର୍ସ ହୋଇଯାଏ।''

''ଆପଣ ନିଶ୍ଚିନ୍ତ ରହନ୍ତୁ, ସେଭଳି କିଛି ଘଟିବାର ସମ୍ଭାବନା ଆଦୌ ନାହିଁ! ମୁଁ ତ କହିଛି ଆପଣଙ୍କୁ, ମୋ ସ୍ତ୍ରୀ ଏଥିରେ ଅଭ୍ୟସ୍ତ।''

ମିତୁ, ଟମ୍ ଅବା କେମିତି ଜାଣିବେ, ଗତ ନଅବର୍ଷ ଭିତରେ ଏମିତି ଅଧା ଚିହ୍ନା ବା ଅଚିହ୍ନା କେତେ ଲୋକଙ୍କୁ ତୋ ଭାଇନା ଘରକୁ ଧରି ଆଣିଛନ୍ତି। କିଏ ଓଳିଏ ରହି ଖାଇପିଇ ଯାଇଛି ତ କିଏ ତିନି ଚାରି ଦିନ ରହିଛି। ମୋର ଏ ସବୁରେ ଅଭ୍ୟସ୍ତ ନ ହୋଇ ଅନ୍ୟ ଗତି ଅଛି ?

ଶେଷରେ ବହୁତ ବୁଝାଇବା ପରେ ଟମ୍ ଗାଡିରୁ ଓହ୍ଲେଇଲେ। କଲିଂବେଲ୍ ଶବ୍ଦରେ ମୁଁ କବାଟ ଖୋଲି ତୋ ଭାଇନାଙ୍କ ସହିତ ଜଣେ ବିଦେଶୀ ଭଦ୍ରଲୋକଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲି। ଟମ୍‌ଙ୍କ ସହିତ ସେ ମୋର ପରିଚୟ କରେଇ ଦେଲେ। ମୁଁ ତାଙ୍କୁ ଡାଇଁଘରେ ବସାଇ ଚାହା ପିଇବାକୁ ଦେଲି। ପିଲାମାନଙ୍କ

ରହିବା ଘରେ ହାତ ବୁଲେଇ ଆଣି ସେଇଠି ଟମ୍‌ଙ୍କ ରହିବାର ବ୍ୟବସ୍ଥା କରିଦେଲି। ଟମ୍‌ଙ୍କ କଥା ଶୁଣିବା ପରଠାରୁ ଏମିତି ଗୋଟିଏ ସମ୍ଭାବନା ବିଷୟରେ ତ ମୁଁ ଅଳ୍ପ ବହୁତ ପ୍ରସ୍ତୁତ ଥିଲି। ତେଣୁ ମୋତେ ଆଦୌ ଅଖାଡୁଆ ଲାଗିଲା ନାହିଁ।

କିନ୍ତୁ ଟମ୍ ଅବାକ୍ ହୋଇଯାଉଥାଆନ୍ତି। ପୂର୍ବରୁ କୌଣସି ଖବର ଦେଇ ନ ଥିବା ଲୋକଟିଏକୁ ଆମେ ଯେ ବିନା ଦ୍ୱିଧାରେ ଆଣି ନିଜ ଘରେ ରଖେଇଲୁ, ଏକଥା ସେ ବିଶ୍ୱାସ କରିପାରୁ ନ ଥାଆନ୍ତି। ସେ ଯାହା ହେଉ, ଅଳ୍ପ ସମୟ ମଧ୍ୟରେ ଟମ୍‌ଙ୍କ ସହିତ ପିଲା ଦୁଇଜଣଙ୍କର ଓ ଆମର ବନ୍ଧୁତ୍ୱ ଜମିଗଲା। ଟମ୍ ରୋଷେଇ ଘରେ ପଶି ଗୁଟି ତିଆରି ଦେଖିଲେ। 'ପାମ୍ପଡ ଭଜା' ପଦ୍ଧତିଟିକୁ କାଗଜରେ ଟିପି ନେଲେ। ଆଉ ମୁଁ ଦୁଇ ଟଙ୍କାରେ ଘରପାଖ ଦୋକାନରୁ କିଣି ଥିବା ଗୋଟିଏ ଫୁଲପକା ପ୍ଲାଷ୍ଟିକର ଚାହାଛଣା ଦେଖି କହିଲେ, "ଯଦି କିଛି ମନେ ନ କର, ମୁଁ ଏଇଟିକୁ ଆମେରିକା ନେବାକୁ ଚାହେଁ। ଏଭଳି ସୁନ୍ଦର ଜିନିଷ ମୁଁ କେବେହେଲେ ଦେଖିନାହିଁ।"

ଦୁଇଟି ଦିନ କେମିତି ଯେ କଟିଗଲା ଜଣା ପଡିଲା ନାହିଁ। ଆମ ସହିତ ବାଙ୍ଗାଲୋର୍ ସହର ବୁଲି ଦେଖିଲେ ଟମ୍। ତାଙ୍କୁ ଆମେ 'ଦସ୍‌ପ୍ରକାଶ'ରେ ଦୋସା, ଇଡଲୀ ଖୁଆଇଲୁ। କଟେଜ୍ ଏମ୍ପୋରିଅମ୍‌ରୁ ତାଙ୍କ ଝିଅ, ନାତୁଣୀ ଓ ଝିଆରୀ ପାଇଁ ରୁପା କାନଫୁଲ ଓ ଚୁଡୀ କିଣେଇ ଦେଲୁ। ଟମ୍ ଫେରିଗଲାବେଳେ ମନେ ହୋଇଥିଲା ଯେମିତି ଆମର ବହୁ ପରିଚିତ ବନ୍ଧୁ ଜଣେ ବିଦାୟ ନେଉଛନ୍ତି।

ଟମ୍ ଫେରିଯିବାର କିଛି ମାସ ପରେ ଆମେ ଆମେରିକା ଆସିଲୁ। କୁପରଟିନୋରେ ଘରଭଡା ନେବାର ଅଳ୍ପ କେତେଦିନ ପରେ ଦିନେ ଫୋନ୍ କରି ଆମ ଘରେ ଆସି ପହଞ୍ଚିଗଲେ ରେବେକା- ଟମ୍‌ଙ୍କ ଝିଅ। ତାଙ୍କ ହାତରେ ଟମ୍ ଏଠିକା ରାସ୍ତାଘାଟର ମାନଚିତ୍ର, କେତେକ ଦରକାରୀ ବହି- ଏମିତି କେତେ କ'ଣ ଛୋଟ ଛୋଟ ଜିନିଷ ପଠେଇଥିଲେ। ଆମେରିକା ସହିତ ଆମକୁ ଭଲ ଭାବରେ ପରିଚିତ କରେଇବା ପାଇଁ କ୍ରମାଗତ ଭାବରେ ଚେଷ୍ଟା କରି ଯାଉଥିଲେ ସେ।

ମିତୁ, ଏଇ ଟମ୍ ଏବେ ଆଲବୁକର୍କିରେ ନିଜ ଘର କିଣି ସୁନ୍ଦର ଅବସରପ୍ରାପ୍ତ ଜୀବନ କଟଉଛନ୍ତି। ଭବିଷ୍ୟତ ପାଇଁ ସଞ୍ଚିତ ଅର୍ଥ ରହିଛି। ପୁଅଝିଅ ପ୍ରତିଷ୍ଠିତ। ଅଥଚ ତାଙ୍କର ପିଲାଦିନ ବହୁ ଦୁଃଖକଷ୍ଟରେ କଟିଥିଲା। ମୁଁ ଟମ୍‌ଙ୍କ ମୁହଁରୁ ତାଙ୍କ ନିଜ ଜୀବନ କାହାଣୀ ଯାହା ଶୁଣିଛି ତାହାହିଁ ଲେଖୁଛି। ଟମ୍ ୧୯୨୪

ମସିହାରେ ଓହାଇଓରେ ଜନ୍ମ ହୋଇଥିଲେ। ତାଙ୍କ ବାପା ଥିଲେ ଜଣେ କେମିଷ୍ଟ। ବେଶ୍ ଭଲରେ ପାଞ୍ଚଜଣିଆ ପରିବାରଟି ତାଙ୍କର ଚଳି ଯାଉଥିଲା। ଡିପ୍ରେସନ୍ ସମୟର ଅଭାବ ଅସୁବିଧା ଛୁଇଁ ପାରି ନଥିଲା ସେମାନଙ୍କୁ। କିନ୍ତୁ ଯେତେବେଳେ ଟମ୍‌ଙ୍କର ବୟସ ବାର, ସେତେବେଳେ ତାଙ୍କ ବାପାଙ୍କର ମୃତ୍ୟୁ ହୋଇଗଲା। ତାଙ୍କ ମା' ଚାକିରୀ କରୁ ନ ଥିଲେ। ଫଳରେ ସଂସାରର ବୋଝ ଆସି ପଡ଼ିଲା ଟମ୍‌ଙ୍କ ମୁଣ୍ଡରେ। ବାରବର୍ଷ ବୟସରେ 'ନିଉଜ୍ ପେପର ବୟ' ହିସାବରେ କାମ ଆରମ୍ଭ କଲେ ସେ। ଆଉ ସେଥିପାଇଁ ତାଙ୍କୁ ଦରମା ମିଳୁଥିଲା ସପ୍ତାହକୁ ଛଅ ଡଲାର୍। ନିଜ ପାଇଁ ଗୋଟିଏ ଡଲାର୍ ରଖି ବାକୀ ପାଞ୍ଚ ଡଲାର୍ ସେ ମା'ଙ୍କୁ ଦେଇ ଦେଉଥିଲେ। କିନ୍ତୁ କେବଳ ସେତିକିରେ କ'ଣ ଗୋଟିଏ ପରିବାରର ଖର୍ଚ୍ଚ ଚଳେ? ବାଧ୍ୟ ହୋଇ ଟମ୍‌ଙ୍କର ମା'ଙ୍କୁ 'ୱେଲ୍‌ଫେଆର୍' ବା ସରକାରୀ ସାହାଯ୍ୟ ନେବାକୁ ହୋଇଥିଲା।

ତୁ ତ ଜାଣିଛୁ ନିଶ୍ଚୟ, ଆମେରିକାରେ ଷୋହଳ ବର୍ଷ ହୋଇଗଲେ ପୁଅ ଝିଅଙ୍କୁ ଗାଡି ଚଳେଇବାର ଅନୁମତି ମିଳିଯାଏ। ସ୍କୁଲ ପରେ ପରେ ହିଁ ଅଧିକାଂଶ କ୍ଷେତ୍ରରେ ମା', ବାପା ପିଲାମାନଙ୍କ ପାଇଁ ଗାଡି କିଣି ଦିଅନ୍ତି। କିନ୍ତୁ ଟମ୍‌ଙ୍କ ପରିବାରର ଯେଉଁ ଅବସ୍ଥା, ସେ ପରିସ୍ଥିତିରେ ପୁରୁଣା ଗାଡି ତ ଦୂର କଥା, ସାଇକେଲ୍‌ଟିଏ ମଧ୍ୟ କିଣିବାର କ୍ଷମତା ତାଙ୍କର ନଥିଲା। ୧୯୪୨ ମସିହାରେ ହାଇସ୍କୁଲ୍ ପାଶ୍ କରିବା ପରେ ୧୯୪୩ରେ ସେ ମର୍ଚ୍ଚାଣ୍ଟ ନେଭିରେ ଯୋଗ ଦେଲେ।

ମର୍ଚ୍ଚାଣ୍ଟ ନେଭିରେ ଚାକିରୀ କରିବା ସମୟରେ ଟମ୍‌ଙ୍କୁ ବିଭିନ୍ନ ଦେଶକୁ ଜାହାଜରେ ଯାତ୍ରା କରିବାକୁ ହୋଇଥିଲା। ସେହିଦିନଠାରୁ ହିଁ ତାଙ୍କ ମନରେ ନୂଆ ନୂଆ ସ୍ଥାନ ଦେଖିବା ପାଇଁ, ନୂଆ ସଭ୍ୟତା, ସଂସ୍କୃତି ସହିତ ପରିଚିତ ହେବା ପାଇଁ ଆଗ୍ରହ ସୃଷ୍ଟି ହୋଇଥିଲା।

ଚାକିରୀର ପ୍ରଥମ କେଇବର୍ଷ ଜାହାଜରେ କଟେଇବା ପରେ ଟମ୍‌ଙ୍କର ପୋଷ୍ଟିଙ୍ଗ ହେଲା ନିଉୟର୍କରେ। ସେହି ସମୟରେ ସେ ଥରେ କ୍ୟାଲିଫୋର୍ଣ୍ଣିଆ ବୁଲି ଆସିଥିଲେ ଏବଂ ଜଣେ ସାଙ୍ଗ ଘରେ ରହୁଥିଲେ। ଦିନେ ସନ୍ଧ୍ୟାରେ ତାଙ୍କର ସେହି ବନ୍ଧୁ ତାଙ୍କୁ 'ବ୍ଲାଇଣ୍ଡ ଡେଟ୍'ରେ ତାଙ୍କର ଜଣେ ପରିଚିତା ସହିତ ଯିବାକୁ କହିଲେ। ବ୍ଲାଇଣ୍ଡ ଡେଟ୍ ଅର୍ଥାତ୍ ପୂର୍ବରୁ ଦେଖି ନ ଥିବା ବା ଚିହ୍ନି ନ ଥିବା ଝିଅଟିଏ ସହିତ ସନ୍ଧ୍ୟା କଟେଇବା। 'ବ୍ଲାଇଣ୍ଡ ଡେଟ୍'ରେ ଯିବା ପାଇଁ ଟମ୍‌ଙ୍କର ଖୁବ୍

ବେଶୀ ଆଗ୍ରହ ନଥିଲେ ମଧ୍ୟ ବନ୍ଧୁଙ୍କର ଅନୁରୋଧ ଅସ୍ୱୀକାର କରି ପାରିଲେ ନାହିଁ। ସେ କେବଳ ଏତିକି ଜାଣିଥିଲେ ଯେ ଝିଅଟିର ନାମ ଗ୍ଲୋରିଆ।

ଗ୍ଲୋରିଆ ଟେକ୍ସାସ୍‌ର ଝିଅ। ବୁଲି ଆସିଥିଲେ ସାନ୍‌ଫ୍ରାନ୍‌ସିସ୍‌କୋ। ସେଦିନ ସନ୍ଧ୍ୟାରେ କିଛି କରିବାର ନଥିଲା ବୋଲି ବ୍ଲାଇଣ୍ଡ ଡେଟ୍‌ରେ ଯିବା ପାଇଁ ରାଜି ହୋଇଯାଇଥିଲେ। କିନ୍ତୁ ସେଦିନର ବ୍ଲାଇଣ୍ଡ ଡେଟ୍ ଦୁଇଜଣଙ୍କର ଜୀବନକୁ ସଂପୂର୍ଣ୍ଣ ରୂପେ ବଦଳେଇ ଦେଇଥିଲା। ପ୍ରଥମ ଦେଖାରେ ଦୁଇଜଣ ପରସ୍ପର ପ୍ରତି ଆକର୍ଷିତ ହୋଇ ପଡିଥିଲେ ଏବଂ କିଛି ମାସ ପରେ ବିବାହ କରିଥିଲେ ସେମାନେ। ଟମ୍ କହନ୍ତି ଯେ ପିଲାଦିନରୁ ବାପାଙ୍କୁ ହରାଇ କିଭଳି ଲଗାମଛଡା ହୋଇଯାଇଥିଲା ତାଙ୍କର ଜୀବନ। ତାଙ୍କର ଏଇ ବିଶୃଙ୍ଖଳ ଜୀବନକୁ ସୁନ୍ଦର, ଶୃଙ୍ଖଳିତ କରିଥିଲେ ପତ୍ନୀ ଗ୍ଲୋରିଆ ଯାହାଙ୍କୁ କି ସମସ୍ତେ ସ୍ନେହରେ ଡାକୁଥିଲେ 'ମିକି'। ସେମାନଙ୍କର ଦୀର୍ଘ ବିବାହିତ ଜୀବନ ସୁଖମୟ ଥିଲା। ଟମ୍‌ଙ୍କର ବୟସ ଯେତେବେଳେ ୬୩, ସେତେବେଳେ ଜଣାପଡିଲା ଯେ ଗ୍ଲୋରିଆଙ୍କର କ୍ୟାନ୍‌ସର୍ ହୋଇଛି। ଏହା ଜାଣିବା ପରେ ସ୍ତ୍ରୀ ସହିତ ଜୀବନର ଅବଶିଷ୍ଟ ସମୟତକ ସଂପୂର୍ଣ୍ଣ ରୂପେ କଟାଇବାପାଇଁ ଟମ୍ ଚାକିରୀରୁ ଅବସର ନେଇଗଲେ। ତା'ପରେ ଗ୍ଲୋରିଆ ବଞ୍ଚି ରହିଥିଲେ ମାତ୍ର ଗୋଟିଏ ବର୍ଷ। ଟମ୍ ଥରେ କଥାରେ କହିଥିଲେ ଯେ ସେହି ବର୍ଷଟି ହେଉଛି ସେମାନଙ୍କର ବିବାହିତ ଜୀବନର ସର୍ବଶ୍ରେଷ୍ଠ ବର୍ଷ। ସେମାନେ ତ ଜାଣିଥିଲେ ଖୁବ୍ ଶୀଘ୍ର ଗ୍ଲୋରିଆଙ୍କୁ ଚାଲିଯିବାକୁ ହେବ। ଦୂରଦିଗ୍‌ବଳୟରେ କେଉଁଠି ଲୁଚି ବସିଛି ମୃତ୍ୟୁ, ହଠାତ୍ ଆସି ମୁହୂର୍ତ୍ତକ ମଧ୍ୟରେ ସମ୍ମୁଖରେ ପହଞ୍ଚିଯିବ। ତେଣୁ ଯୁଗ୍ମଜୀବନର ଶେଷ ସମୟକୁ ମନ ଭରି ଉପଭୋଗ କରିଯାଇଥିଲେ ସେମାନେ।

ମିତ୍ର, ଯଦି ପ୍ରାକୃତିକ କାରଣରୁ ଗ୍ଲୋରିଆଙ୍କ ଶରୀର କ୍ୟାନ୍‌ସରର ଶୀକାର ହୋଇଥାଆନ୍ତା, ତେବେ ଟମ୍ ବୋଧହୁଏ ନିୟତିର ବିଚାରକୁ ମାନି ନେଇଥାଆନ୍ତେ, କିନ୍ତୁ ଗ୍ଲୋରିଆଙ୍କର କ୍ୟାନ୍‌ସରର କାରଣ ଥିଲା ସଂପୂର୍ଣ୍ଣ ଭାବରେ ଭିନ୍ନ।

୧୯୫୬ ମସିହାରେ ଟମ୍‌ଙ୍କର ଡେନ୍‌ଭର୍ ବଦଳି ହୋଇଥିଲା। ସେମାନେ ଡେନ୍‌ଭର୍‌ର ଯେଉଁ ଅଞ୍ଚଳରେ ରହୁଥିଲେ, ତାହାର ଖୁବ୍ ନିକଟରେ ଥିଲା ପ୍ଲୁଟୋନିୟମ୍ ଫ୍ୟାକ୍ଟରୀଟିଏ। ଏହି କାରଖାନା ଯୋଗୁଁ ସେ ଅଞ୍ଚଳର ମାଟି ରେଡିଓ ଆକ୍ଟିଭ୍ ପଦାର୍ଥ ଦ୍ୱାରା ଦୂଷିତ ହୋଇ ଯାଇଥିଲା। ଏହାଛଡା ଥରେ ସେମାନେ ସେହି ଅଞ୍ଚଳରେ ରହିଥିବା ସମୟରେ ଫ୍ୟାକ୍ଟରୀରେ ନିଆଁ ଲାଗିଯାଇଥିଲା ଏବଂ ବିଷାକ୍ତ

ଗ୍ୟାସ୍‌ର ଧୂଆଁ ସେ ଅଞ୍ଚଳର ଆକାଶରେ ବେଶ୍ କିଛିଦିନ ଘେରି ହୋଇ ରହିଥିଲା । ଟମ୍‌ଙ୍କର ଦୃଢ ବିଶ୍ୱାସ ଏହି ବିଷାକ୍ତ ଗ୍ୟାସ୍ ଗ୍ଲୋରିଆଙ୍କ ଶରୀରରେ ପ୍ରତିକ୍ରିୟା କରାଇ କ୍ୟାନ୍‌ସର୍ ସୃଷ୍ଟି କରାଇଥିଲା । ଟମ୍ ଯେ ଶୋକରେ ଅଭିଭୂତ ହୋଇଯାଇ ଏଇଭଳି ଏକ ମନଗଢା କାହାଣୀ ରଚନା କରିଥିଲେ, ତାହା ନୁହଁ । ସେତେବେଳେ କାରଖାନା ନିକଟରେ ରହୁଥିଲେ ଆଠଟି ପରିବାର । ଆଉ ଏହି ଆଠଟି ପରିବାର ମଧ୍ୟରେ ନଅଜଣ କ୍ୟାନ୍‌ସର୍‌ରେ ଆକ୍ରାନ୍ତ ହୋଇଥିଲେ । ମୁଁ ଥରେ ପଚାରିଥିଲି, ଟମ୍ କାରଖାନା ବିରୁଦ୍ଧରେ ମକଦ୍ଦମା କଲେ ନାହିଁ କାହିଁକି ? ସେ କହିଥିଲେ ଯେ ମକଦ୍ଦମା କରିବା ଭଳି ସାମର୍ଥ୍ୟ ତାଙ୍କର ନ ଥିଲା । ତଥାପି କାରଖାନାର ବିଷାକ୍ତ ଗ୍ୟାସ୍ ଯେ ସେ ଅଞ୍ଚଳକୁ ଦୂଷିତ କରୁଛି- ଏ ସମ୍ପର୍କରେ ସଂପୃକ୍ତ ବିଭାଗରେ ନାଲିସ୍ କରିଥିଲେ ସେ । କିନ୍ତୁ ଲାଭ କିଛି ହୋଇ ନଥିଲା ।

ଏହାପରେ ଟମ୍ ସେ ସ୍ଥାନ ଛାଡି ଚାଲି ଯାଇଥିଲେ ଫୋଷ୍ଟର ସିଟି । ଟମ୍‌ଙ୍କ ଯିବା ପରେ କିନ୍ତୁ ସେଠାରେ ରହୁଥିବା ଜଣେ ବ୍ୟକ୍ତି- ଡକ୍ଟର କାର୍ଲ ଜନ୍‌ସନ୍ ଖବରକାଗଜ ଓ ପତ୍ରିକା ମାଧ୍ୟମରେ କାରଖାନା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ପ୍ରଥମେ ଜନ୍‌ସନ୍‌ଙ୍କର ଆରୋପକୁ ସରକାର ଅଗ୍ରାହ୍ୟ କରିଥିଲେ ମଧ୍ୟ ପରେ ଘଟଣାର ସତ୍ୟତା ଉପଲବ୍ଧ କରିଥିଲେ । ସରକାରୀ ଅନୁସନ୍ଧାନରୁ ଜଣା ପଡିଥିଲା ଯେ ବାସ୍ତବିକ କାରଖାନାର ଧୂଆଁ ସହରବାସୀଙ୍କ ସ୍ୱାସ୍ଥ୍ୟହାନୀର ପ୍ରଧାନ କାରଣ । ଏହାପରେ ପ୍ଲୁଟୋନିୟମ୍ କାରଖାନାଟିକୁ ବନ୍ଦ କରାଇ ଦିଆଯାଇଥିଲା ।

କାରଖାନାଟି ଉଠିଗଲା ସତ, କିନ୍ତୁ ତାହା ଟମ୍‌ଙ୍କ ଜୀବନରେ ଯେଉଁ ଝଡ ସୃଷ୍ଟି କରେଇ ଦେଇଗଲା, ତା'ର ହିସାବ ରଖିଲା କିଏ ? ଟମ୍ କେବଳ ଯେ ପତ୍ନୀକୁ ହରାଇଲେ ତା' ନୁହଁ, ଗ୍ଲୋରିଆଙ୍କ ମୃତ୍ୟୁର ମାତ୍ର ଗୋଟିଏ ବର୍ଷ ପରେ ଜଣା ପଡିଲା ଯେ ତାଙ୍କର ସାନପୁଅ ମାଇକେଲ୍‌ର ଶରୀରରେ କ୍ୟାନସର୍ ପ୍ରବେଶ କରି ସାରିଛି । ଗ୍ଲୋରିଆଙ୍କ ଭଳି ମାଇକେଲ ମଧ୍ୟ ଲିଭର୍ କ୍ୟାନସର୍‌ରେ କିଛି ବର୍ଷ ଭୋଗିବା ପରେ ଗତ ବର୍ଷ ଚାଲିଗଲେ । ମିତ୍ର, ପ୍ରଥମେ ସ୍ତ୍ରୀ ଶୋକ ସହିଥିଲେ ଟମ୍, ପୁଣି ପୁତ୍ର ଶୋକ ଭୋଗିବାକୁ ହେଲା । ଆଖି ସାମ୍ନାରେ ଏତେ ବଡ ପୁଅର ମୃତ୍ୟୁ ସଂପୂର୍ଣ୍ଣ ରୂପେ ଦୋହଲେଇ ଦେଇଥିଲା ଟମ୍‌ଙ୍କୁ । ଆମକୁ ମାଇକେଲଙ୍କର ମୃତ୍ୟୁ ସମ୍ବାଦ ଦେବାବେଳେ ବିକଳ ହୋଇ କାନ୍ଦି ପକେଇଥିଲେ

ସେ। ତାଙ୍କୁ ବୁଝେଇବା ପାଇଁ ଆମ ପାଖରେ ଭାଷା ନଥିଲା।

ଟମ୍ କିନ୍ତୁ ଜୀବନ ଯୁଦ୍ଧରେ ହାର ମାନି ନଥିଲେ। ମାଇକେଲଙ୍କୁ ହରାଇବାର ଶୋକକୁ ଭୁଲିଯିବା ପାଇଁ ସେ ଯାଇଥିଲେ ହଙ୍ଗାରୀ। ବୁଲିବାକୁ ନୁହଁ, ହଙ୍ଗାରୀର ସ୍କୁଲ ପିଲାଙ୍କୁ ଇଂରାଜୀ ପଢେଇବା ଥିଲା ତାଙ୍କର ଲକ୍ଷ୍ୟ। ତାଙ୍କର ଜଣେ ବନ୍ଧୁ ଏଭଳି ଏକ ସମାଜସେବୀ ଅନୁଷ୍ଠାନ ସହିତ ଜଡିତ ଥିଲେ, ଯାହାକି ପୃଥିବୀର ବିଭିନ୍ନ ପ୍ରାନ୍ତର ଅଶିକ୍ଷିତ ବ୍ୟକ୍ତିମାନଙ୍କୁ ଆଶାର ଆଲୋକ ଦେଖାଇବା ପାଇଁ ସତତ ଚେଷ୍ଟା କରୁଥିଲା। ଏହି ବନ୍ଧୁଙ୍କର ପ୍ରରୋଚନାରେ ହଙ୍ଗାରୀ ଯାଇଥିଲେ ଟମ୍। ଏହିବର୍ଷ କ୍ରିସ୍‌ମାସ ସମୟରେ ସେଇଭଳି ଗୋଟିଏ ଲକ୍ଷ୍ୟ ନେଇ ସେ ପୋଲାଣ୍ଡ ଯିବାର ଯୋଜନା କରୁଛନ୍ତି। ଟମ୍ କହନ୍ତି, "ପୃଥିବୀ ଛାଡି ଯିବା ପୂର୍ବରୁ ପୃଥିବୀକୁ କିଛି ଦେଇକରି ଯିବା ଉଚିତ। ନହେଲେ କି ମୂଲ୍ୟ ଏ ଜୀବନର ?"

ପୃଥିବୀର ବିଭିନ୍ନ ପ୍ରାନ୍ତରେ ଶିକ୍ଷାର ଆଲୋକ ଜଳାଇବା ଟମ୍‌ଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ ନୁହଁ। ଯୁଦ୍ଧ ବିକଳାଙ୍ଗ ପୃଥିବୀରେ ଅହିଂସା ଧର୍ମ ପ୍ରଚାର କରିବା ବର୍ତ୍ତମାନ ତାଙ୍କ ପାଇଁ ଏକ ପ୍ରଧାନ ଲକ୍ଷ୍ୟ ହୋଇଛି। ଜଣେ ମଣିଷ ପକ୍ଷରେ ଏଭଳି ଏକ ବିଶାଳ କାର୍ଯ୍ୟକୁ ସାକାର କରିବା ସମ୍ଭବ ନୁହଁ- ଟମ୍ ଏ କଥା ଜାଣନ୍ତି। ସେଥିପାଇଁ ସେ ନିଜ ପାଇଁ କ୍ଷୁଦ୍ର ଲକ୍ଷ୍ୟଟିଏ ସ୍ଥିର କରି ନେଇଛନ୍ତି। ଏଇଟି ହେଲା ଇଂରାଜୀ ଅଭିଧାନରେ ନୂଆ ଶବ୍ଦଟିଏ ଯୋଗ କରିବା।

ତୁ ହୁଏତ ଭାବୁଥିବୁ ଅହିଂସା ସହିତ ଅଭିଧାନର ଶବ୍ଦର ବା କି ସମ୍ପର୍କ। ସମ୍ପର୍କ ଅଣୁମାତ୍ରର ହୋଇପାରେ, କିନ୍ତୁ ସମ୍ପର୍କଟିଏ ଅଛି।

ଟମ୍ ଅକ୍ଷର ଖଞ୍ଜି ସୃଷ୍ଟି କରିଥିବା ଶବ୍ଦଟି ହେଉଛି 'AMITOR'। 'PREDATOR' ଶବ୍ଦର ବିପରୀତ ଅର୍ଥରେ ସେ ବ୍ୟବହାର କରିବାକୁ ଚାହାନ୍ତି ଏହି ଶବ୍ଦଟିକୁ। ପ୍ରିଡେଟର୍ ଅର୍ଥାତ୍ ଅନ୍ୟାନ୍ୟ ଜୀବଜନ୍ତୁଙ୍କୁ ଭକ୍ଷଣ କରୁଥିବା ବା ମାରି ଦେଉଥିବା ଜୀବ। ଅଥଚ କାହାର କୌଣସି କ୍ଷତି କରୁ ନଥିବା ବା ସମ୍ପୂର୍ଣ୍ଣ ଭାବରେ ଅହିଂସାମୂଳକ ନୀତି ଗ୍ରହଣ କରୁଥିବା ଜୀବଜନ୍ତୁଙ୍କ ପାଇଁ ତ ସେଭଳି ଶବ୍ଦ କେହି କେବେ ଚିନ୍ତା କରି ନାହିଁ।

ଏଭଳି ଗୋଟିଏ ଚିନ୍ତା ବହୁବର୍ଷ ପୂର୍ବେ ଆକସ୍ମିକ ଭାବରେ ଟମ୍‌ଙ୍କ ମନକୁ ଆସିଥିଲା। ଘଟଣାଟି ଘଟିଥିଲା ଏହିପରି। ଥରେ ପିଲାମାନଙ୍କୁ ନେଇ ଚିଡିଆଖାନାଟିଏ ଦେଖାଇବାକୁ ନେଇଥିଲେ ଟମ୍। ଫେରିବାବେଳେ ସ୍କୁଲ୍‌ରେ ପଢୁଥିବା ରେବେକା

ପଚାରିଥିଲା "ପ୍ରିଡେଟରର ବିପରୀତ ଶବ୍ଦ କ'ଣ ?" ଟମ୍ ଏ ପ୍ରଶ୍ନର ଉତ୍ତର ଦେଇପାରି ନଥିଲେ। ଘରକୁ ଫେରିବା ପରେ ସେ ବିଭିନ୍ନ ଅଭିଧାନ ଅନୁସନ୍ଧାନ କରି ଜାଣିପାରିଲେ ଯେ ସେଭଳି କୌଣସି ଶବ୍ଦ ଇଂରାଜୀ ଭାଷାରେ ନାହିଁ।

ଘଟଣାଟି ସବୁଦିନ ଟମ୍‌ଙ୍କ ମନ ଭିତରେ ଆନ୍ଦୋଳନ ସୃଷ୍ଟି କରିଥିଲା। ଚାକିରୀ ଜୀବନରେ ସେ ଏ ସମ୍ପର୍କରେ ଗଭୀର ଭାବରେ ଚିନ୍ତା କରିବାକୁ ସମୟ ପାଇ ନ ଥିଲେ। କିନ୍ତୁ ଗ୍ଲୋରିଆଙ୍କ ମୃତ୍ୟୁ ପରେ ସେ ବଡ ପୁଅ ଫିଲିପ୍ ସହିତ ମିଶି ଶେଷରେ 'ଆମିଟର' ଶବ୍ଦଟିକୁ ବାହାର କରିଥିଲେ।

କିନ୍ତୁ କେବଳ ଅକ୍ଷର ଯୋଡି ଶବ୍ଦଟିଏ ପ୍ରସ୍ତୁତ କରିଦେଲେ ତ ତାକୁ ଇଂରାଜୀ ଭାଷାରେ ଅନ୍ତର୍ଭୁକ୍ତ କରି ଦିଆଯିବ ନାହିଁ। ଟମ୍ ଅଭିଧାନ ପ୍ରସ୍ତୁତ କରୁଥିବା ସଂସ୍ଥାଗୁଡିକ ସହ କଥାବାର୍ତ୍ତା କରି ଜାଣି ପାରିଛନ୍ତି ଯେ କେବଳ ବହୁ ପ୍ରଚଳିତ ଶବ୍ଦକୁ ଅଭିଧାନରେ ସ୍ଥାନ ଦିଆଯାଏ। ତେଣୁ ଟମ୍‌ଙ୍କ ଦ୍ୱାରା ସୃଷ୍ଟ ଶବ୍ଦଟି ଯଦି ସମାଜରେ ବ୍ୟବହୃତ ହୁଏ, ତେବେ ପ୍ରାୟ ପଚାଶ ବର୍ଷ ପରେ ତାହାକୁ ଇଂରାଜୀ ଭାଷାରେ ଅନ୍ତର୍ଭୁକ୍ତ କରାଯିବ। ଟମ୍ ହତୋତ୍ସାହ ନହୋଇ ବିଭିନ୍ନ ସ୍ଥାନକୁ ଯାଇ ବିଭିନ୍ନ ବ୍ୟକ୍ତିଙ୍କ ଜରିଆରେ ଶବ୍ଦଟିର ବ୍ୟବହାର ବୃଦ୍ଧି କରିବା ପାଇଁ ଚେଷ୍ଟା କରି ଚାଲିଛନ୍ତି। ତାଙ୍କର ଜଣାଶୁଣା ଜଣେ ନାଟ୍ୟକାର ଗୋଟିଏ ନାଟକରେ ଏହି ଶବ୍ଦଟି ବ୍ୟବହାର କରିଛନ୍ତି। ମାଡ୍ରାସ୍‌ର ଜଣେ ତାମିଲ କବି ତାଙ୍କର କବିତାରେ ମଧ୍ୟ ଏହି ଶବ୍ଦଟି ବ୍ୟବହାର କରିଛନ୍ତି।

ଏଇ ଆରମ୍ଭ। ଟମ୍‌ଙ୍କର ଦୃଢ ବିଶ୍ୱାସ କ୍ରମଶଃ ଶବ୍ଦଟି ଆଦୃତ ହେବ ଏବଂ ଇଂରାଜୀ ଭାଷାରେ ସ୍ଥାନ ପାଇବ। କିଏ ଜାଣେ, ହୁଏତ ଦିନେ ଟମ୍‌ଙ୍କର ଚେଷ୍ଟା ସଫଳ ହେବ। 'ଆମିଟର୍' ଶବ୍ଦଟି ଇଂରାଜୀ ଅଭିଧାନରେ ସ୍ଥାନ ପାଇବ। କିନ୍ତୁ ସେଦିନ ଦେଖିବା ପାଇଁ ଟମ୍ ଆଉ ଜୀବିତ ନ ଥିବେ। ହେଲେ ଗୋଟିଏ ବିଷୟରେ ମୁଁ ନିଶ୍ଚିତ- ଯଦି ଟମ୍‌ଙ୍କ ନାତୁଣୀ ଡାକୋଟାର ପୁଅଝିଅ ମା'କୁ 'ପ୍ରିଡେଟର୍'ର ବିପରୀତ ଶବ୍ଦ ପଚାରି ବସନ୍ତି, ତେବେ ଡାକୋଟାକୁ ବିବ୍ରତ ହେବାକୁ ପଡିବ ନାହିଁ।

ଆଜି ପାଇଁ ଏଇଠି ରହୁଛି। ଚିଠି ପାଇ ଚିଠି ଦେବୁ।

ଇତି

ତୋର 'ନାନୀ'

୨୫ ଫେବୃଆରୀ, ୧୯୯୩

ସ୍ନେହର ମିତୁ,

ଏହା ଭିତରେ ତୁ ନିଶ୍ଚୟ ମୋର ପୂର୍ବ ଚିଠି ପାଇ ଯାଇଥିବୁ। ଚିଠିଟି ଡାକରେ ପକେଇବାର କିଛି ଦିନ ପରେ ହଠାତ୍ ଆମର ଟେକ୍ସାସ୍ ରାଜ୍ୟର ରାଜଧାନୀ ଅଷ୍ଟିନ୍ ଯିବାର ପ୍ରୋଗ୍ରାମ ହେଲା। ଏମିତିରେ ତୋ ଭାଇନାଙ୍କୁ କାମରେ ପ୍ରାୟ ଟେକ୍ସାସ୍‌ର ବିଭିନ୍ନ ସହର- ହ୍ୟୁଷ୍ଟନ, ଡାଲାସ, ଅଷ୍ଟିନ୍ ଯିବାକୁ ହୁଏ। କିନ୍ତୁ ମୁଁ ଡାଲାସ୍ ଏଆରପୋର୍ଟ ବ୍ୟତୀତ ଟେକ୍ସାସ୍‌ରେ କେବେ ପାଦ ଦେଇ ନଥିଲି। ରାଜ୍ୟଟି ସମ୍ପର୍କରେ କୌତୁହଳ ମୋର ସବୁ ଦିନେ ଥିଲା। ଟେକ୍ସାସ୍ ଓ ଟେକ୍ସାନ୍‌ଙ୍କ ବିଷୟରେ ବହୁତ ବହିରେ ମୁଁ ମଜା ମଜା ଘଟଣା ପଢିଛି। କେତେଟା ସତ, କେତେଟା ମନଗଢା- ତାହା ପରଖ କରିବା ପାଇଁ ମୋର ବେଶ୍ ଆଗ୍ରହ ଥିଲା।

ଆଲାସ୍କାକୁ ବାଦ୍‌ଦେଲେ ଆୟତନରେ ଆମେରିକାର ବୃହତ୍ତମ ରାଜ୍ୟ ଏଇଟି। କେଇଟା ଦିନ ଭିତରେ ଭଲ କରି ଦେଖିବା ଅସମ୍ଭବ। ତଥାପି ରାଜଧାନୀଟିକୁ ଦେଖିନେଲେ ରାଜ୍ୟ ସମ୍ପର୍କରେ କିଛି ତ ଧାରଣା କରିହେବ। ଏହାଛଡା ଅଷ୍ଟିନ୍‌ରେ ଆମର ଅନେକ ଜଣାଶୁଣା ପରିବାର ରହନ୍ତି। ସେମାନେ ସବୁବେଳେ ଫୋନ୍‌ରେ ଆମମାନଙ୍କୁ ଅଷ୍ଟିନ୍ ଆସିବା ପାଇଁ ଅନୁରୋଧ କରନ୍ତି। ହେଲେ କିଛି ପାଖ ରାସ୍ତା ତ ନୁହଁ। ପ୍ଲେନ୍‌ରେ ଛଅ ସାତ ଘଣ୍ଟା ବାଟ। ତେଣୁ ଏତେଦିନ ଧରି

ଯିବା ସମ୍ଭବ ହେଉ ନ ଥିଲା। କିନ୍ତୁ ଥରେ ଯିବାର ନିଷ୍ପତ୍ତି ନେଇଯିବା ପରେ ପ୍ରସ୍ତୁତ ହେବା ପାଇଁ ଆଦୌ ସମୟ ଲାଗିଲା ନାହିଁ। ୨୧ ତାରିଖ ସକାଳ ଆଠଟା ବେଳର ଫ୍ଲାଇଟ୍‌ରେ ଆମେ ଟେକ୍‌ସାସ୍ ରାଜଧାନୀ ଅଷ୍ଟିନ୍ ଉଦ୍ଦେଶ୍ୟରେ ବାହାରି ପଡିଲୁ।

ଟେକ୍‌ସାସ୍ କହିଲେ ଆଗ ମନକୁ ଆସେ "କାଓବୟ" ମାନଙ୍କ କଥା। ଗୋଡରେ ଆଣ୍ଠୁ ପର୍ଯ୍ୟନ୍ତ ଚମଡାର ଜୋତା, ଅଣ୍ଟାରେ ଚମଡାର ଚଉଡା ବେଲ୍‌ଟ ଆଉ ମୁଣ୍ଡରେ ଉଚ୍ଚ ଟୋପି। ରାସ୍ତାରେ ଧୂଳି ଉଡାଇ 'କ୍ୟାଡିଲାକ୍' ଚଲାଇ ଚାଲିଯାଉଥିବାର ଛବିଟିଏ ମନରେ ଆଙ୍କି ହୋଇଯାଏ। କିନ୍ତୁ ହଲିଉଡ୍‌ର ୱେଷ୍ଟର୍ଣ୍ଣ ସିନେମା ଦେଖି ଯେଉଁମାନେ ଟେକ୍‌ସାସ୍‌କୁ ଚିହ୍ନନ୍ତି, ସେମାନେ ଅଷ୍ଟିନ୍ ଦେଖିଲେ ଚକିତ ହୋଇଯିବେ ନିଶ୍ଚୟ। ମୁଁ କେଉଁ ଏକ ବହିରେ ପଢିଥିଲି ଯେ ଯଦିଓ ଅଷ୍ଟିନ୍ ଟେକ୍‌ସାସ୍‌ର ରାଜଧାନୀ, ଏଠାରେ ତଥାକଥିତ ଟେକ୍‌ସାନ୍ ଚରିତ୍ର ପ୍ରାୟ ଦେଖାଯାଏ ନାହିଁ। ଏହାର ସୁନ୍ଦର ଜଳବାୟୁ, ଶାନ୍ତ ବାତାବରଣ ଓ ଲୋକତାନ୍ତ୍ରିକ ବିଚାର ଆମେରିକାର ବିଭିନ୍ନ ପ୍ରାନ୍ତରୁ ଲୋକମାନଙ୍କୁ ଆକର୍ଷିତ କରେ।

ଯେତେବେଳେ କଲମ୍ବସ୍ ଆମେରିକା ଆବିଷ୍କାର କଲେ, ସେତେବେଳେ ଟେକ୍‌ସାସ୍‌ରେ ବହୁତ ଗୁଡିଏ ଛୋଟ ଛୋଟ ଦଳ ରହୁଥିଲେ। ଏମାନଙ୍କ ମଧ୍ୟରୁ କେତେକ ଚାଷବାସ କରି ଜୀବିକା ନିର୍ବାହ କରୁଥିଲେ ତ ଆଉ କେତେକ ସମ୍ପୂର୍ଣ୍ଣ ଭାବରେ ଶୀକାର ଉପରେ ନିର୍ଭର କରୁଥିଲେ। ଏମାନଙ୍କ ବ୍ୟତୀତ ଆଉ କେତୋଟି ଦଳ ମଧ୍ୟ ଏଠାରେ ରହୁଥିଲେ ଯେଉଁମାନେ କି ଯାଯାବର ଭଳି କେବଳ ବୁଲୁଥିଲେ। ଏହି ପ୍ରାଚୀନ ଦଳମାନଙ୍କ ମଧ୍ୟରୁ କେତୋଟି ଥିଲେ ଭୀଷଣ ହିଂସ୍ର। ବିଶେଷ କରି ଉପକୂଳବର୍ତ୍ତୀ ଅଞ୍ଚଳରେ ବାସ କରୁଥିବା 'କାରାନ୍‌କାଓ୍ୱା' ଦଳଟିର ବଡ ଦୁର୍ନାମ ଥିଲା। ଏମାନେ ଯୁଦ୍ଧପ୍ରିୟ ତ ଥିଲେ, ତା'ଛଡା ନରମାଂସ ମଧ୍ୟ ଭକ୍ଷଣ କରୁଥିଲେ। ତେଣୁ ୧୫୧୯ରେ ଫ୍ଲୋରିଡାଠାରୁ ମେକ୍‌ସିକୋର ମାନଚିତ୍ର ଆଙ୍କିବା ବେଳେ ଟେକ୍‌ସାସ୍‌ର ଅବସ୍ଥିତି ସମ୍ପର୍କରେ ଜଣା ପଡିଥିଲେ ମଧ୍ୟ ଏଠାରେ ବହୁତଦିନ ଧରି କେହି ପାଦ ଦେଇ ନ ଥିଲେ। ବହୁତ ବର୍ଷ ପରେ ସ୍ଥାନଟିକୁ ନିଜ ଅଧୀନରେ ଆଣିବା ପାଇଁ ସ୍ପେନ୍ ସରକାର ଗୋଟିଏ ଦଳ ସୈନ୍ୟ ପଠାଇଲେ।

ଏହି ସୈନ୍ୟମାନଙ୍କର କାରାନ୍‌କାଓ୍ୱା ଦଳଟି ସହିତ ଘମାଘୋଟ ଯୁଦ୍ଧ ହୋଇଥିଲା। ଯୁଦ୍ଧରେ ସ୍ପେନ୍‌ର ସୈନ୍ୟମାନେ କେବଳ ଯେ ଶୋଚନୀୟ ଭାବରେ ପରାଜିତ

ହୋଇଥିଲେ ତାହା ନୁହଁ, ଅଧିକାଂଶ ମୃତ୍ୟୁମୁଖରେ ପଡିଥିଲେ । ସମୁଦାୟ ସେନାବାହିନୀରୁ ବଞ୍ଚି ରହିଥିଲେ ମାତ୍ର ତିନିଜଣ । ଏହି ତିନି ଜଣ କୌଣସି ମତେ ପ୍ରାଣ ବଞ୍ଚାଇ ମେକ୍ସିକୋ ଚାଲିଯାଇଥିଲେ । କିନ୍ତୁ ଥରେ ମେକ୍ସିକୋରେ ପହଞ୍ଚିବା ପରେ ନିଜର ସମ୍ମାନ ରକ୍ଷା କରିବା ପାଇଁ ମିଛ କାହାଣୀମାନ ପ୍ରଚାର କରିଥିଲେ । ସେମାନେ କହିଥିଲେ ଯେ କାରାନ୍‌କାୱାମାନେ ସେ ଅଞ୍ଚଳକୁ ଏପରି ଜାବୁଡି ଧରି ରଖିବାର କାରଣ ହେଉଛି ସେଠାକାର ମାଟି ଗୋଡି ମଧ୍ୟ ସୁନାରେ ତିଆରି ।

ଏଇଭଳି ଏକ ପ୍ରଚାରକୁ ସତ ବୋଲି ବିଶ୍ୱାସ କରି ମେକ୍ସିକୋରୁ ଗୋଟିଏ ଦଳ ସ୍ଥାନଟିକୁ ପରଖ କରିବା ପାଇଁ ବାହାରି ପଡିଥିଲେ । 'ସୁନାର ସହର' ତ ମିଳିଲା ନାହିଁ, କିନ୍ତୁ ସେମାନଙ୍କର ଅନୁସନ୍ଧାନ ଫଳରେ ବାହାର ପୃଥିବୀ ଟେକ୍ସାସ୍ ସମ୍ପର୍କରେ ବେଶ୍ କିଛି ତଥ୍ୟ ଜାଣିବାକୁ ପାଇଲେ । କାରାନ୍‌କାୱାଙ୍କ ଅଞ୍ଚଳଠାରୁ ନିଜର ଦୂରତ୍ୱ ବଜାୟ ରଖି ଏହି ଦଳଟି ଟେକ୍ସାସ୍‌ର ଅନ୍ୟାନ୍ୟ ଅଂଶରେ ସ୍ପେନ୍‌ର ପତାକା ଉଡେଇ ଦେଇଥିଲେ । କିନ୍ତୁ ଏହି ଅଞ୍ଚଳକୁ ନିଜର ଅଧୀନସ୍ଥ କରିବା ପାଇଁ ସେତେବେଳେ ସ୍ପେନର ସାମର୍ଥ୍ୟ ବା ଆଗ୍ରହ ନ ଥିଲା ।

ଏହା ପରେ ବେଶ୍ କିଛି ବର୍ଷ କଟିଗଲା । ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ଏବଂ ଊନବିଂଶ ଶତାବ୍ଦୀର ଆରମ୍ଭରେ ଦେଖାଗଲା ଯେ ଖ୍ରୀଷ୍ଟଧର୍ମ ପ୍ରଚାର କରିବା ପାଇଁ ପାଦ୍ରୀମାନେ ଆମେରିକାର ବିଭିନ୍ନ ସ୍ଥାନରେ ମିଶନ୍ ପ୍ରତିଷ୍ଠା କରିବାରେ ଆଗ୍ରହୀ ହୋଇ ପଡିଛନ୍ତି । ଏଇଭଳି କେତୋଟି ମିଶନ୍ ଟେକ୍ସାସ୍‌ର ସାନ୍ ଆଣ୍ଟୋନିଓଠାରେ ମଧ୍ୟ ମୁଣ୍ଡ ଟେକିଲା ଏବଂ ପ୍ରଥମ ଥର ପାଇଁ ଇଉରୋପୀୟମାନେ ଟେକ୍ସାସ୍‌ରେ ବାସ କରିବା ଆରମ୍ଭ କଲେ ।

୧୮୨୧ ମସିହା କଥା । ସେହିବର୍ଷ ମୋସେସ୍ ଅଷ୍ଟିନ୍ ମିସୋରିରୁ ଆସି ସାନ୍ ଆଣ୍ଟୋନିଓଠାରେ ପହଞ୍ଚିଥିଲେ ଏବଂ ସେହି ଅଞ୍ଚଳରେ ଏକ କଲୋନୀ ନିର୍ମାଣ କରିବା ପାଇଁ ସ୍ପେନ ସରକାରଙ୍କଠାରୁ ଅନୁମତି ମଧ୍ୟ ମାଗିଥିଲେ । ଅନୁମତି ତ ମିଳିଗଲା । କିନ୍ତୁ ସ୍ୱପ୍ନକୁ ସାକାର ରୂପ ଦେବା ପୂର୍ବରୁ ମୋସେସ୍‌ଙ୍କର ମୃତ୍ୟୁ ହୋଇଗଲା । ତାହାର କେଇମାସ ପରେ ମେକ୍ସିକୋ ମଧ୍ୟ ସ୍ପେନ୍ ବିରୁଦ୍ଧରେ ବିଦ୍ରୋହ କରି ସ୍ୱାଧୀନ ହୋଇଗଲା । ଏସବୁ ବାଧା ସତ୍ତ୍ୱେ ମୋସେସ୍ ଅଷ୍ଟିନ୍‌ଙ୍କର ପୁତ୍ର ଷ୍ଟିଫେନ୍ ଅଷ୍ଟିନ୍ ଶେଷରେ ପିତାଙ୍କର ସ୍ୱପ୍ନକୁ ବାସ୍ତବ ରୂପ ଦେଇଥିଲେ ।

ସେ ତିନିଶହ ପରିବାରଙ୍କୁ ଆଣି ସେ ଅଞ୍ଚଳରେ ଥଇଥାନ କରାଇ ଟେକ୍ସାସ୍ ରାଜ୍ୟର ମୂଳଦୁଆ ପକେଇଥିଲେ। ତାଙ୍କରି ସ୍ମୃତିରେ ହିଁ ପରେ ରାଜ୍ୟର ରାଜଧାନୀକୁ ନାମିତ କରାଗଲା 'ଅଷ୍ଟିନ୍'। ଷ୍ଟିଫେନ୍ ଅଷ୍ଟିନ୍‌ଙ୍କୁ ଯଥାର୍ଥରେ 'ଟେକ୍ସାସ୍‌ର ପିତା' ବା Father of Texas ବୋଲି କୁହାଯାଏ।

ଷ୍ଟିଫେନ୍ ଅଷ୍ଟିନ୍ ଥଇଥାନ କରେଇଥିବା ତିନିଶହ ପରିବାର ଟେକ୍ସାସ୍‌କୁ ସମ୍ପୂର୍ଣ୍ଣ ଭାବରେ ନିଜର କରିନେଲେ। କ୍ରମଶଃ ସ୍ଥାନଟିର ଜନପ୍ରିୟତା ବଢ଼ିଲା। ବିଭିନ୍ନ ସ୍ଥାନରୁ ଲୋକମାନେ ଟେକ୍ସାସ୍‌ର କାହାଣୀ ଶୁଣି ଆକର୍ଷିତ ହୋଇ ସେଠାକୁ ଆସିବାକୁ ଲାଗିଲେ। ସ୍ଥାନଟିର ଜନପ୍ରିୟତା ବଢ଼ିବା ସଙ୍ଗେ ସଙ୍ଗେ ଆରମ୍ଭ ହୋଇଗଲା ରାଜନୀତିକ କ୍ରୀଡା କସରତ। କେତେବେଳେ ସ୍ପେନ୍, କେତେବେଳେ ମେକ୍ସିକୋ ପୁଣି କେତେବେଳେ ଫ୍ରାନ୍ସ ହାତରେ ଖେଳନାଟିଏ ଭଳି ରହି ଶେଷରେ ଟେକ୍ସାସ୍ ଗୋଟିଏ ସ୍ୱତନ୍ତ୍ର ରାଷ୍ଟ୍ର ହୋଇ ପାରିଥିଲା। କିନ୍ତୁ ବେଶୀଦିନ ପାଇଁ ନୁହଁ। ୧୮୪୫ ମସିହାରେ ଯୁକ୍ତରାଷ୍ଟ୍ର ଆମେରିକା ଟେକ୍ସାସ୍ ଆକ୍ରମଣ କରି ଅଧିକାର କରିନେଲା। ଏଥିପାଇଁ ଯେ ଆମେରିକାକୁ ବେଶୀ କଷ୍ଟ କରିବାକୁ ପଡିଥିଲା, ତା' ନୁହଁ। ସେତେବେଳେ ଟେକ୍ସାସ୍‌ର ଅର୍ଥନୀତିକ ଅବସ୍ଥା ଏଭଳି ଶୋଚନୀୟ ଯେ ଆମେରିକାର ଆକ୍ରମଣକୁ ଟେକ୍ସାସ୍‌ବାସୀ ଆନନ୍ଦରେ ସ୍ୱାଗତ କରିଥିଲେ। ସେହି ବର୍ଷ ଅର୍ଥାତ୍ ୧୮୪୫ ମସିହା ଡିସେମ୍ବର ମାସ ୨୯ ତାରିଖ ଦିନ ଟେକ୍ସାସ୍ ଯୁକ୍ତରାଷ୍ଟ୍ର ଆମେରିକାର ୨୮ତମ ରାଜ୍ୟ ହୋଇଗଲା। ରାଜ୍ୟର ରାଜଧାନୀ ସ୍ଥାପିତ ହେଲା 'ଅଷ୍ଟିନ୍' ଠାରେ।

ଅଷ୍ଟିନ୍‌ର ଜଳବାୟୁ ଥିଲା ମନୋରମ। ଆଉ ତା'ଠାରୁ ଅଧିକ ମନୋମୁଗ୍ଧକର ଥିଲା ତାହାର ପ୍ରାକୃତିକ ସୌନ୍ଦର୍ଯ୍ୟ। ପାହାଡ, ନଦୀ, ଉପତ୍ୟକାର ଏକ ଅଦ୍ଭୁତ ସମନ୍ୱୟ ଏହି ଅଞ୍ଚଳରେ। ଏତେ ବର୍ଷ ପରେ ଏବେ ମଧ୍ୟ ଅଷ୍ଟିନ୍‌ର ପ୍ରାକୃତିକ ସୌନ୍ଦର୍ଯ୍ୟ ପୂର୍ବଭଳି ଅତୁଟ। ସେଇଥିପାଇଁ ବୋଧହୁଏ ଏହା ଯୁକ୍ତରାଷ୍ଟ୍ର ଆମେରିକାର ଏକ ଜନପ୍ରିୟ ସହର।

ଆମ ପ୍ଲେନ୍ ଅଷ୍ଟିନ୍‌ରେ ଆସି ପହଞ୍ଚିଲା ଦିନ ଦୁଇଟା ବେଳେ। ଏୟାର୍‌ପୋର୍ଟକୁ ମୋର ଜଣେ ପୁରୁଣା ସାଙ୍ଗ ଶାନ୍ତି ସପରିବାର ଆସିଥିଲା। ମଜା କଥା ଜାଣିଛୁ, ଶାନ୍ତିର ସ୍ୱାମୀଙ୍କ ନାମ ମଧ୍ୟ ସୁବ୍ରତ। ସେମାନଙ୍କ ସାଙ୍ଗରେ ଆମେ ଆଗ ହୋଟେଲ୍‌କୁ ଗଲୁ। ହୋଟେଲ୍‌ରେ ଜିନିଷପତ୍ର ରଖି ସୁବ୍ରତଙ୍କ ଭ୍ୟାନ୍‌ରେ ବାହାରି ପଡିଲୁ।

ସେତେବେଳେ ପ୍ରାୟ ତିନିଟା। ତୁ ତ ଜାଣିଛୁ, ଆମେରିକା ଭିତରେ ଚାରୋଟି 'ଟାଇମ୍ ଜୋନ୍'। ସେଇ ଅନୁସାରେ ଟେକ୍‌ସାସ୍‌ର ସମୟ କ୍ୟାଲିଫୋର୍ଣିଆ ସମୟ ଅପେକ୍ଷା ଦୁଇଘଣ୍ଟା ଅଧିକ। ତେଣୁ ଅଷ୍ଟିନ୍ ସମୟ ତିନିଟା ହେଲେ ମଧ୍ୟ କ୍ୟାଲିଫୋର୍ଣିଆ ଅନୁସାରେ ସମୟ ଦିନ ଗୋଟାଏ। ଫ୍ଲାଇଟ୍‌ର ସ୍ୱାଦହୀନ ଖାଇବା ଆସିବାବେଳେ ଆମେମାନେ କେହି ପ୍ରାୟ ଖାଇ ପାରି ନଥିଲୁ। ସେଥିପାଇଁ ବେଶ୍ ଭୋକ ଲାଗିଯାଇଥାଏ। ଶାନ୍ତି, ସୁବ୍ରତ ଏକଥା ପ୍ରଥମରୁ ଅନୁମାନ କରିପାରିଥିଲେ। ତେଣୁ ପ୍ରଥମେ ତାଙ୍କ ଘରକୁ ନେଇ ଭଲ କରି ମାଛ ଝୋଳ, ଭାତ ଖାଇବାକୁ ଦେଲେ।

ଖାଇସାରିବା ପରେ ପ୍ରଶ୍ନ ଉଠିଲା ଯିବୁ କୁଆଡେ? ଶାନ୍ତି ସୁବ୍ରତଙ୍କର ଅତି ବୁଦ୍ଧିଆ ଚାରିବର୍ଷର ପୁଅ ଅର୍ଜୁନ ମାମଲତକାରଙ୍କ ଭଳି କହିଲା, "ମୋର ସବୁଠାରୁ ପ୍ରିୟ ଜାଗା ହେଉଛି ଜିଲ୍‌କର୍ ପାର୍କ। ତୁମକୁ ସେଠାକୁ ଯିବାକୁ ପଡିବ।" ଅର୍ଥାତ୍ ଆମମାନଙ୍କର ଅରାଜି ହେବାର ଉପାୟ ନାହିଁ। ପାର୍କ ନାଁ ଶୁଣି ରୁମି, ଗିଟି ମଧ୍ୟ ଖୁସି। ତେଣୁ ଆମେ ଜିଲ୍‌କର୍ ପାର୍କ ଉଦ୍ଦେଶ୍ୟରେ ବାହାରି ପଡିଲୁ।

ସାନ୍‌ଫ୍ରାନ୍‌ସିସ୍‌କୋର ଗୋଲ୍‌ଡେନ୍ ଗେଟ୍ ପାର୍କ ଭଳି ବିଶାଳ ପାର୍କଟିଏ ଏହି ଜିଲ୍‌କର୍ ପାର୍କ। ଟାଉନ୍‌ଲେକ୍‌ର ଦକ୍ଷିଣ ପ୍ରାନ୍ତରେ ୩୯୧ ଏକର ସ୍ଥାନ ଉପରେ ଗଢି ଉଠିଛି ଏଇଟି। ପାର୍କଟି ଅଷ୍ଟିନ୍‌ର ସବୁ ପାର୍କ ଅପେକ୍ଷା ବଡ। କେବଳ ଆକାରରେ ନୁହଁ, ଜନପ୍ରିୟତାରେ ମଧ୍ୟ। ଏହା ଏ.ଜେ. ଜିଲ୍‌କର୍‌ଙ୍କ ସ୍ମୃତିରେ ନିର୍ମିତ। ବହୁତଦିନ ତଳେ ଏଇ ୩୯୧ ଏକର ଜମି ଏ.ଜେ. ଜିଲ୍‌କର୍‌ଙ୍କ ବ୍ୟକ୍ତିଗତ ସମ୍ପତ୍ତି ଥିଲା। ସେ ଅଷ୍ଟିନ୍ ସହରକୁ ଏଇତକ ଜମି ଦାନ କରିଦେଲେ। କିନ୍ତୁ ତାଙ୍କର ସର୍ତ୍ତ ଥିଲା ଗୋଟିଏ। ସର୍ତ୍ତ ଏଇ ଯେ ଅଷ୍ଟିନ୍ ସହର ସରକାରୀ ସ୍କୁଲମାନଙ୍କୁ ଦୁଇଶହ ହଜାର ଡଲାର୍ ଦାନ କରିବ ଏବଂ ଏହି ଅର୍ଥ ଶିଳ୍ପ ଶିକ୍ଷାରେ ନିୟୋଜିତ ହେବ। ଅଷ୍ଟିନ୍ ସରକାର ଆନନ୍ଦରେ ରାଜି ହୋଇଥିଲେ ଏବଂ ଏଇଠାରେ ପାର୍କ ନିର୍ମାଣ କରିବା କଥା ସ୍ଥିର କରିଥିଲେ।

ଜିଲ୍‌କର୍ ପାର୍କର ଗୋଟିଏ ପ୍ରଧାନ ଆକର୍ଷଣ ହେଲା ବାର୍ଟନ୍ ସ୍ପ୍ରିଙ୍ଗ୍‌ସ୍ ପୁଲ୍। ପ୍ରାକୃତିକ ଝରଣାର ପାଣିକୁ ଧରି ରଖି ଏଇ ପୁଲଟିକୁ ନିର୍ମାଣ କରାଯାଇଛି। ଏହାର ସ୍ୱଚ୍ଛ ସୁନ୍ଦର ପାଣିରେ ପହଁରିବା ପାଇଁ ବହୁତ ଲୋକ ଆସନ୍ତି। ସେଦିନ ମଧ୍ୟ ବେଶ୍ କିଛି ଜଣ ପାଣିରେ ପହଁରୁଥିଲେ। ସେମାନଙ୍କୁ ଦେଖି ରୁମି, ଗିଟି

ପହଁରିବା ପାଇଁ ଟିକିଏ ଜିଦି ଆରମ୍ଭ କରିଦେଲେ। କିନ୍ତୁ ଏଣେ ସାଙ୍ଗରେ ସ୍ୱିମିଙ୍ଗ୍ ସୁଟ୍ ନାହିଁ, ତେଣେ ଥଣ୍ଡା ମଧ୍ୟ ଭଲ କରି ଯାଇ ନାହିଁ। ମୋର ବଡ ବଡ ଆଖି ଦେଖି ଚୁପ୍ ହୋଇ ରହିଲେ।

ଜିଲ୍‌କର୍ ପାର୍କର ଗୋଟିଏ ଅଂଶରେ ବିରାଟ ଫୁଲ ବଗିଚାଟିଏ ତିଆରି କରାଯାଇଛି। କେତେ ରଙ୍ଗର, କେତେ ପ୍ରକାରର ଫୁଲ। ଦେଖିଲେ ମନ ଖୁସି ହୋଇଯାଉଥାଏ। ସେଇଠି ପଡିଥିବା ବେଞ୍ଚରେ ବହୁତ ଲୋକ ବସିଥାଆନ୍ତି। କିନ୍ତୁ କେହି ହେଲେ ଫୁଲରେ ହାତ ଦେଉ ନ ଥାଆନ୍ତି। ମିତୁ, ଆମ ଦେଶରେ ଏମିତି ପାର୍କରେ ଫୁଲସବୁକୁ କ'ଣ ରହିବାକୁ ଦେବେ? ପାର୍କ ତ ଦୂର କଥା। କାହା ଘର ବଗିଚାରେ ଯଦି ଭଲ ଫୁଲ ହୋଇଛି ତେବେ ସକାଳୁ ଉଠିବା ବେଳକୁ ସେ ଆଉ ନ ଥିବ। ପାହେରି ତେଙ୍ଗ କିଏ ସବୁ ଚୋରୀ କରି ନେଇଥିବ। ଅଥଚ ଏଠି ଫୁଲ ଜଗିବାକୁ କେହି ନାହିଁ। ପାର୍କରେ ପଶିବା ପାଇଁ କୌଣସି ବାଧା ନାହିଁ। କିନ୍ତୁ ଫୁଲ ତୋଳିନେବା କଥା କେହି ଚିନ୍ତା ମଧ୍ୟ କରନ୍ତି ନାହିଁ।

ଏହି ଫୁଲ ବଗିଚା ବ୍ୟତୀତ ମତେ ଜିଲ୍‌କର୍ ପାର୍କର ଯେଉଁ ସ୍ଥାନଟି ବହୁତ ସୁନ୍ଦର ଲାଗିଲା ତାହା ହେଉଛି ଓରିଏଣ୍ଟାଲ୍ ଗାର୍ଡେନ୍। ଅନେକଟା ଗୋଲ୍‌ଡେନ୍ ଗେଟ୍ ପାର୍କର ଜାପାନିଜ୍ ଟି ଗାର୍ଡେନ୍ ଭଳି। କଇଁଫୁଲରେ ଭର୍ତ୍ତି ହୋଇଥିବା ଛୋଟ ଛୋଟ ପୋଖରୀ ଚାରିପଟେ ରହିଛି କାଠପୋଲମାନ। ଆଉ ତାହା କଡରେ ରହିଛି ସରୁ ରାସ୍ତା। ଏଇ ରାସ୍ତାରେ ଗଲେ ପଡେ ଚାହା ଦୋକାନଟିଏ। ଜାପାନ୍‌ର ଘରମାନଙ୍କ ଅନୁକରଣରେ କାଠ ଓ ବାଉଁଶରେ ତିଆରି ଏଇ ଦୋକାନରେ ଜାପାନର 'ଗ୍ରୀନ୍ ଟି' ମିଳେ।

ଜାପାନିଜ୍ ଚାହା ପିଇ ପାର୍କରୁ ବାହାରୁ ବାହାରୁ ରାତି ଆଠଟା। ଶନିବାର ଦିନ ଜିଲ୍‌କର୍ ପାର୍କ ରାତି ଦଶଟା ଯାଏଁ ଖୋଲା। କିନ୍ତୁ ପ୍ଳେନ୍‌ରେ ସାତ ଘଣ୍ଟା ସିଧା ଭାବରେ ବସି ରହିବାର କ୍ଳାନ୍ତି କ୍ରମଶଃ ଆମକୁ ଘେରି ଆସୁଥାଏ। ଆଉ ଅଧିକ ସମୟ ପାର୍କରେ ନ ରହି ଆମେ ହୋଟେଲ୍‌କୁ ଫେରିଆସିଲୁ।

ଅଷ୍ଟିନ୍‌ରେ ଶାନ୍ତି ଓ ସୁବ୍ରତଙ୍କ ବ୍ୟତୀତ ଆମର ଆହୁରି ଅନେକ ପରିଚିତ ଭାରତୀୟ ପରିବାର ରହନ୍ତି। ତିନିଦିନ ଭିତରେ ସମସ୍ତଙ୍କ ସହିତ ତ ଦେଖା କରିବା ଅସମ୍ଭବ। ସେଥିପାଇଁ ରବିବାର ଦିନ ସମସ୍ତେ ମିଶି ଗୋଟିଏ ପିକ୍‌ନିକ୍‌ର

ଆୟୋଜନ କରିଥିଲେ। ସ୍ଥାନଟି ହେଉଛି 'ଲେକ୍ ଅଷ୍ଟିନ୍'। ଏଇଟି କିନ୍ତୁ ବାସ୍ତବରେ ହ୍ରଦ ନୁହଁ, ନଦୀଟିଏ। ଅଷ୍ଟିନ୍ ସହର ଭିତରେ ବାଙ୍କି ବାଙ୍କି କଲୋରାଡୋ ନଦୀ ବହିଯାଇଛି (ଏହା ଆରିଜୋନା ବା ଗ୍ରାଣ୍ଡ କ୍ୟାନିଅନ୍‌ର କଲୋରାଡୋ ନଦୀ ନୁହଁ)। ଆଉ ବିଭିନ୍ନ ସ୍ଥାନରେ ଏଇ ନଦୀର ଭିନ୍ନ ଭିନ୍ନ ନାମକରଣ କରାଯାଇଛି। ଏଇ ଲେକ୍ ଅଷ୍ଟିନ୍ ମଧ୍ୟ କଲୋରାଡୋ ନଦୀର ଗୋଟିଏ ଅଂଶ।

ଆମେ ଦିନ ଦଶଟା ବେଳେ ଲେକ୍ ଅଷ୍ଟିନ୍ ନିକଟରେ ପହଞ୍ଚିଲୁ। ସ୍ଥାନଟି ଅତି ସୁନ୍ଦର। ନଦୀ କୂଳରେ ଧାଡି ହୋଇ ଲଗା ହୋଇଛି କେତେରକମର ଗଛ। ଆଉ ସେଠାରେ ପିକ୍‌ନିକ୍ କରିବାର ଓ ଖେଳକୁଦ କରିବାର ସମସ୍ତ ବ୍ୟବସ୍ଥା ରହିଛି। ହୋଟେଲ୍ ରୁମ୍‌ରୁ ବାହାରି ଏଇଭଳି ଏକ ଖୋଲାମେଲା ଜାଗାରେ ପହଞ୍ଚି ରୁମି, ଗିଟି ଖୁସି ହୋଇଗଲେ। ଅଳ୍ପ ସମୟ ମଧ୍ୟରେ ନୂଆ ସାଙ୍ଗମାନଙ୍କ ସାଙ୍ଗରେ ମିଶି ବଲ୍, ବ୍ୟାଡ୍‌ମିଣ୍ଟନ୍ ଖେଳିବା ଆରମ୍ଭ କରିଦେଲେ ସେମାନେ। ଆଉ ଆମର ତ କେତେ ଅଛିଣ୍ଡା ଗପ। ଏତେ ବର୍ଷ ପରେ ଦେଖା, ଗପିବାକୁ କେତେ କଥା ରହିଛି। ଦିନ କଟିଯାଇ ସନ୍ଧ୍ୟା ହୋଇଆସିଲା, କିନ୍ତୁ ଆମମାନଙ୍କର ଗପ ଶେଷ ହେଲା ନାହିଁ। ବନ୍ଧୁ ଅନିଚ୍ଛା ନେଇ ଆମେ ହୋଟେଲକୁ ଫେରିଲୁ।

ସୋମବାର ଦିନ ଅର୍ଥାତ୍ ଗତକାଲି ସକାଳୁ ଶାନ୍ତି ଗାଡି ଧରି ଆସି ହୋଟେଲ୍‌ରେ ପହଞ୍ଚିଗଲା। ପିକ୍‌ନିକ୍‌ର କ୍ଲାନ୍ତି, ପୁଣି ଦୁଇଘଣ୍ଟାର ଜେଟ୍‌ଲାଗ୍। ପିଲାମାନେ ସକାଳୁ ଉଠିବାକୁ ନାନା ରକମର ପେଖନା କାଢୁଥାଆନ୍ତି। କିନ୍ତୁ ଥରେ ଶାନ୍ତିକୁ ଦେଖିବା ପରେ ଆଉ କଥା ନ ବଢେଇ ଶୀଘ୍ର ଶୀଘ୍ର ପ୍ରସ୍ତୁତ ହୋଇଗଲେ ସେମାନେ।

ଶାନ୍ତି ଆଗରୁ କହି ରଖିଥିଲା ଯେ ସକାଳୁ ସେ ଆମମାନଙ୍କୁ ମାଉଣ୍ଟ ବନେଲ୍ ଦେଖାଇବାକୁ ନେଇଯିବ। ବଡ ରୋମାଣ୍ଟିକ୍ ଜାଗା ଏଇ ମାଉଣ୍ଟ ବନେଲ୍। ତଳୁ ୭୮୫ ଫୁଟ୍ ଉଚ୍ଚ। ଏମିତିରେ ଦେଖିଲେ ଉଚ୍ଚତା ଖୁବ୍ ବେଶୀ ନୁହଁ। କିନ୍ତୁ ଏହା ହେଉଛି ଅଷ୍ଟିନ୍‌ର ଉଚ୍ଚତମ ସ୍ଥାନ। ପାହାଡର ଅଧା ପର୍ଯ୍ୟନ୍ତ ସହଜରେ ଗାଡି ଯାଇପାରିବା ଭଳି ଚଉଡା ରାସ୍ତା ରହିଛି। ବାକୀଟା ରାସ୍ତା ଚାଲିବାକୁ ହୁଏ। ତେବେ ଅସୁବିଧା କିଛି ନାହିଁ। ପାହାଡ କାଟି ପାହାଚମାନ କରାଯାଇଛି। ଆଉ ଥରେ ଉପରେ ପହଞ୍ଚି ଗଲେ ସେ କି ଅପୂର୍ବ ଦୃଶ୍ୟ। ତଳେ କଲୋରାଡୋ ନଦୀ। ଆଉ ଦୂରରେ ଛବିଟିଏ ଭଳି ଅଷ୍ଟିନ୍ ସହର।

ଆମ ଭଳି ବହୁତ ଲୋକ ମାଉଣ୍ଟ ବନେଲ୍ ଦେଖିବାକୁ ଆସିଥାଆନ୍ତି। କେହି କେହି ସାଙ୍ଗରେ ପିକ୍‌ନିକ୍ ଜିନିଷପତ୍ର ଧରିଥାଆନ୍ତି। ଏବେ ସିନା ଏହା ଗୋଟିଏ ପ୍ରଧାନ ପର୍ଯ୍ୟଟକ ସ୍ଥଳୀ; ଦିନ ଥିଲା ଯେତେବେଳେ ଏଠାକୁ କେବଳ ପ୍ରେମିକ ପ୍ରେମିକାମାନେ ହିଁ ଆସୁଥିଲେ। ମାଉଣ୍ଟ ବନେଲ୍ ଯଦି କଥା କହି ପାରୁଥାଆନ୍ତା, ତେବେ କେତେ ପ୍ରେମକାହାଣୀ ଏବେ ଆମମାନଙ୍କୁ ଶୁଣାଉଥାଆନ୍ତା।

ମାଉଣ୍ଟ ବନେଲ୍‌ରେ କିଛି ସମୟ କଟାଇବା ପରେ ଶାନ୍ତି ଆମକୁ ନେଇଗଲା ଡାଉନ୍ ଟାଉନ୍ ଅଷ୍ଟିନ୍। ଅପରୂପ ପ୍ରାକୃତିକ ସୌନ୍ଦର୍ଯ୍ୟରୁ କୃତ୍ରିମ କଂକ୍ରିଟ୍‌ର ସହର ଭିତରକୁ। ଆମର ଲକ୍ଷ୍ୟ ଥିଲା ଅଷ୍ଟିନ୍‌ର କ୍ୟାପିଟଲ୍ - ରାଜ୍ୟର ରାଜନୀତିକ ପୀଠସ୍ଥଳୀ। ମୁଁ କୌଣସି ଗୋଟିଏ ବହିରେ ଅଷ୍ଟିନ୍‌ର କ୍ୟାପିଟଲ୍‌ର ଛବି ଦେଖିଥିଲି। ବହିର କଳାଧଳା ଛବିରୁ ମୁଁ ଧାରଣା କରିପାରି ନଥିଲି। କିନ୍ତୁ ଗାଡି ଅଟକେଇବା ପରେ ମୁଁ ଦେଖିଲି ଯେ କ୍ୟାପିଟଲ୍‌ର ରଙ୍ଗ ଗୋଲାପୀ। ସାଧାରଣତଃ ଆମେରିକାର ବିଭିନ୍ନ ରାଜ୍ୟର କ୍ୟାପିଟଲ୍ ୱାଶିଙ୍ଗଟନ୍ ଡି.ସି.ର କ୍ୟାପିଟଲ୍ ଅନୁକରଣରେ ଧଳା ବା ପାଉଁଶିଆ ପଥରରେ ତିଆରି। ଅଥଚ ଅଷ୍ଟିନ୍‌ର କ୍ୟାପିଟଲ୍ ତିଆରି ହୋଇଛି ଗୋଲାପୀ ଗ୍ରାନାଇଟ୍‌ରେ।

ଶାନ୍ତି କହିଲା ଯେ କ୍ୟାପିଟଲ୍ ଗୋଲାପୀ ଗ୍ରାନାଇଟ୍ ପଥରରେ ତିଆରି ହେବା ପଛରେ କାହାଣୀଟିଏ ଅଛି। ବର୍ତ୍ତମାନ ଆମେ ଯେଉଁ କ୍ୟାପିଟଲ୍ ଅଷ୍ଟିନ୍‌ରେ ଦେଖୁଛୁ, ତାହା ପ୍ରଥମ କ୍ୟାପିଟଲ୍ ନୁହଁ। ୧୮୫୫ ମସିହାରେ ନିର୍ମିତ ହୋଇଥିବା ପ୍ରଥମ କ୍ୟାପିଟଲ୍ ୧୮୮୧ ମସିହାରେ ନିଆଁରେ ପୋଡି ଧ୍ୱଂସ ହୋଇଯାଇଥିଲା। ଯେତେବେଳେ ନୂଆ କ୍ୟାପିଟଲ୍‌ଟିଏ ନିର୍ମାଣ କରିବାର ଯୋଜନା ଚାଲିଥିଲା, ସେତେବେଳେ ମାର୍ବଲ୍ ଫଲ୍‌ସଠାରେ ଥିବା ଗ୍ରାନାଇଟ୍ ପାହାଡର ମାଲିକମାନେ କ୍ୟାପିଟଲ୍ ନିମନ୍ତେ ଆବଶ୍ୟକୀୟ ଗ୍ରାନାଇଟ୍ ଦାନ କରିବା ପାଇଁ ଆଗ୍ରହ ଦେଖାଇଲେ। କିନ୍ତୁ ସେମାନେ ଛୋଟ ସର୍ତ୍ତଟିଏ ରଖିଥିଲେ। ସର୍ତ୍ତଟି ହେଲା ସରକାରଙ୍କୁ ଅଷ୍ଟିନ୍‌ଠାରୁ ବର୍ନେଟ୍ ପର୍ଯ୍ୟନ୍ତ ରେଳଲାଇନ୍ ନିର୍ମାଣ କରିବାକୁ ହେବ। ସରକାର ଏଥିରେ ରାଜି ହେଲେ। ଫଳରେ ମାର୍ବଲ୍ ଫଲ୍‌ସର ଗୋଲାପୀ ଗ୍ରାନାଇଟ୍ ପଥରରେ ନିର୍ମିତ ହେଲା କ୍ୟାପିଟଲ୍। ନୂତନ କ୍ୟାପିଟଲ୍‌ଟିର ନିର୍ମାଣ ୧୮୮୮ ମସିହାରେ ଶେଷ ହେଲା। ଏହାର ରଙ୍ଗ ସିନା ଗୋଲାପୀ; କିନ୍ତୁ ନିର୍ମାଣ ଶୈଳୀ ଅନେକଟା ୱାଶିଙ୍ଗଟନ୍ ଡି.ସି.ର କ୍ୟାପିଟଲ୍ ଭଳି।

କ୍ୟାପିଟଲ୍ ଦେଖି ସାରିବା ବେଳକୁ ପ୍ରାୟ ଦିନ ଅଢ଼େଇଟା। ହୋଟେଲ୍ ଫେରିଯିବା ବେଳେ ଶାନ୍ତି ଆମକୁ ଦୂରରୁ କେବଳ ୟୁନିଭର୍ସିଟି ଅଫ୍ ଟେକ୍ସାସ୍‌ର ଟାୱାରଟିକୁ ଦେଖାଇ ଦେଲା। ୨୦୦ ଏକର ସ୍ଥାନ ଉପରେ ରହିଥିବା ଟେକ୍ସାସ୍ ବିଶ୍ୱବିଦ୍ୟାଳୟକୁ ତ ଅଳ୍ପ କେଇ ମିନିଟ୍‌ରେ ଦେଖି ହେବ ନାହିଁ। ତେଣୁ ଆମେ ଓହ୍ଲେଇବା ପାଇଁ ଚାହିଁଲୁ ନାହିଁ।

ମିତୁ, ୧୮୮୩ ମସିହାରେ ଯେତେବେଳେ ଏହି ବିଶ୍ୱବିଦ୍ୟାଳୟ ଆରମ୍ଭ ହେଲା ସେତେବେଳେ ଏହାର କର୍ମକର୍ତ୍ତାମାନେ ଚିନ୍ତାରେ ପଡିଯାଇଥିଲେ। ଦାନରେ ସିନା ବିଶ୍ୱବିଦ୍ୟାଳୟ ବହୁତ ଜମି ପାଇଥିଲା, କିନ୍ତୁ ଦୈନନ୍ଦିନ ପରିଚାଳନା ପାଇଁ ଆବଶ୍ୟକୀୟ ଅର୍ଥର ଘୋର ଅଭାବ ଥିଲା। ୧୯୨୪ ମସିହାରେ ବିଶ୍ୱବିଦ୍ୟାଳୟ ଅଧୀନରେ ଥିବା ଜମିରୁ ତେଲ ଆବିଷ୍କୃତ ହେଲା। ତା'ପର ଘଟଣା ତ ତୁ ଅନୁମାନ କରି ପାରୁଥିବୁ। ଏହାପରେ ଆଉ ଅର୍ଥ ପାଇଁ ଟେକ୍ସାସ୍ ବିଶ୍ୱବିଦ୍ୟାଳୟକୁ ଚିନ୍ତା କରିବାକୁ ହୋଇ ନ ଥିଲା। ଆର୍ଥିକ ଦୃଷ୍ଟିକୋଣରୁ ଦେଖିଲେ ଏହା ବୋଧହୁଏ ଆମେରିକାର ପ୍ରଥମ ତିନୋଟି ବିଶ୍ୱବିଦ୍ୟାଳୟ ମଧ୍ୟରେ ସ୍ଥାନ ପାଇବ।

ଟେକ୍ସାସ୍ ବିଶ୍ୱବିଦ୍ୟାଳୟ ରାସ୍ତା ଦେଇ ଶାନ୍ତି ଆମକୁ ହୋଟେଲ୍‌କୁ ନେଇଗଲା। ଘରକୁ ଫେରି ଗଲାବେଳେ ସେ କହିଲା ସଂଧ୍ୟାରେ ସେମାନେ ଆମକୁ ଗୋଟିଏ ସୁନ୍ଦର ଜାଗାକୁ ନେଇଯିବେ। କି ଜାଗା? ସେଠି କ'ଣ ଅଛି?- ଆମର ଅସଂଖ୍ୟ ପ୍ରଶ୍ନର କେବଳ ଗୋଟିଏ ଉତ୍ତର ଦେଇଥିଲା ଶାନ୍ତି, ''କ୍ଷମା କରିବ, କହି ପାରିବି ନାହିଁ। କାରଣ ସେଇଟା ଗୋଟିଏ ସରପ୍ରାଇଜ୍।''

ହୋଟେଲ୍‌ରେ କିଛି ସମୟ ବିଶ୍ରାମ ନେଇ ଆମେ ପାଞ୍ଚଟା ପନ୍ଦର ବେଳକୁ ପ୍ରସ୍ତୁତ ହୋଇଗଲୁ। ଶାନ୍ତି, ସୁବ୍ରତ ଠିକ୍ ସାଢେ ପାଞ୍ଚଟାବେଳେ ଆସି ପହଞ୍ଚିଲେ।

ଅଷ୍ଟିନ୍‌ର ସବୁଠାରୁ ସୁନ୍ଦର ହାଇୱେ ୩୬୦ ଦେଇ ଆମେ ପ୍ରାୟ ଛଅଟା ବେଳେ ଯେଉଁଠାରେ ପହଞ୍ଚିଲୁ ସେଇଟି ଦୂରରୁ ମନେ ହେଉଥାଏ ପୁରୁଣା କାଳିଆ ଘରଟିଏ। ବିଶେଷ ଚାକଚକ୍ୟ ନ ଥାଇ ଗୋଟିଏ ସାଇନ୍ ବୋର୍ଡ ରାସ୍ତା ଉପରେ ଲଗା ହୋଇଥାଏ- ''ଓଏସିସ୍ ରେଷ୍ଟୋରାଁ''। ତଳେ ଛୋଟ ଛୋଟ ଅକ୍ଷରରେ ଲେଖା- 'ମେକ୍ସିକାନ୍ ଓ ଆମେରିକାନ୍ ଖାଦ୍ୟ।' ରେଷ୍ଟୋରାଁ ଶବ୍ଦଟି ପଢି ମୁଁ ଟିକିଏ ନିରୁତ୍ସାହିତ ହୋଇ ପଡିଲି। ଯଦି କେବଳ ଖାଇବା କଥା, ତେବେ ଅଧଘଣ୍ଟା ବାଟ ଗାଡି ଚଲେଇ ଆସିବାର କ'ଣ ଆବଶ୍ୟକତା ଥିଲା? ଅଷ୍ଟିନ୍

ସହର ଭିତରେ କ'ଣ ଭଲ ରେଷ୍ଟୋରାଁ ନାହିଁ? କିନ୍ତୁ ଫାଟକ ଦେଇ ଭିତରକୁ ପଶିଗଲା ପରେ ମୁଁ ଦେଖିଲି ଯେ ଗାଡି ପରେ ଗାଡିର ଧାଡି ଲାଗିଛି। ସୋରିଷ ପକେଇବାର ଜାଗା ନାହିଁ। କୌଣସି ମତେ ଆମକୁ ଗାଡି ପାର୍କ କରିବା ପାଇଁ ସ୍ଥାନ ମିଳିଲା। ମୁଁ ମନେ ମନେ ଭାବିଲି ନିଶ୍ଚୟ ଏଠିକାର ଖାଇବା ଅତି ବଢ଼ିଆ। କିନ୍ତୁ ମୋର ତ ଉଭୟ ମେକ୍ସିକାନ୍ ଓ ଆମେରିକାନ୍ ଖାଇବାରେ ରୁଚି କମ୍। ତେଣୁ ଖୁବ୍ ବେଶୀ ଆଗ୍ରହ ଦେଖାଇ ପାରୁ ନ ଥାଏ। ଆମେ ରେଷ୍ଟୋରାଁ ଭିତରେ ପାଦ ଦେଲୁ। ବାହାରଟି ସିନା ପୁରୁଣାକାଳିଆ, ଭିତରଟି ବେଶ୍ ସୁନ୍ଦର। ହଲିଉଡ୍‌ର ୱେଷ୍ଟର୍ଣ୍ଣ ସିନେମାରେ ଦେଖିଥିବା ଭଳି ବାର୍‌ଟିଏ। ତା' ପାଖରେ ଛୋଟ ଛୋଟ ଗୋଲ ଟେବୁଲ୍। କିନ୍ତୁ ବେଶୀ ଭାଗ ଟେବୁଲ୍ ଖାଲି। ବାହାରେ ଏତେ ଗାଡି, ଅଥଚ ଲୋକମାନେ ଗଲେ କୁଆଡେ?

ଏହା ଭିତରେ ନାଲି ରଙ୍ଗର ଡ୍ରେସ୍ ପିନ୍ଧିଥିବା କମ୍ ବୟସର ଝିଅଟିଏ ଆମ ପାଖକୁ ଆସିଲା। ହସି କରି କହିଲା, "ଦିସ୍ ୱେ ପ୍ଲିଜ୍।" କୋଠରୀର ଗୋଟିଏ କଣରେ ଥିବା କବାଟ ଦେଇ ସେ ଆମକୁ ନେଇଗଲା। ପୁଣି ଆଉ ଗୋଟିଏ କୋଠରୀ। ଟେବୁଲ ଚୌକୀ ପଡିଛି, ହେଲେ ମଣିଷ ନାହାନ୍ତି। ଆମେ ଝିଅଟି ପଛେ ପଛେ ଚାଲିଥାଉ। କବାଟ ପାଖରେ ପହଞ୍ଚି ସେ ଠିଆ ହୋଇଗଲା। କହିଲା, "କମ୍ ଅନ୍ ଇନ୍"। ମିତୁ, କବାଟ ପାର ହୋଇ ମୁଁ ଚମକି ରହିଗଲି। କବାଟ ସେ ପାଖରେ ଗୋଟିଏ ବିରାଟ ଖୋଲା ବାଲ୍‌କୋନି। ଗୋଟିଏ ଦୁଇଟାକୁ ଛାଡିଦେଲେ ବାଲ୍‌କୋନିରେ ପଡିଥିବା ସବୁ ଟେବୁଲ୍ ଚାରିପଟେ ଲୋକ। ବାଲ୍‌କୋନିଟି କେବଳ ଗୋଟିଏ ସ୍ତରରେ ନାହିଁ। ଚାରି ପାଞ୍ଚୋଟି କାଠର ବାଲ୍‌କୋନି ପାହାଚ ପାହାଚ ଭଳି ତିଆରି ହୋଇଛି ଏବଂ ସବୁଠାରେ ଲୋକ ଭର୍ତ୍ତି। ବାଲ୍‌କୋନିର ସେପାଖରେ ରହିଛି ବିଶାଳ ଲେକ୍ ଟ୍ରାଭିସ୍। ଦୂରରେ ହ୍ରଦଟିର ପଶ୍ଚିମ ପାଖରେ କିଏ ଆଙ୍କି ଦେଇଥିବା ଭଳି ପାହାଡମାନ। ଆଉ ସୂର୍ଯ୍ୟଙ୍କର ଅବସ୍ଥିତି ସେତେବେଳେ ପାହାଡର ଅଳ୍ପ ଉପରେ।

ଶାନ୍ତି କହିଲା, "ଏଠି ସୂର୍ଯ୍ୟାସ୍ତ ଏତେ ସୁନ୍ଦର ଯେ ଟେକ୍‌ସାସ୍‌ର ବିଭିନ୍ନ ପ୍ରାନ୍ତରୁ ଲୋକ କେବଳ ସୂର୍ଯ୍ୟାସ୍ତ ଦେଖିବାପାଇଁ ଏଇଠିକୁ ଆସନ୍ତି।" ସେଇଥିପାଇଁ ବୋଧହୁଏ ଏମିତି ଭିଡ ଏଠି। ଆମେ ଟେବୁଲ୍ ଚାରିପଟେ ବସିଗଲୁ। ଝିଅଟିଏ ଆସି ଆମ ଖାଇବା ଅର୍ଡର ନେଇଗଲା। କିନ୍ତୁ ଖାଇବାରେ ମନ କାହାର ଥାଏ?

କେବଳ ଆମ ଟେବୁଲ୍ ନୁହଁ, ପ୍ରାୟ ସବୁ ଟେବୁଲ୍‌ରେ ବସିଥିବା ଲୋକମାନେ ଖାଇବା କଥା ଭୁଲିଯାଇ ଫଟୋ ଉଠେଇବାରେ ବା ସ୍ଥାନଟିର ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଭୋଗ କରିବାରେ ମଗ୍ନ ହୋଇ ପଡିଥାଆନ୍ତି। ଚାରିଆଡେ ଗୋଟିଏ ଉତ୍ସବର ବାତାବରଣ। ସୂର୍ଯ୍ୟ ଧୀରେ ଧୀରେ ତଳକୁ ଓହ୍ଲେଇ ଆସିଲେ। ପଶ୍ଚିମ ଆକାଶଟି ଦିଶୁଥାଏ ଅପରୂପ। ନାଲି, ବାଇଗଣୀ ରଙ୍ଗର ଅପୂର୍ବ ସମାରୋହ। ଅସ୍ତଗାମୀ ସୂର୍ଯ୍ୟଙ୍କର ଏଭଳି ରଙ୍ଗ ମୁଁ ପୂର୍ବରୁ କେବେହେଲେ ଦେଖି ନ ଥିଲି। ବୋଧହୁଏ ଏଇଥି ପାଇଁ ଲେଖକ ଉଇଲିଅମ୍ ସିଡନୀ ପୋର୍ଟର ବା ଯାହାଙ୍କୁ ସମସ୍ତେ ଓ.ହେନେରୀ ହିସାବରେ ଜାଣନ୍ତି ଅଷ୍ଟିନ୍ ସହରକୁ କହିଥିଲେ, "City of a Violet Crown."

ସୂର୍ଯ୍ୟ କ୍ରମଶଃ ତଳକୁ ଓହ୍ଲେଇ ପାହାଡରେ ପାଦ ଦେଲେ। ତା'ପରେ ମାତ୍ର କେତୋଟି ମୁହୂର୍ତ୍ତ ମଧ୍ୟରେ ପାହାଡ ସେ ପାଖରେ ଲୁଚିଗଲେ। ସେହି ସମୟରେ ରେଷ୍ଟୋରାଁରେ ବେଲ୍‌ଟିଏ ବାଜି ଉଠିଲା। ଆଉ ଲୋକମାନେ ତାଳି ବଜେଇବାକୁ ଲାଗିଲେ। ମିତ୍ର, ମୋର ମନେ ହେଲା ଯେମିତି ମଞ୍ଚ ଉପରେ ଖୁବ୍ ସୁନ୍ଦର ଅଭିନୟ ଦେଖାଇ ଜଣେ ଅଭିନେତା ପର୍ଦ୍ଦା ସେପାଖକୁ ଚାଲିଗଲେ!

ସାରାଟା ସନ୍ଧ୍ୟା ଗୋଟିଏ ସତେଜ ଭାବ ଘେରି ରହିଲା ମୋତେ। ଆଜି ସକାଳେ ଯେତେବେଳେ ମୁଁ ଆଖି ଖୋଲିଲି ଗତ ସନ୍ଧ୍ୟାର ସେଇ ସମ୍ମୋହନ ଭାବ ଆସି ଜାବୁଡି ଧରିଥିଲା ମୋ ସତ୍ତାକୁ।

ସନ୍ଧ୍ୟା ପାଞ୍ଚଟା ପଇଁଚାଳିଶରେ ଆମର ଫ୍ଲାଇଟ୍। ଶାନ୍ତି ଓ ସୁବ୍ରତଙ୍କର ବହୁତ ଇଚ୍ଛା ଥିଲା ଆମକୁ ନେଇ ସାନ୍‌ଆଣ୍ଟୋନିଓ ଯିବାକୁ। କିନ୍ତୁ ସକାଳୁ ସାନ୍ ଆଣ୍ଟୋନିଓ ଯାଇ ଚାରିଟା ବେଳକୁ ଫେରିବା ସମ୍ଭବ ହୋଇ ନ ଥାଆନ୍ତା। ତା' ଛଡା ସାନ୍ ଆଣ୍ଟୋନିଓର ପ୍ରଧାନ ଆକର୍ଷଣ 'ସି ୱାର୍ଲଡ' ଦେଖିବାକୁ ଆମମାନଙ୍କର ବିଶେଷ ଇଚ୍ଛା ନ ଥିଲା। କାରଣ ଆମେ ତ ସାନ୍ ଡିଏଗୋର ସି ୱାର୍ଲଡ୍ ଆଗରୁ ଦେଖିଛୁ। ତା' ଅପେକ୍ଷା ବରଂ ନୂଆ କିଛି ଦେଖିଲେ ଭଲ। ସୁବ୍ରତ କିଛି ସମୟ ଚିନ୍ତା କରି କହିଲେ, "ଗୁମ୍ଫା ଦେଖିବାକୁ ଯିବ? ଚୂନପଥରର ଗୁମ୍ଫା?" ଆମେ ସମସ୍ତେ ଆଗ୍ରହରେ ରାଜି ହୋଇଗଲୁ। ଚୂନପଥର ଗୁମ୍ଫା କଥା ଆମେ ଆଗରୁ ଶୁଣିଛୁ। କିନ୍ତୁ କେବେହେଲେ ଦେଖିବାର ସୌଭାଗ୍ୟ ହୋଇନାହିଁ। ବହୁତଦିନ ଆଗରୁ ଆମେ ଯେତେବେଳେ ୱାଶିଂଟନ୍ ଡି.ସି. ଯାଇଥିଲୁ,

ମୋର ଜଣେ ପରିଚିତ ମତେ କହିଥିଲା, 'ଭର୍ଜିନିଆର କ୍ୟାଭର୍ଣ୍ଣ ଦେଖିବାକୁ ଯିବ ନିଶ୍ଚୟ।'' କିନ୍ତୁ ସେତେବେଳେ ଆମ ପାଖରେ ଯଥେଷ୍ଟ ସମୟ ନ ଥିଲା। ଭର୍ଜିନିଆର କ୍ୟାଭର୍ଣ୍ଣ ନ ଦେଖି ପାରିବାର ଦୁଃଖ ମନ ଭିତରେ ରହିଯାଇଥିଲା। ତେଣୁ ଛୋଟ ହେଉ ପଛକେ, ଏଠିକାର କ୍ୟାଭର୍ଣ୍ଣ ବା ଗୁମ୍ଫା ଦେଖିବାକୁ ମୁଁ ଆଗ୍ରହୀ ହୋଇ ପଡିଥିଲି।

ସୁବ୍ରତ ଆଣିଥିବା ବଡ ଭ୍ୟାନ୍‌ରେ ବସି ଆମେମାନେ ଚାଲିଲୁ ନିଉ ବ୍ରନ୍‌ଫେଲ୍‌ସ୍ (New Braunfels)।

ନିଉ ବ୍ରନ୍‌ଫେଲ୍‌ସ୍ ସହରର ସ୍ଥାପନା ଟେକ୍‌ସାସ୍ ଇତିହାସରେ ଏକ ରଙ୍ଗୀନ ଅଧ୍ୟାୟ। ଅତି ପରିଷ୍କାର, ପରିଚ୍ଛନ୍ନ ସହର। ଛୋଟ ଛୋଟ ପୁରୁଣାକାଳିଆ ଘର। ଦେଖିଲେ ମନେହେବ ଯେମିତି ଟାଇମ୍ ମେସିନ୍‌ରେ ବସି ଜଣେ ଦୁଇଶହବର୍ଷ ପଛକୁ ଚାଲିଯାଇଛି। ୧୮୪୫ ମସିହାରେ ଜର୍ମାନ୍ ଯୁବରାଜ କାର୍ଲଜ ସୋମ୍‌ସ ବ୍ରନ୍‌ଫେଲ୍‌ସ ଏହି ସ୍ଥାନରେ ଜର୍ମାନ କଲୋନୀଟିଏ ସ୍ଥାପନ କରିଥିଲେ। ଜର୍ମାନୀରୁ ଆସିଥିବା ଦୁଇଶହ ପରିବାର ଏହି ସ୍ଥାନରେ ଆସି ଘର କରି ରହିଗଲେ। ଯୁବରାଜଙ୍କର ଶାନ୍ତ ସ୍ୱଭାବ ଓ ସଦ୍‌ଭାବପୂର୍ଣ୍ଣ ବ୍ୟବହାର ଟେକ୍‌ସାସ୍ ଲୋକଙ୍କର ମନ କିଣି ନେଇଥିଲା। ଖୁବ୍ ଶୀଘ୍ର ଟେକ୍‌ସାସ୍‌ବାସୀଙ୍କ ସହିତ ମିଶିଗଲେ ଜର୍ମାନୀରୁ ଆସିଥିବା ଏହି ଲୋକମାନେ। ପରେ ଯୁବରାଜଙ୍କର ନାମ ଅନୁସାରେ ସେମାନେ ସ୍ଥାନଟିକୁ ନାମିତ କରିଥିଲେ ବ୍ରନ୍‌ଫେଲ୍‌ସ୍।

ଆମେ ନିଉ ବ୍ରନ୍‌ଫେଲ୍‌ସରେ ପହଞ୍ଚିବା ବେଳକୁ ଦିନ ସାଢେ ଦଶଟା। ରାସ୍ତାରେ ଲଗା ହୋଇଥିବା ସାଇନ୍ ବୋର୍ଡ ଦେଖି ଦେଖି ଆମେ ତା'ପରେ ଚାଲିଲୁ 'ନ୍ୟାଚୁରାଲ୍ ବ୍ରିଜ୍ କ୍ୟାଭର୍ଣ୍ଣ' ଆଡେ। ସୁବ୍ରତ ଯେଉଁଠାରେ ଗାଡି ଅଟକେଇଲେ, ସେଇଠାରେ ଗୋଟିଏ ବଡ ଘର ଛଡା ଆଉ କିଛି ଦେଖା ଯାଉ ନ ଥାଏ। ପିଲାମାନେ ବୁଲି ବୁଲି ଚାରିଆଡେ ଦେଖୁଥାଆନ୍ତି। କିନ୍ତୁ କେଉଁଠି କିଛି ଗୁମ୍ଫା ଦିଶୁ ନ ଥାଏ।

ଆମେ ଫାଟକ ଦେଇ ଘର ଭିତରେ ପଶିଲୁ। ସେଇଠାରେ ଟିକେଟ୍ ବିକ୍ରି କରୁଥାଏ ଝିଅଟିଏ। ଟିକେଟ୍ କିଣି ଅନ୍ୟ ଗୋଟିଏ କବାଟ ଦେଇ ଆମେ ବାହାରକୁ ଚାଲିଗଲୁ। ସେଠାରେ ପଥରର ବେଞ୍ଚମାନ ତିଆରି ହୋଇଥାଏ। ଆଉ ଆମ ଭଳି ବହୁତ ଲୋକ ଅପେକ୍ଷା କରି ବସିଥାଆନ୍ତି। ସାମ୍ନାରେ ଗୋଟିଏ

ବୋର୍ଡରେ ଲେଖା ହୋଇଥାଏ ଯେ ଏଗାରଟା ଦଶ ବେଳେ ଆମ ଟୁର୍ ଆରମ୍ଭ ହେବ।

ଏଗାରଟା ଦଶ ହେଲା। ଠିକ୍ ସମୟ ଅନୁସାରେ ନାଲି ଟି ସାର୍ଟ ଓ ଖାକି ରଙ୍ଗର ହାପ୍ ପ୍ୟାଣ୍ଟ ପିନ୍ଧି ହାତରେ ଗୋଟିଏ ବଡ ଟର୍ଚ୍ଚ ଧରି ଜଣେ ଯୁବକ ଭିତରୁ ବାହାରି ଆସିଲେ। ସେ ମାଇକ୍ - ଆମ ଗାଇଡ୍। ମାଇକ୍ ଆମମାନଙ୍କୁ ଗୁମ୍ଫାର ଠିକ୍ ମୁହଁପାଖକୁ ନେଇଗଲେ। ସେ ସ୍ଥାନଟି କି ବିଚିତ୍ର! ଠିକ୍ ଯେମିତି ପଥରର ପୋଲଟିଏ କିଏ ତିଆରି କରିଛି। ସେଇଠି ଠିଆ କରାଇ ମାଇକ୍ ପ୍ରଥମେ ସମସ୍ତଙ୍କୁ ସତର୍କ କରିଦେଲେ। ଯିଏ ଅସୁସ୍ଥ ବା ଦୁର୍ବଳ ତା' ପକ୍ଷରେ ଗୁମ୍ଫା ଭିତରକୁ ଯିବା ଉଚିତ ହେବନାହିଁ। କାରଣ ପଇଁଚାଳିଶ ମିନିଟ୍ ବାଟ ଚାଲିବାକୁ ହେବ। ହଠାତ୍ ଯଦି ସେ ଅସୁସ୍ଥ ହୋଇପଡେ, ତେବେ କରିବାର କିଛି ନ ଥିବ।

ଗୁମ୍ଫାର ମୁହଁ ପାଖରେ ଗୋଟିଏ ବଡ ଲୁହାର ଫାଟକ ରହିଥାଏ। ଫାଟକର ଚାବି ଖୋଲି ଆମ ସମସ୍ତଙ୍କ ଠାରୁ ଟିକେଟ ନେଲେ ମାଇକ୍। ତା'ପରେ ତାଙ୍କ ପଛେ ପଛେ ଚାଲିଲୁ ଆମେମାନେ। ପୁଣି ଗୋଟିଏ କାଚ କବାଟ। ଚାବି ଦେଇ ସେ କବାଟଟିକୁ ମଧ୍ୟ ମାଇକ୍ ଖୋଲିଲେ। କାଚ କବାଟ ଦେଇ ଭିତରକୁ ଚାଲିଯିବା ପରେ ମୁଁ ଯାହା ଦେଖିଲି ସେଥିରେ ମୋର ଆଖି ଖୋସି ହୋଇଗଲା। ଚୂନପଥରର ଷ୍ଟାଲାକ୍ଟାଇଟ୍, ଷ୍ଟାଲାଗ୍ମାଇଟ୍‌ରେ ଗୁମ୍ଫାଟି ଭର୍ତ୍ତି। ସ୍କୁଲରେ ପଢିବାବେଳେ, ବୋଧହୁଏ ନବମ ଶ୍ରେଣୀରେ, ଏଇ ଷ୍ଟାଲାକ୍ଟାଇଟ୍, ଷ୍ଟାଲାଗ୍ମାଇଟ୍ କଥା ଭୂଗୋଳରେ ପଢିଥିଲି। ଗୁମ୍ଫାର ଛାତ ଉପରୁ ଝୁଲୁଥିବା ଚୂନପଥରର ଖଣ୍ଡଗୁଡିକ ଷ୍ଟାଲାକ୍ଟାଇଟ୍। ତଳୁ ଉପରକୁ ଉଠିଥିବା ଖଣ୍ଡଗୁଡିକ ଷ୍ଟାଲାଗ୍ମାଇଟ୍। ସେତେବେଳେ ଭୂଗୋଳ ବହିରେ ସେସବୁର ଛବି ଦେଖି ମୁଁ କିଛିଟା ଅବିଶ୍ୱାସ ନେଇ ତଥ୍ୟଗୁଡିକ ମନେ ରଖିବାର ଚେଷ୍ଟା କରିଥିଲି। ବହୁ ଚେଷ୍ଟା ସତ୍ତ୍ୱେ ଷ୍ଟାଲାକ୍ଟାଇଟ୍ ଓ ଷ୍ଟାଲାଗ୍ମାଇଟ୍ ଭିତରେ ମୋର ସବୁବେଳେ ଗୋଳମାଳ ହୋଇଯାଉଥିଲା। ସେଥିପାଇଁ କ୍ଲାସରେ ଭୂଗୋଳ ପଢାଉଥିବାବେଳେ ଶ୍ରୀକାନ୍ତ ସାର୍‌ଙ୍କଠାରୁ କେତେଥର ଗାଳି ମଧ୍ୟ ଖାଇଛି। ଆଜି ସ୍ୱଚକ୍ଷୁରେ ସେସବୁ ଦେଖିବାବେଳେ ମୁଁ ଯେମିତି ଅନ୍ୟ ଏକ ପୃଥିବୀକୁ ଚାଲିଗଲି। କିଏ କହିବ ଗୁମ୍ଫା ଭିତର ଚୂନପଥରରେ ତିଆରି? ମନେ ହେଉଥାଏ ଯେମିତି ମାର୍ବଲ ପଥରରେ କିଏ ସେସବୁକୁ ନିର୍ମାଣ କରିଛି। ମିତୁ, ପ୍ୟାରିସ୍‌ର

ଲୁଭ୍ର ମିଉଜିଅମ୍‌ରେ ମୁଁ ପୃଥିବୀ ପ୍ରସିଦ୍ଧ ମାର୍ବଲ୍ ତିଆରି ମୂର୍ତ୍ତିମାନ ଦେଖିଛି। କିନ୍ତୁ ଯିଏ ଚୂନପଥରରେ ଏଭଳି ସ୍ଥାପତ୍ୟ ସୃଷ୍ଟି କରିପାରିଛି, ସେ କେତେବଡ କଳାକାର ନ ହୋଇଥିବ ? ସେସବୁକୁ ଦେଖିଲେ ଈଶ୍ୱରଙ୍କ ନିକଟରେ ମଣିଷର ମୁଣ୍ଡ ନଇଁଯିବ।

ଗୋଟିଏ ପରେ ଗୋଟିଏ ଗୁମ୍ଫା ପାର ହୋଇ ଆମେ ଚାଲିଥାଉ। ଗୁମ୍ଫାର କେଉଁ ଅଂଶଟି ଗୀର୍ଜାଟିଏ ଭଳି ହୋଇଥାଏ ତ କେଉଁଟା ହୋଇଥାଏ ରାଜାର ସିଂହାସନ ଭଳି। ପ୍ରତ୍ୟେକ ଗୁମ୍ଫାର ଗୋଟିଏ ଗୋଟିଏ କାହାଣୀ ରହିଛି। ମାଇକ୍ କାହାଣୀମାନ ବର୍ଣ୍ଣନା କରୁଥାଆନ୍ତି। କେମିତି ଗୁମ୍ଫାଟି ଆବିଷ୍କୃତ ହେଲା, କିଏ ଆବିଷ୍କାର କଲା- ଏମିତି କେତେ କଥା ସବୁ। କିନ୍ତୁ ମୁଁ ଷ୍ଟାଲାକ୍‌ଟାଇଟ୍ ଓ ଷ୍ଟାଲାଗ୍‌ମାଇଟ୍ ମୋହରେ ଏମିତି ଭାବରେ ପଡିଯାଇଥାଏ ଯେ ମାଇକଙ୍କ ଅଧା କଥା ଶୁଣି ମଧ୍ୟ ମୋର ଅଶୁଣା ରହିଯାଉଥାଏ।

ଶେଷ ଗୁମ୍ଫାରୁ ବାହାରିବାବେଳକୁ ଗିଟି ଗାଲରେ ହାତ ଦେଇ ପଚାରିଲା, "ମା, ଉପରୁ ଝୁଲୁଥିବା ଗୁଡିକ ଷ୍ଟାଲାକ୍‌ଟାଇଟ୍ ନା ଷ୍ଟାଲାଗ୍‌ମାଇଟ୍ ?" ମିତୁ, ଏଥରକ ମୋର ଆଦୌ ଭୁଲ୍ ହେଲାନାହିଁ। ମୁଁ ଠିକ୍ ଷ୍ଟାଲାକ୍‌ଟାଇଟ୍ କେଉଁଟା, ଷ୍ଟାଲାଗ୍‌ମାଇଟ୍ କେଉଁଟା କହିପାରିଲି। ଏବେ ଯଦି ଶ୍ରୀକାନ୍ତ ସାର୍ ଏକଥା ଜାଣନ୍ତି, ତେବେ ନିଶ୍ଚୟ ବହୁତ ଖୁସି ହେବେ।

ନ୍ୟାଚୁରାଲ୍ ବ୍ରିଜ୍ କ୍ୟାଭର୍ଣ୍ଣରୁ ବାହାରି ସେଠିକାର ଦୋକାନରେ କିଛି ସମୟ କଟାଇ ଗାଡିରେ ବସିବାବେଳେ ପ୍ରାୟ ଗୋଟାଏ। ଅଷ୍ଟିନ୍ ଏଆର୍‌ପୋର୍ଟରେ ସାଢେ ଚାରିଟା ସୁଦ୍ଧା ପହଞ୍ଚିବାକୁ ହେବ। ତେଣୁ ଆଉ ଅଯଥା ଡେରି ନ କରି ଆମେ ବାହାରିପଡିଲୁ। ବାଟରେ କିଛି ଖାଇ ନେଇ, ହୋଟେଲ୍‌ରୁ ସୁଟ୍‌କେଶ୍ ନେଇ ଏଆର୍‌ପୋର୍ଟରେ ପହଞ୍ଚିବା ବେଳକୁ ଚାରିଟା ପନ୍ଦର। ଶାନ୍ତି, ସୁବ୍ରତଙ୍କୁ ଅସଂଖ୍ୟ ଧନ୍ୟବାଦ ଜଣେଇ ଆମେ ଏଆରପୋର୍ଟ ଲାଉଞ୍ଜରେ ପଶିଲୁ।

ତା'ପରେ ଅଷ୍ଟିନ୍‌ରୁ ସାନ୍ ହୋଜେ। ଲମ୍ବା ଛଅଘଣ୍ଟାର ଫ୍ଲାଇଟ୍। କିଛି ସମୟ ଆଗରୁ ଏଆର୍‌ହୋଷ୍ଟେସ୍ ରାତି ଖାଇବା ଦେଇ ସାରିଛନ୍ତି। କମ୍ବଳ ଘୋଡି ହୋଇ ଅନ୍ୟ ଯାତ୍ରୀମାନେ ଶୋଇବାର ଚେଷ୍ଟା କରୁଛନ୍ତି। ମୋର ତ ନିଦ କମ୍ ତେଣୁ ବସି କରି ତତେ ଚିଠି ଲେଖୁଛି। ବାଁ ପାଖ ଝରକା ଦେଇ ତଳେ ମୁଁ ସହରଟିଏର ଆଲୁଅ ଦେଖିପାରୁଛି। ଆମେ ବୋଧହୁଏ ସଲ୍‌ଟଲେକ୍

ସିଟିରେ ପହଞ୍ଚିଗଲୁଣି । ଏଇଠି ଆମ ପ୍ଲେନ୍ ଘଣ୍ଟାଏ ରହି ପୁଣି ସାନ୍ ହୋଜେ ଯିବ । ତା'ପରେ ସାନ୍‌ହୋଜେରୁ ଫେରୁଛୁ ଏନୋ । କାଲିଠାରୁ ପୁଣି ଆରମ୍ଭ ହୋଇଯିବ ଆମର ସବୁଦିନିଆ ଜୀବନ । କିନ୍ତୁ ଆକସ୍ମିକ ଭାବରେ ଅଷ୍ଟିନ୍‌ରେ ଆମେ ଏଇ ଯେଉଁ ତିନିଦିନର ଛୁଟୀଟି କଟେଇ ଆସିଲୁ, ତାହା ବେଶ୍ କିଛିଦିନ ପାଇଁ ଆମ ମନକୁ ସତେଜ ରଖିବ ।

ଆଜି ଏଇଠି ରହୁଛି । ଚିଠି ପାଇ ଚିଠି ଦେବୁ ।

ଇତି

ତୋର 'ନାନୀ'

କୁପରଟିନୋ
୨୭ ଏପ୍ରିଲ, ୧୯୯୩

ସ୍ନେହର ମିତୁ,

ପ୍ରାୟ ମାସେ ହେଲାଣି ତୋତେ ଚିଠି ଲେଖିବା କଥା ମୁଁ ଭାବୁଛି। କିନ୍ତୁ 'ଆଜି ଲେଖିବି', 'କାଲି ଲେଖିବି'ରେ ଏତେଗୁଡାଏ ଦିନ ଚାଲିଗଲା। କାଗଜ କଲମ ନେଇ ମଧ ମୁଁ କେତେଥର ବସିଥିଲି। ହେଲେ କେମିତି କେଜାଣି କଲମ ଖୋଲିବା ମାତ୍ରକେ ପୃଥିବୀଯାକର କାମ ମନେ ପଡିଯାଉଥିଲା ମୋର। ଆଉ ସେ ସବୁ କାମ ଶେଷ କରିବା ପରେ ପୁଣି ଥରେ କଲମ ଧରିବାର ଶକ୍ତି ମୋ ଦେହରେ ରହୁ ନ ଥିଲା। କିନ୍ତୁ ଆଜି ତୋର ତୃତୀୟ ଚିଠିଟା ପାଇବା ପରେ ମୁଁ ସବୁ କାମକୁ ଏଡାଇ ଦେଇ ତୋତେ ଚିଠି ଲେଖିବା ପାଇଁ ବସିଗଲି।

ତୁ ହୁଏତ ଭାବୁଥିବୁ, ହଠାତ୍ ଏମିତି କାମର ପାହାଡ କେମିତି ଲଦି ହୋଇଗଲା ମୋ ମୁଣ୍ଡରେ? ମିତୁ, ଏସବୁ ଯେ ଫେରିବାର ପ୍ରସ୍ତୁତି! ଆଉ ମାତ୍ର ସତର ଦିନ ପରେ ଅର୍ଥାତ୍ ମେ' ୧୪ରେ ଆମେ ଭାରତ ଫେରିବୁ। ଗୋଟିଏ ଘର ବଦଳି ହୋଇଗଲେ କେତେ କାମ, ତାହା ତୁ ଜାଣୁ ନିଶ୍ଚୟ। ଯେ ତ ପୁଣି ଗୋଟିଏ ଦେଶ ଛାଡି ଅନ୍ୟ ଦେଶକୁ ଯିବା କଥା। ଆମେ ଯେତେବେଳେ ଆମେରିକା ଆସିଲୁ, ସେତେବେଳେ ସ୍ଥିର କରି ଆସିଥିଲୁ ଯେ ଏଠାରେ ଦୁଇବର୍ଷରୁ ଅଧିକ ଆଦୌ ରହିବୁ ନାହିଁ। ସେଥିପାଇଁ ଏଠାରେ ଜମେଇ

କରି ଘର ସଂସାର ବସେଇ ନ ଥିଲୁ। ଭଡା ଘର, ଭଡା ଆସବାବପତ୍ର, ଭଡା ଗାଡି - ଏସବୁ ଆମ ମନରେ ଛୁଟୀ କଟାଉଥିବାର ଭାବ ପ୍ରାୟ ଆଣି ଦେଉଥିଲା। ତଥାପି ଆଜି ଖଣ୍ଡିଏ ବହି, କାଲି ଟେବୁଲ କ୍ଲଥ୍‌ଟିଏ, ପଅର ଦିନ ପ୍ଲେଟ୍ କେତେଖଣ୍ଡ- ଏମିତି କିଣୁ କିଣୁ ଜିନିଷପତ୍ରର ପରିମାଣ ବେଶ୍ ବଢିଗଲା। ଭାରତ ଭିତରେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଉଥିଲେ ଟ୍ରକ୍‌ରେ ସେସବୁ ପଠେଇ ଦେଇ ନିଶ୍ଚିନ୍ତ ହୋଇଯାଇ ଥାଆନ୍ତୁ। କିନ୍ତୁ କେଇ ହଜାର ମାଇଲ୍ ଓ ଦୁଇ ମହାସାଗର ପାରି ହେବା କଥା ଯେଉଁଠି ରହିଛି, ସେଠି ତ ଗୋଟିଏ ସ୍ୱତନ୍ତ୍ର ବ୍ୟବସ୍ଥା କରିବାକୁ ପଡିବ। ତୋ ଭାଇନାଙ୍କ କଥା ତ ଜାଣିଛୁ। ଘରର ସବୁ ଜିନିଷ ଏଇଠି "ଦାନ" କରି ଦେଇ ଯିବା କଥା ଉଠେଇଥିଲେ। ହେଲେ ମୁଁ ମୋ ବହିଗୁଡିକଠାରୁ ଆରମ୍ଭ କରି ବାସନକୁସନ ପର୍ଯ୍ୟନ୍ତ ଛାଡିଯିବାକୁ ପ୍ରସ୍ତୁତ ନ ଥିଲି। ଆଉ ପିଲାମାନେ ତାଙ୍କର ଭଙ୍ଗା ଖେଳଣାଠାରୁ ଆରମ୍ଭ କରି ସ୍କୁଲରୁ ଚିତ୍ର ଆଙ୍କି ଆଣିଥିବା ଛିଣ୍ଡା କାଗଜ ପର୍ଯ୍ୟନ୍ତ ସବୁ କିଛି ସାଙ୍ଗରେ ନେଇଯିବାକୁ ଜିଦ୍ ଧରି ବସିଗଲେ। ଅଗତ୍ୟା ଜାହାଜରେ ଜିନିଷ ପଠେଇବାର ବ୍ୟବସ୍ଥା ହେଲା। କଥାଟା କହିବାକୁ ବଡ ସହଜ, କିନ୍ତୁ ସବୁ ବୁଝାବୁଝି କରି ସ୍ଥିର କରିବାରେ ବେଶ୍ କିଛିଦିନ ଲାଗିଗଲା।

କେବଳ ଜିନିଷପତ୍ରର ବ୍ୟବସ୍ଥା କରିଦେଲେ ତ ହେବ ନାହିଁ। ସ୍କୁଲରୁ ଟ୍ରାନ୍‌ସଫର୍ ସାର୍ଟିଫିକେଟ୍ ନେବାକୁ ହେବ। ଘର ପାଇଁ, ଫର୍ନିଚର୍ ପାଇଁ, ଗାଡି ପାଇଁ ନୋଟିସ୍ ଦେବାକୁ ହେବ। ଲାଇବ୍ରେରୀର ମେମ୍ବରସିପ୍ କାର୍ଡଠାରୁ ଆରମ୍ଭ କରି କ୍ରେଡିଟ୍ କାର୍ଡ ପର୍ଯ୍ୟନ୍ତ ସବୁ କିଛି କ୍ୟାନ୍‌ସଲ୍ ମଧ୍ୟ କରିବାକୁ ହେବ। ଆଉ ଉପହାର କିଣା, ଜିନିଷପତ୍ର ପ୍ୟାକିଙ୍ଗ ଏସବୁ ତ ରହିଛି। ଏମିତି ଗୋଟିଏ ପରେ ଗୋଟିଏ ହୋଇ କାମର ପର୍ବତଟିଏ ସୃଷ୍ଟି ହୋଇଯାଇଥିଲା। ଏସବୁ କରିବା ଭିତରେ କେମିତି ଯେ ଭୋର୍ ହୋଇ ରାତି ହୋଇଯାଉଥିଲା ମୁଁ ଆଦୌ ଜାଣିପାରୁ ନଥିଲି। ସେଇଥିପାଇଁ ତୋତେ ଚିଠିଟିଏ ଲେଖିବାରେ ଏତେ ବେଶୀ ଡେରି କରିଦେଲି।

ଆମର ଭାରତ ଫେରିବାର ଖବର ମୁଁ ଯେତେବେଳେ ଏଠିକା ସାଙ୍ଗମାନଙ୍କୁ ଜଣେଇଲି, ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ। "ତୁମେ ସତରେ ଫେରିଯିବ?" "ଆଉ କ'ଣ ଆଦୌ ରହି ହୋଇ ନ ଥାଆନ୍ତା?"- ଏମିତି ବହୁ ପ୍ରଶ୍ନର

ସମ୍ମୁଖୀନ ହେବାକୁ ପଡ଼ିଲା । ଆଉ ଯେ ରହିପାରି ନ ଥାଆନ୍ତୁ ତା' ନୁହଁ, କିନ୍ତୁ ଆମେ ଅଧିକ ଦିନ ରହିବାକୁ ହିଁ ଚାହୁଁନାହୁଁ । ଏକଥା ଶୁଣି ବହୁତ ଲୋକ ଆଶ୍ଚର୍ଯ୍ୟ ହୋଇଗଲେ । ସେମାନଙ୍କ ମଧ୍ୟରୁ କେତେଜଣ ହସି ହସି କହିଲେ, "ହଉ, ଥରେ ଭାରତରେ ପହଞ୍ଚିଯାଅ । ଦୂରରୁ ଭାରତ ଯିନା ଏତେ ମଧୁର ମନେ ହେଉଛି । କିନ୍ତୁ ଥରେ ନାକରେ ଝାଳ, ଧୂଳି ଓ ଆବର୍ଜନାର ଗନ୍ଧ ବାଜିଗଲେ, ସବୁତକ ଆକର୍ଷଣ ଚାଲିଯିବ । ଅଳ୍ପଦିନ ମଧ୍ୟରେ ପୁଣି ଫେରି ଆସିବାର ପ୍ରସ୍ତୁତି ଆରମ୍ଭ କରିଦେବ ।"

ମିତୁ, ସେମାନଙ୍କର ଏଭଳି କଥା ଶୁଣି ମତେ ଭାରି ଦୁଃଖ ଲାଗିଲା । କଥା ଯେ ଏକଦମ୍ ମିଛ, ତା' ନୁହଁ । କାରଣ ମୁଁ ଏହିଭଳି କେତେଗୁଡ଼ିଏ ଘଟଣା ଘଟିଥିବାର ଦେଖିଛି । ଆମ ଚିହ୍ନା ପରିଚୟ କେତୋଟି ପରିବାର ଆମେରିକାରୁ ଭାରତ ଫେରିବାର ଅଳ୍ପ କେତେ ମାସ ପରେ ପୁଣି ଆମେରିକା ଫେରିଯାଇଛନ୍ତି । ସେମାନଙ୍କର ପିଲାମାନେ ସ୍କୁଲ୍ କଲେଜ୍‌ରେ ଅନ୍ୟମାନଙ୍କ ସାଙ୍ଗରେ ମିଶି ପାରି ନାହାନ୍ତି । ସେମାନେ ନିଜେ 'ଗ୍ୟାସ ନାହିଁ, 'କ୍ଷୀର ନାହିଁ'ର ରୁଟୀନ୍‌ରେ ଅତିଷ୍ଠ ହୋଇ ପଡ଼ିଛନ୍ତି । କିନ୍ତୁ ଗୋଟିଏ କଥା ବୁଝିପାରେ ନାହିଁ ମୁଁ । ଯେଉଁ ଧୂଳି ମାଟିରେ, ନାହିଁ ନାହିଁର ବାତାବରଣ ଭିତରେ ଜୀବନର ଏତେଗୁଡ଼ାଏ ବର୍ଷ ସେମାନେ କଟାଇ ଆସିଛନ୍ତି, ହଠାତ୍ ସେଇ ସମାଜ, ସେଇ ପରିବେଶ ଅସହ୍ୟ ହୋଇପଡ଼େ କେମିତି ? ଯଦି ଦୈନନ୍ଦିନ ଚଳିବା ଦୃଷ୍ଟିରୁ ଦେଖାଯାଏ, ତେବେ ଆମେରିକା ଭଳି ଦେଶ ନାହିଁ । ବୋଧହୁଏ ଏଇଭଳି ଏକ ସାବଲୀଳ ଜୀବନ ବେଶ୍ କିଛି ବର୍ଷ କଟେଇବା ପରେ ଯୁକ୍ତରାଷ୍ଟ୍ର ଆମେରିକାରେ ରହିଯାଇଥିବା ଭାରତୀୟମାନଙ୍କର ସବୁ କ୍ଷେତ୍ରରେ ସାଲିସ୍ କରି ଚଳିବାର କ୍ଷମତା କମିଯାଏ ।

ଅନ୍ୟମାନଙ୍କ କଥା କହିପାରିବି ନାହିଁ । କିନ୍ତୁ ମୁଁ ମୋ ନିଜକୁ ଚିହ୍ନିଛି, ମୋ ପରିବାରକୁ ଚିହ୍ନିଛି । ଆମର ଭାରତ ସହିତ ବନ୍ଧନ ଏବେ ମଧ୍ୟ ସୁଦୃଢ଼ । ତେଣୁ ଅଭାବ, ଦାରିଦ୍ର୍ୟ, ଅନାହାର ଦେଖି ମୁହଁ ବୁଲେଇ ନେଇ ଆମେ ଆମେରିକା ଫେରିଯିବୁ ନାହିଁ, ବରଂ ସମସ୍ୟାର ସମ୍ମୁଖୀନ କରିବୁ । ଏବଂ ଯଦି ସମ୍ଭବ ହୁଏ ଆମ ସମସ୍ୟା ପାରି ହୋଇ ସମାଜର ସମସ୍ୟାର ଛୋଟ ଭାଗଟିଏ ସମାଧାନ କରିବାର ଚେଷ୍ଟା କରିବୁ । ଯେଉଁ ସମାଜ ଆମକୁ ଏତେ କିଛି ଦେଇଛି, ସେଇ ସମାଜକୁ କାଣିଚାଏ ଫେରାଇବା ଆମର କର୍ତ୍ତବ୍ୟ ନୁହଁ କି ?

ଆମର ଭାରତ ଫେରିଯିବା ଖବର ଶୁଣି କେତେଜଣ ସିନା ମତେ ନିରାଶବାଣୀ ଶୁଣେଇଲେ, କିନ୍ତୁ ଆଉ କେତେଜଣ କହିଲେ, "ଖୁବ୍ ଭଲ କରୁଛ ଏବେ ଚାଲିଯାଉଛ। ଆଉ କିଛି ବର୍ଷ ରହିଗଲେ ଠିକ୍ ଆମମାନଙ୍କ ଭଳି ଅବସ୍ଥା ହେବ। ଫେରିଯିବାକୁ ଚାହିଁଲେ ମଧ ପିଲାମାନଙ୍କ ଯୋଗୁଁ ଫେରିଯାଇ ପାରିବ ନାହିଁ।" ମିତୁ, ମୁଁ ଯେତେବେଳେ ଭାରତ ବାହାରେ ପାଦ ଦେଇ ନଥିଲି, ସେତେବେଳେ ମୋର ଜଣେ ପରିଚିତ ଠିକ୍ ଏଇ କଥା କହିଥିଲେ- "ଆମେ ଫେରିବାକୁ ଚାହୁଁଛୁ; କିନ୍ତୁ ପିଲାମାନଙ୍କ ପାଇଁ ଫେରିପାରୁ ନାହୁଁ।" ମୁଁ ତାଙ୍କର କଥା ଶୁଣି ଅନ୍ୟମାନଙ୍କ ଭଳି ଭାବିଥିଲି ଯେ କେବଳ କହିବା ପାଇଁ କଥାଟି କହୁଛନ୍ତି। ନିଜ ଇଚ୍ଛାକୁ ପିଲାଙ୍କ ଉପର ଦେଇ ଚଳେଇ ଦେଉଛନ୍ତି। ଅସଲ କଥା ହେଉଛି ଆମେରିକା ଭଳି ଦେଶରେ ଆରାମରେ ଯେତେବେଳେ ରହିପାରିବେ, ଭାରତକୁ ଫେରି ଆସିବାକୁ ଚାହିଁବେ ବା କାହିଁକି ?

କିନ୍ତୁ ମୁଁ ଆମେରିକା ଆସିବା ପରେ ଏଇଭଳି ବହୁ ଭାରତୀୟଙ୍କୁ ନିକଟରୁ ଦେଖିବା ପରେ କଥାଟିର ସତ୍ୟତା ଅନୁଭବ କଲି। ଏମାନେ ଭାରତ ବାହାରେ ବେଶ୍ କିଛି ବର୍ଷ ରହିଗଲେଣି। ଏମାନଙ୍କର ପିଲାମାନେ ହୁଏତ ଆମେରିକାରେ ଜନ୍ମ ବା ଛୋଟବେଳୁ ଭାରତ ଛାଡି ଆସିଛନ୍ତି। ଏହି ପିଲାମାନଙ୍କ ମଧ୍ୟରୁ ଯଦିଓ ଅଧିକାଂଶ ନିଜକୁ ଭାରତୀୟ କହନ୍ତି, ସେମାନଙ୍କର ବ୍ୟବହାର ବା ଚାଲିଚଳଣ ଭାରତରେ ବଢୁଥିବା ଭାରତୀୟ ପିଲାମାନଙ୍କ ବ୍ୟବହାର ବା ଚାଲିଚଳଣଠାରୁ ବେଶ୍ ଭିନ୍ନ। ଏବଂ ଏଭଳି ହେବାଟା ହିଁ ସ୍ୱାଭାବିକ। ଏହି ପିଲାମାନେ ଆମେରିକାର ସ୍କୁଲକୁ ଯାଆନ୍ତି; ସେମାନଙ୍କର ଅଧିକାଂଶ ବନ୍ଧୁ ଆମେରିକାନ୍; ଶିକ୍ଷକ, ଶିକ୍ଷୟିତ୍ରୀ ଆମେରିକାନ୍- ତେଣୁ ଆମେରିକାନ୍ ସଂସ୍କୃତିର ପ୍ରଭାବ ଏମାନଙ୍କର କୋମଳ ମନରେ ଛାପି ହୋଇଯାଏ। ମା, ବାପାମାନେ ଯଦି ଜୋର୍ ଦେଇ ଭାରତୀୟ ମୂଲ୍ୟବୋଧ ବା ଭାରତୀୟ ସଂସ୍କୃତି ସେମାନଙ୍କର ପିଲାମାନଙ୍କ ଉପରେ ଲଦି ଦେବାର ଚେଷ୍ଟା କରନ୍ତି, ତେବେ ପିଲାମାନେ ଗୋଲକଧନ୍ଦାରେ ପଡିଯିବାର ସମ୍ଭାବନା ଅଧିକ। ସେମାନେ ନା ଭାରତକୁ ଫେରିଆସି ପାରିବେ ନା ଆମେରିକାରେ ପିଲାମାନଙ୍କ ସହିତ ମିଶି ପାରିବେ। ଫଳରେ କ୍ଷତି ହେବ କାହାର ?

ମୁଁ ରୁମି, ରିଟିଙ୍କ ଉଦାହରଣ ଦେଉଛି। ସେମାନେ ଏ ଦେଶକୁ ଆସିଲେ ମାତ୍ର ଦୁଇ ବର୍ଷ ତଳେ। ଅଥଚ ମାତ୍ର କେତୋଟି ମାସ ଭିତରେ ସେମାନଙ୍କର

କଥା କହିବାର ଭଙ୍ଗୀ ବଦଳିଗଲା। ଏହା ନେଇ ଆମେ କେତେଥର ଚିନ୍ତିତ ହୋଇ ପଡ଼ିଛୁ। କେତେଥର ଶାସନ ମଧ୍ୟ କରିଛୁ। କିନ୍ତୁ ପରେ ଚିନ୍ତା କରି ଦେଖିଲୁ ଯେ ଯଦି ସେମାନେ ଏଭଳି ଭାବରେ କଥା ନ କହନ୍ତି, କିଛିଟା ଆତ୍ମବଡ଼ିମା ନ କରନ୍ତି, ତେବେ ସ୍କୁଲରେ ବା ଖେଳପଡ଼ିଆରେ ସଂପୂର୍ଣ୍ଣ ଏକାକୀ ହୋଇଯିବେ। ଅନ୍ୟ କାହା ସହିତ ମିଶି ପାରିବେ ନାହିଁ। ଯଦି ମାତ୍ର ଦୁଇଟି ବର୍ଷରେ ଏ ପିଲା ଦୁଇଜଣଙ୍କର ଏଭଳି ପରିବର୍ତ୍ତନ ହୋଇଗଲା, ତେବେ ଯେଉଁମାନେ ବର୍ଷ ବର୍ଷ ଧରି ଆମେରିକାରେ ବଢୁଛନ୍ତି, ସେମାନଙ୍କର ମୂଲ୍ୟବୋଧ, ଚିନ୍ତା କରିବାର ଭଙ୍ଗୀ ଠିକ୍ ଆମେରିକାନଙ୍କ ଭଳି ହୋଇଥିବାଟା ହିଁ ସ୍ୱାଭାବିକ୍। ତେଣୁ ସେ ପରିସ୍ଥିତିରେ ମା, ବାପାମାନେ ଭାରତକୁ ଫେରିଯିବା କଥା ଚିନ୍ତାକରି ଭୟ ପାଇଯାଆନ୍ତି। ଆମେ ଏ ଭଳି ପରିସ୍ଥିତିରେ ପହଞ୍ଚିବାକୁ ଆଦୌ ଚାହୁଁ ନାହୁଁ। ଭାରତକୁ ଫେରିବୁ ତ ନିଶ୍ଚୟ। ତେଣୁ ଏବେ ହିଁ ଠିକ୍ ସମୟ। ନୂଆ ଦେଶ ବୁଲିବା ନିଶା ଆମମାନଙ୍କର ପୂରଣ ହେଲା। ନୂଆ ସଭ୍ୟତା ସହିତ ପରିଚୟ ମଧ୍ୟ ହେଲା। ବର୍ତ୍ତମାନ ନ ଫେରି ଯଦି ଫେରିବାରେ ଡେରି କରି ଦେଉ, ତେବେ ପିଲାମାନଙ୍କୁ ବେଶ୍ କଷ୍ଟ ହେବ। ଅଯଥା ସେମାନଙ୍କୁ ଏଭଳି କଷ୍ଟ ଦେବାର ସପକ୍ଷରେ ଆମେ ନାହୁଁ। ପରେ ଭବିଷ୍ୟତରେ ବୁଦ୍ଧି ହେବା ପରେ ସେମାନେ ଚାହିଁଲେ ଆମେରିକା ଆସିପାରିବେ। ଏବଂ ମୁଁ ଆନନ୍ଦରେ ମୋ ସମ୍ମତି ସେମାନଙ୍କୁ ଦେଇଦେବି।

ଏ ପର୍ଯ୍ୟନ୍ତ ଯାହା ଯାହା ସବୁ ଲେଖିଲି, ସେସବୁ ସହିତ ପରୋକ୍ଷ ଭାବରେ ଜଡ଼ିତ ଆଉ ଦୁଇଟିଏ ବିଷୟରେ ମୁଁ ତଳେ ଲେଖୁଛି। ଆମେ ଭାରତୀୟମାନେ ମନେ କରିଥାଉ ଯେ ଆମେରିକାନ୍ ସମାଜ ତା'ର ସଦସ୍ୟମାନଙ୍କୁ ଅତି ବେଶୀ ସ୍ୱାଧୀନତା ଦିଏ। ଏ କଥା ଭାରତର ରକ୍ଷଣଶୀଳ ଦୃଷ୍ଟିକୋଣରୁ ଏକଦମ୍ ସତ। ଭାରତୀୟ ସମାଜ ସହିତ ଆମେରିକାନ୍ ସମାଜକୁ ତୁଳନା କରିଲେ ଜଣେ ଏଇଭଳି ସିଦ୍ଧାନ୍ତରେ ନିଶ୍ଚିତ ଭାବରେ ପହଞ୍ଚିବ। କିନ୍ତୁ ଏପରି ଏକ ମୁକ୍ତ ଓ ସ୍ୱାଧୀନ ପରିବେଶ ଯେ ସେମାନଙ୍କ ପାଇଁ ଅତି ସ୍ୱାଭାବିକ।

କିଛି ମାସ ତଳେ ମୋର ଜଣେ ଆମେରିକାନ୍ ମହିଳାଙ୍କ ସହିତ ପରିଚୟ ହେଲା। ତାଙ୍କ ନାଁ ଲୁ-ଏଲେନ୍ ସେଫର୍। ଗତ ଦୁଇ ବର୍ଷ ଭିତରେ ଆମର ବହୁ ଆମେରିକାନ୍‌ଙ୍କ ସହିତ ପରିଚୟ ଓ ବନ୍ଧୁତ୍ୱ ହୋଇଛି। କିନ୍ତୁ କାହରେ

ହାତ ପକେଇବା ଭଳି ବା ଦରକାର ବେଳେ ଦୁଇଟା ଥାଳୁ ବା ପିଆଜ ମାଗି ଆଣିବା ଭଳି ସଂପର୍କ କାହା ସାଙ୍ଗରେ ହୋଇ ନ ଥିଲା । କେମିତି କେଜାଣି ଲୁ-ଏଲେନ୍‌ଙ୍କ ସହିତ ସେଇଭଳି ସ୍ତରରେ ଘନିଷ୍ଠତା ହୋଇଗଲା ।

ଲୁ ଏଲେନ୍ କ୍ୟାଲିଫୋର୍ଣିଆ ବିଶ୍ୱବିଦ୍ୟାଳୟରେ କାମ କରନ୍ତି । ସେତେବେଳେ ସେ ଭାରତରୁ ଚାକିରୀ ପାଇଁ ଆମେରିକା ଆସୁଥିବା ଉଚ୍ଚଶିକ୍ଷିତ କେତେଜଣ ଇଞ୍ଜିନିୟରଙ୍କ ନିମନ୍ତେ ଟ୍ରେନିଙ୍ଗ ପ୍ରୋଗ୍ରାମଟିଏ ର ଆୟୋଜନ କରୁଥିଲେ । ସେଇ ସଂକ୍ରାନ୍ତରେ ସେ ଗୋଟିଏ ଭାରତୀୟ ପରିବାର ଦେଖିବାକୁ ଚାହିଁଥିଲେ । କେହି ଜଣେ ଆମ କଥା କହିଥିଲା ତାଙ୍କୁ । ତା'ପରେ ଲୁ ଏଲେନ୍ ଫୋନ୍ କରିଥିଲେ ଏବଂ କିଛି ସମୟ ଆମ ସାଙ୍ଗରେ କଟାଇବା ପାଇଁ ଚାହିଁଥିଲେ । ସେଦିନର "କିଛି ସମୟ" ବେଶ୍ କିଛି ଘଣ୍ଟା ହୋଇ ଯାଇଥିଲା । ଲୁ ଏଲେନ୍ ରାତିରେ ଆମ ସାଙ୍ଗରେ ଏକାଠି ଖାଇ ଡେରିରେ ଘରକୁ ଫେରିଥିଲେ । ତା'ପରେ ବିଭିନ୍ନ କାରଣ ନେଇ ଏବଂ କେତେଥର ବିନା କାରଣରେ ଲୁ ଏଲେନ୍‌ଙ୍କ ସହିତ ଦେଖା ହୋଇଛି । ଏହା ଭିତରେ ଆମର କେମିତି ଯେ ବନ୍ଧୁତ୍ୱ ହୋଇଗଲା ତା' ମୁଁ ଜାଣିନାହିଁ । ସେ ଜଣେ ଆମେରିକାନ୍ ବା ମୁଁ ଜଣେ ଭାରତୀୟ- ଏ ଭାବ ଆଉ ଆମ ଭିତରେ ରହିଲା ନାହିଁ ।

ଲୁ ଏଲେନ୍‌ଙ୍କ ବୟସ ୩୫ । ସେ ବିବାହ କରି ନାହାନ୍ତି, କିନ୍ତୁ ମାର୍କୋ ଲୁଇ ସାଲାଜାର୍‌ଙ୍କ ସହିତ ଏକାଠି ରହନ୍ତି । ମାର୍କୋ ଲୁଇ କୋଷ୍ଟାରିକାର ନାଗରିକ । ପ୍ରଥମ ପତ୍ନୀଙ୍କ ସହିତ ଡିଭୋର୍ସ ହୋଇଯିବା ପରେ ଉଚ୍ଚଶିକ୍ଷା ପାଇଁ ଆମେରିକା ଆସିଥିଲେ । ଆମେରିକାରେ କ୍ୟାଲିଫୋର୍ଣିଆ ବିଶ୍ୱବିଦ୍ୟାଳୟରେ ଲୁ ଏଲେନ୍‌ଙ୍କ ସହିତ ଦେଖା ଓ ଘନିଷ୍ଠତା । ତା'ପରେ ଲୁ ଏଲେନ୍‌ଙ୍କ ଘରେ ମାର୍କୋ ଲୁଇ ଆଜି ପର୍ଯ୍ୟନ୍ତ ଏକାଠି ରହି ଆସିଛନ୍ତି । ଅକ୍ଟୋବର ମାସରେ ଆଇନତଃ ସେମାନେ ବିବାହ କରିପାରନ୍ତି ବୋଲି ଥରେ ଲୁ ଏଲେନ୍ କଥାରେ ସୂଚନା ଦେଇଥିଲେ । ହୁଏତ ବିବାହ ହେବ ବା ନ ମଧ୍ୟ ହୋଇପାରେ ।

ଏଭଳି ଘଟଣା ଆମେ ଭାରତରେ ଥାଇ ଶୁଣିଥିଲେ ବେଶ୍ ମୁଖରୋଚକ ମନେ ହୋଇଥାଆନ୍ତା । କିନ୍ତୁ ଲୁ ଏଲେନ୍‌ଙ୍କୁ ଜାଣିବା ପରେ ଘଟଣାଟି ମନେ ହେଲା ଅତି ସାଧାରଣ । ଲୁ ଏଲେନ୍ ହଲିଉଡ୍‌ର ଚିତ୍ରତାରକାମାନଙ୍କ ଭଳି ସୁନ୍ଦରୀ ନୁହନ୍ତି, କ୍ଷୀଣାଙ୍ଗୀ ମଧ୍ୟ ନୁହନ୍ତି । ସେ ନିଜର କ୍ୟାରିଅର୍ ନେଇ ବ୍ୟସ୍ତ, ମାର୍କୋ

ଲୁଇ ତାଙ୍କର ପଢାପଢିରେ ବ୍ୟସ୍ତ । ଏଭଳି କ୍ଷେତ୍ରରେ ବିବାହ ସେମାନଙ୍କ ପାଇଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ନୁହେଁ । ପରେ ଲୁ ଏଲେନ୍‌ଙ୍କ କହିବାନୁସାରେ ସେମାନେ "ପରିବାର" ସୃଷ୍ଟି କରିବା ପାଇଁ ପ୍ରସ୍ତୁତ ହେଲେ, ବିବାହ ଏକ ଆବଶ୍ୟକତା ହୋଇପଡିବ ।

ବିବାହ ନ କରି ସନ୍ତାନ ଜନ୍ମ ଦେବାର ସପକ୍ଷରେ ଲୁ ଏଲେନ୍ ବା ମାର୍କୋ ଲୁଇ ନାହାନ୍ତି । କିନ୍ତୁ ଆମେରିକାରେ ଏଭଳି ଘଟଣା ପ୍ରାୟ ଦେଖାଯାଏ । ପ୍ରତି ଚାରୋଟିରୁ ଗୋଟିଏ ହେଉଛି, "Single parent home" । ବିବାହ ନ କରି ସନ୍ତାନ ହେବା ବା ସନ୍ତାନ ଜନ୍ମ ପରେ ମା, ବାପା ପରସ୍ପରକୁ ଛାଡପତ୍ର ଦେବା- ଏଭଳି ଖବର ଏଠାରେ ଶୁଣିଲେ କେହି ବିସ୍ମିତ ହୁଏ ନାହିଁ ବା ଏଇଟା ଯେ ସମାଜର ଗୋଟିଏ ସମସ୍ୟା ତାହା ମଧ କେହି ମନେ କରେ ନାହିଁ ।

ଯେଉଁ ବିଷୟ ନେଇ ଆମେରିକାନ୍ ସମାଜ ଅତ୍ୟଧିକ ଚିନ୍ତିତ ତାହା ହେଲା 'ଟିନ୍ ଏଜ୍ ପ୍ରେଗ୍‌ନାନ୍‌ସି' । ଅର୍ଥାତ୍ ୧୩ରୁ ୧୯ ବର୍ଷର ଝିଅମାନେ ଅଧିକରୁ ଅଧିକ ସଂଖ୍ୟାରେ ଗର୍ଭବତୀ ହୋଇ ଯାଉଛନ୍ତି । ଏମାନଙ୍କ ମଧ୍ୟରୁ ଅଧିକାଂଶ ଅବିବାହିତା । ଆଉ ଅଧିକାଂଶଙ୍କର ନିଜର ପରିବାର ବୋଲି କିଛି ନାହିଁ । ଅର୍ଥାତ୍ ମା, ବାପା କିଏ କେଉଁଠି ତା'ର ଠିକ୍ ନାହିଁ । ହୁଏତ ମା' ନିଜ ଜୀବନ ନେଇ ବ୍ୟସ୍ତ । ବାପା ମଧ ଠିକ୍ ସେଇ ଭଳି । ଏଣେ ଯଥେଷ୍ଟ ଆୟ ନାହିଁ । ତେଣେ ମୁଣ୍ଡ ଉପରେ ସନ୍ତାନର ଦେଖାଶୁଣା ଦାୟିତ୍ୱ ଲଦି ହୋଇଯାଏ । ଫଳରେ ଆଉ ଅଧିକ ପଢାଶୁଣା କରିବାରେ ସେମାନେ ସକ୍ଷମ ହୁଅନ୍ତି ନାହିଁ । କମ୍ ଦରମାରେ ଚାକିରୀ କରିବା ପାଇଁ ବାଧ ହୁଅନ୍ତି । ସେମାନଙ୍କର ସନ୍ତାନମାନଙ୍କର ପିତାମାନେ ମଧ ଅଧିକାଂଶ କ୍ଷେତ୍ରରେ ଜରଛଡା ଦିଅନ୍ତି । ଏଇଭଳି ଘଟଣା ଏତେ ସଂଖ୍ୟାରେ ଘଟୁଛି ଯେ ସମାଜର ଭବିଷ୍ୟତ କ'ଣ ହେବ ତାହା ଚିନ୍ତା କରି ହେଉନାହିଁ । ସମାଜର ଉଭୟ ଅର୍ଥନୀତିକ ଓ ମାନସିକ ମେରୁଦଣ୍ଡ ଦୁର୍ବଳ ହୋଇଯାଉଛି । ସରକାରଙ୍କଠାରୁ ଆରମ୍ଭ କରି ବହୁ ବେସରକାରୀ ଅନୁଷ୍ଠାନ ସମାଜର ଏହି ସମସ୍ୟାକୁ ଦୂର କରିବା ପାଇଁ ଚେଷ୍ଟା କରିଯାଉଛନ୍ତି । କିନ୍ତୁ ମୋ ମତରେ ଯେତେଦିନ ଆମେରିକାର ଦୁର୍ବଳ ପାରିବାରିକ ଜୀବନରେ ପରିବର୍ତ୍ତନ ନ ଆସିବ, ସେତେଦିନ ଏହି ସମସ୍ୟା ରହିବ ।

ଆମେ ଭାରତରେ ରହି 'ବାପା, ମା, ପୁଅ, ଝିଅ'ଙ୍କ ସଂସାର ଦେଖି ଦେଖି ଏତେ ଅଭ୍ୟସ୍ତ ଯେ ଏଠିକାର ପରିବାର ସଂପର୍କରେ ଦୂରରୁ ଧାରଣା କରିପାରିବୁ ନାହିଁ। ରୁମିର ଯେଉଁ ସାଙ୍ଗ 'ବେଟି' କଥା ମୁଁ ବହୁତଦିନ ତଳେ ଲେଖିଥିଲି, ତା' ପରିବାରଟିର ଉଦାହରଣ ଦିଏ। ବେଟିର ମା, ବାପା କିଛି ବର୍ଷ ତଳେ ପରସ୍ପରକୁ ଛାଡପତ୍ର ଦେଇଛନ୍ତି। ବାପା ନିଉୟର୍କରେ ରହନ୍ତି। ସେ ଆଉ ଥରେ ବିବାହ କରିଛନ୍ତି। ତାଙ୍କର ଗୋଟିଏ ଝିଅ। ବେଟି ମା' ପାଖରେ ରହେ। ମା' ମଧ୍ୟ ପୁଣି ବିବାହ କରିଛନ୍ତି। ତାଙ୍କର ଝିଅଟିଏ ହୋଇଛି। ତା' ନାଁ ଜେନି। 'ଜେନି' ବିଷୟରେ କୌଣସି କଥା ପଡିଲେ ବେଟି ତାକୁ ଭଉଣୀ ବା ସିଷ୍ଟର୍ ନ କହି କହିଥାଏ 'ହାଫ୍ ସିଷ୍ଟର୍'। ଆଉ ମା'ଙ୍କର ନୂତନ ପତିଙ୍କୁ ନାଁ ଧରି କହେ 'ମାଇକ୍'। ଏଭଳି ଘଟଣା ଆମେରିକାନ୍ ସମାଜରେ ସାଧାରଣ ହେଲେ ମଧ୍ୟ ନିଶ୍ଚିତ ଭାବରେ ଏସବୁର ପ୍ରଭାବ ପିଲାମାନଙ୍କ ଉପରେ ପଡୁଛି। ମୋର ଯାହା ମନେ ହୁଏ ଏଭଳି ଘଟଣା ଘଟୁଥିବା ପରିବାରମାନଙ୍କରେ ମା, ବାପାମାନେ ପିଲାମାନଙ୍କୁ ଠିକ୍ ଶାସନ କରିପାରନ୍ତି ନାହିଁ। ଭଲ କ'ଣ ମନ୍ଦ କ'ଣ- ସେ ନେଇ ଜୋର୍ ଦେଇ କହିପାରନ୍ତି ନାହିଁ। କାରଣ ପିଲାମାନେ ତ ସେମାନଙ୍କୁ ଆଙ୍ଗୁଠି ଦେଖାଇ ଦୋଷ ଦେଇ ପାରିବେ। ଫଳରେ ପିଲାମାନେ ଅତି ବେଶୀ ସ୍ୱାଧୀନତା ପାଇ ଯାଆନ୍ତି। ଏହାପରେ ହୁଏତ ସେମାନେ ବେଟି ଭଳି ମୁଣ୍ଡ ପଛପଟୁ ଅଧା ଚାଞ୍ଛିନେଇ ଅଦ୍ଭୁତ ଭଙ୍ଗୀରେ ବାଳ କାଟନ୍ତି ବା ୧୩ ବର୍ଷର ଝିଅ ପ୍ୟାମି ଭଳି ଲିପ୍‌ଷ୍ଟିକ୍ ଲଗେଇ ମେକ୍‌ଅପ୍ ହୋଇ ଅତି ଟାଇଟ୍ ଲୁଗାପଟା ପିନ୍ଧି ସ୍କୁଲ୍ ଯାଆନ୍ତି। ନଚେତ୍ ମନ ହେଲେ ସ୍କୁଲ୍ ଯିବା ବନ୍ଦ କରି ଦେଇ ନିଜକୁ କହନ୍ତି 'ଡ୍ରପ୍ ଆଉଟ୍'!

ଏଭଳି ଘଟଣା ଆମେରିକାରେ ରହୁଥିବା ଭାରତୀୟ ପରିବାରମାନଙ୍କରେ ସଚରାଚର ଦେଖା ନ ଗଲେ ମଧ୍ୟ କିଛି ମାତ୍ରାରେ ଘଟୁଥିବ ନିଶ୍ଚୟ। ଗୋଟିଏ ଦୁଇଟି ଘଟଣାକୁ ଛାଡିଦେଲେ ଦୃଷ୍ଟିକଟୁ ହେବା ଭଳି କିଛି ମୋ ଆଖିରେ ଅନ୍ତତଃ ପଡିନାହିଁ। ଏବେ ମଧ୍ୟ ଏହି ସବୁ ପରିବାର ଭାରତୀୟ ସଂସ୍କୃତି ଓ ମୂଲ୍ୟବୋଧକୁ ଧରି ରଖିବାର ଚେଷ୍ଟା କରି ଯାଉଛନ୍ତି। ମୋତେ ଜଣେ ଭାରତୀୟ ମହିଳା କହିଥିଲେ, ''ଏସବୁ ନିର୍ଭର କରେ ପରିବାର ଉପରେ। ଯେଉଁଠି ପରିବାରଠାରୁ ସନ୍ତାନ ସ୍ନେହ ଓ ସୁରକ୍ଷା ନ ପାଏ, ସେହିଠାରେ ସେ ବିଦ୍ରୋହ କରେ।

ପରିବାରକୁ କଷ୍ଟ ଦେବା ଉଦ୍ଦେଶ୍ୟରେ ନିଜ ଜୀବନକୁ ଦୁର୍ବିସହ କରିଦିଏ ।''

ଭଦ୍ରମହିଳାଙ୍କ ମତାମତର ଯଥାର୍ଥତା ମୁଁ ବୁଝିଛି। କିନ୍ତୁ କେଜାଣି କାହିଁକି ନିଜ ଚାରିପାଖରେ ମନକୁ ଦବେଇ ଦେବା ଭଳି ବହୁ ଘଟଣା ଦେଖିବା ପରେ ମୁଁ ଭୟଭୀତ ହୋଇ ପଡିଛି। ବର୍ତ୍ତମାନ ଆମେରିକାରେ ରହୁଥିବା ଭାରତୀୟମାନେ ଭାରତର ସଂସ୍କୃତିକୁ ଜାବୁଡି ଧରିବାର ଚେଷ୍ଟା କରି ଚାଲିଛନ୍ତି। କିନ୍ତୁ ସଂପୂର୍ଣ୍ଣଭାବରେ ବିଦେଶରେ ବଢୁଥିବା ତାଙ୍କର ପିଲାମାନେ ବଡ ହୋଇଯିବା ପରେ ସେହି ମୂଲ୍ୟବୋଧକୁ ଧରି ରଖିବାରେ କ'ଣ ସକ୍ଷମ ହେବେ ? ସେମାନେ କ'ଣ ଭାରତୀୟ ସଂସ୍କୃତିକୁ ସମ୍ମାନ ଦେଇ ପାରିବେ ? ଦୃଢ ପାରିବାରିକ ଜୀବନ ସୃଷ୍ଟି କରି ପାରିବେ ?

ମୋ ମନରେ ସେମାନଙ୍କର ଭବିଷ୍ୟତ ବଂଶଧରମାନଙ୍କୁ ନେଇ ଅନେକ ଭୟ ଓ ଦୁଶ୍ଚିନ୍ତା। ଈଶ୍ୱର କରନ୍ତୁ, ମୋର ଆଶଙ୍କା ମିଛ ବୋଲି ପ୍ରତିପାଦିତ ହେଉ। ସମସ୍ତେ ସୁଖ ଆନନ୍ଦରେ ବସବାସ କରନ୍ତୁ। ଫୁଲଫଳରେ ଭରିଉଠୁ ସେମାନଙ୍କର ସଂସାର।

ଆଜି ପାଇଁ ଏତିକି। ଏ ଚିଠି ପାଇ ଆଉ ଉତ୍ତର ଦେବୁ ନାହିଁ। ତୋ ଚିଠି ମୋ ପାଖରେ ପହଞ୍ଚିବା ପୂର୍ବରୁ ମୁଁ ତୁମମାନଙ୍କ ପାଖରେ ପହଞ୍ଚିଯାଇ ସାରିଥିବି।

ଇତି

ତୋର 'ନାନୀ'



## ସୁସ୍ମିତା ବାଗ୍‌ଚୀ

ଜନ୍ମ : ୨୫ ସେପ୍ଟେମ୍ବର, ୧୯୬୦

ଶିକ୍ଷାଗତ ଯୋଗ୍ୟତା : ଦିଲ୍ଲୀ ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ଉପାଧିପ୍ରାପ୍ତ ।

ଅଭିଜ୍ଞତା : ଦିଲ୍ଲୀ ବିଶ୍ୱବିଦ୍ୟାଳୟ ଅଧୀନରେ ଅଧ୍ୟାପିକା ଭାବେ କର୍ମଜୀବନ ଆରମ୍ଭ । ଅଧୁନା ଭୁବନେଶ୍ୱରରୁ ପ୍ରକାଶିତ ମାସିକ ପାରିବାରିକ ପତ୍ରିକା 'ସୁଚରିତା'ର ସହଯୋଗୀ ସଂପାଦିକା ।

ପ୍ରକାଶନ : ଗଳ୍ପ ସଂକଳନ 'ଆକାଶ ଯେଉଁଠି କଥା କହେ' (୧୯୯୦), ଗଳ୍ପ ସଂକଳନ 'ଛାଇ ମେପାଖ ମଣିଷ' (୧୯୯୧), ଭ୍ରମଣ କାହାଣୀ 'ମୋ ଝର୍କାରୁ ପୃଥିବୀ' (୧୯୯୫)। ପୁସ୍ତକପାଠ ଓ ଲେଖାଲେଖି ପ୍ରତି ବାଲ୍ୟାବସ୍ଥାରୁ ଗଭୀର ଅନୁରକ୍ତି । ଓଡିଶାର ବିଭିନ୍ନ ପତ୍ରପତ୍ରିକାରେ ତାଙ୍କର ବହୁ ଗଳ୍ପ ପ୍ରକାଶିତ ଓ ଉଚ୍ଚ ପ୍ରଶଂସିତ ।

ପୁରସ୍କାର : ୧୯୯୪ରେ ତାଙ୍କର ଗଳ୍ପ ସଂକଳନ 'ଆକାଶ ଯେଉଁଠି କଥା କହେ' ପାଇଁ ଓଡିଶା ରାଜ୍ୟ ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ ।